# ଶେଷ ପ୍ରଶ୍ନ

ଶରତ୍ ରଚନା ।

୪

ଫ୍ରେଣ୍ଡସ୍ ପବ୍ଲିଶର୍ସ



ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ
କଟକ . ୨

Digitized by PPRACHIN, SOA

ବଜ୍ରବାହୁ

ଲେଖକ :
କାହ୍ନୁଚରଣ ମହାନ୍ତି

ପ୍ରକାଶକ :
ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ
କଟକ—୨

ତୃତୀୟ ସଂସ୍କରଣ
ଅଗଷ୍ଟ ୧୫, ୧୯୭୭

ମୁଦ୍ରକ :
ସ୍ୱର୍ଣ୍ଣପ୍ରଭା ପ୍ରିଣ୍ଟର୍ସ
ଡଗରପଡ଼ା, କଟକ-୨

ମୂଲ୍ୟ : ଏକୋଇଶ ଟଙ୍କା ମାତ୍ର

BAJRABAHU

Author :
KANHU CHARAN MOHANTY

Publisher :
SAHADEV PRADHAN
Friends' Publishers
Binodbehari Cuttack-753002,
Orissa, (INDIA)

Third Edition
INDEPENDENCE DAY, 1977

Printer :
SWARNA PRAVA PRINTERS
DAGARPARA, Cuttack-2

Price : Rupees Twenty one only

Digitized by PPRACHIN, SOA

ଜୟପୁର
ତା ୧୪-୭-୧୯୫୮
ରଜସଂକ୍ରାନ୍ତି
ଶନିବାର

ପୂଜ୍ୟାସ୍ପଦ,

ପଦ୍ମଶ୍ରୀ ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ,

ଆପଣଙ୍କୁ ବୟସ କି ଅବସ୍ଥା ଉଠାଇପାରି ନାହିଁ । ଆପଣ କବି, ଔପନ୍ୟାସିକ, ସମାଲୋଚକ, ଦାର୍ଶନିକ, ଐତିହାସିକ, ସମାଜସେବକ । ଆପଣଙ୍କର ଦେହ ସ୍ଥବିର କିନ୍ତୁ ମନ ଚିର ଯୌବନ । ସମସ୍ତେ ସୁଖ ଆନନ୍ଦରେ ସଂସାର କରନ୍ତୁ, ପରସ୍ପରକୁ ସ୍ନେହପାଶରେ ବାନ୍ଧି ରଖନ୍ତୁ, ଏହା ହିଁ ଆପଣଙ୍କର ସ୍ୱପ୍ନ । ସେଇ ସ୍ୱପ୍ନ ହିଁ ମୋର ବଜ୍ରବାହୁ ।

ମୋର ଏହି ଉଦ୍ୟମ ତିନି ବର୍ଷ ପରିଶ୍ରମର ଫଳ, ଦଅଁ ଗଢ଼ୁ ଗଢ଼ୁ ମାଙ୍କଡ଼ ଉପନ୍ୟାସଟିକୁ ଆପଣଙ୍କ ହାତକୁ ଟେକିଦେଉଛି ।

କେତେ ତୁଙ୍ଗ ଶିଖର ତ ଟଳିପଡ଼ୁଛି, ଚନ୍ଦ୍ରବଂଶୀ ନାହିଁ, ହୋଇଛି ଅଜ୍ଞାତ, ମୋର ଉଦ୍ୟମରେ ଗଢ଼ିଛି ଯେଉଁ ବାଲିବନ୍ତ, ତାର ପରିଣତି ସମ୍ବନ୍ଧରେ ମୁଁ ସଚେତନ ।

ଏକାବନ ବର୍ଷ ଡେଇଁ ଆସିଲିଣି । କାଳ-ସିନ୍ଧୁର ଗର୍ଜନ କାନରେ ପଡ଼ିଲାଣି । ତଥାପି, ଆପଣଙ୍କର ଆଶୀର୍ବାଦ ପାଇଲେ କାଳ-ସିନ୍ଧୁର କରାଳ ଲହରୀ ଭେଟିବା ଆଗରୁ ପୁଣି ନୂତନ ଉଦ୍ୟମରେ ଲାଗିପଡ଼ିବି ।

ବିନମ୍ରାବନତ
କାହ୍ନୁଚରଣ

Digitized by PPRACHIN, SOA

ନଈ ସେପାରି ଗଛ ଗହଳ ପଛରେ ନିସ୍ତେଜ ତପନ ଲୁଚନ ଲୁଚିଲେଣି । ଏଥର ସଞ୍ଜର ଅନ୍ଧାର ଘୋଟିଆସିବ । ନଈ କୂଳରେ ଏକୁଟିଆ ବସି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍ କଥା ଚିନ୍ତା କରିବାକୁ ସୁବ୍ରତକୁ ଭଲ ଲାଗୁଥିଲା । ଏ ସବୁ ବିଷୟରେ ଚିନ୍ତା କରି ଅତୀତର ସବୁ ଘଟଣା ଆଗକୁ ଆଣି ନିରେଖି ଚାହିଁଲେ କାବାକାବା ଲାଗେ । ସବୁ ନିରାଟ ସତ ହେଲେ ବି ସତ ବୋଲି ମାନିବାକୁ ମନ ନାହିଁ ନାହିଁ କରି ଉଠେ ।

ବର୍ତ୍ତମାନ ଅତି ନିର୍ଦ୍ଦୟ, ଅତି କଠୋର ।

ଆଗରେ ନୀରସ ଶୁଖିଲା ତତଲା ଧୂସର ବାଲି ପ୍ରାନ୍ତର । ଖରା ନ ଥିଲେ ବି ବାଲି ଶୀତଳ ହୋଇ ନାହିଁ । ସଞ୍ଜର ଲହୁଡ଼ିଆ ପବନ ଧୂଳି ଉଡ଼ାଇ ଆଖି କାନରେ ଭରୁଛି । ସୁବ୍ରତର ଲମ୍ବ କେଶ ଇତସ୍ତତଃ କରୁଛି । ଖୋଲା ଦେହରେ ବାଲିକଣାର ମୃଦୁ ଆଘାତ । ଇଚ୍ଛା ହେଉଛି, ବାଲିପ୍ରାନ୍ତର ପାରି ହୋଇ ସେପାଖ ଖଣ୍ଡିତଳେ ବହି ଯାଉଥିବା ବଳାଗଣ୍ଡି ପାଣିରେ ଦେହ ପଖାଳି ଆସିବ । ଅବଶ ଦେହ ଉଠୁ ନାହିଁ ।

ମୁଣ୍ଡ ଉପରେ କେଉଁ କାଳର ବୁଢ଼ା ଓସ୍ତ ଗଛ । ସ୍ୱର୍ଗକୁ ତା'ର ମୁଣ୍ଡ ଲାଗିଛି । ଅତି ପିଲାଦିନେ ବୁଢ଼ୀମା ତାକୁ ସେଇ କଥା କହୁଥିଲେ । ଦେବଦେବୀମାନେ ଏଇ ଗଛର ମଥାନ ବାଟେ ସ୍ୱର୍ଗପୁରରୁ ଓହ୍ଲାନ୍ତି । ରାତି ଅଧ ଅନ୍ଧାର ନିଗିଦ ହେଉ କି ବର୍ଷା ବିଜୁଳି ଘଡ଼ଘଡ଼ି ହେଉ, କୁଆଁ ତାରା ଅଲୁଅ ଜାଳିଲେ ସେମାନେ ଫେରି ଯାଆନ୍ତି ।

ଗଛମୂଳେ ଗ୍ରାମଲୋକେ କେତେ ପ୍ରକାର ମାଟି ଗଢ଼ା ପ୍ରତିମା ରଖିଛନ୍ତି । ହାତୀ, ଘୋଡ଼ା ପଣ୍ଡ ପଣ୍ଡ । ବଳଦ, କୁମ୍ଭୀର, ସାପ, ମୟୂର ଓ ଅଜଣା କେତେ ଜାତର ଜୀବ । ସବୁ ପ୍ରତିମାରେ ବୋଳା ହୋଇଛି ସିନ୍ଦୂର । ଦୁଇଟି ଲଙ୍ଗଳା ଡହଣ୍ଡ ଯୋଡ଼ି ଘୁଡ଼ାଇଲେ ବି ଗଛର ଗଣ୍ଡି କଳା ହେବ ନାହିଁ । ଗଛ ଦେହରେ ଯେଉଁଠି ଆବୁ, ହାତ ପାହାଣି ଯାଏ, ସେଇଠି ବୋଳା ହୋଇଛି ସିନ୍ଦୂର । ତେତିଶକୋଟି ଦେବଦେବୀଙ୍କ ମଧ୍ୟରୁ କେଉଁ ଦେବତା ବା ଦେବୀଙ୍କର କେଉଁ ଆବୁରେ ଆବିର୍ଭାବ, ସେ କଥା କିଏ କହିବ ?

Digitized by PPRACHIN, SOA

ସୁବ୍ରତ ମଥା ବୁଲାଇଲା । ଓସ୍ତ ଦେହର ସବୁ ସିନ୍ଦୁରବୋଳା ଦେବଦେବୀ ସତେ କି କଟମଟ କରି ତାଆରି ଆଡ଼କୁ ଅନାଇଛନ୍ତି । ତଜା ଗୁହାରିଛନ୍ତି, କି ରେ, ତୋ'ର ଏତେ ଗରବ ? ମଥା ନୁଆଁଇଲୁ ନାହିଁ ?

ଟାଣ ଗୁହାରି ବି ଦବଯାଏ । ଏଇ ଗଛ ମୂଳରେ ଦେବଦେବୀଙ୍କୁ ପଣା ଦିଆଯାଏ । ବାଇଦ ବାଜଣା ହୁଏ । ଗଛ ଉପରେ କାଉ ପଲ ରାବ ଗୁହାରିଛନ୍ତି । ଶାରଗୁଣା ପଲ ଫଡ଼ ଫଡ଼ ହେଉଛନ୍ତି, ଗୃଧ୍ର ରହିଛନ୍ତି ଦୂର ମଶାଣିକୁ ।

ସୁବ୍ରତର ମଥା ପିନା ନଇଁଲା ନାହିଁ, ଛନକା-ଅଗ୍ରୀ ମନ ନଇଁଲା ।

ଆଖି ଲାଖିଲା ବଳି ସେପାରି ମନ୍ଦିର ଉପରେ । ରଙ୍ଗ ପତାକା ଫରଫର ଉଡ଼ୁଛି । ଦେଖାଯାଉଛି କେବଳ ଅତି ପୁରାତନ ମନ୍ଦିରର ଶିଉଳିଲଗା ଦଧିନଉତି, ତ୍ରିଶୂଳ ଓ ପତାକା । ଆଉ ସବୁ ଲୁଚି ଯାଇଛି ଗଛଗହଳି ଓ ମଶାଣି ପଛରେ । ସେମିତି ଗଛଗହଳି ଫାଙ୍କରେ ଦେଖାଯାଉଛି ଜମିଦାରଙ୍କ ଉଆସର ଦୋ'ତାଲା କୋଠରି ହାତେ କି ଦୁଇଖଣ୍ଡେ ।

ଏସବୁ ବର୍ତ୍ତମାନ । କିନ୍ତୁ ସବୁର ପଛରେ ଅତି ଲମ୍ବା ଅତୀତ ଲୁଚି ରହିଛି । ଏଇ ଓସ୍ତଗଛ ତଳ ମଶାଣିରେ ରଣଗଡ଼ର କେତେ ଜମିଦାର ପୋଡ଼ା ହୋଇଛନ୍ତି । ସେମାନେ ଥିଲେ ରାଜା ଥିଲେ । ଖଣ୍ଡମଣ୍ଡଳରେ ଥିଲେ ମହାପ୍ରତାପୀ । ଚଉଷଠି ଗାଁର ବାଟ ଗୁହାରି ଥିଲା । ଓଡ଼ିଶାର ରାଜାମାନେ ବୀରତ୍ୱ ଦେଖି ପଦବୀ ଦେଇଥିଲେ ରଣସିଂହ, ବଜ୍ରବାହୁ, ଶତ୍ରୁଶଲ୍ୟ, ନରେନ୍ଦ୍ର, ମହାପାତ୍ର, ପଟ୍ଟନାୟକ, ଆହୁରି କେତେ କଅଣ । ସବୁ ଅଛି ପୋଥିରେ ।

ନୂଆ ପୁଅଟିଏ ଜନ୍ମ ହେଲେ ନାମ ସଙ୍ଗେ ସଙ୍ଗେ ପଦବୀ ମଧ୍ୟ ବସ୍ତି ହୁଏ । ସେଇ ସୂତ୍ରରେ ପିତା ଅଭିନବ ରଣସିଂହଙ୍କର ପ୍ରଥମ ପୁତ୍ର ହୋଇ ଜନ୍ମିଥିବାରୁ ତା'ର ନାମ ଦିଆଯାଇଥିଲା ସୁବ୍ରତ ବଜ୍ରବାହୁ । ଖାନଘରର ନାମ ଦେଇଥିଲେ ଦାଦି—ସୁରତ ରଣରଙ୍ଗା । ନିଜେ ଦାଦି ନିଜର ନାମ ବଦଳାଇ ଲମ୍ବ କରିଥିଲେ; ବୀରବର ନଟବର ଶତ୍ରୁଶଲ୍ୟ ମହାପାତ୍ର ପଟ୍ଟନାୟକ ।

ହସି ଉଠିଲେ ସୁବ୍ରତ । ହସି ଉଠିଲେ କାନ୍ଥିତଳେ ଅଭଦ୍ର କୋକିଶିଆଳ । ଶତ୍ରୁଶଲ୍ୟଙ୍କର ଅକାଳ ବିୟୋଗ ହୋଇଥିଲା । ହନୁ ସଙ୍ଗେ ଲଢ଼ି ସେ ଗଛରୁ ପଡ଼ି ପ୍ରାଣ ହରାଇଥିଲେ ।

ଦେଖ ଦେଖୁ କଟି ଗଲାଣି ସାତଟିବର୍ଷ । କାଲିପରି ଲାଗୁଛି । ଅତି ଗେଲ-ବସର ଟିକି ହିଂସଟି ସନ୍ଧ୍ୟାର ବୟସ ସେତେବେଳେ ମୋଟେ ଦୁଇ । ସୁବ୍ରତ ଗମ୍ଭୀର ହୋଇ ଉଠିଲା । ଅହ୍ନା-ଆହାରେ ଦୋହଲି ଉଠିଲା ଗୁହାରି । ଦାଦି ତାକୁ ଅତି ସ୍ନେହ କରୁଥିଲେ ।

Digitized by PPRACHIN, SOA

ଦେବାଳୟରୁ ଶଙ୍ଖ ଓ ଘଣ୍ଟାର ଶବଦ ଭାସି ଆସିଲା । ସଞ୍ଜ ପବନ ଦୋହଲି ଉଠିଲା । ଚମକି ଉଠିଲା ସୁବ୍ରତ । ଆରେ, ସନ୍ଧ୍ୟା ହେଲାଣି । ଦେଢ଼ ଘଣ୍ଟା କାଳ ସେ ଏକୁଟିଆ ନଈ କୂଳରେ ବସିଛି । ବେକାର ଜୀବନର ମୂଲ୍ୟହୀନ ସମୟ ଅଳସ ଉଦାସ ତନ୍ଦ୍ରାରେ କଟାଇ ଦେଇଛି । ଘରକୁ ଫେରି ଯିବାକୁ ମନ ହେଉ ନାହିଁ । ବାରଣ୍ଡାରେ ପାଦ ଦେଲାକ୍ଷଣି ସମସ୍ତେ ସତେ କି ପଚାରି ଉଠୁଛନ୍ତି, ଚାକିରି ମିଳିଲା ? ଏତେ ଲୋକ ପାଠ ପଢ଼ି ଚାକିରି କରି ରୋଜଗାର କରୁଛନ୍ତି, ତମକୁ ମିଳୁ ନାହିଁ ?

ଦେବାଳୟରୁ ଶଙ୍ଖ ଶବଦ । ସନ୍ଧ୍ୟା ଆରତି ।

ସୁବ୍ରତ ମଥା ନୋଇଁଲା । ମନର ଅତ୍ୟନ୍ତ କାମନା ଗୁଞ୍ଜରି ଉଠିଲା ମରମତଳର ଦେବତା ଆଗରେ – ବିଦ୍ୟା, ବୁଦ୍ଧି, ଧନ, ମାନ, ପ୍ରଭୁତ୍ୱ, ସୁଖ, ଆନନ୍ଦ ସବୁ ମତେ ଦିଅ ପ୍ରଭୁ, ଶୀଘ୍ର ଦିଅ ନସ୍ତୁବା ।

ଅନ୍ଧାର ଘୋଟିଲାଣି । ପବନର ଗତି ହେଲାଣି ବେଗ । ଆକାଶରେ କେତେ ତାରା ଫୁଟି ଉଠିଲେଣି । ଦେବାଳୟରୁ ଶଙ୍ଖ ଘଣ୍ଟାର ଶବଦ ଶୁଭୁ ନାହିଁ । ସନ୍ଧ୍ୟା ଆରତି ଶେଷ ହୋଇଛି । ଯେଉଁମାନେ ଗୋପୀକୃଷ୍ଣଙ୍କର ଦର୍ଶନ କରିବାକୁ ଯାଇଥିଲେ, ଦେବତା ଆଗରେ ମନର କାମନା ନିବେଦନ କରି ନୂତନ ଆଶା, ନୂତନ ଉତ୍ସାହ ଘେନି ଫେରି ଯିବେଣି । ଧନ, ମାନ, ଗୋପ-ଲକ୍ଷ୍ମୀର ସ୍ୱପନ ହୋଇଥିବ ଉଜ୍ଜ୍ୱଳ ଆଖି ଆଗରେ ପୁଣି, ଉଭେଇ ଯାଇଥିବ ମୁହୂର୍ତ୍ତିକରେ— ।

ଦେବାଳୟକୁ ନ ଯାଇ ମଧ୍ୟ ସେ ମଥା ନୋଇଁଥିଲା । ପ୍ରାର୍ଥନା କରିଥିଲା । ମାଗିଥିଲା ବର । ଏଥର ସେ ଫେରିଯିବ । ଘରକୁ ? କଅଣ ସେ କରିବ ? ସେ ବେକାର କର୍ମହୀନ । ବହି ଖଣ୍ଡେ ଧରି ପଢ଼ିବସିଲେ ମା, ଖୁଡ଼ୀ, ସାନଭାଇ, ସାନଭଉଣୀ କଣେଇ ଚାହିଁବେ । ସେମାନଙ୍କର ଦୃଷ୍ଟି ପ୍ରଶ୍ନେଇଁ ଉଠିବ । ଆହୁରି ପାଠ ବାକି ଅଛି ? ଲୋକେ କହି ହୁଅନ୍ତି, ସୁବ୍ରତ ସବୁ ପାଠ ଶେଷ କରି ସାରିଛି । ସେ ଏମ୍. ଏ. । ଆଉ କି ପାଠ ?

ସୁବ୍ରତ ଉଠି ଠିଆ ହେଲା । ଲମ୍ବ କେଶରୁ ଝାଡ଼ିଦେଲା ବାଲି । ଗାମୁଛାରେ ଦେହ ମୁହଁ ପୋଛିଲା । ଚଟି ପିନ୍ଧିଲା । ଏଥର ଘରକୁ ଯିବା ଉଚିତ । ଦେହ ଖୋଲା, କିନ୍ତୁ ବାଁ ହାତ କବଜିରେ ଘଣ୍ଟା ବନ୍ଧା ହୋଇଛି । ଗୋଟାଏ ଅଭ୍ୟାସ । ଟିକ୍ ଟିକ୍ ଶବ୍ଦ କରୁଛି । ରେଡ଼ିଆମ୍ ଡାଏଲ୍ ଓ କଣ୍ଟା ସୂଚାଇ ଦେଉଛି, ସାତଟା ବାଜିଗଲାଣି । ଘରକୁ ଫେରିଯିବ । ଗୋଡ଼ରୁ ଚଟି କାଢ଼ି ଟିପେଇ ଟିପେଇ ଉଠିଯିବ ଦୋତାଲା

Digitized by PPRACHIN, SOA

ଉପରକୁ । ନିଜ କୋଠରୀ ଭିତରେ ପଶି କବାଟ କିଳିବ । ଶୋଇପଡ଼ିବ । ବଳେ ରାତି ଅଧରେ ଭାତ ଖାଇବାକୁ ମା କି ଝୁଡ଼ୀ ଡାକିବେ ।

କହିଲେ କହିବ ସନ୍ଧ୍ୟା ଛଟେଇ କରି, ରାଇଟା ଭରି ଅଳସୁଆ । ଦିନରାତି ଖାଲି ଶୋଉଛୁ । ସାନଭାଇ ସୁରଥ ରଣରଙ୍କା ବସିଯାଇଥିବ ଗ୍ରାମ-ସଭାରେ । କେଜାଣି ବା ତାଅସ ଖେଳରେ । ଫେରିବ ରାତି ଅଧରେ । ରଣରଙ୍କାର କେଉଁ କଥାରେ ଶଙ୍କା ନାହିଁ । ଅଳପ ପାଠ ସେ ପଢ଼ିଛୁ । ମାନ ମହତ୍ତ୍ୱର ଧାରଣା ତା'ର ଛୁଟିଲଣି । ଅଉ ପାଞ୍ଚଟା ଗାଁ ଟୋକାଙ୍କ ସଙ୍ଗେ ମିଶି ଜମିଦାର ବଂଶର ମହତ ପକାଇଲଣି ଦାଣ୍ଡରେ । ନିର୍ଲଜ୍ଜ !

ସେ କଦାପି ଏ କଥା କରି ପାରିବ ନାହିଁ । ଗାଁରେ କେହିହେଲେ ଜଣେ ତା'ର ସମସର ହେବାକୁ ନାହାନ୍ତି । ସେ ଶିକ୍ଷିତ । ସେ ଜମିଦାର ପୁଅ । ଶୟନ ହିଁ ଭଲ । ସବୁ ଦୁଶ୍ଚିନ୍ତା ମନରୁ ଦୂରେଇ ଯାଏ । କାଲି କଣ ହେବ, ପର ମୁହୂର୍ତ୍ତରେ କଣ ଘଟିବ, ସେକଥା ମନରେ ପଶେ ନାହିଁ । ଶୟନ ହିଁ ବେକାର ଜୀବନର ଔଷଧ, ନିଶ୍ଚିନ୍ତ ହେବାର ଉପାୟ ।

ଉପାୟ ତ ଅନେକ । ମାଳା ଧରି ହରେ ରାମକୃଷ୍ଣ ଜପିବା ମଧ୍ୟ ଗୋଟିଏ ଭଲ ଉପାୟ । ପିତା ରଣସିଂହ ଏହି ଉପାୟ ଏବେ ଧରିଛନ୍ତି । କେଉଁ ଗୌଡ଼ୀୟ ବାବାଜୀଙ୍କର ସେ ଶିଷ୍ୟତ୍ୱ ଗ୍ରହଣ କରିଛନ୍ତି । ବୟସ ମୋଟେ ଏକାବନ । ଏବେ ବି ଦେହରେ ଟିକି ଝୁଣ୍ଟ ହୋଇ ରହିଛି । ଏବେ ବି ଲୋକେ କହନ୍ତି, ରଣସିଂହଙ୍କର ବୟସ ଚାଳିଶ ପାଖାପାଖି ହେବ । ମାଳା ଧରିଲା ଦିନ ମୁଛ ହଳକ କାଟି ପକାଇଥିଲେ । ମନେ ଅଛି ସେ ଦିନ । କଳା ବାଦୁଆ ନିଶର ପ୍ରତାପ । ଅବାଧ୍ୟ ପ୍ରଜା ବି କର୍ମଚାରୀ ସେଇ ନିଶ ହଳକୁ ଦେଖିଲେ ଥରହର ହେଉଥିଲେ । ସତେ କି ସେହି ନିଶ ହଳକ ଜମିଦାରୀ ଚଳାଉଥିଲା ।

ଆଜକାଲି ଲୋକେ ଶୁଣେଇ ଶୁଣେଇ କହନ୍ତି, ଜମିଦାରୀ ଗଲାରୁ ଦୁଃଖ ଓ ଅଭିମାନରେ ଜମିଦାର ରଣସିଂହେ ମୁଛ କାଟିଲେ । ଗୁଣ୍ଡିର ଦୋଅଣିଆ ପଦ ସହିବାକୁ କେହି ତ ନାହାନ୍ତି, ତେଣୁ ହରେ ରାମକୃଷ୍ଣ ଅଭ୍ୟାସ କରୁଛନ୍ତି । ଲୋକେ ଯାହା କହିବାର କହନ୍ତୁ; ବେକାର ଜୀବନର ସମୟ କଟାଇବାର ଉପାୟ ଉଦ୍ଭାବନ ରଣସିଂହେ କରି ପାରିଛନ୍ତି । ସୁରଥ ରଣରଙ୍କାର ସମୟ ତାଅସ ଖେଳରେ ବେଶ୍ କଟି ଯାଉଛି । ହତଭାଗ୍ୟ ଏକା ସୁବ୍ରତ । ମାଳା ଧରି ପାରିବ ନାହିଁ; ଲୋକଙ୍କ ସଙ୍ଗେ ଏକାଠି ବସି ତାଆସ ଖେଳି ପାରିବ ନାହିଁ । ବହୁ ଚେଷ୍ଟାକରି ଚାକିରି ମିଳିଲା ନାହିଁ । ବେକାର ସମସ୍ୟାର ସମାଧାନ ହେବ କିପରି ?

ଶୟନ !

Digitized by PPRACHIN, SOA

ଅନ୍ଧାର ହୋଇ ଆସୁଛି । ଧୀରେ ଧୀରେ ଘରକୁ ଫେରିଲା । ମନ କହୁଛି ଚାକିରି ନ ହେଲେ ବି ଏ ପୁରୁଷଟା ଚଳିଯିବ । ଜମିଦାରୀ ଉଚ୍ଛେଦ ବାବଦ୍ କ୍ଷତିପୂରଣ ଟଙ୍କା ଏକ ଲକ୍ଷ । ଅଳପ ନୁହେଁ ତ । ତେବେ, ଟଙ୍କା ପରିବର୍ତ୍ତେ ସରକାର ଲୋନ୍-ବଣ୍ଡ ଦେଇଛନ୍ତି । ତିରିଶ ବର୍ଷରେ ଋଣ ଶୁଝିବେ ! ପ୍ରତିବର୍ଷ ସୁଧ ଓ ମୂଳ ଆଡ଼କୁ କିଛି ମିଳୁଛି । ସେଇ ଧନରେ ଆନନ୍ଦରେ ସଂସାର ଚଳି ଯାଉଛି ।

ଆଗ ଗୋଡ଼ରେ ଉଣ୍ଡା ବାଜୁ ନାହିଁ; ଦେହରେ ପାଣି କାଦୁଅ ଲାଗୁ ନାହିଁ । ଖଜଣା ଆଦାୟ ଓ ସରକାରଙ୍କର ପେସ୍କସ୍ କିପରି ଦିଆଯିବ ସେ ବିଷୟରେ ଚିନ୍ତା କରିବା ଲୋଡ଼ା ପଡ଼ୁ ନାହିଁ ।

କି ପାଠ ବା ସେ ପଢ଼ିଛି ! ପିଲାଦିନୁ ମାଷ୍ଟର, କହୁ ଦିନେ ପ୍ରଫେସର ଶହ ଶହ ଟଙ୍କା ଗଣି ନେଇ ପାଠଗୁଡ଼ାକୁ କଚାଡ଼ିଦେଇ ତା ମୁଣ୍ଡ ଭିତରକୁ ଗଳେଇ ଦେଇଛନ୍ତି । କଲେଜରେ ଗୋଡ଼ ଦେଇ ପ୍ରତି କ୍ଲାସରେ ଅଟକୁ ଅଟକୁ ଟଳି ଟଳିକା ଉପରକୁ ଉଠିଛି । ଆଇ. ଏ., ବି, ଏ. ଏମ୍. ଏ. ପରୀକ୍ଷାମାନଙ୍କରେ ସବୁଠି ବର୍ଷେ ବର୍ଷେ ସେ ଅଟକିଛି ।

ଚାକିରି ପାଇଁ ପ୍ରାର୍ଥୀ ହେଲେ ଏ ସବୁ ଧରା ପଡ଼େ । ଇଣ୍ଟରଭ୍ୟୁ ବେଳେ କ୍ୟାରମ୍, ଫୁଟବଲ୍, ହକ୍କି ସମ୍ବନ୍ଧରେ ବେଶି କେହି ପଚାରନ୍ତି ନାହିଁ । କେତେ ପ୍ରକାରେ ଦଶ କଟା ଯାଇପାରେ, କେଶ୍ ସିଙ୍କା ଯାଇପାରେ, ମୁଣ୍ଡ କୁଣ୍ଡା ଯାଏ, ଏ ସବୁ କେହି ପଚାରେ ନାହିଁ । କେବେ କେବେ ସିନେମା ଷ୍ଟାରମାନଙ୍କ ସମ୍ବନ୍ଧରେ ସାଧାରଣ-ଜ୍ଞାନ ପେପରରେ କାଁ ଭାଁ ପଡ଼େ, କିନ୍ତୁ ଇଣ୍ଟରଭ୍ୟୁ ବେଳେ କେହି ସେ ପ୍ରଶ୍ନ ଉଠାନ୍ତି ନାହିଁ । ଦୁର୍ଭାଗ୍ୟ ! ଏ ସବୁ ବିଷୟରେ ଅଭିଜ୍ଞତା ହାସଲ କରିବାକୁ ଯେ ଯଥେଷ୍ଟ ଧନ, ସମୟ ଓ ଧୈର୍ଯ୍ୟ ନଷ୍ଟ କରା ହୋଇଛି, ସେମାନେ ମୋଟେ ବୁଝନ୍ତି ନାହିଁ ।

ଚାକିରି ମିଳିବ ନାହିଁ । ବାପାଙ୍କର ସନ୍ତୁଷ୍ଟି ପାଇଁ ସେ ଦରଖାସ୍ତ ଲେଖିଛି, ଇଣ୍ଟରଭ୍ୟୁକୁ ଯାଉଛି, ଏଇ ଯଥେଷ୍ଟ । ଠାକୁରମାନଙ୍କ ଉପରେ ଅଧିକ ବିଶ୍ୱାସ ନ ଥିଲେ ବି ଅଭ୍ୟାସବଶତଃ ମନ୍ଦିରକୁ ସେ ଯାଉଛି, ମୁଣ୍ଡ ନୋଇଁଛି, ଚାକିରି ପାଇଁ ପ୍ରାର୍ଥନା କରୁଛି । ଆଉ ଅଧିକ କ'ଣ ସେ କରିପାରେ ?

ଶଯ୍ୟନ ହିଁ ଭଲ ।

ଆଗରେ କମିଦାରଙ୍କ ଉତ୍ସବ । ଦାଣ୍ଡ ବାଟେ ନ ଯାଇ ବାଡ଼ ବାଟେ ଘରେ ପଶିବା ଭଲ । ବାପାଙ୍କର ହାବୁଡ଼ରୁ ରକ୍ଷା ମିଳିବ ।

Digitized by PPRACHIN, SOA

ପୋ'ଡାଳ ଉପର ବଖରାଟି ବଡ଼ । ସିଡ଼ି ଘରକୁ ଲାଗିଛି । ବାରଣ୍ଡା ନାହିଁ । ଲମ୍ବ ହଲ୍ ଟିଏ । ଛୋଟ ଛୋଟ ଚାରୋଟି ଝରକା, ସେ ସବୁ ପୁଣି ପୁରୁଷେ ଉଚ୍ଚରେ । ଠିଆ ହେଲେ ବି ତଳ ଝରକା ଉପର ଝରକା ଦିଶେ ନାହିଁ । କାନ୍ଥସାରା ଥାକମାନ । ସବୁ ଥାକରେ କବାଟ । ତାଲା ପଡ଼ିଛି । ଦୁଇ ପାଖର ଦୁଇ କାନ୍ଥକୁ ଲାଗି ଛୋଟ ବଡ଼ କେତେ ଆଲମାରି । ଘରର ଗୋଟିଏ ପାଖରେ ପୁରୁଷେ ଉଚ୍ଚର ଅତି ବଡ଼ ବଡ଼ କାଠ ବାକ୍ସ ଦୁଇଟା । ସେଥିରେ ବି ମୁଣ୍ଡିଏଁ ଲମ୍ବର ଦୁଇ ଦୁଇଟା ଦେଶୀ ତାଲା । ସବୁ ତାଲାର ଚାବି ରଣସିଂହଙ୍କ ହାତରେ ।

କେଉଁ ବାକ୍ସ କି ଆଲମାରି ଭିତରେ କ'ଣ ଅଛି ବଜ୍ରବାହୁ ଜାଣେ ନାହିଁ । ଜାଣିବାକୁ କେବେ ସେ ଆଗ୍ରହ ଦେଖାଇ ନାହିଁ । ତେବେ, ବାପା ମା କେବେ କେମିତି କେଉଁଟା ଖୋଲିଲା ବେଳେ ଅକସ୍ମାତ ଦୃଷ୍ଟି ପଡ଼ିଛି । ଖାନ୍‌ଦାନୀ ଜମିଦାର ଘର । ସାତ ପୁରୁଷରୁ ସାଇତା ମୂଲ୍ୟବାନ୍ ଲୁଗା ଶାଢ଼ୀ, ସୁନାରୁପା, ଗହଣାଗଣ୍ଠି, ଜାତି ଜାତିକା ବାସନ କୁସନ, ଖଣ୍ଡା ତରୁଆଲ୍, ବର୍ଚ୍ଛା, ବନ୍ଧୁକ—ସବୁଥିରେ କଳଙ୍କି ଲାଗିଲାଣି, ହେଲେ, ସାଇତା ହୋଇ ରହିଛି ତ !

ବଜ୍ରବାହୁର ଦୁଇ ବାହୁ ଫୁଲି ଉଠିଲା । ଓଠ ଉପରେ ନୂଆ ଧରଣର କଳା ଗୋଜା ଗୋଜା ନିଶ ଝଲକ ଥରି ଉଠିଲା । କାନ ତଳ ଯାକେ ରଖା ହୋଇଥିବା ଚହଟା କଲି ବି ହଲି ଉଠିଲା । ଚାରିଆଡ଼େ ଦୃଷ୍ଟି ପକାଇ ମନକୁ ମନ କହିଲା, ଆରେ, ନାହିଁ କ'ଣ ? ଅତି ପୁରୁଣା ଧନ ବି ଯଦି କେବେ ଦୁର୍ଯୋଗବଶତଃ କଟିଯାଏ, ଯାହା ସାଇତା ହୋଇ ରହିଛି ସେତିକ ବିକି ଭାଙ୍ଗି ଖାଇଲେ ନିଶ୍ଚିନ୍ତରେ ତିନୋଟି ପୁରୁଷ କଟିବ ।

ବାପା ଅଜା ଚଉଦ ପୁରୁଷ କେବେ କାହାରି ଦାସତ୍ୱ କରି ନାହାନ୍ତି । ଆରାମରେ ସମୟ କଟାଇ ଆସିଛନ୍ତି । ଭଲ ଖାଇ, ଭଲ ପିନ୍ଧି, ଦେହ ମନକୁ ସବଳ ଓ ସୁସ୍ଥ ରଖି ସେମାନେ ମଣିଷ ଚରାଉଥିଲେ । । କୁସ୍ତି କସରତ କରି, ସେ ଅମଳର ଯୁଦ୍ଧ ବିଦ୍ୟାରେ ପାରଙ୍ଗମ ହୋଇ, ନିଶ ଫୁଲାଇ ବାଟ ଚାଲୁଥିଲେ ।

ନିଜେ ବାପା ତ କେବେ କୁଟାଖଣ୍ଡିକ ଦୁଇଖଣ୍ଡି କରି ନାହାନ୍ତି । ସେ ପୁଣି କହୁଛନ୍ତି, ଚାକିରି କର, ଟଙ୍କା ରୋଜଗାର କର ! ପାଠ ପଢ଼ିଲେ ଚାକିରି କରିବାକୁ ହୁଏ । ଚାକିରି ପାଇଁ ସେ ଚେଷ୍ଟାକରି ବିଫଳ ହୋଇଛି । ଶେଷକୁ ଖଣ୍ଡେ ଅସ୍ଥାୟୀ କିରାଣୀ ଚାକିରି ପାଇଁ ସେଦିନ ଭୁବନେଶ୍ୱରରେ ଦେଖା-ପରୀକ୍ଷା ଦେଇ ଆସିଛି । କୌଣସି ଚାକିରି ତା'ର ହୋଇ ନାହିଁ । ଶେଷ ଚେଷ୍ଟା ବି ବିଫଳ ହେବ । ମାସ ଦୁଇଟା କଟିଲେ ପଚିଶ ପୂରିବ । ଆଉ ତେଣିକି ଚାକିରି ନ ମିଳେ ।

Digitized by PPRACHIN, SOA

ସେ ସ୍ୱୀକାର କରିବ ନାହିଁ । ବାପାଙ୍କୁ ଏ କଥା ଏଥର ସେ ମୁହେଁ ମୁହେଁ କହିଦେବ ।

ସେ ଆଲୁଅ ଲିଭେଇଲା । ବିଛଣା ସଜଡ଼ା ହୋଇଛି । ସତେ କି ସେ ନିମନ୍ତ୍ରଣ କରୁଛି, ଇଙ୍ଗିତ ଦେଉଛି – ଶୟନ ଭଲ, ଆଜି, ଅତି ଭଲ ଶୟନ ପଥରେ ଆଖିବୁଜା ଜାଗ୍ରତ-ସପନ, ନିଦ୍ରା ଅଚେତନ ପଦ୍ମା-ଫିଟା ଅରୁଣା-ସପନ ନୁହେଁ ।

ବଡ଼ ଗୋଲ ଟେବୁଲ ଉପରେ ବହିଗୁଡ଼ା ଖେଳା ହୋଇ ପଡ଼ିଛି । ସ୍ୱହିଲ ବେଳକୁ ବିରକ୍ତ ଲାଗୁଛି । ଅଧିକାଂଶ ଇତିହାସ, ପୁରୁଣା ଇଲଷ୍ଟ୍ରେଟେଡ୍ ୱିକ୍ଲି, ସିନେମା-ମାଗାଜିନ୍, ଇଂରେଜୀ ଡିଟେକ୍ଟିଭ ଉପନ୍ୟାସ, ଓଡ଼ିଆ ଉପନ୍ୟାସ କେତୋଟି । ବହି ନୁହେଁ ତ, ସେଗୁଡ଼ାକ ଅଧିକାଂଶ ଗ୍ରନ୍ଥ । ଇତିହାସରେ ଏମ୍. ଏ. ସେ । ଓଃ, କି କଷ୍ଟ ! ସାତମତ ମୁଖସ୍ଥ କରିବାକୁ ପଡ଼ିଥିଲା । ଅନେକ ଅଧ୍ୟ ଅକ୍ଳାନ୍ତ-କାର୍ଯ୍ୟ ହୋଇ ଶେଷକୁ ସେ କ୍ରୀଣିଲ ତ । ସେମାନେ ବଜାତ ଶତ୍ରୁ । ଆଜି ତ । ମହାନୁଭୂତିର ପାତ୍ର । ଶୋଇ ପଡ଼ନ୍ତୁ । ସେମାନଙ୍କ ନିଦ୍ରାରେ ବ୍ୟାଘାତ ଦେବା ଅନୁଚିତ । ବିରକ୍ତିକର । ଦସ୍ତାକରି ଜଣକୁ ଉଠାଇଲେ ସେ ଖୁସି ହୋଇ ଡବ ଡବ କରି ଅନାଏଁ । ପୃଷ୍ଠା ଲେଉଟାଇଲେ ଚମକି ଉଠେ । ଇତିହାସର ଜୀବ, ଅଜ୍ଞାତ ହେଲେ ବି ଜୀବନ୍ତ । କିଏ ହସେ ତ କିଏ ମୁହଁ ଶୁଖାଏ । କିଏ ପୁଣି କାନ୍ଦେ ।

ସମସ୍ତେ ପଚାରନ୍ତି ପ୍ରଶ୍ନ ? ମୋ ନାମଟି ଶୁଣି ଜାଣିଛ, ମୋତେ ଚିହ୍ନିଛ କି ? ମୋ ସମ୍ବନ୍ଧରେ ଯିଏ ଯାହା କହୁଛନ୍ତି ସବୁ ତ ପଢ଼ିଛ, ତାହିଁରେ ତୁମର ବିଶ୍ୱାସ ହେଉଛି ? ନିଜର ମତ ଦେବା ଭଳି ସାହସ ଅଛି ତୁମର ? କହିପାରିବ କି ମଣିଷ ଜାତିର ସୃଷ୍ଟି ହୋଇଥିଲା କେଉଁ ଦେଶରେ—ଆଫ୍ରିକାର ସାହାରା ମରୁଭୂମିରେ, ମଧ୍ୟ-ଏସିଆରେ, ଅଷ୍ଟ୍ରେଲିଆର ମଲ୍ଲ ହ୍ରଦରେ ଅଥବା ଦାକ୍ଷିଣାତ୍ୟରେ ?

ଜାଣ କି, ଅତୀତର ଆର୍ଯ୍ୟ ଋଷିମାନଙ୍କର ନିବାସ ଥିଲା ଋଷିଆ ଦେଶରେ ଏବଂ କିଏ କେଉଁ ଯୁଗରେ ଭୁଲଗା ନଦୀର କୂଳେ କୂଳେ ଦକ୍ଷିଣକୁ ନିଜର ଦଳବଳ ନେଇ ଆସିଥିଲେ । ସେହି ଭୁଲଗା ହିଁ ଏବକାର ଭଲ୍‌ଗା । କାଶ୍ୟପ ମହାଋଷି କାଶ୍ୟପ ହ୍ରଦର କୂଳରେ ପ୍ରଥମେ ଆଶ୍ରମ ରଚିଲେ । ବିଶ୍ୱାସ କରିବ କି ରାକ୍ଷସ-ଜାତିର ନିବାସ ସ୍ଥଳ ହିମାଳୟ ଓ ହିମାଳୟର ଉତ୍ତରରେ ଥିବା ପାହାଡ଼ିଆ ଅଞ୍ଚଳ ଯେଉଁଠି ରାକ୍ଷସ ନଦୀ ବାହାରି ଆର୍ଯ୍ୟ ହ୍ରଦରେ ପଡ଼ୁଛି । ରାକ୍ଷସ-ନଦୀର ଏବକାର ନାମ ଓକ୍‌ସସ୍ ଓ ଆର୍ଯ୍ୟ ହ୍ରଦକୁ ଆରଲ୍ ହ୍ରଦ ବୋଲି କହୁଛନ୍ତି ।

ନାଗମାନଙ୍କର ଦେଶ ପାତାଳ କାଶ୍ୟପ୍ ଦେଶ ଓ ରାକ୍ଷସ ଦେଶର ମଝିଆ ମଝି । ଦାନବ ନଦୀ ଗୁଡ଼ିକ ପଶି କୃଷ୍ଣ ସାଗରରେ ପଡ଼ୁଛନ୍ତି । ଅସୁରମାନଙ୍କ ସଙ୍ଗରେ ଯୁଗ ଯୁଗ ଧରି ଦାନବମାନଙ୍କର ରଣ ହୋଇଥିଲା । ଦାନବ ବା ଡାନ୍ୟୁବ ନଦୀର କୂଳେ କୂଳେ ଇଉରୋପର ଉତ୍ତରକୁ ଗଲେ—ଏ କୂଳରେ ଅଷ୍ଟ୍ରୀୟ ଦଳ ଓ ସେ

Digitized by PPRACHIN, SOA

କୂଳରେ ଦାନବ ଦଳ । ସେହି ଦାନବମାନେ ପରେ ପରିଚିତ ହେଲେ ହୁନ ବୋଲି । ଅହୀୟୂମାନେ ଯେଉଁଠି ରହିଲେ ସେହି ଭୂମିର ନାମ ହେଲା ଅଷ୍ଟ୍ରିୟା । ଦାନବ ବା ହୁନମାନଙ୍କର ଗୃହ ଆଜି ହୁନ-ଗୃହ ବା ହଙ୍ଗେରି ନାମରେ ପରିଚିତ । ରାକ୍ଷସମାନେ ଉତ୍ତରର ପାହାଡ଼ ଦେଶକୁ ପଳାଇଲେ । ସେମାନଙ୍କର ବାସଭୂମି ଆଜି ଯୁଗୋସ୍ଲାଭିଆ ଓ ଚେକୋସ୍ଲୋଭାକିଆ ।

ଦକ୍ଷିଣକୁ ଦେଖ । ପୌଲସ୍ତ୍ୟ ଋଷିଙ୍କର ଦାୟାଦମାନେ ଅଧୁନିକ ପ୍ୟାଲେ-ଷ୍ଟାଇନ୍‌ରେ ବସତି ସ୍ଥାପନ କରିଥିଲେ ଓ ଆସିରିଆର ଅଧିବାସୀମାନେ ଅସୁର ନାମରେ ପରିଚିତ ଥିଲେ । ପରାଶରଙ୍କର ଆଶ୍ରମ ଥିଲା ପାରସ୍ୟ ଦେଶରେ ।

ସେଇ ଆର୍ଯ୍ୟଭୂମିର କେଉଁ ଭୂଲି-ଅତୀତ ଯୁଗରେ କୋଳାରି, ବଜ୍ରବାହୁର ପୂର୍ବ ପୁରୁଷେ ଏଇ ଭାରତଭୂମିକୁ ଆସିଥିଲେ । ଇନ୍ଦ୍ରର ବଜ୍ର ପରି ସେମାନଙ୍କର ବାହୁର ଶକ୍ତି । ସେଇଥିପାଇଁ ତା'ର ଅଜାଙ୍କ ନାମ ଥିଲା ବାହୁ ବଳେନ୍ଦ୍ର ସମର ସିଂହ ।

ବାହୁବଳେନ୍ଦ୍ର ସମରସିଂହଙ୍କର ନାତି ସେ ବଜ୍ରବାହୁ । ସ୍ଥିର ଅକ୍ଷର ପଢ଼ିଛି ବୋଲି ସେ ଦାବିକୁ କରିବାକୁ ଯିବ ? ଯାହୁ ଜମିଦାରୀ । କେତେ ରାଜା ବ ରାଜ ହରେଇ ଭିକ୍ଷା ନେଇ ରାଜ-ପ୍ରାସାଦ ଭିତରେ କଷ୍ଟିନ୍ତରେ ସୁଖ ଶାନ୍ତିରେ, ବିନା ଭୟ ବିନା ଦାୟିତ୍ୱରେ ସମୟ କଟାଉଛନ୍ତି । ଭୋଜନ ଓ ନିଦ୍ରା !

ନିଦ୍ରାହିଁ ଉଦ୍ୟମ । କାଲି ସକାଳେ ଆଉ ସେ ଇତିହାସ ଓ ଓଡ଼ିଆ ଭାଷାତତ୍ତ୍ୱ ବହି-ଗୁଡ଼ାକ ବଡ଼ କାଠ ବାକ୍ସ ଭିତରେ ଗଳେଇ ଦେବ । ଅଶୋକ କେଉଁ ବ୍ରାହ୍ମଣୀ ରାଣୀର ପୁତ୍ର କି ଗ୍ରୀକ୍‌ବୀର ସେଲ୍ୟୁକସ୍‌ନନ୍ଦିନୀ ଶ୍ରୀମତୀ ହେଲେନା ସୁନ୍ଦରୀଙ୍କର ପୁତ୍ର, ମହାରାଜ ବିନ୍ଦୁସାରଙ୍କ ପାଟରାଣୀ ଗ୍ରୀକ୍ ବା ମିଶର ବା ସିରିଆର କେଉଁ ପ୍ରବଳ ପ୍ରତାପୀ ରାଜାଙ୍କର ଅଲିଅଳ କନ୍ୟାଙ୍କର ପୁତ୍ର, କିଏ ଜାଣେ ? ହୁଏତ ମାମୁଁରାଜ୍ୟର ଲୋକେ ଚଣ୍ଡ ନାମରେ ପରିଚିତ ଥିଲେ ! ଆର୍ଯ୍ୟ-ସଂସ୍କୃତି ବହିର୍ଭୂତ ଥିବାରୁ ସେ ଦେଶର ଲୋକେ ନୃଶଂସ ଥିଲେ । ସେଥିପାଇଁ ଅଶୋକଙ୍କୁ କହନ୍ତି ଚଣ୍ଡାଶୋକ ।

କଳିଙ୍ଗ ବିଜୟର କିଛିକାଳ ପରେ ଯେତେବେଳେ ତାଙ୍କର ଚଣ୍ଡ-ପ୍ରକୃତିର ପରିବର୍ତ୍ତନ ହେଲା, ତାଙ୍କର ସୈନିକମାନଙ୍କୁ ଲୁଣ୍ଠତରାଜ ଓ ଅତ୍ୟାଚାର ବନ୍ଦ କରିବାକୁ ଆଦେଶ ଦେଲେ । ବିଦେଶୀ ଚଣ୍ଡ-ସୈନିକମାନେ ବିଦ୍ରୋହ କଲେ । ଅନୁତପ୍ତ ପ୍ରିୟଦର୍ଶୀ ଅଶୋକ ତାଙ୍କର ଭାରତୀୟ ସୈନ୍ୟଙ୍କୁ ଚଣ୍ଡ-ସେନ୍ୟଙ୍କୁ ଦମନ କରିବାକୁ ଆଦେଶ ଦେଲେ । ପ୍ରାଣ ବିକଳରେ ଚଣ୍ଡମାନେ ବଣ ଜଙ୍ଗଲରେ ପଶିଲେ । କୋରାପୁଟ ଜିଲ୍ଲାର ଜୟପୁର, ବୋରିଗୁମ୍ମା ଓ ନବରଙ୍ଗପୁର ତାଲୁକରେ ସେହି ଚଣ୍ଡମାନଙ୍କର

Digitized by PPRACHIN, SOA

ଅନେକ ଗ୍ରାମ ବଣ ପାହାଡ଼ର ସନ୍ଧିରେ ବିଦ୍ୟମାନ । ସେଇମାନେ ଚଣ୍ଡାଳ । ଦେଖିଲେ ନାରୀ ଓ ପୁରୁଷ ଅଷ୍ଟ୍ର-ଗ୍ରିସୀୟ ବା ଅନ୍ୟ କୌଣସି ଇଉରୋପୀୟ ଜାତିର ଦାୟାଦ ବୋଲି ମନେ ହୁଅନ୍ତି । ମହାପଣ୍ଡିତ ଭୃଗୁ ଏହି ଚଣ୍ଡାଳ ଜାତିର ସୁନ୍ଦରୀ କନ୍ୟାଟିଏ ବିବାହ କରିଥିଲେ ।

ସେ ବି ତ ଇତିହାସ ! ଅନ୍ଧାରରେ ବାଡ଼ି ବୁଲା କଥା । ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ । ପଦ୍ମାନଦୀ ବଙ୍ଗଦେଶରେ, ଚକ୍ରବର୍ତ୍ତୀମାନେ ବଙ୍ଗୀୟ ବ୍ରାହ୍ମଣ । ତେଣୁ ଶ୍ରୀ ଜୟଦେବ ବଙ୍ଗାଳୀ । ରାମାୟଣ-କାର କୃତ୍ତିବାସ ଓଝା । ବଙ୍ଗଳା ଭାଷାରେ ରାମାୟଣ ଲେଖିଲେ ବି ସେ ଓଝା । ତେଣୁ ସେ ଓଡ଼ିଆ । ବିଶ୍ୱକବି ରବୀନ୍ଦ୍ର ନାଥ ଠାକୁର ଯେଉଁ ଭାଷାରେ ଲେଖନ୍ତୁ ପଛେ ସେ ଓଡ଼ିଆ ବ୍ରାହ୍ମଣ ଛଡ଼ା ଅନ୍ୟ କିଛି ହୋଇ ନ ପାରନ୍ତି, କାରଣ ସେ 'ଠାକୁର' । ବିଦ୍ୟାପତିଙ୍କ ଘର ମିଥିଳାରେ ହେଲେ ବି ସେ 'ବ୍ରଜବୋଲି'ରେ ଲେଖିଛନ୍ତି । ବ୍ରଜବୋଲି ହେଉଛି ବଙ୍ଗଳା ଭାଷାର ଜନନୀ ବା ଆଈ । ତେଣୁ ବିଦ୍ୟାପତି ବଙ୍ଗାଳୀ । ଓଡ଼ିଆ ବି ହୋଇ ପାରନ୍ତି, କାରଣ ଆମର ରାମ ପତିଙ୍କ ପରି ତାଙ୍କର ବି ସାଙ୍ଗିଆ ପତି ଥିଲା । ତାଙ୍କର ଭାଷା ବି ଓଡ଼ିଆ ପରି ଲାଗେ । ରାୟ ରାମାନନ୍ଦ ପଟ୍ଟନାୟକ ଶୂଦ୍ର ଜାତିର ଲୋକ । ରାଜମହେନ୍ଦ୍ରୀର ମନ୍ତ୍ରୀ, ତେଣୁ ଆନ୍ଧ୍ର । ଇଣ୍ଡିପେରୁ ଅଛି । କିନ୍ତୁ ସେ ରାୟ । ଅତଏବ ବଙ୍ଗାଳୀ । ପଟ୍ଟନାୟକ, ତେଣୁ ସେ ନିରୋଳା ଓଡ଼ିଆ । ସେ ଆସାମୀ, କାରଣ ସେଇ ଭାଷାର ନାଟକ ଲେଖିଛନ୍ତି ।

ବଜ୍ରବାହୁ ପଲଙ୍କ ଉପରକୁ ଉଠିଲା । ମୁଣ୍ଡ ତଳେ ତକିଆ ଚାପି ଆଖି ବୁଜିଲା, ନିଦ୍ରା ଆସୁ ବା ସୁନେଲି ଭାବନା ଆସୁ ଚିନ୍ତା ନାହିଁ । ଉଭୟେ ତା'ର ବନ୍ଧୁ । ନିଦ୍ରା ପ୍ରିୟବନ୍ଧୁ ହେଲେ ଭାବନା ଅତି ପ୍ରିୟ ବାନ୍ଧବୀ । ହାତ ଧରି ସୁଖ ଆନନ୍ଦର ରାଇଜକୁ ଟାଣି ନିଏ । ଗ୍ରେଟ୍ କିରାଣୀ ଚାକିରିରୁ ମୁହୂର୍ତ୍ତକରେ ସେ ଉଠି ଉଠି ଯାଏ ଉପରକୁ— ୟୁନିଅନ୍ ପବ୍ଲିକ୍ ସାର୍ଭିସ୍ କମିସନ୍‌ର ପ୍ରେସିଡେଣ୍ଟ ପଦକୁ । ତଥାପି ଆଖି ବୁଲାଏ— ଆଉ କେଉଁ ପାହାଚ ଉପରକୁ ରହିଲା ? ଛି, ଚାକିରି ଭଲ ନୁହେଁ । ତା'ର ଗୋଟାଏ ସୀମା ଅଛି । ବୟସର ପ୍ରତିବନ୍ଧକ ଅଛି । ଅବସର ନେବାକୁ ହିଁ ପଡ଼ିବ । ଗତି ଅଟକିବ ।

ତା' ଅପେକ୍ଷା ବେପାର ଭଲ । ଚନାଚୁର୍ ଗରମ୍ ଅଥବା ମୁଣ୍ଡରେ ଘରବା ବୋଝ ଧରି ବେପାର ଆରମ୍ଭ । ଲାଭ, ଲାଭ – ମୋଟେ କ୍ଷତି ନାହିଁ । ଖରଚ ନାହିଁ, କେବଳ ସଞ୍ଚୟ । ଉଠିଲା, ଉଠିଲା—ଧନୀ ପଧାନ, ନବ ବେହେରା, ହରିରାମ କର୍ଜନ ଟନ୍ ଟନ୍‌ବାଲା ! ଉଠିଲା—, ଉଠିଲା – ଗାମୋଡ଼ିଆ, ଟାଟା, ଫୋର୍ଡ଼ — । ଅକଳନ ଧନ, ଦ୍ରୁତଗତି । ଆଜି କଟକ ତ କାଲି ଲଣ୍ଡନ, ପହରଦିନ ବର୍ଲିନ୍ —, ସେଇଠୁ ଲେନିନ୍‌ଗ୍ରେଡ, ମସ୍କୋ, ଷ୍ଟୋକର୍ଡ, ଓ୍ୱାଶିଂଟନ୍ — । ଏରୋପ୍ଲେନ୍‌ର ଗତି କି

Digitized by PPRACHIN, SOA

ବଢ଼ିଲେ ଆଜ କାଲିକା ଦୁନିଆଁରେ ବେପାର ଚଳିବ ନାହିଁ । ଘଣ୍ଟାକୁ ଚାରିଶ ମାଇଲ୍ ପରିବର୍ତ୍ତେ ଚାରି ହଜାର ମାଇଲ୍ ହେବା ଉଚିତ । ବେପାର, ଧନ, ଦେଶ ଇଣ୍ଡଷ୍ଟ୍ରିଆଲାଇଜ୍ କରନ୍ତୁ । କାହିଁ ପ୍ରତିପତ୍ତି ? ନେତୃତ୍ୱ ?

ଦେଶକର୍ମୀ । ସର୍ପଞ୍ଚ, ଆସେମ୍ବ୍ଲିର ସଭ୍ୟ – ମନ୍ତ୍ରୀ – ପ୍ରଧାନମନ୍ତ୍ରୀ – ରାଜ୍ୟପାଳ – ଦିଲ୍ଲୀ ଚଲୋ; ଭାରତର ପ୍ରଧାନମନ୍ତ୍ରୀ । ସେଇଠି ସରିବ ? ଉହୁଁ––, ସାରା ବିଶ୍ୱର ଗୋଟିଏ ସରକାର । ରାଜଧାନୀ କେଉଁଠି ରହିବ ? ଏରୋପ୍ଲେନ୍ ଯୁଗରେ ଯେଉଁଠି ରହିଲେ କ୍ଷତି ନାହିଁ । ପ୍ରଶାନ୍ତ ମହାସାଗର ମଝିରେ କୌଣସି ଗୋଟିଏ ଦ୍ୱୀପ – ନାମ ଦିଆ ହେବ – ବିଶ୍ୱବାସ । ବିଶ୍ୱ-ସରକାରର ପ୍ରଧାନ ସଚିବ ସେ – ବଜ୍ରବାହୁ, ସୋମ ଶର୍ମାର ପିଲା !

ନା, ଭାବନାର ଅନ୍ତ ନାହିଁ । ଆଶା ଓ ଆକାଙ୍କ୍ଷାର ଅବସାନ ନାହିଁ । ଶାନ୍ତି ନାହିଁ । କାହିଁରେ ନାହିଁ ସୁଖ ଓ ଆନନ୍ଦ । ଚାକିରି, ବ୍ୟବସାୟ, ରାଜନୀତି, ସାହିତ୍ୟ, ସନ୍ନ୍ୟାସ – ଧାଇଁ ଧାଇଁ ଶେଷ ସୀମାରେ ପହଞ୍ଚି ହେବ ନାହିଁ । କେଉଁଟା ବା ଶେଷ ? ତେଣୁ, ଭଗବାନଙ୍କଠାରେ ମନ ବୁଦ୍ଧି ସମର୍ପଣ କରି ନିଶ୍ଚିନ୍ତରେ ଶୋଇବା ଭଲ ।

ଆଖି ବୁଜି ବଜ୍ରବାହୁ ଶୋଇବାକୁ ଚେଷ୍ଟା କଲେ । ମନ ସ୍ଥିର କରିବାକୁ ନିଶ୍ୱାସ ସାଥିରେ ମନେ ମନେ ଗଣିଲେ – ଏକ, ଦୁଇ, ତିନି, – ।

– ସତର, ଅଠର,·· ଡେସ୍ନାଲିଶି – , ସେଇଠୁ ଗଣନାର ଗ୍ରନ୍ଥି ଛିଡ଼ିଲା । ମନ ଭ୍ରମିଲା ଭାବନାର ଗୋଳକ ଧନ୍ଦାରେ––କାହାରି କଥା ବାଧା ଶୁଣିଲେ ନାହିଁ । ନିଜେ ବଜ୍ରବାହୁ ସାହସ କରି ଅନୁରୋଧ କରିଥିଲେ, ସମସ୍ତେ ଯାହା କରୁଛନ୍ତି ଆମେ ସେ କଥା ନ କରିବା କାହିଁକି ?

କିଏ କଣ କରୁଛି ?

ଜମିଦାର ସାହିଲାଲ, ଭବକୃଷ୍ଣ, ସତାର୍, ଘୋଷ୍ ।

ଅନାବାଦୀ ପଟା ?

ହଁ, ଦଶ ଏଗାର ବର୍ଷ ତଳର ପିଛିଲା ତାରିକ୍ ଦେଇ ସବୁ ଅନାବାଦୀ ପଟା ଦେଇଥିଲେ ଲକ୍ଷ ଲକ୍ଷ ଟଙ୍କା ପ୍ରଜାଙ୍କଠାରୁ ମିଳି ପାରିଥାନ୍ତା ।

ଭୁଲ୍ ହୋଇଗଲା । ପୁରୋହିତେ ଝିପାଠୀଏ କହିଲେ, ସତେ କଅଣ ଜମିଦାରୀ ଛୁଟିବ ମହାପ୍ରଭୁ ଗୋପୀକୃଷ୍ଣ ସ୍ୱପ୍ନରେ ତାଙ୍କୁ କହିଲେ, ସବୁ ଆଇନ୍ ଓଲଟି ଯିବ,

Digitized by PPRACHIN, SOA

ଧର୍ମରାଜ୍ୟ ଓଲଟି ଯିବ କି ? ସତ୍ୟ ଥିଲେ ନିଜେ ଭଗବାନ୍ ଆସି ଆଗରେ ଠିଆ ହେବେ । ଅନାବାଦୀ ପଟ୍ଟା ଦେଇ ରଜା ଆମ୍ବ ବଗିଚାଗୁଡ଼ିକ କଟାଇବାକୁ ଗୁହ୍ରି ଦେଲେ ଧର୍ମ ସହିବ ନାହିଁ । ମୁଁ ତାଙ୍କ କଥା ମାନିଲି । ଖାସ୍‌ମାଲର ଆମ୍ବ ବଗିଚାଗୁଡ଼ା ପ୍ରଜାଙ୍କର ଟାଙ୍ଗିଆ ଚୋଟରେ ଯେମିତି ଟଳି ପଡ଼ୁଥାଏ, ଦେଖିଲି ବେଳକୁ ମୋର ଗ୍ରାଡ ଅର ଉଠିଲା । ସତେ ଯେପରି ସେ ଗଛଗୁଡ଼ାକ ନିଃସହାୟ ଆଖିରେ ମୋ ଆଡ଼କୁ ଅନେଇଁ ଅଳି କରୁଥାନ୍ତି—ରକ୍ଷାକର, ରକ୍ଷାକର । ଗତ କଥା ଭାବି ଲାଭ ନାହିଁ । ଅଭାବ ଘରଆଡ଼କୁ ଦୌଡ଼ି ଆସିଲାଣି । ଧନ ଲୋଡ଼ା । ସୁଧ ଅକ୍ଷରରୁ ପଢ଼ିଛି । କେଉଁଠି ରୋଜଗାର କଲେ ସୁଧ ପଇସା ଘରକୁ ଆସିବ ।

ବଜ୍ରବାହୁ ଚମକି ଉଠିଲା । ସେଇ ସ୍ଥାନ ରୋଜଗାର ' ଜମିଦାରୀ ଉଚ୍ଛେଦ ଭୂମି ଅଶାନ୍ତର କଥା । ଅଦୂରଦର୍ଶିତା ପାଇଁ ପିତାଙ୍କୁ କ୍ଷମା କରାଯାଇପାରେ । କିନ୍ତୁ ଭାଗ-ଚାଷୀର ଜମି ଦଖଲ ପାଇଁ ତାଙ୍କୁ କ୍ଷମା କରିବା କଷ୍ଟ । ଆଗରୁ ସୂଚନା ମିଳିଥିଲା । ସେମାନେ ତାଙ୍କର ଭାଗ-ଚାଷୀମାନଙ୍କୁ ଭାଗ ଦେଇ ଜମି ଅଳପ ଦାମରେ ବିକି କରି ବ୍ୟାଙ୍କରେ ଟଙ୍କା ଜମାଇବାକୁ ଆରମ୍ଭ କଲେ । ବଜ୍ରବାହୁ ଠିକ୍ ସମୟରେ ବାପାଙ୍କୁ ସତର୍କ କରିଛି—ଆମେ ବି ସେଇଆ କରିବା ।

ସୁନା ଥିଲା ଜମି ବିକିବା ?

ସୁନା ଥିଲା ପିତଳ ହେଇଚ । ବାପା ଅନୁତାପ କରୁଛନ୍ତି ।

ସୁବ୍ରତ କଡ଼ ମୋଡ଼ିଲା । ଆଖି ଖୋଲିଲା । ଭୋର କଲାଣି । ନିଦ ହେବ ନାହିଁ । ବାରମ୍ବାର ଚିନ୍ତା ମୁଣ୍ଡକୁ ଗରମ କରଛି । ଆଖି ବୁଜିଲେ ଅନାବଶ୍ୟକ ଭାବନା ପଶୁଛି ମନରେ ।

ସୁବ୍ରତ ଟେବୁଲ ପାଖକୁ ଆସିଲା । ଆଲୁଅ ଲେଳ ଚଉକିରେ ବସିଲା । ଇଲଷ୍ଟ୍ରେଟେଡ୍ ଉଇକ୍ଲି ଟା' ଟାଣି ଆଣି ଓଲଟାଇଲା । ପଢ଼ିବାକୁ ମନ ହେଉ ନାହିଁ । ଓଲଟାଇବାକୁ ମନ ।

ଏ କ'ଣ ହୋଇଛି ? ଛବିଗୁଡ଼ାକ ନଷ୍ଟ କରିଛି କିଏ ? ଯେତେ ଯେଉଁଠି ନାରୀ-ଚିତ୍ର ଅଛି ସବୁଗୁଡ଼ିକର ନକଲ କରାଯାଇଛି; ଭଲଭଲିକା ନିଶ—ସେଗୁଡ଼ିକର ନାମ କହି ହେବ ନାହିଁ । ଗୋଲ୍ଡିଆ, ପ୍ରଜାପତିଆ, ଲମ୍ବଲାଞ୍ଜିଆ, ହିଟଲରୀ ଛାନ୍ଦ, ଚୋରଣିଛଣା, ବଙ୍କାଳିଆ, ମୌଲଭିଆ, ଛୁଞ୍ଚିମୁନିଆ, ଧେଡ଼ଚେରକ, ଅଣ୍ଡା ହିଁ,—ଆଉର କେତେ ପ୍ରକାର, ପେନ୍‌ସିଲ୍‌ର ଗୋଜାମୁନ ଯେତେ ଯାହା କରିପାରେ ।

Digitized by PPRACHIN, SOA

ସେ ହସି ଉଠିଲା । ପୁଣି ଗମ୍ଭୀର ହେଲା । ଜଣ ତା'ର କଳା ବୁଲ୍‌ଲାଦନ୍କୁଁ ସବୁ ପ୍ରକାର ସେ ଚେଷ୍ଟା କରୁଛି । କାହାର ନିପୁଣ ହସ୍ତ ଏଥିରେ ଆହୁରି କେତେ ପ୍ରକାର ସଜେସନ୍ ଦେଇଛି । ଗେଣ୍ଡା ସ୍ଥିରୁଲୁ ଭଲିଭଲିକା ଅକ୍ଷର ପରି ।

ଛବିଗୁଡ଼ାକ ନଷ୍ଟ କରି କରୁଛି ବଜ୍ରବାହୁକୁ ଅଜଣା ନାହିଁ । ଜଣକୁ ସେ ଘୃଣା କରେ । ନାକ ତଳେ କଳା ମିଚମିଚ ବାଳଗୁଡ଼ାକ ଦେଖିଲେ ତା'କୁ ଅସୁଖ ଲାଗେ । ଅଳ ହଠାଏ । ସେଇଟା ସୁବ୍ରତର ଶେଲ୍ଫାଉଣ୍ଡଣୀ ସନ୍ଧ୍ୟା, ତା ମୁହଁରେ ଜଣ ଘଷିବାକୁ ଖସି ଲାଗେ । ସେ ପଳେଇବାକୁ ଛଟପଟ ହୁଏ । ଗୁଣ୍ଡ ନ ଦେଲେ ବାଧା ସ୍ବପୁଡ଼ା ମାରେ, ଚମୁଟେ, କାନ୍ଦେ, ଗାଳିଦିଏ—ଅଲକ୍ଷଣା, ମରି ଯା । ତତେ ବାଘ ଖାଉ, ସାପ ଖାଉ, ଅସୁର ଖାଉ, ଭୂତ ଖାଉ, ଦାଢ଼ିଆ ବାବାଜୀ ଖାଉ— ।

ଖୁଡ଼ୀ ପାଟିକରି ଉଠନ୍ତି । ହଇ ଲୋ ଚୂଲିପଶି, ତୁ କାହାକୁ କଅଣ କହୁଛୁ ?

ଜଣ ଘଷୁଛି ଭାଇ—
ଧିଅ ଛଣ୍ଡି ଯାଉଛୁ ?
ମୁହଁ—

ବୋଉ କହନ୍ତି ତକ୍ତ, କାହିଁକି ସେ ସୁହାବାଳୀଟା ସଙ୍ଗେ ଲାଗିଛୁ ଶୁଣେ ? ଗୁଣ୍ଡ ଦେ ରେ ସୁବ୍ରତ ।

ଗୁଣ୍ଡଦେଲେ କିଭ ଦେଖେଇ ଖତେଇ ହେଉଛୁ ! ନୂଆ ପ୍ରକାର ଗାଳି କରି ତା'କୁ ଶିଖେଇ ଦେଇଛୁ—ଆଇ ବୁଢ଼ୀ ତ, ଆଉ କଣ ? ସୁଲକ୍ଷଣାଟା, ତୁ ମରି ଯା, ଶାଗ ଖା, ପାପ ଖା, ଶଶୁର ଖା, ଖଡ ଖା, ଦାଢ଼ିଆ ବାବାଜୀ ଖା —, ଯାନା ?

ନୂଆ ପ୍ରକାର ଗାଳି ଶୁଣିଲେ ସୁବ୍ରତ ଜାଣି ଜାଣି ଡରେ । ଚମକି ଉଠେ । ସନ୍ଧ୍ୟାକୁ ଗୁଣ୍ଡ ଦିଏ । ଦୁଇ ହାତରେ ମୁହଁ ଘୋଡ଼ାଇ ଉଁ-ଉଁ ହେଇ କାନ୍ଦେ, ସନ୍ଧ୍ୟା ଛୁଟି ଲୋଇଲେ ମୁହଁରୁ ହାତ କାଢ଼ି ହସି ହସି ଗଡ଼ିଯାଏ ।

ଯେଉଁ ପୃଷ୍ଠାରେ ନବବିବାହିତ ଦମ୍ପତିଙ୍କର ବିଜ୍ଞାପନ ଅଛି, ସେଇଠି ତାର ନଜର ପଡ଼ୁଛି ଅତି ନିର୍ଦ୍ଦିଷ୍ଟ ଭାବରେ ।

ନୁଇସେନ୍ସ— ।
ବନ୍ଧୁକଣ୍ଠ ତଳକୁ ଫୋପାଡ଼ି ଦେଲା ।

Digitized by PPRACHIN, SOA

ଖିଲ୍ ଖିଲ୍ ହସ।

ସୁବ୍ରତ ଆଖି ଟେକି ଚାହିଁଲା। କବାଟ ପାଖରେ ସନ୍ଧ୍ୟା ଠିଆ ହୋଇଛି। ଦୃଷ୍ଟି ପଡ଼ିବାରୁ ସେ ଗମ୍ଭୀର ହେଲା। ଦୁଷ୍ଟ ଆଖିଡୋଳା ଭ୍ରମି ଯାଉଛି।

ଏଗାର ବର୍ଷର ସୁନା-ଖଡ଼ିକା ପରି ପାତଳ ଝିଅଟି। ଟିକିଏ ଡେଙ୍ଗାଳିଆ। ରକ୍ତ ପରି ନାଲି ରଙ୍ଗର ଚୁଡ଼ିଦାର ପ୍ୟାଣ୍ଟ ପିନ୍ଧିଛି। ସେଇ ରଙ୍ଗର ପୁରାହାତ ଜାମା, ବେକରେ ଝୁଲୁଛି ପାଞ୍ଚ ସରିଆ ସୁନାର ହାର। କାନରେ ହୀରା-କଣି-ବସା ନକ୍ଷତ୍ର। ଛାତି ଉପରେ ଦୋହଲୁଛି ଲମ୍ବ ବେଣୀ ଦିଓଟି।

ସନ୍ଧ୍ୟା !

ଆଜ୍ଞା।

ଆଇଲୁ ଏଠିକି।

କଅଣ କହୁ ନ ?

ପାଖକୁ ଆଇଲୁ।

ମାରିବ, ନା ?

ଛବିଗୁଡ଼ାକ ତୁ ନଷ୍ଟ କରିଛୁ ?

ବେଶ୍ କରିଛି।

କାହିଁକି ?

ସେ ଦିନ କେମିତି ମୋ'ର ନକଲ କରି ଦେଇଥିଲ ମନେ ନାହିଁ ? କହୁଥିଲ ପରି ଭଳି ସୁନ୍ଦର ଦିଶୁଛି ? ସେମିତି ତମର ଛବି ତକ ମୁଁ ସୁନ୍ଦର କରି ଦେଇଛି।

ସୁବ୍ରତର ମନେ ପଡ଼ିଲା। ସନ୍ଧ୍ୟା ପ୍ରତିଶୋଧ ନେଇଛି।

ସେ ହସିଦେଲା। କହିଲା, ବେଶ୍ କରିଛୁ। କିନ୍ତୁ ଏ ପୁରୁଷ ପିଲାଗୁଡ଼ାକୁ ଦଣ୍ଡି, ନୋଥ, ନୋଲକ ପିନ୍ଧେଇଛୁ କାହିଁକି ? କାନରେ ଦୁଲ୍ ଝୁଲେଇଛୁ ?

ସିପାହୀଏ କେମିତି କୁଣ୍ଡଳ ନାଇଛନ୍ତି, ତାଙ୍କର ତ ଜଣ ଦାଢ଼ି ଅଛି। ତେମା ମାଇଗ୍ କେମିତି ଶାଢ଼ୀ ପିନ୍ଧି ନୋଲକ ନାଇ ଓଢ଼ଣା ଦେଇ କାନ୍ଦେ।

ସୁବ୍ରତ ହସି ଉଠିଲା। କହିଲା, ଅଳି ତୁ ଜିତିଲୁ। ଆ, ମୋ ପାଖକୁ, ତତେ ଗେଲ କରିବ।

ହଁ, ନାକ ଟାଣିବ। ବୋଉ ଡାକୁଛି ଆସ ଜଳଖିଆ ଖାଇବ। ତମେ ଯେତେବେଳେ ଉପରକୁ ଉଠିଲ, ବୋଉ ଦେଖିଛି। କହିଲା, ଦେଖ ଲୋ, ବାପାଙ୍କୁ

Digitized by PPRACHIN, SOA

ଉର କେମିତ ସେ ଶ୍ୱେର ଘର ଲୁଚ ଲୁଚ ଯାଉଛୁ । ବାପାଙ୍କୁ ଏତେ ଡର କାହିଁକ ?

ସୁବ୍ରତ ଜାଣେ ନାହିଁ । ଡରେ କାହିଁକ ସେଇ ବିଷୟ ଚିନ୍ତା କରୁ କରୁ ଅର୍ଦ୍ଧନ୍ୟ ଚକ୍ଷୁରେ ସନ୍ଧ୍ୟାର ମୁହଁକୁ ଗ୍ଧହିଁ ରହିଲ । ସନ୍ଧ୍ୟା ହସି ହସି ପାଖକୁ ଆସୁଛୁ । ଅତ ସନ୍ତର୍ପଣରେ ପାଖରେ ଆସି ଠିଆ ହେଲାଣି । ସୁବ୍ରତ ନୀରବ । ଅନ୍ୟମନସ୍କ ।

ସନ୍ଧ୍ୟା ଆସି ପାଖରେ ବସିଲଣି ।

ଗ୍ଧଗିଲ କ ଘଇ ?

ସୁବ୍ରତ ଭ୍ରବନା ଗ୍ଧଗିଲା । ସନ୍ଧ୍ୟାର ମୁଣ୍ଡ ଅଉଁସି ଗେହ୍ଲେଇ କହିଲା, ଆଜ ତୋର ନାକ ଟାଣିବ ନାହିଁ । ବସ ମୋ ପାଖରେ ।

ବୋଉ ଡାକୁଛୁ ।

ଯିବା । ଆଚ୍ଛା କହିଲୁ ବାପାଙ୍କୁ ତୁ ଡରୁନ ?

ଏବେ ଅଉ ତେହୁ ଡରୁ ନାହାନ୍ତି । ସୁବ ଭଇ ତା'ଙ୍କ ପାଖକୁ ଯାଇ କଥା-ଭ୍ରଷା ହେଲେଣି । କେବେଠୁଁ ଜାଣ ?

ଶୁଣେ ?

ସନ୍ଧ୍ୟା ଉଠି ଠିଆ ହେଲ । ଦୁରେଇ ଆସି କହିଲ, ଯେବେଠୁଁ ସେ ନଣ କାଟିଲେଣି ।

ସୁବ୍ରତ ହସିବାକୁ ଲଗିଲ । ସନ୍ଧ୍ୟା ଅପେକ୍ଷା ନ କର ତଳକୁ ଓହ୍ଲାଇଗଲ । ହସୁ ହସୁ ଗମ୍ଭୀର ହୋଇଉଠିଲ ସୁବ୍ରତ । ସତେ, ରଣସିଂହଙ୍କର ନାକ ନଣ ତଳେ ପଡ଼ୁଛୁ, । ଯେତେ ଯେଉଁଠି ସିଂହ, ବାଘ ଥିଲେ, ପଶୁରଜା ବୋଲ ଘଡ଼ୁଘଡ଼ୁଆ ରଡ଼ି ଛୁଡ଼ୁଥିଲେ, ସମସ୍ତଙ୍କର ନଣ ତଳେ ପଡ଼ୁଛୁ । ପଶୁରଜାଙ୍କର ଉପାଧି ଏବେ ବ ମୁଣ୍ଡରେ ବହୁ ଆତଯାତ ହେଉଛନ୍ତି ।

ସଚେତ ମଣ୍ଡ ସରବ ଅଥବା ସକ୍ରିବ । ଚଡ଼ିଆଖାନାରେ ପୋଷା ହେଉଥିବା ବାଘ ସିଂହଙ୍କୁ ଦିଆଯାଉଥିବା ହାଡଚେକା ଆହାର ଦିନେ ବନ୍ଦ ହେବ । ବେଳ ପାଖେଇ ଆସିଲ ।

ନଣ କାଟି ତଳେ ପକାଇଲେ । ଠେଙ୍ଗା ଗ୍ରୁଡ଼ି ମାଳା ଧରଲେ । ଶାନ୍ତ, ଶ୍ୱେବ, ଶ୍ୱେତା ଗ୍ରୁଡ଼ି ହର, ଗ୍ରମ, କୃଷ୍ଣ ଜପିଲେ । ଘରକୁ ଚଡା ନ କାଟି ନଜେ ମୁଣ୍ଡରେ ଚଡା କାଟିଲେ । ତଥାପି ରକ୍ଷାରକ୍ଷଣ ନାହିଁ । ମଣିଷ ସଙ୍ଗରେ ମିଶି ଏକାକାର ହେବା ହିଁ ଏ ମାତ୍ର ପଥ, । ହାତରେ ମାଳା ନ ଧର,କୋଡ଼, କାଙ୍କ ଲଙ୍ଗଳ, ଯନ୍ତ୍ର ଧରବା ହିଁ ଶ୍ରେଷ୍ଠ ଉପାସ୍ଥ ।

ବଜ୍ରବାହୁ ସେ, ଦୁଇ ବାହୁରେ ଶକ୍ତି ସଚସ୍ତ କରଛୁ । ସେ ଶକ୍ତିର ବନିଯୋଗ କରବାକୁ ବୁଦ୍ଧି ମଧ୍ୟ ହାସଲ କରଛୁ । ଭୟ କାହିଁକ ? ଦାସତ୍ୱ ପାଇଁ ପର ଆଗରେ ଗୋଡ଼ ଭ୍ରଙ୍ଗି ଠିଆ ହେବାର ଆବନତା କାହିଁକ ?

Digitized by PPRACHIN, SOA

ଇତିହାସ, ଭାଷାତତ୍ତ୍ୱ, ଫିଲ୍ମ-ଇଣ୍ଡିଆ, ସିନେ-ଓଡ଼ିଶା ସବୁ ସେ ପାଣିରେ ଭସେଇ ଦେବ । ଏ ସବୁ ବହି ଭିତରେ ନାହିଁ । ପ୍ରକୋଷ୍ଠ ଭିତରେ ଆବଦ୍ଧ ନାହିଁ । ସବୁ ଅଛି ବାହାରେ, ଗଭୀର ବଳରେ, ଅଗନାଗ୍ନି ବନସ୍ତ ଭିତରେ, ଲୁହାଖଣି କୋଇଲା ଖଣିରେ, ସଭ୍ୟତାର ରୂପରେଖ ବଦଳାଉଛି ଯେଉଁ ଯନ୍ତ୍ରପାତି, କାର୍ଯ୍ୟାଳୟ, ତାଆର ଭିତରେ ।

ଖାରବେଳ ଓ ଉପେନ୍ଦ୍ରଭଞ୍ଜ ତାମିଲ କି ତେଲୁଗୁ ହେଉନ୍ତୁ ଚିନ୍ତା ନାହିଁ । କୋଣାର୍କ ଓ ଭୁବନେଶ୍ୱର ମନ୍ଦିର ବଙ୍ଗର ନବାବ୍ ଶିବାଜୀଙ୍କର ପୂରୁଷ କୃଷ୍ଣଦେବ ରାୟ ଓ ଭଣଜା ଚେଙ୍ଗିଜ୍ ଖାଁ ନିର୍ମାଣ କରିଛନ୍ତି ବୋଲି ଧରି ନିଆଯାଉ ସେଥିକି ଶୋଚନା ନାହିଁ । ଓଡ଼ିଆ ଭାଷାର ସୃଷ୍ଟିକର୍ତ୍ତା ମହାକବି ପ୍ରେମଚନ୍ଦ ଓ ଔପନ୍ୟାସିକ ଇକ୍‌ବାଲ ହେଉନ୍ତୁ ଭାବନା ନାହିଁ । ଆମର 'କା' ଶବ୍ଦଟା ମିଶରରୁ ଆମଦାନି, ପୁଣି 'କାହିଁ' ଶବ୍ଦଟା ନର୍‌ୱେରୁ ଓ 'ବୋଉ' ପଦଟି ସୁମେରୁ ଦେଶରୁ ଆସିଥାଉ । ଆମ ଉତ୍କଳ ଦେଶଟା ସତର ହଜାର ବର୍ଷ ପୂର୍ବେ ଉତ୍ତରରେ ଟାଙ୍ଗାନିକା ପର୍ବତରୁ ଆରମ୍ଭ ହୋଇ ଦକ୍ଷିଣରେ ଗୋବି ମହାସାଗର ପର୍ଯ୍ୟନ୍ତ ବିସ୍ତୃତ ଥିଲା –

କଅଣ ମିଳିବ ଏଥିରୁ ? ଆମେ ଯାହା ଅଛୁ, ଆମର ଯାହା ଅଛି, ସବୁ ଆଖିକୁ ଜଳ ଜଳ ହୋଇ ଦିଶୁଛି । ଭାରତ ସ୍ୱାଧୀନ ହୋଇଛି ଆଉ, ଓଡ଼ିଶା ହୋଇଛି ଭାରତ !

ବସ୍ୱରହି କଅଣ କଲେ ?

ସୁବ୍ରତ ନିଜର ଦୁଇ ବାହୁକୁ ଝୁହିଁଲା, ଯେଉଁ ବାହୁ ଦିଅଟି ଟେବୁଲ ଉପରେ ଗଦା ହୋଇଥିବା ଇତିହାସର ପାହାଡ଼କୁ ଟଳାଇ ଦେଇ ନୂଆ ଇତିହାସ ଗଢ଼ିବାକୁ ସାରଙ୍ଗମ ।

ଭାଇ !

ଯାଉଛି ।

ସୁବ୍ରତ ଉଠିଲା ।

ଜମିଦାରୀ ଉଚ୍ଛେଦ ହୋଇଛି । ଖଣ୍ଡିଏ ଆଦେଶ-ପତ୍ର, ସରକାରୀ ଗେଜେଟରେ ଓ ପତ୍ରପତ୍ରିକାରେ ଗୋଟାଏ ବିଜ୍ଞାପନ, ମାଳଶ୍ରୀ ନାମ ଭିତରେ ତା'ଙ୍କ ଜମିଦାରୀର ନାମଟା ମଧ୍ୟ ସ୍ଥାନ ପାଇଛି । ସେତିକି । ଖଡ୍ଗ କମାଣ, ବାଣ ଲୋଡ଼ା ହୋଇ ନାହିଁ । କେହି କାହାର ଦେହରେ ଟିପ ଛୁଇଁ ନାହିଁ । ରାଜତ୍ୱ ଯାଇଛି । ସତେକି କିଏ ଚୁଟକି କାଟି ଛୁଇଁ ଦେଲା ।

Digitized by PPRACHIN, SOA

ଗୋପୀକୃଷ୍ଣଙ୍କର ପ୍ରତିମା ଆଗରେ ଦେହ ପକାଇ ରଣସିଂହ ମାଳା ଧରି ବସିଛନ୍ତି । ସବୁ ଦିନ ପରି ଆଜି ସେ ମଠା ପିନ୍ଧିଛନ୍ତି । ଦେହରେ ନାମାବଳୀ । ଅଷ୍ଟାଙ୍ଗ ଶରୀରରେ ନାମର ଗୁମ୍ଫା, ଖାଲି ରାଧା—ରାଧା— । ଚନ୍ଦନର ଚିହ୍ନ । ଝୁଲିମୁଣି ଭିତରେ ମାଳା ଗଡ଼ି ଚାଲିଛି । ହରେ ରାମ କୃଷ୍ଣ ତୁଣ୍ଡରୁ ଓ ମନରୁ ଖସି ପଳେଇଲାଣି । ଗ.ଡ଼ି ଆନ୍ ଧୂମେଇ ପଡ଼ିଲାଣି । ଶରୀର ନୂଆରେ ଟଳ ଚାଲିଛି । ଅତ୍ୟନ୍ତ ବଳଦ ଦୁଇଟା ଶଗଡ଼ ଟାଣି ନେଉଛନ୍ତି । ମାଳା ଆପେ ଆପେ ଗଡ଼ି ଚାଲିଛି ।

ଅଭିନବ ରଣସିଂହ କଣିକଥା ହୋଇ ଜାନୁକୁ ଆଉଜି ବସି ଚିନ୍ତା କରୁଛନ୍ତି — କି ହେଲରେ, କହ ତ ନୂଆଇ ସରଗି ରେ ! କହିବାକୁ ଲାଜ, ଯା ହେ ଇଲ ଆଜ ! ହେ ଇଷ୍ଟଦେବତା, ଅଭିନବ ରଣସିଂହଙ୍କର ଛପନ ପୁରୁଷ ତଳର ଅଜା ତମୁକୁ ପ୍ରତିଷ୍ଠା କରିଥିଲେ । ସେବା ପୂଜା ଖଞ୍ଜି ଦେଇଥିଲେ । ଆଶୀର୍ବାଦ କରିବା ପାଇଁ ବ୍ରାହ୍ମଣମାନଙ୍କୁ କଷ୍ଟର ଭୂମି ଦାନ କରିଥିଲେ । ଏକାଳକୁ ଆଉ ତମେ ଚିନ୍ତା କାଟିଲ । ସର୍ବସାଧାରଣଙ୍କ ଠାକୁର ହୋଇ ଦେବୋତ୍ତର ବିଭାଗକୁ ଗଲ ।

ହେଇଠୁ ଜମିଦାରୀ ଛୁ । ତ'ପଛକୁ ଜମି । ପ୍ରଥାଟି ଚାହିଁଦେଲେ ଆଖି ଫେରି ଆସୁଛି । ସମସ୍ତେ ମୋଧର ହସି ଉଠୁଛନ୍ତି । ପାଟିକରି କହୁ ଉଠୁଛନ୍ତି,—ହାଁ ହାଁ, ଜୁଲିବୁ, ଜୁଲିବୁ, ଘଣ୍ଟ ଯା । ରଣସିଂହ ଆଜି ଅଡୁବ ହେଇଛନ୍ତି; ହେ କଂସ-ଧ୍ୱଂସୀ, ଶୁଣିଲେ କାନରେ ହାତ ଦେବ । ସେ ଆଡ଼େଇ କରି ବାଟ ଚାଲୁଛନ୍ତି । ତଳକୁ ମୁହଁ । ଯେଉଁମାନେ ପସୁରି ହାତ ଦୂରରେ କରଯୋଡ଼ି ଯୋଡ଼ି ଉଭା ହେଉଥିଲେ, ତୁଣ୍ଡରୁ ବଚନ ବାହାରୁ ନ ଥିଲା, ସେଇମାନେ ଧୂଳି ଉଡ଼େଇ ଦମଦମ ହୋଇ ଚାଲି ଯାଉଛନ୍ତି । କି ହସ, କି ପାଟି ! ଟିକଏ ହୋଇ ଖାତିର ଅଛି ?

ଅନାବନା ଉପରେ ଆମ୍ବ ବଗିଚାରେ ଆମ୍ବ ଲଦି ହୋଇଛି । ତୋଳିବାକୁ ହାତ ବଢ଼ାଇଲେ, ଗଛଟା ମୁଣ୍ଡ ହଲଉଛି । କହି ଉଠୁଛି, ସାଧୁ ସାବଧାନ ! ନ ଶୁଣି ହାତ ଲମ୍ବାଇଲେ ତୋଟା ଆଉ ପାଖୁ ପାଟି ଶୁଭିଲାଣି, ହେ, ହେ —।

ତୋଟାଗୁଡ଼ାକରେ ମାଲିକ୍ ପଞ୍ଝ । ପୋଖରୀଗୁଡ଼ାକର ବି । ନାଲି-ପାଟିଆ ରୋହି ଭାକୁଡ଼ଙ୍କର ଟହ ଟହ ହସ । ଧୂଅରେ ଲାଞ୍ଜ ପିଟି ପଳାଉଛନ୍ତି । କେସନ୍ତି ଦଣ୍ଡଖିଅ ବି ରଣସିଂହଙ୍କର ଦେହ ଖୁମ୍ପୁଛନ୍ତି । କାହାକୁ କହିବ ଏ ଲାଜର କଥା !

ମାନ ସମ୍ଭ୍ରମ ସବୁ ଗଲା ହେ ବ୍ରଜରାଜ, ଜୀବନ ଧରି ରହିବାକୁ ଆଉ ଆଗ୍ରହ ନାହିଁ । ଗାଁ ମାଇପେ ଜଣା ଅଜଣା, ହସିଲା ଆଖିରେ ଡବ ଡବ କରି ଅନାଉଛନ୍ତି । ନାମାବଳୀଟା ମୁଣ୍ଡ ଉପରକୁ ଟାଣି ପକାଇଦିବା ହିଁ ସାର ହେଉଛି । ଶାମ୍ବକୁ ନାରୀ ବେଶ କରି, ହିଦରେ ଲୌହ ଶିଳା ଭରି । ସେଠି ହିଁ ନିଜକୁ ନାରୀ ବେଶରେ ସଜାଇଛନ୍ତି ପୁଣି ରଣସିଂହେ ! ଜମିଦାରୀ ସଙ୍ଗେ ସଙ୍ଗେ ଲକ୍ଷ୍ମୀ ପଳେଇଲେ । ସରସ୍ୱତୀ ପଳେଇଲେ —

Digitized by PPRACHIN, SOA

ପାଞ୍ଚ ସାତ ମେଳ ହୋଇ ଅଭିମନ୍ୟୁ, ଦୀନକୃଷ୍ଣ, ଉପେନ୍ଦ୍ରଭଞ୍ଜ, ରାଧାନାଥ ଚର୍ଚ୍ଚା କରିବାକୁ ତ ସରସ୍ୱତୀଙ୍କ ପୂଜା କୁହାଯାଏ । ଆହା, ସେ ରୂପ ବର୍ଣ୍ଣନା, ତାକୁରୁ ତଳପା ଯାଏ । ଅଳଙ୍କାର, ଋତୁ, ଅବସ୍ଥା —ସର୍ବରେ ଉହୁଲା ଦାନୁ କେଳପୁରର ଦେହଳ ଡେଇଁ ସୁଦ୍ଧ ଧରିବା ଯାଏ । ସେ ଯେଉଁ ପଦ ଶେଯ, ଲେଉଟାଇ, କବରୀ ଫିଟାଇ—,—ପ୍ରୀତି କଲି ସାହାସିନୀ । ପଦଗୁଡ଼ା କଅଣ ମନେ ପଡ଼ୁଛି ? ଧାରଣାଟା ରହୁଛି ମନରେ ।

ସୁବ୍ରତ ବୋଉ ଖାଲି ପ୍ରତି କଥାରେ ଖୁମ୍ପିବାକୁ ଲାଗିଛନ୍ତି । ଗତ ଜୀବନର ଅବହେଳାର ପ୍ରତିଶୋଧ ସେ ନେଉଛନ୍ତି ।

ଯେତେ ବୃନ୍ଦାବତୀ, ଲଳିତା, ବିଶାଖା ଯିବେ କି ରହିବେ ବିଚାର କରୁଥିଲେ, ସେମାନଙ୍କୁ କିଛି କିଛି ଦେଇ ବିଦା କରାଗଲା । ଦେହରେ ରାଧା ନାମ ଛାପା ମାରିଲେ ମନର ଜ୍ୱାଳା ଶୀତଳ ହୁଏ ନେ ନଟବରର, ତମର ପାଖକୁ ପଳାଇ ଆସି ଯୁଗଳ ମୂର୍ତ୍ତିକୁ ଅନେଇ ରହେ । ଘରେ ମୁଖରା ପତ୍ନୀ, ଅବାଧ୍ୟ ପୁତ୍ରଦ୍ୱୟ—, ବାହାରେ ଅପମାନ, ଭିତରେ ଚୂର୍ଣ୍ଣୀଭୂତ ଗର୍ବର ଦୁଃଖ ! ହାୟ ରେ—

ଖରା ତେଜ ମନ୍ଦଳଣ ଦେଖାଯାଉଚ । ଚାରିଟା କି ପାଞ୍ଚଟା ବାଜିବ । ମେଘ ବି ଘୋଡ଼ାଇ ଥାଇ ପାରେ । ଦ୍ୱିପହରେ କେହି ମନ୍ଦିରକୁ ଆସନ୍ତି ନାହିଁ । କରୋଳା ନିଶ୍ଚିନ୍ତ ଥାନ । ପୂଜାରୀ ଟୋକାଟି ଶୋଇ ପଡ଼ିଛି ଚଟାଣ ଉପରେ । ଘୁଙ୍ଗୁଡ଼ି ମାରୁଛି । ଏତିକବେଳେ ମନ ଖୋଲି ଗୋପୀକୃଷ୍ଣଙ୍କ ସଙ୍ଗେ ପରାମର୍ଶ କରିବାର କଥା । ଦେଖେଇ ଦେଖେଇ ବୁଢ଼ା ବେଶ୍ୟା ତପସ୍ୱିନୀ ହେଲା କହିବାକୁ ଗ୍ରାମର ଭେଣ୍ଡିଆ କେହି ନାହାନ୍ତି । ଆହେ ନାବଟକଳିଆ, ଭାଳିଆ, ଏମାନଙ୍କୁ ସଦ୍‌ବୁଦ୍ଧି ଦିଅ । ଭଲ ବାଟ ଦେଖାଅ ।

ସୁବ୍ରତଟା ଗୃଜର କରିବାକୁ ରାଜି ନୁହେଁ । ଉପୋଟି ହେବାର ଚେଷ୍ଟା ବିଫଳ ହେଲା । କରମା ହେବାକୁ ଚେଷ୍ଟା କରୁଛି । କହୁଛି, ଗୃଜର ହେବ ନାହିଁ । ଭାଗ୍ୟ କଥାଟା କାଟି ଦେଇ ପାରିଲାଣି । ଜାତି ବଦଳେଇବାକୁ ହେବ, ନୋହିଲେ ସାଙ୍ଗିଆ, ଅଥବା ସୁପାରିସ୍ ଯୋଗାଡ଼—ଏଇ ସବୁ କୁଆଡ଼େ ଗୃଜର କ୍ଷେତରେ ଭାଗ୍ୟଂ ଫଳତି ସର୍ବତ୍ରଂ ନ ବିଦ୍ୟା ନ ଚ ପୌରୁଷଂ ।

ଖଜୁରୀଗଛର କି ଗୁଣ ବର୍ଣ୍ଣିବ ହେ ପୁରନାରି, ମୂଳରୁ ପାହାଚ ପାହାଚ । ଘର ଆଡ଼କୁ ଅନାଇଁବାର ଅବସର ନ ଥିଲା । ଆବଶ୍ୟକ ନ ଥିଲା । ଆପେ ଆପେ ସବୁ ହୋଇ ଯାଉଥିଲା । ମୁଣ୍ଡରେ ଅନାହୂତ ବଜ୍ରପାତ ହେଲରୁ ଆଖି ବୁଜି, ଆଖି ଖୋଲି

Digitized by PPRACHIN, SOA

ଝୁଣ୍ଟିଲା ବେଳକୁ ଉଷାଗଲା ସବୁ କାଳ ବଗିଡ଼ିଛି । ଜମିଦାରର ପୁଅ ହୋଇ ସୁବ୍ରତଟା କେତେ ଧ୍ୟାନ କାମ ନ କରୁଛି । ପାଠ ପଢ଼ିଲା ନାହିଁ; ଯେତେପ୍ରକାର ଦୁଷ୍କର୍ମୀ ସମ୍ଭବ ହୋଇପାରେ ସବୁଥିରେ ହେଲା ଧୁରନ୍ଧର । ତାଅସ ପଶାରେ ବେଳ କଟୁଥିଲା । ବରଂ ସେ ଭଲ ଥିଲା । ଗାଁ ଭେଣ୍ଡିଆ—ଦାବ ଜାଢଆଙ୍କ ସଙ୍ଗେ ମିଶି ନୂଆ ରାସ୍ତାରେ ମାଟି ପକାଉଛି । ଏକଥା ପୁଣି କାନ ଶୁଣିଲା । ପଚାରିଲାରୁ ସେକ୍ ଠୋକ୍ ଜବାବ୍— ମୁଁ ତ ଜମିଦାର ହୋଇ ନ ଆନ୍ତୁ ? ବଡ଼ ପୁଅ ସେ ନୁହେଁ । ଜମିଦାର ହୋଇ ନ ଆନ୍ତା, କିନ୍ତୁ ଜମିଦାରର ପୁତ୍ର ତ ।

ସମସ୍ତେ ଅବାଧ ହେଲେଣି । ପିଲା ବଳଟେ ସନ୍ଧ୍ୟା । ନଟବର ଶଣ୍ଢୁଣ୍ଡିଆର ଝିଅ । ବାପ ଗଛରୁ ପଡ଼ି ମଲା । ବାପକୁ ସେ ଚିହ୍ନେ ନାହିଁ । ରଣସିଂହଙ୍କୁ ସେ ବାପ ବୋଲି ଜାଣେ । ନଅ ଦଶ ବର୍ଷର ହେଲାଣି । ଏଥର ସ୍କୁଲକୁ ନ ପଠାଇବା ଭଲ । କହିଲେ କାନ୍ଦୁଛି, ରୁଷୁଛି । ନଜର୍ ଦେଉଛି, ମଞ୍ଜୁ, ଅଉସୀ, ଲତା, ଖୁସି କେମିତ ଯାଉଛନ୍ତି ? ମା ତା'ର କାମୁଡ଼ି ଗୋଡ଼ଉଛନ୍ତି । ସେଇ ଛୋଟ ଯାଉ ପିଲାଟା, ପାଠ ନ ପଢ଼ିଲେ କଏ ତା'କୁ ଏଣିକେ ବୋହୂ କରି ନେବ ? ତେଲି ତାମୁଳି ତୁଳାଭୂଣା ଘର ଝିଅମାନଙ୍କ ସଙ୍ଗେ ସମାନ ହେବ କି ବୋଲି ପଚାରିଲେ, ଜବାବ୍ ଦେଉଛନ୍ତି, ଆଉ ବାକି କଣ ଅଛି ?

ଆହେ ବଜ୍ର-କଙ୍କାସନ, ଏତକ ବେଳକୁ ଥକା ହୋଇ ରହିଲ ? ଅଭିନବ ରଣସିଂହକୁ ଛୁର ମାଇକିନାଟା ସେ ସୁବ୍ରତ ଦୋଉ, ବଜା କରି ଦେଲାଣି । ହୁଁ. ଜାଣି ନାହିଁ, ସିଂହ ପିଲା ଶୋଇ ନାହିଁ, ଅନେଇଁ କରି ଦେଖୁଛି, ଦେଖୁଛି ଦେଖୁଛି— । ଯେତେବେଳେ ଉଠିବ, କୁଦା ମାରିବ, ବୋପା ଉତ୍ତରକବାଟ କି ଅଜା ଦକ୍ଷିଣକବାଟ କେହି ପିଠିରେ ପଡ଼ିବେ କାହିଁ ।

କେତେ ନମକ୍ହାରମ୍ ସେ ମହାପାତ୍ରଟା, ଦେଖିଲଟି ! ହେ ପରସ୍ୱର-ମର୍ଦ୍ଦନ, ସାତ ପୁରୁଷ ଆମର ଅନ୍ନରେ ପ୍ରତିପାଳିତ । କାଲି କାନରେ କଲମ ଖୋସି ଆଗରେ ଗୋଡ଼ ଭାଙ୍ଗି ଠିଆ ହେଉଥିଲା, ଏବେ କେତେ ବଡ଼ ବଡ଼ ଜଣ ବଢ଼ିଲାଣି । ପକେଟରେ ଝର୍ଣ୍ଣାକଲମ । ଯୋଟା ମାଡ଼ି ମସ୍ ମସ୍ ହୋଇ ଆଗରେ ଚାଲି ଯାଉଛି । ଅଂଚଳାଧିପତି କି ଅଂଚଳେଶ୍ୱର କି ଅଂଚଳାଧିକାରୀଙ୍କର ସେ ହେଲାଣି ତହସିଲ୍‌ଦାର, ସରକାରୀ କର୍ମଚାରୀ !

ସେବା କରିବାକୁ ଯେଉଁ ଛତିଶ ପାଟକ ଜାଗିରି ଭୋଗ କରୁଥିଲେ, ଆଜ୍ଞା ଆଇନ ଆସିଲା, ସେମାନେ କରେଇ ନେଲେ ଖଜଣା । ତଥାପି ମୋହବନ୍ତ, ଠେଙ୍ଗା, ଆଖି, ପାଟି, କଣ ବୋଲ କରୁଥିଲା । ଜମିଦାରୀ ଗଲାରୁ ସମସ୍ତେ ମୁହଁ ବୁଲେଇଲେ । ଥଅ ଆଗ ପଇସା, ସେଇଠୁ କଥା କହ । କି କାଳ ହେଲା ହେ ବସ୍ତ୍ର-ହାରି, ସମସ୍ତେ ତ ହେଲେ ଉଗାର, କା ଆଗେ କରିବ ଗୁହାରି ।

Digitized by PPRACHIN, SOA

ବାପା—

ମନ୍ଦିରର ମୁଖ-ଶାଳ ଭିତରକୁ ପଶି ଆସିଲାଣି ସନ୍ଧ୍ୟା । ସେ ଆଜି ଧଳା ଶାଢ଼ୀଟିଏ ପିନ୍ଧିଛି । ମୁକୁଳା କେଶ ଦୋହଲୁଛି । ଆଖିରେ କଜଳ, ପାଦରେ ଅଳତା । ଗେଣ୍ଡା ଫୁଲଟା ତାଙ୍କର, ଆଜି ସୁନ୍ଦର ଦିଶୁଛି । ରାଜଜେମାଙ୍କୁ ଏମିତି ବେଶ ଶୋଭା ପାଏ । ସନ୍ଧ୍ୟା ପାଖକୁ ଆସିଲା ।

କଅଣ ମା ?

ସନ୍ଧ୍ୟା ଫୁଲମୁଠି ଧରିଲା ।

ଆଉ, ଆଉ,—

ଏଥିରେ କେଇଟା ମାଳ ଅଛି ?

ଶହେ ଆଠଟା ।

ଜାଣିଛ ତ ପୁଣି ଏତେ ଥର ଗଣୁଛ କାହିଁକି ?

ମୁଁ ନାମ ନେଉଛି ।

ମୁଁ ଜାଣେ ଯେ—ହରେ ରାମ କୃଷ୍ଣ ।

ସୁନା ପିଲାଟା ଭୁ—, ରଣସିଂହ ଫିଅର ପିଠି ଆପୁଚ୍ଛିଲେ । କହିଲେ, ଠାକୁରଙ୍କୁ ଦଣ୍ଡବତ କର ।

ସନ୍ଧ୍ୟା ତଳେ ମୁଣ୍ଡ ଲଗାଇଲା । ମଥା ଟେକି କହିଲା, କେତେ ଥର ଏ ନାମ ନେବାକୁ ହୁଏ ବାପା ?

ତୁ ବୁଝି ପାରିବୁ ନାହିଁ ।

ଦେହରେ ରାଧା ରାଧା କାହିଁକି ଲେଖିଛ ?

ବୁଝି ପାରିବୁ ନାହିଁ ।

ବୋଉ ଡାକୁଛି ।

ଉଠିବାର ବେଳ ହେଲାଣି । ଗାଁ ଲୋକେ ଆସିବେ ।

ମୁଖଶାଳାରେ ବସି ଗଙ୍ଗାରୁ ଗଉତମ ଯାଏ କଥା ପଡ଼ିବ—ସରପଞ୍ଚ ଅନ୍ୟାୟ କଲେ । ଧାନ ଗଛରେ ପୋକ ହେଲାଣି । ଗ୍ରାମ ରାସ୍ତାରେ ଆଣ୍ଠୁଏ ମାଟି ପଡ଼ିବ । ବହୁମୁଖୀ ସମବାୟ ଯୋଜନାର ସମ୍ପାଦକଙ୍କୁ ବିଦାୟ ନ କଲେ ରକ୍ଷା ନାହିଁ । ଗ୍ରାମସେବିକା ମୁହଁରେ ପାଉଡ଼ର ବୋଳନ୍ତି ।

ଅଂଚଳାଧିପତିଙ୍କ ଘରେ ସିନ୍ଧ, କୁଆଟା ଉପରେ ଟ୍ରକ୍ ମାଡ଼ିଗଲା—ସବୁ ବିଷୟ କେମିତି କେଜାଣି ଜମିଦାରଙ୍କ କୁଟୁମ୍ବ ଆଡ଼କୁ ମାଡ଼ି ଆସେ, ମୁଣ୍ଡିମରେ ରଣସିଂହଙ୍କ ନଣନ୍ଦଟା ଓ ଫୁଲମୁଣ୍ଡିରେ । ରଣସିଂହେ ଏ କଥା ଜାଣନ୍ତି ।

ହେଇ, ରଥିଆ କେଉଟ ଆଉଛି । ଦଶ ବର୍ଷ ତଳେ ରଣସିଂହଙ୍କ ହାତର

Digitized by PPRACHIN, SOA

ଶକ୍ତି ସେ ବୁଝିଥିଲା । ଆରେ, ତା ପଛରେ ବନେଇଁ ଗୁଡ଼ିଆ, ଖାଲି କଣସାଲ ଦେଖି ଯାହାର ପିନ୍ଧିଲା ଲୁଗା ଓଦା ହେଲା । ଏଁ, ତା ପଛରେ ଚଳବା କୁମ୍ଭାର—

ଚାଲ୍ ମା, ଚାଲ—।

ଅପରିଚିତଙ୍କୁ ମଥିତ କରି ବ୍ୟଥିତ ହେବାର ପ୍ରୟାସ ଆଉ ମମତାଙ୍କର ନାହିଁ । ଚଉଦ ବର୍ଷ ବୟସରେ ଚକ୍ରମାଟି ଗାଁ ଗୁଣ୍ଡ ଚଣ୍ଡଡ଼ବ ବୋହୂ ହୋଇ ସେ ଆସିଥିଲେ । ଚକ୍ରମାଟି ଗଞ୍ଜାମ ଜିଲାର ଗୋଟିଏ ଶ୍ରେଷ୍ଠ ଜମିଦାରୀ । ଦାସଦାସୀ ପରିବେଷ୍ଟିତ ହୋଇ ସେ ପିଲାଦିନୁ ବଢ଼ି ଆସିଥିଲେ । ରାଜା ଘରର ଅଲିଅଳୀ କନ୍ୟା । କେଉଁ କଥାର ଅଭାବ ନ ଥିଲା । ଛଅ ଭାଇ ଓ ୨ ଜଣ ଭଉଣୀ ।

ସେଥିରେ କୋଡ଼ପୋଛା ଝିଅ । ହେତୁ ପାଇଲା ଦିନୁ ସେ ମାଆଙ୍କୁ ଦରବୁଢ଼ୀ ଦେଖିଛନ୍ତି—ଅଧା ପାଚିଲା କେଶ, ହଲର-ହଲର ଦାନ୍ତ । ଫୁଙ୍କି ଦେଲେ ଝଲି ପଡ଼ିଲା ପରି ଦେହ । ଭାଇମାନଙ୍କ ପରି ବାପାଙ୍କୁ ଦେଖିଥିଲେ ଶକ୍ତିମାନ୍ ପୁରୁଷ । ମୁଣ୍ଡରେ ଗୋଟିଏ କେଶ ବି ଧଳା ବୁଲି ନାହିଁ । ଗୋଟିଏ ଦାନ୍ତ ହଲି ନାହିଁ । ଗୋରା ତକ୍ ତକ୍ ବଳିଷ୍ଠ ଦେହ । ମୁଣ୍ଡରେ ଲମ୍ବ ସିନ୍ଦୂର କଲି ଦାଉ ଦାଉ ହୋଇ ଜଳୁଥାଏ । ବାଘ ମୁହଁ ପରି ଅତି ବଡ଼ ମୁହଁରେ ଝଙ୍କାଳିଆ ଲମ୍ବ ସଳଖ ମୁଛ ।

ମାଆଙ୍କର କର୍ମ କେବଳ ଶୟନ ଓ ବାପାଙ୍କର ସୋମରସ ପାନ, ଗୋଟିପିଲା ନାଚ, ପାରିଧି, ଅନ୍ତର୍ଦ୍ଧାନ, ପୁନଃ ଆଗମନ । ମଦକୁ ସେ ସୋମରସ ବୋଲି କହନ୍ତି । ସ୍ୱର୍ଗପୁରରେ ଦେବ ଓ କାନ୍ନରମାନଙ୍କର ନାଚ ସଙ୍ଗେ ଗୋଟିପିଲା ନାଚ ତୁଳନା କରାଯାଏ । ଇନ୍ଦ୍ରଙ୍କର ଦିଗ୍‌ବିଜୟ ପରି ସେ ପାରିଧି କରନ୍ତି । କେବେ କେମିତି ମିରିଗ, ସମ୍ବର, ତିତିରି, ମୟୂର ଶିକାର କରି ଆଣନ୍ତି । ସେ ଇନ୍ଦ୍ର ଥିଲେ । ଦେବସଭା ପରି ପଣ୍ଡିତସଭା ବସିଥିଲେ । ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ଚର୍ଚ୍ଚା କରୁଥିଲେ । ବ୍ରାହ୍ମଣ ପଣ୍ଡିତମାନଙ୍କଦ୍ୱାରା "ଖଟ୍ୱାଙ୍ଗ-ପୁରାଣ" ଲେଖାଇଥିଲେ ।

ଖଟ୍ୱାଙ୍ଗ-ପୁରାଣଟା କଅଣ ସେ କଥା ବାପା ଓ ତାଙ୍କର ଦେବସଭା ଛଡ଼ା ଆଉ କାହାକୁ ଜଣା ନ ଥିଲା । କିନ୍ତୁ ସମସ୍ତେ କହନ୍ତି, ଏହି ମହାକାବ୍ୟର ରଚନା ପାଇଁ ବହୁ ବର୍ଷ କଟିଛି ଓ ଅଜସ୍ର ଧନ ବ୍ୟୟ କରାହୋଇଛି । ଲୋକେ ପୁଣି କହନ୍ତି, ଖଟ୍ୱାଙ୍ଗ-ପୁରାଣ ଶୁଣିବାକୁ ଇନ୍ଦ୍ରସଭା ଛାଡ଼ି ଦେବତାମାନେ ଅସ୍ତବ୍ୟସ୍ତ ହୋଇ ସ୍ୱର୍ଗ-ପୁରରୁ ଓହ୍ଲାଇ ଆସନ୍ତି । ଉର୍ବଶୀ ଓ ମେନକାମାନେ ଗୋଡ଼େଇ ଆସି ବର୍ଣ୍ଣନା ମାନ ଶୁଣି ମୁଣ୍ଡରେ ଓଢ଼ଣା ଦେଇ ଲୁଚିଲୁଚି ଫେରି ଯାଆନ୍ତି । ଉପେନ୍ଦ୍ର ତ ପଳାନ୍ତି କେଉଁଣ୍ଡିମାନଙ୍କୁ, କବିସୂର୍ଯ୍ୟଙ୍କ ରାହୁ ଗ୍ରାସେ, ଗୋପାଳକୃଷ୍ଣ ମହେନ୍ଦ୍ରତନୟାରେ ଝାସ ଦିଅନ୍ତି ।

Digitized by PPRACHIN, SOA

ଗୋପନ ସେ ମହାକାବ୍ୟ !

ଶୁଣିଥିଲେ ମମତା,—ଦୂର ମୋଫସଲମାନଙ୍କରେ ତାଙ୍କର ଅସୁମାର ସମ୍ପତ୍ତି ଥିଲେ ଓ ବେସୁମାର ଅନ୍ତର ଭାଇ-ଭଉଣୀ । ତେବେ, ରାଜ-ପ୍ରାସାଦରେ କାହାକୁ ସେ କେବେ ଦେଖି ନାହାନ୍ତି । ଦାସୀମାନେ ମାଆଙ୍କୁ ସବୁ କଥା କହୋଳିରେ କହୁଥିଲା ବେଳେ ମମତା ଶୁଣନ୍ତି । ପିତାଙ୍କର ଜୀବନ ନେବାକୁ ଭାଇମାନେ ଷଡ଼ଯନ୍ତ୍ର କରିଥିଲେ । ମୋଫସଲର ଅନ୍ତର ଭାଇ ଭଉଣୀମାନଙ୍କୁ ଅଇଆନ କରିବାକୁ ପିତା ସେମାନଙ୍କ ନାମରେ କେତେ ଜମି ରେଜଷ୍ଟ୍ରୀ କରି ଦେଲେଣି । ଆହୁରି କରୁଛନ୍ତି । ପୂର୍ବ-ପୁରୁଷରୁ ସଞ୍ଚିତ ଧନରତ୍ନ ଓ ସ୍ୱର୍ଣ୍ଣ ଅଳଙ୍କାର ସବୁ ବନ୍ଧକ କରି ଶେଷ କରି ଦେଲେଣି । ବାକି ଅଛୁ ମାଆଙ୍କ ଦେହର ଗହଣା । ଦୁଇ ଝିଅର ବିବାହ ବେଳର କରଜ ସୁଝିବାକୁ ଟଙ୍କା ଲୋଡ଼ା । ନୋହିଲେ ଜମିଦାରୀ ଯିବ । କରଜ ବଢ଼ି ବଢ଼ି ଯାଉଛି ।

ସାନ ଝିଅର ବାହାଘର ହେବ । ହେଉ ପଛେ ସେ ଚଉଦ ବର୍ଷର ପିଲାଟା । ଆହୁରି କରଜ ।

ମମତାଙ୍କ ବାହାଘର । ଏବେ ବି ମନେ ପଡ଼ୁଛି ସେ ଦୃଶ୍ୟ । ଭାଇମାନଙ୍କର ତତ୍ପରତା, ବାପାଙ୍କର ସୋମରସ ପିଆ ହତଜ୍ଞାନ ଅବସ୍ଥା, ମାଆଙ୍କର ଆଖିର ଲୁହ । ସେ ଲୁହ ଶୁଖିଲା ନାହିଁ । ଶଶୁର ଘରେ ପାଦ ଦେଉଣୁ ଖବର ପହଞ୍ଚିଲା—ରକ୍ତମାଟିର ଜମିଦାର ସ୍ୱର୍ଗାରୋହଣ କଲେ । ସୋମରସ ପିଆ ଝିଦ ଭାଙ୍ଗିଲା ନାହିଁ ।

ସ୍ୱବ୍ରତର ଜନ୍ମ ତ କାଲି ପରି ଲାଗୁଛି ! କଏଁଇ କରି ଶିଶୁଟି ହସୁଥାଏ । ଖବର ଆସିଲା—ରକ୍ତ ମାଟି ଜମିଦାରୀକୁ କମା ଓ କୁମୁଟି ମହାଜନ ଦୁହେଁ ନିଲାମ କରି ନେଇଛନ୍ତି । ଭାଇମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ । ସଞ୍ଚିତ ଯାହା ଥିଲା—ଯିଏ ଯାହା ଯୋଗାଡ଼ କରି ପାରିଲା ନେଇଛି । ଘର ହେଲା ଜୁର । ମା' ଆସିଲେ ପୁରୀ । ପୁଅମାନଙ୍କ ମୁହଁ ସେ ଚାହିଁବେ ନାହିଁ । ଯାହା ସେ ଆଣି ପାରିଥିଲେ ସେତକ ପଣ୍ଡା ପଢ଼ିଆରୀ ଓ ଗେରୁଆ ପିନ୍ଧା ଧର୍ମଧ୍ୱଜମାନଙ୍କୁ ବାଣ୍ଟିଦେଇ ସ୍ୱର୍ଗଦ୍ୱାରକୁ ଗଲେ ।

ଭାଇମାନେ ଏବେ ବି କୁମାର ।

ପରଘରକୁ ଆସିବାରେ ମାସ ଛଅଟା ପରେ ମାଇପେ କୁହାକୁହି ହେଲେ ଜମିଦାରଙ୍କର ନାତି ହେବ । ଲାଜ ଲାଜ ହୋଇ ସେ ସମସ୍ତଙ୍କ ମୁହଁକୁ ଚାହାଁନ୍ତି । ମାସ ଛଅଟା କଟିଛି କିପରି ସେ ଜାଣନ୍ତି ନାହିଁ । ସକାଳୁ ବିଛଣାରୁ ଉଠି ରାତି ଅଧରେ ବିଛଣା ଉପରକୁ ଯିବାଯାଏ ମଣିଷର ଯେତେ ଯାହା କାମ ଝଲଗା ଲୋକ କରି ପାରିବ, ସବୁ

Digitized by PPRACHIN, SOA

କରନ୍ତି ଆଉମାନେ । ଜମିଦାର ଘର ବୋହୂ । ନହୁଣି-ପିତୁଳା ! କିଏ ଦିଏ ଗାଧୋଇ, କିଏ ପିନ୍ଧା ବସନ, କିଏ ମଣୋହି କରାଏ, କିଏ ଦିଏ ସଜାଇ । କିଏ ପୁଣି ହାତ ଧରି ଦୁଧ ଫେଣ ପରି ଧୋବଲା ବାଲିସ ବିଛଣାରେ ବସାଇ ଦେଇ ଯାଏ ।

ସ୍ୱାମୀ ଆସନ୍ତି । ତାଙ୍କୁ ଚାହିଁଦେଲେ ନୟନ-ମନ ପୁଲକି ଉଠେ । ଜୀବନ-ସର୍ବସ୍ୱ । ସୁନ୍ଦର ବଳିଷ୍ଠ ରୂପ । ଗାଆନ୍ତି, ହସନ୍ତି, ହସାନ୍ତି । ଉପେନ୍ଦ୍ରଭଞ୍ଜରୁ କଅଣ ସବୁ ଗୀତ ମୁଖସ୍ଥ କରିଛନ୍ତି ଘୋଷିବୋଲନ୍ତି । ବୁଝେଇ ଦିଅନ୍ତି । ଚଗଲିଆ କୌତୁକ ଲଗାନ୍ତି ! ରାତି ଅଧିକ ହେଲେ ଦୀପ ଲିଭାନ୍ତି ।

ଅସରନ୍ତି ଜଣାରେ ତିନି ମାସ କଟିଗଲା ଚନୋଟି ଆଖି ପିଛୁଳା ପରି । ପିତାଙ୍କର ମରଣ ଦୁଃଖ ବି ମନକୁ ଆଉ ଆସିନାହିଁ ।

ଅଁହୁରି ତିନି ମାସ କଟିଗଲା । ଦେହ ହେଲା ଅସଜ । ଶାଶୂ କହିଲେ, ବୋହୂଙ୍କୁ ଆଉ କୋଠା ଉପରକୁ ନିଅ ନାହିଁ, କଷ୍ଟ ହେବ । ସ୍ନେହ ଓ ସହାନୁଭୂତିର କଥା କେଇ ପଦରେ ସତେ କି ତାଙ୍କର ପ୍ରାଣଦଣ୍ଡର ଆଦେଶ ଥିଲା । ରାତିରେ କେଉଁ ଦାସୀ କି ଦାସୀକନ୍ୟା ସେବା କରିବାକୁ ଅନିଦ୍ରା ହୋଇ ଜଗି ବସିଥାନ୍ତି । ମନ ଯାହାକୁ ଖୋଜେ ସେ ଆଉ ପାଖକୁ ଆସନ୍ତି ନାହିଁ । କେବେ କେମିତି ଦେଖାହେଲେ ହସନ୍ତି । ଏ ଦାସୀଟି ଅଛି କହେ ତା ନାମରେ । ସେ କହେ ଆଉ କାହା ନାମରେ । ଆଶ୍ଚର୍ଯ୍ୟ ଲାଗେ । କାନ୍ଦ ମାଡ଼େ । ବାଇଆ ହେବାକୁ ମନହୁଏ । ବାପ ଭାଇଙ୍କ କଥା ପୁଣି ଶଶୁରଙ୍କ ଢଙ୍ଗ ମନେ ପଡ଼ିଲେ, ମନ ଦିଏ ମନକୁ ସାନ୍ତ୍ୱନା— ମଣିଷଗୁଡ଼ା ଏମିତି । ମନ ପଥରିଆ ଧରେ ।

ନାତି ମୁହଁ ନ ଦେଖି ଶାଶୂ ସେପୁରକୁ ଗଲେ । ସାଂତ ଦିନ ସାତ ରାତି କଷ୍ଟ ପାଇଲା ପରେ ଜନ୍ମ ହେଲା ବଜ୍ରବାହୁ । ମମତା ବଞ୍ଚିବେ କି ମରିବେ ଏ ବିଷୟର ମୀମାଂସା କରିବାକୁ ଯମରାଜଙ୍କୁ ପୁରା ଗୋଟିଏ ବର୍ଷ ଲାଗିଲା । ପ୍ରସୂତି ରୋଗ । ଦିନୁଦିନ ସେ ଦୁର୍ବଳ ହେଉଛନ୍ତି । ବିଛଣା ଛାଡ଼ି ତଳକୁ ଓହ୍ଲାଇଲେ ଦେହ ଥରୁଛି, ଛାତି ଥରୁଛି । ଶଶୁରେ ଔଷଧର ବ୍ୟବସ୍ଥା କରିଛନ୍ତି । ଏଥର ନଟବର ଦୟା ଓ କରୁଣାର ଦୃଷ୍ଟି ନିକ୍ଷେପ କରନ୍ତି । ସ୍ୱାମୀ ରାଜ-କାର୍ଯ୍ୟରେ ବ୍ୟସ୍ତ । ସେବା କରିବାକୁ ଅନ୍ୟମାନେ ଅଛନ୍ତି । ପାଖକୁ ଗଲେ କାହିଁକି-ଆଇଛ-ଶୁଣେ ଦୃଷ୍ଟିରେ ଉପଦେଶ—ଉପରକୁ ଉଠିଲ ? ଦୁର୍ବଳ ଦେହ, ଶୋଇବ ଯାଅ ।

ଏକମାତ୍ର ଆନନ୍ଦ ବଜ୍ରବାହୁଟି । ହସ, ଖେଳ, ଦିଗୋଟି କଥା । ଗେଲ । ସୁନ୍ଦର ହୋଉଛି । ସ୍ୱାସ୍ଥ୍ୟବାନ୍ ଶିଶୁ । ଶଶୁରଙ୍କ ଖେଳ-କଣ୍ଢେଇ ।

ଯମରାଜ ମମତାକୁ ଛାଡ଼ି ଧରିଲେ ବୃଦ୍ଧ-ଜମିଦାରଙ୍କୁ । ସେ ହେଲେ ବିଛଣା-ଲଗା ସ୍ୱାମୀ ନେଲେ ଜମିଦାରୀର ଦାୟିତ୍ୱ । ବାହାରର କାମ । ନିଜେ ଶଶୁର

Digitized by PPRACHIN, SOA

ମମତାଙ୍କୁ ପାଖକୁ ଡାକ ଭଣ୍ଡାର-ଘର ଓ ବାକ୍ସ ଟ୍ରଙ୍କର ଦ୍ବବ ଦେଲେ । ଶଶୁରଙ୍କ ସେବା ଓ ଘରର ଦାୟିତ୍ଵ ହାତକୁ ନେଲେ ବ ସେ ପକ୍କା ଗୃହଣୀ ହୋଇ ପାରୁ ନ ଥିଲେ ।

ସ୍ୱାସ୍ଥ୍ୟ ବଦଳ ଆସୁଛୁ । ନୂଆ କବରାଜଙ୍କ ବଟିକା ଖାଇ ଦେହ ଭଲ ହୋଇଗଲାଣି । ସ୍ୱାମୀ ତାଙ୍କୁ ଘୃଣା ନ କଲେ ବ ସ୍ନେହ କରନ୍ତ ନାହିଁ । ଅବହେଳା କଣ୍ଟବାର ଉପାୟ ନାହିଁ । ନଜର ଅଧିକାର ସେ ବୁଝି ପାରଛନ୍ତ । ପୁଣି ଦୋ'ତାଲା ଉପରେ ସ୍ୱାମୀଙ୍କ ପାଖରେ ନଜର ଆସନ ସେ ଦୃଢ଼ କର ପାରୁଛନ୍ତ । ପୁରୁଣା ଦାସୀମାନେ ପ୍ରମାଦ ଗଣିଲେଣି । ତାଙ୍କର ରୁଗ୍ଣ ଅବସ୍ଥାରେ ବବଧ ଜାତର ଯେଉଁ ଦାସୀ-କନ୍ୟାମାନେ କେବଳ ତାଙ୍କର ସେବା କରବାକୁ ଅଣା ହୋଇଥିଲେ ସେମାନେ ବଦାୟ ହୋଇ ଗଲେଣି । ଯେଉଁ କେତେଜଣ ଜନମ ହେବ ବୋଲି ଅଭିଯୋଗ କଲେ ସେଇମାନେ ଘଣ୍ଟିଛନ୍ତ ଶାସ୍ତି । ସେମାନେ ରହନ୍ତୁ । ସୁତ୍ରତର ଖର-ଭଉଣୀ-ମାନେ ଆକ୍ଷେପ ଦେଖନ୍ତୁ ।

ମମତା ପୁତ୍ରବତୀ ହେବେ । କଥା ପ୍ରଘଟ ହେଲାଣି । ତଥାପି ସେ ଦୋ'ତାଲା ଉପରୁ କୋଠଘ ବର୍ଜନ କର ନାହାନ୍ତ । ଶଶୁର ସ୍ୱର୍ଗାରୋହଣ କଲେ । କୁଳର ପ୍ରଥା ଅନୁସାରେ ଅଭିନବ ରଣସିଂହଙ୍କର ଅଭିଷେକ ହେଲା । ପାଖରେ ମମତା ଦେବୀ ।

ପୁଅଟିଏ ଜନମ ହେଲା-ସୁରତ ରଣରଙ୍କା, ସେ ମରୁ ମରୁ ବଞ୍ଚିଲେ । ପ୍ରସୂତ ରୋଗ । ସ୍ୱାମୀ ଗଲେ ଦାଣ୍ଡ ଘରକୁ । ଦାସୀମାନଙ୍କର ସେବା ଓ ତକାନ୍ତ । ବଷ-ପ୍ରୟୋଗର ଚେଷ୍ଟା । କେବଳ ଅନନ୍ତ ହିଁ ରକ୍ଷା କଲେ ।

ନଟବରର ଆନୁଗତ୍ୟ ଓ ଶ୍ୱଶୁରଙ୍କର ସାନ ରାଣୀଙ୍କ ସତର୍କତା ସେବାଯତ୍ନ ଫଳରେ ସେ ପୁଣି ଆରୋଗ୍ୟ ହୋଇ ଉଠିଲେ । ହେଲେ ଘରର କର୍ତ୍ତ୍ରୀ ! ସେ ମଧ୍ୟ ଦୋତାଲାରେ ତାଲା ପକାଇ ତଳକୁ ଓହ୍ଲାଇଲେ ।

ଅଳକା, ଗୋଳାପ, ତରଙ୍ଗିଣୀ, ତରଳା ଏମାନଙ୍କୁ ନେଇ ମଟି ଖଞ୍ଜାରେ ସେ ସୁଖରେ ରହନ୍ତୁ ନୂଆ ମା, ଏ ଖଞ୍ଜାରେ ଗୋଡ଼ ଦେଲେ ସେମାନଙ୍କ ଗୋଡ଼ ଭାଙ୍ଗିଦେବ । ତା'ଙ୍କଠି ମୋର ପ୍ରୟୋଜନ ନାହିଁ । ପିଲା ଦଶଟି ମଣିଷ ହୋଇ ଯସାରରେ ମୁଣ୍ଡ ଟେକ ଚାଲନ୍ତୁ, ଏଇ କଲ୍ୟାଣ କର—

ମମତାଙ୍କ ଆଖିରେ ଲୁହ !

ଶତ୍ରୁଶଲ୍ୟଙ୍କର ବ୍ରାହ୍ମଘର । ମଧ୍ୟବର୍ତ୍ତୀ ଘରର ଦ୍ୱିତୀୟ ସ୍ଥଳୀର ଆଗମନ । ସନ୍ଧ୍ୟାର ଜନମ । ଫୁଲନାଡ଼ କର ଟେକନେଲେ ମମତା । କହିଲେ, ଏଥିରୁ ଗୋଟିଏ ମୋର ଲୋଡ଼ା ଥିଲା ନୂଆ ମା, ତନ ପିଲାର ମା ତୁ, ରଣଗଡ଼ର ରାଣୀ । ମୋ ପଛକୁ ମୋର ସାନ ଭଉଣୀ ସ୍ଥରଣ୍ଟ । ରଣସିଂହେ ଏଥର ମୋ'ର ରଣ ଦୁର୍ଗା ମୂର୍ତ୍ତି ଦେଖିବେ ଯେ —

Digitized by PPRACHIN, SOA

ଦେଖିପାରୁଥିଲେ ରଣସିଂହ । ସୁରଜ ରଣଜିଙ୍କର ଜନମ ପରଠାରୁ ମମତା ଦେବୀଙ୍କ ସଙ୍ଗେ ତାଙ୍କର କ୍ୱଚିତ୍ ଦେଖା ହୁଏ । କାର୍ଯ୍ୟ ଉପଲକ୍ଷରେ ଦେଖା କରିବା ଆବଶ୍ୟକ ପଡ଼ିଲେ ସେ ଖବର ପଠାଇ ତାଙ୍କ କୋଠାକୁ ଆସନ୍ତି । ଅଳପକରେ କଥା ଛୁଡ଼େ ।

ମାଲ୍ହାଳର ରାଜସ୍ୱ ବାକି ।

ଖଜଣା ଆଦାୟ ହେଉନାହିଁ କି ?

ପ୍ରଜାମାନେ ଅବାଧ୍ୟ ହେଉଛନ୍ତି ।

ଏତେ ଗୁମାସ୍ତା, ମୋହରିର, ବରକନ୍ଦାଜ, ପୁରୋହିତ, ପଲେ ଦାସୀ ପୋଷା ହେଉଛନ୍ତି କାହିଁକି ?

ସେ କୈଫିୟତ ମୁଁ ଦେବାକୁ ଚାହୁଁନାହିଁ । ମୋର ଟଙ୍କା ଲୋଡ଼ା । ଚାବି ଦେଇଦିଅ ।

ଟଙ୍କା ନାହିଁ କି ମୁଁ ଚାବି ଦେବି ନାହିଁ ।

ମମତା ଅନ୍ୟଆଡ଼େ ଚାଲି ଯାଆନ୍ତି । ରକ୍ତରଞ୍ଜିତ ଚେହେରା କରି ଆଖିକି ରଣସିଂହେ ଫେରନ୍ତି ।

ତନେ ସେ କଟାକ୍ଷ କରୁଥିଲେ । ବଲାତ ମଦ ନିଶାରେ ଆଖି ଦୁଇଟି କୁମ୍ଭାଟୁଆ ଆଖି ପରି ରଙ୍ଗ ଦିଶୁଛି । କହୁ କହୁ ଚହିଁକି ଆସିଲେ ।

ଧାଇଁ ଆସିଲେ ଶତ୍ରୁଶଲ୍ୟ

ସାଇ !

ଘଡ଼ଘଡ଼ିଆ ଡାକ ଶୁଣି ରଣସିଂହେ ଚମକି ପଡ଼ିଆ ହେଲେ । ବାଁ ହାତଟା ଜଣ ସାଉଁଳୁଥାଏ ।

ଶତ୍ରୁଶଲ୍ୟ ପାଖକୁ ଆସି ଧକ୍କାଇଲେ, ଯେଉଁଦିନ କୁଳ ଲକ୍ଷ୍ମୀ ମମତା ଦେବୀଙ୍କ ଦେହରେ ଟିପ ଚୁଇଁବ ସେଇଦିନ ଶତ୍ରୁଶଲ୍ୟର ଦୁଇ ବାହୁର କରାମତି ବୁଝିବ ।

ନଟିଆ !

ଶତ୍ରୁଶଲ୍ୟ ବୋଲି ଡାକନ୍ତୁ । ନା, ଆଜିଠାରୁ ମୁଁ କେହି ବାନ୍ଧବକେନ୍ଦ୍ର । ନ୍ୟାୟ ହେଉ କି ଅନ୍ୟାୟ ହେଉ, ଖୁନ୍ କର ଜେଲ୍ ଯିବେ କି ମର୍ଡର କର ଫାଶି ପାଏ । ଆପଣଙ୍କର ଆଦେଶ ମୁଁ କେବେ ଅମାନ୍ୟ କରି ନାହିଁ । ଅମାନ୍ୟ କରିବ ନାହିଁ । ଆପଣ ଜମିଦାର । ମୋ'ର କେବଳ ମୁଠିଏ ଖାଇବା ଓ ଖଣ୍ଡିଏ ପିନ୍ଧିବାର ଅଧିକାର । ଆପଣଙ୍କର ସାମାନ୍ୟ ଜଣେ ଗୁମାସ୍ତା କି ସିପେଇଠାରୁ ମୁଁ

Digitized by PPRACHIN, SOA

ସ୍ଥାନ । ସେଥିକି ମୋ'ର ଦୁଃଖ ନାହିଁ । ଚଗ୍ରଚରନ୍ତ ପ୍ରଥାରୁ ମୁଁ ମୁଣ୍ଡ ପାତି ଗ୍ରହଣ କରିଛି । ଆପଣ ବ ଚଗ୍ରଚରନ୍ତ ପ୍ରଥାର ସମ୍ମାନ ରଖନ୍ତୁ ।

ଉପଦେଶ ଶୁଣିବ ତୋ'ଠୁଁ ?

ଆଜ୍ଞାର ଶୁଣନ୍ତୁ । ସେଦିନ ରଣଗଡ଼ର ଲକ୍ଷ୍ମୀଙ୍କ ଦେହରେ ଟିପ ଗ୍ରେକେ, ରଣଚଡ଼ରୁ ଲଙ୍କାଗଡ଼ ହନୁ ପୋଡ଼ିଲା ପରି ପୋଡ଼ି ଧ୍ୱଂସ କରିବ । ରଣସିଂହଙ୍କୁ ଜବାବ୍ ଦେଇ ଅପମାନ ଦେଖାଇଥିବାରୁ ବୃନ୍ଦାବନ ପଟେଲ୍ର ତାଙ୍କୁ ଫାଶିଦେଇଥିଲ । ରଣସିଂହଙ୍କ ଦେହରେ ହାତ ମାରିଥିଲି ବୋଲି ମୁଁ ନରହତ୍ୟା କରିବାକୁ ପଛାଇ ନାହିଁ ।

କିଏ ତୋତେ ଖଲାସ କରେଇଲା ?

ଆପଣ । ସେଥିପାଇଁ ମୁଁ କୃତଜ୍ଞ ନୁହେଁ ।

ବୁଝିଲି ।

ରଣସିଂହ ଫେରିଗଲେ ।

ଜାଇ-ବୋହୂର ଘର ରଣସିଂହଙ୍କର ପ୍ରବେଶ ନିଷିଦ୍ଧ ।

ବଜ୍ରବାହୁ ମଣିଷ ହେଉଛି । ରଣରଙ୍ଗା ବଳିଷ୍ଠ ହେଉଛି । ସନ୍ଧ୍ୟା ଗୃହଲକ୍ଷ୍ମୀ । ଗୁଲୁଗୁଲୁ କଥା କହୁଛନ୍ତି ।

ଘରଖାର ହସିଲା ମୁହଁ । ମମତା ନିଜ ହାତରେ ସଜାଇ ଦେଉଛନ୍ତି । ହସି ହସି ସ୍ବହାନ୍ତ ଦେଇ ପୂର୍ଣ୍ଣିମାର ଚନ୍ଦ୍ରମା ମୁହଁକୁ । ନିଜକୁ ସେ ଦେଖନ୍ତି ସେଇଠି । ସେଇ ମୁହଁଟିକୁ ଛଟପଟ ମନ ଟେକେ ଗେଲ କରେ । ଆସ୍ୱାରେ ଆସେ ତୃପ୍ତି । ଓଠ କେବଳ ଥରେ ।

ବଜ୍ରବାହୁ କଣ୍ଟରେ ପାଠ ପଢ଼ୁଛି । ରଣରଙ୍ଗାର ପାଠ ହେଉ ନାହିଁ । ଦୁଷ୍ଟ ହେଉଛି । ହେଉ, ଚିନ୍ତା ନାହିଁ । ଜମିଦାରର ଦ୍ୱିତୀୟ ପୁଅ ଏମିତି ହେବା ଲୋଡ଼ା । ରଣସିଂହଙ୍କୁ ସେ ଭୟ କରେ ନାହିଁ । ସାଖକୁ ଯାଏ । ପୋଥିପତ୍ର ଛିଣ୍ଡାଏ । କଣ ଓଟାରେ । ପୁରୋହିତଙ୍କର କୁଣ୍ଡଳ ଟାଣେ । ବାଡ଼ି ଧରି ଦାସୀମାନଙ୍କୁ ପିଟେ । ସେ ଦାଦ ଓଲା ଆଣିଛି ।

ମା, ବାପା ଡାକୁଛନ୍ତି ।

କହିଦେ, ମୁଁ ଯାଇ ପାରିବ ନାହିଁ । ସୁସନ୍ଧ୍ୟାର ଦେହ ଭଲ ନାହିଁ ।

ନାଇଁ ରେ ଆ । ତତେ ଡାକିନେବାକୁ ସେ କହୁଛନ୍ତି ।

Digitized by PPRACHIN, SOA

ବାର ବର୍ଷର ଟୋକା ରଣଜିତ୍‌। ପିଲାଟି କାନ୍ଦି ନାହିଁ। ବୁଦ୍ଧି ବି ହୋଇ ନାହିଁ। କାନ ଧରି ଉଠାଉଛୁ। ଶିକ୍ଷା ହେବ ପଛରେ।

ସ୍ୱାମୀ ଏକା ଅଛନ୍ତି। ପଲଙ୍କ ଉପରେ ମୁହଁ ଗୁଞ୍ଜାଇ ବସିଛନ୍ତି। ହାତରେ କଅଣ କାଗଜ ଧରିଛନ୍ତି।

ବସ।

ସୁସନ୍ଧ୍ୟା ଅସ୍ତ ହେଉଛି। କାହିଁକି ଡକେଇଲ ?

ବସିଲେ ସିନା କହିବି।

ଠିଆ ହେଲେ ବି କଥା ଶୁଣିବ ଯେ ! କୁହ।

ବଜ୍ରାଘାତରେ କାଠମଣ୍ଟ ଭଳି ସ୍ଥିର ରହିଲେ ରଣସିଂହେ। ସ୍ରେଷ୍ଠଲୋକର ଝିଅ ! କେଉଁ ଅବସ୍ଥାରେ କଥା କହୁଛି ! ରଣସିଂହଙ୍କର ମନ ଚଳଚଳ ହେଲା। ହାତ ହେଲା ଖଲଖଲ। ଶତ୍ରୁଶଲ୍ୟଙ୍କୁ ହିଁ ତାଙ୍କର ଶଙ୍କା; ନୋହିଲେ ପିଠି ବଙ୍କା ନ କରି ସେ ଆଜି ଶୁଅନ୍ତେ ନାହିଁ।

ହଉ, ତମେ ଯାଅ—

ମମତା ଫେରିବାକୁ ଉଦ୍ୟତ ହେଲେ।

ଶୁଣ।

ମମତା ମୁହଁ ଫେରାଇଲେ।

ରଣସିଂହ କହିଲେ, ଆମର ପୂର୍ବପୁରୁଷର କୁଳଦେବତା ଗୋପୀକୃଷ୍ଣ ଓ ତାଙ୍କର ସବୁ ସମ୍ପତ୍ତି ଦେବୋତ୍ତର ବୋଲି ନେଇଛନ୍ତି। ଯାଜପାଖାକୁ ଗ୍ରାମରୁ ବୃନ୍ଦା ହଠାତ୍ ଏ ବୋଲି ଗୋପୀକୃଷ୍ଣ ସମସ୍ତଙ୍କର ଠାକୁର ବୋଲି ପ୍ରମାଣ ହେଲା।

ଠାକୁର କଅଣ ସମସ୍ତଙ୍କର ନୁହନ୍ତି କି ?

ଏଣିକି ଗ୍ରାମ କମିଟି ତାଙ୍କର ଦାୟିତ୍ୱ ନେବେ।

ଠାକୁରଙ୍କ ପୂଜା କି ଦର୍ଶନ ପାଇଁ ଆମକୁ ଛାଡ଼ିବେ ତ ?

ହଉ, ତୁମେ ଯାଅ —

ମମତା ଫେରି ଆସିଲେ। ମନ କହିଲା, ଠିକ୍ ହୋଇଛି। ମଦ୍ୟପ ଓ ଲମ୍ପଟର କବଳରୁ ଠାକୁର ରକ୍ଷା ପାଇଛନ୍ତି। ହରିଜନ ମନ୍ଦିର ପ୍ରବେଶ ବେଳେ କି ଭୀଷଣ କାଣ୍ଡଟା ସେ କରିଥିଲେ ! ପାଣ ଟୋକା ବୋଲି ନନ୍ଦିଆର ହାତ ଗୋଡ଼ ଭାଙ୍ଗି ଦେଇଥିଲେ। ସେମାନେ ତ ଅଖାଦ୍ୟ ଆଉ ଖାଆନ୍ତି ନାହାନ୍ତି। ମଦ ପାଣି ଛୁଅନ୍ତି ନାହାନ୍ତି। ପରିଷ୍କାର ପରିଚ୍ଛନ୍ନ ହେଲେଣି। ମାଇପେ ତାଙ୍କର ସଫାସୁତୁରା ହେଲେଣି। ଠାକୁରଙ୍କ ଆଗରେ ସମସ୍ତେ ସମାନ। କାହିଁକି ସେମାନେ ମନ୍ଦିରରେ ନ ପଶିବେ ?

ଶତ୍ରୁଶଲ୍ୟଙ୍କର ଅକାଳ ମରଣ ! ଆହା, ଅନାଥିନୀ ଭାରତୀ ! ଆଖିରୁ ଝରଣା ବନ୍ଦ ହୋଇ ନାହିଁ।

Digitized by PPRACHIN, SOA

ଅଳକା ପ୍ରଭୃତି ଦାସୀମାନେ ଯାହ ଯାହ ଡାକଲେ । ଏଥର ଆଉ ତାହାକୁ ଡର ? ଉପରେ ପଡ଼ି କଳିଆ କରିବାକୁ ଧାଇଁ ଆସୁଛନ୍ତି । ମମତାଙ୍କର ବଳ ଘଟିଛି । ଜମିଦାରୀ ଉଠିବ ଉଠିବ ବୋଲି ଶୁଣାଯାଉଛି ତ !

ହଁ । ସୁବ୍ରତ ବଡ଼ ହେଲଣି । ପାଠ ଗୁଡ଼ାଏ ପଢ଼ିଲଣି । ବାପାଙ୍କୁ ବି ପରମର୍ଶ ଦେଉଛି । ସୁବ୍ରତ ବି ବଡ଼ ହେଲଣି । ରଣସିଂହ ସାବଧାନ ହେଲେଣି । ସ୍ତ୍ରୀଙ୍କ ଉପରେ ବିରକ୍ତ ହେବାର ସାହସ ନାହିଁ ।

ଜମିଦାରୀ ଉଠିଲା, ଶୁଣିଲ ତ ?

ଏକା ଆମର ?

ହଉ, ତୁମେ ଯାଅ ।

ଗୁମାସ୍ତା ତହସିଲଦାରଙ୍କ ଦେଖା ନାହିଁ । ଜାଗିରଖିଆ ବରକନ୍ଦାଜ ବି ଆଉ ଆସୁ ନାହାନ୍ତି । ଅଳକା, ମେନକା, ଯମୁନା କଏ କୁଆଡ଼େ ଛୁ । ନୂଆ ମା'ଙ୍କ ହାତରେ ଠେଙ୍ଗା, ମମତାଙ୍କ ହାତରେ ଗୁଞ୍ଜୁଣି । ରଣସିଂହଙ୍କ ନଶ ମୋଡ଼ୁଛି । ବଜ୍ରବାହୁ କଟମଟ କରି ଚାହିଁଛି ।

ରଣସିଂହେ ଓଠ କାମୁଡ଼ିଲେ ।

ରଣସିଂହଙ୍କର ସବୁ ତର୍କ ବିଫଳ ହେଲା । ଆଳୁଅପଦାର କେଶବ ମହାପାତ୍ର, ସେ ଦିନେ ତାଙ୍କର ଆଶ୍ରିତ ଗୁମାସ୍ତା ଥିଲେ । ତାଙ୍କର ଝିଅ ଆଉ ହେବ ରଣଗଡ଼ ଜମିଦାର ବଂଶର ବୋହୂ ! ଏପରି ହାସ୍ୟାସ୍ପଦ ପ୍ରସ୍ତାବ ପଠାଇବାକୁ ମହାପାତ୍ରେ ସାହସ କଲେ କିପରି ? ମମତା ବା ସମର୍ଥନ କଲେ କିପରି ? ତାଙ୍କର ବିନା ଅନୁମତିରେ ପ୍ରସ୍ତାବ ଆଗେଇଛି । ଜାତକ ମିଳିଛି । ଦିନ ବାର ସ୍ଥିର ହୋଇ ସାରିଲଣି ।

ଝିଅ ସୁନ୍ଦର ଓ ଗୁଣବ ହୋଇପାରେ । ମହାପାତ୍ରଙ୍କୁ ଅବାଧ୍ୟତା ଦୋଷରୁ ବରଖାସ୍ତ କରିଥିଲେ । ବେପାର କରି ସେ ବଡ଼ଲୋକ ହୋଇ ଗଲେଣି । ତଥାପି ସେ ଦିନେ ତାଙ୍କର କର୍ମଚାରୀ ଥିଲେ । ରଣସିଂହେ ମହାପାତ୍ରଙ୍କ ସଙ୍ଗେ ଏକ ଆସନରେ ବସିବେ ? ଅଭିମାନ ଓ ଅପମାନର ଧାରଣାରେ ଦେହ ଥରି ଉଠୁଛି । ପୁଣି, ଆଳୁଅପଦା ରଣ-ଗଡ଼-ଜମିଦାରୀର ଗୋଟିଏ ଗାଁ — ବାଟ ଦୁଇ ମାଇଲ୍ ହେବ । ଜମିଦାରୀ ଯଦି ଉଠି ନ ଆନ୍ତା ମହାପାତ୍ରଙ୍କର ମଜାଟା ସେ ଦେଖିଥାନ୍ତେ — ।

କେବଳ ମମତାଙ୍କ ଦୋଷ ଦେଲେ ଚଳିବ ନାହିଁ । ଏଥିପାଇଁ ବଜ୍ରବାହୁ ମଧ୍ୟ ଦାୟୀ । ପାଠପଢ଼ି ବେକାର ହୋଇ ଘରେ ବସିଛି । ମାଆଙ୍କର ପ୍ରସ୍ତାବରେ

Digitized by PPRACHIN, SOA

ସେ ହୁଏତ ଏକମତ ହୋଇଛନ୍ତି । ନୋହିଲେ, କେଉଁ ସାହସରେ ମମତା ସ୍ଥିର ଜବାବ ଦେବାକୁ ଅଣ୍ଟ ଦମ୍ଭନ୍ତି ? ମମତା କଥା ଶୁଣିବେ ନାହିଁ । ସେ ପରାମର୍ଶ ଲୋଡ଼ି ନ ଥିଲେ । ସେ ତାଙ୍କର ପ୍ରସ୍ତାବ ଓ ସିଦ୍ଧାନ୍ତ ଜଣାଇ ଦେବାକୁ ଡକାଇଥିଲେ । ସବୁ ତର୍କ ଶୁଣି ଶେଷକୁ ସେ କହିଲେ, ମୁଁ ଯାହା ସ୍ଥିର କରିଛି ତାହା ହିଁ ହେବ । ବାହାଘରର ଆୟୋଜନ କର ।

ସେ ଭୁଲି ଯାଇଛନ୍ତି । ତାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାର ଉପାୟ ନାହିଁ । ସୈନ୍ୟ-ସାମନ୍ତ ନାହାନ୍ତି । ଯେଉଁମାନେ ଅଛନ୍ତି, ସେମାନେ ସମସ୍ତେ ତାଙ୍କର । ଅନ୍ୟ ଉପାୟରେ ପ୍ରତିଶୋଧ ନେଇ ହେବ ନାହିଁ । ଅଳକା ଓ ମେନକାମାନେ ତାଙ୍କର ଚୌହଦ୍ଦି ସନ୍ଧୁ ନ ପାରି ପଳାଇଛନ୍ତି । ଏ ଉଆସରେ ଦାସୀ-କନ୍ୟାଙ୍କର ପ୍ରବେଶ ନିଷିଦ୍ଧ ।

ଦେବକ ରାଧା ରାଧା ଗୁମ୍ଫା ଦେଖିଲେ ସେ ମୁଣ୍ଡ ଟେକି ହସନ୍ତି । ଫୁଲମୁଣ୍ଡି ପ୍ରତି ତାଙ୍କର ଧ୍ୟାନ ନାହିଁ । ମନ୍ଦମୂର୍ତ୍ତ ମାଳାକୁ ସେ ଘୃଣା କରନ୍ତି । ଦୀକ୍ଷା ନେବା କଥା ଥରେ ଉଠାଇଥିଲେ । ଉତ୍ତର ଶୁଣିଲେ,— ଆଉ ବୟସ ମୋର ନାହିଁ, ପାରିବି ପୂଜା ଉପୁଜାଇ । ରାଧାକୃଷ୍ଣଙ୍କର ପ୍ରେମଗାଥା ଅବେଅଧେ ଶୁଣାଇବାକୁ ଚେଷ୍ଟା କରିଥିଲେ । ଉତ୍ତର ପାଇଲେ, ତେମେ କୃଷ୍ଣ ସାଜିଲେ ମୁଁ ରାଧା ହୋଇ ପାରିବି ନାହିଁ । ଆଉ ମୁଁ ରାଧା ହେଲେ ତମେ ହେବ ଚନ୍ଦ୍ରସେଣା । ତମ ଗୁରୁଦେବଙ୍କୁ ଲେଖିଦିଅ ।

ପ୍ରେମାତୁର ହୋଇ ଅହେତର୍କ ଅବସ୍ଥାରେ ଥରେ ହାତ ଧରି ପକାଇଥିଲେ । ସେ ହାତଟାଣି ନେଇ ଦୂରେଇ ଠିଆ ହେଲେ । କହିଲେ, ବଦରଧଚନ୍ଦ୍ରାମଣି ପଢ଼, ଉପକଲ୍ଲୋଳ ପଢ଼ । ସାରଙ୍ଗଜୀବନ ମେଘଆ ପଢ଼ି ତମକୁ ମୁଁ ସ୍ମରଣ କରି, ଧ୍ୟାନ କରି, କଟାଇଛି ।

ହେ ଦେଉଁ ହସ ! ସଚ୍ଚିତ କି ସେ ପାଗଳ ହୋଇଯିବେ । ଦେହର ବସନ ଖସି ପଡ଼ୁଥାଏ । ପରିପୂର୍ଣ୍ଣ ଯୌବନ । ଲୋଭନୀୟ ସ୍ୱାସ୍ଥ୍ୟ । ରୂପ ଯେତେ କି ଜଳୁଛି ଦାଉ ଦାଉ । ବହୁ ବର୍ଷ ହେଲା ଏଇ ଦେହ ଓ ରୂପସମ୍ଭାର ପାଖରୁ ସେ ଦୂରେଇ ଅଛନ୍ତି । ହାତ ବଢ଼ାଇଲେ ବି କେହି ଧରା ଦେଉ ନାହାନ୍ତି ।

ବିଷ ଦେବାକୁ ସେ କହି ନ ଥିଲେ । ଅଳକା ନିଜେ ଦେବାକୁ ଚେଷ୍ଟା କରିଥିଲା । କେଜାଣି କୌଶଳରେ । ବିଷପାତ୍ର ଧରା ପଡ଼ିଲା କିନ୍ତୁ କିଏ ଦେଲା, କାହାକୁ ଦେବାକୁ ଚେଷ୍ଟା କରାଯାଉଥିଲା, ପ୍ରମାଣ ମିଳିଲା ନାହିଁ । ସମସ୍ତେ ସନ୍ଦେହ କଲେ, ଅଳକା ହିଁ ହୋଇଥିବ । ସେ କେବେ ଏ ବିଷୟରେ ଚର୍ଚ୍ଚା ବି କରି ନାହାନ୍ତି । ଅତି ରୁଗ୍ଣ ମମତାଙ୍କୁ ଦେଖିଲେ ଦୟା କି ସହାନୁଭୂତି ମନକୁ ଆସେ ନାହିଁ । କର୍ତ୍ତବ୍ୟର ଧାରଣା ମନରେ ସ୍ଥାନ ପାଏ ନାହିଁ । ସେ ଘୃଣାର ଜୀବ ।

Digitized by PPRACHIN, SOA

ରଣଗଡ଼ ଜମିଦାର ବଂଶର ଉତ୍ତରାଧିକାରୀଙ୍କୁ ଗର୍ଭରେ ଧରିବାକୁ ତାଙ୍କର ଆଗମନ । ତାଙ୍କଠି ସନ୍ତାନ ସେ ସମ୍ଭାଳିବାକୁ ଆଣିଯାଉଛନ୍ତି । ଆଉ କି ପ୍ରୟୋଜନ ତାଙ୍କଠାରେ ? ପ୍ରେମିକା ସେ ନୁହନ୍ତି । ପ୍ରେମ କଅଣ ତାଙ୍କୁ ଜଣା ନାହିଁ । ଜଅଁଳ ମାଟି ସେଥିରେ ଗଢ଼ା ହୋଇଥିବା ପ୍ରତିମାଟିଏ । ଆଉମାନେ ସଜାଇ ଦେଇଛନ୍ତି । ଅନ୍ୟମାନେ ଉଠାନ୍ତି ବସାନ୍ତି । କଥା କହି ଶିଖାନ୍ତି । ହସାନ୍ତି । ତାଙ୍କର ନିଜତ୍ୱ ନ ଥାଏ । ମନରେ ଉଚ୍ଛାସ ଆବେଗ ସେ ଜଗାଇ ପାରନ୍ତି ନାହିଁ । ଦେହର ଅନଳରେ ପ୍ରଲେପ ଦେଇ ବୋଲି ପାରନ୍ତି ନାହିଁ । ସେ ନଟେ ଶୀତଳ ।

ଅଳକା, ମେନକା, ଯମୁନା – ରୂପ ଯୌବନରେ ଊଣା ନୁହନ୍ତି । ବିଶେଷତଃ ଅଳକା । ରାଜାର କନ୍ୟା ସେ ନୁହେଁ । ଜମିଦାରର ଗୃହିଣୀ ସେ ନୁହେଁ । ସେ ଗୁହିଁ ଜାଣେ, ଭ୍ରୂଲତା ନଚାଇ ମୁଣ୍ଡ ଦୋହଲାଇପାରେ । ନାକଚୂଡ଼ା ଫୁଲାଇ-ପାରେ । ଓଠରେ ଭଲ ଝଲକା ହସ । ସ୍ପନ୍ଦନ । ବିଭିନ୍ନ ପ୍ରକାର ଦେହ-ଦୋହଲ ଗୁଳ – ଲାଲାୟିତ । ଲକ୍ଷଣ ରୂପ ବାନ୍ଧି ହେବ ନାହିଁ । ସାବଧାନତା । ସାଧାରଣ ବେଶ-ଭୂଷା । କେତେବେଳେ ଦେହର କେଉଁ ଅଂଶରେ ଅସାବଧାନତା ଲୋଡ଼ା, ସେ ଜାଣେ । ଗେହ୍ଲେଇ କଥା । ଧରିଦେବାର ଧରା ନ ଦେବା ଢଙ୍ଗ !

ସେ ଥିଲା ପ୍ରେମିକା । ଅଧିର ଚେତବର୍ଗ ଗୃହିଣୀ ମନରେ ଅଗ୍ନି ସଂଯୋଗ କରେ । ସୁରାପାତ୍ର ସେ ମୁହଁରେ ଲଗାଏ । ଗେହ୍ଲେଇ କହେ, ଆଉରି ଟୋକେ, ମୋ' ରାଣ ! ନ ପିଇଲେ ଅଭିମାନ କରି ବୋକ ହୁଏ । ହାତ ବଢ଼ାଇଲେ ଦୁରେଇଯାଏ । ଦତରୁଷିଲି ହୋଇ ଠିଆ ହୁଏ । କେମିତ ସେ ଠିଆ ହୁଏ ? କଅଣ ତା'ର ଢଙ୍ଗ ! ମେନକା, ଯମୁନା –

ରାଧା ରାଧା ନାମ ଗ୍ରୁପା ଦେହ୍ନଟା ଶୀତେଇ ଉଠିଛି । ଅଳକା ଆସି ସତେ କ ଆଗରେ ଠିଆ ହୋଇଛି । ଅପ୍ରତିହତ-ଯୌବନା, ଅପରାଜିତ ପ୍ରେମିକା ରଣସିଂହଙ୍କର ଆଙ୍ଗୁଠି ହୋଇଛି ଅଚଳ । ମାଳା ଘୂରୁନାହିଁ । ହରିକୀର୍ତ୍ତନ-ନଳଟଣ ଅଳୁଅ ସ୍ଥିର ହୋଇ ଗୁହିଁ ରହିଛି । କେତେ ପୋକ ସେଇ ଆଲୁଅର ଚାରିପାଖେ ବୁଲୁଛନ୍ତି । କାହିଁ ସେ ଅଳକା, ମେନକା, ଯମୁନା ଓ ଅନ୍ୟମାନେ ? କଷ୍ଟାପିତା ! ସେ ବାଧା ଦେଇ ପାରି ନାହାନ୍ତି । ଶଙ୍କଳେଖର ନିଧନ ପରେ ରଣଙ୍କା ତା'ର ସ୍ଥାନ ପୂରଣ କରିଛି । ବଜ୍ରବାହୁ ମୁହଁକୁ ଗୁହିଁଲେ ଟିକିଏ ସଂକୋଚ ଲାଗେ । ମମତାଙ୍କ ଦୃଷ୍ଟିରେ ଜଳିଲ ଯେଉଁ ସନ୍ଦେହ, ଗୁହିଁଦେଲେ ଭୟ ହୁଏ ।

କନ୍ତୁ ମହାପାତ୍ରର ଝିଅ ଏ ଘରର କୁଳବଧୂ ହେବ, ଏ କଥା ସେ ସହି ପାରିବେ ନାହିଁ । ବଜ୍ରବାହୁକୁ ସେ ବାରଣ କରିବେ । ସେ କେବେ ଅବାଧ ହେବ ନାହିଁ ।

Digitized by PPRACHIN, SOA

ହରେ ରାମ କୃଷ୍ଣ, ହରେ ରାମ କୃଷ୍ଣ—ରଣସିଂହେ ପୁଣି ମାଳା ଗଡ଼ାଇଲେ । ଡାକ ଶୁଭିଲେ—ନାଥ, ନାଥ— । କେତେବେଳେ ଥରେ ଡାକଗୁଡ଼ିକ ଘରେ ମଧ୍ୟ ନାଥ ଭଣ୍ଡାରୀ ବୁଢ଼ା ଜବାବ ଦେଲା ନାହିଁ । ସମସ୍ତେ ଘରତ୍ୟାଗ କରିଛନ୍ତି । କେବଳ ନମକ୍ ସଚ୍ଚା ନାଥିଆ—ତାଙ୍କର ସବୁ ସୁଖ-ଦୁଃଖ, ଆନନ୍ଦ ନିରାନନ୍ଦର ସାଥୀ—ତାଙ୍କୁ ତ୍ୟାଗ କରିପାରି ନାହିଁ । ସେ ବି ଏବେ ଭକ୍ତ ହୋଇଛି । ଦେହରେ ଛାପା ମାରିଛି । କଣ୍ଠିପୁ ଲେଇ । ମାଳା ଧରିବାକୁ ହାତ ଉଠମା କରି ପାରେ ନାହିଁ । ତେଣୁ, ମାଳା ପକାଇଛି ବେକରେ । ଦେହର ମଇଳା ଦୂର ହେବ ବୋଲି ସେ ଜଳା-ଲୁଗା ପିନ୍ଧି ସେବା କରେ । ସଞ୍ଜ ହେଲେ ଢୁଳେଇପଡ଼େ । ମନ ଭ୍ରମେ ବୃନ୍ଦାବନରେ ।

ରଣସିଂହଙ୍କର ଡାକ ତା'ର କାନରେ ପଡ଼ିଲା । ଦେହ ଚଳିଲା ନାହିଁ । ଠେକା ପକାଇ ପିଣ୍ଡାକୁ ଆଉଜି ପୁଣି ସେ ଘୁମେଇବାକୁ ଲାଗିଲା । ନୂଆ ମା'ର ଡାକ ଶୁଣିଲେ ସିନା ସେ ଧଡ଼ପଡ଼ ହୋଇ ଉଠନ୍ତା : ନ ଉଠିଲେ ଉପାସ । ଆଜି ପୁଣି ବଡ଼ଶୁଙ୍ଖୁଆ ଭଜା ବାସନାଟା ନାକରେ ବାଜୁଛି । ନାଥିଆକୁ ମାଛ ଶୁଖୁଆ ଟିକେ ଦେବାକୁ ନୂଆ ମା' କି ସାନ ରାଣୀ ଭୁଲନ୍ତି ନାହିଁ । ନାଥ ଆସ୍ତେ ବେକରୁ ତୁଳସୀମାଳି ଖୋଲି ଝୁଲେଇଦିଏ । ଆଇଁଷତର ନେଟକୁ ପକାଇ ଭଲକରି ମୁହଁ ଧୋଇ ପାଟିରେ ଟିକେ ତୁଳସୀ ପାଦୁକ ପକାଏ । ତୁଳସୀମାଳି ଆଣି ପୁଣି ବେକରେ ଗଳାଏ ।

ରଣସିଂହେ ଗର୍ଜି ଉଠିଲେ, ଆବେ ନାଥିଆ, ଶଳା— । ମନେ ପଡ଼ିଗଲା ଗୁରୁଦେବଙ୍କର ବାଣୀ —ଭଗବାନଙ୍କ ନାମବିନା ଜିହ୍ୱା ଯେପରି ଅନ୍ୟ ନାମ ଉଚ୍ଚାରଣ ନ କରେ । ଭୁଲ୍ ହୋଇଗଲା । ମନ ଝିଙ୍ଗାସିଲା ବଚନକୁ । ଟାଉଁଟାଉଁ କରି ତଳେଇ ମୁଷା ସାପ ଅଁ-କୋଳାର ବୋଲରେ ଲେଡ଼ିଶୁଅ ଆସିସିବ ଏ ସମ୍ବାଦ ଶୁଣି ଆନୁମାନିକ କୂଅରୁ ପାଣି କାଢ଼ିଲା ପରି, ରଣସିଂହେ ମାଳା ଗଡ଼େଇଲେ— ହରେ ରାମ କୃଷ୍ଣ, ହରେ ରାମ କୃଷ୍ଣ— । ପାପଟାକୁ ନିର୍ମୂଳ କରିଦେବାକୁ ଝୁଲମୁଣି ମୁଣ୍ଡରେ ଲଗାଇ ନଟ-ନାଗରଙ୍କୁ ସୁମରଣା କଲେ । ଜଣାଣ କଲେ ହେ ଗୋପାଙ୍ଗନା-ଶାଢ଼ୀଚୋର, କ୍ଷମା କର; କ୍ଷମା କର—

ହରେ ରାମ କୃଷ୍ଣ । ନାଥିଆର ପାଟି ଶୁଭୁଛି ବାହାରୁ । ରଣସିଂହଙ୍କର ଗର୍ଜନଟା କାନ ଭିତରେ ଅଟକି ରହିଥିଲା । ହଠାତ୍ ପ୍ରବେଶ କଲା ମୁଣ୍ଡ ଭିତରେ । ଚମକି ଉଠିଲା । ବିଶ୍ୱାମିତ୍ର କୋପ କଲେଣି । ଉଦ୍ଧାର ପାଇବାର ଏକମାତ୍ର ଉପାୟ ମାଳା ଓ ନାମ । ଅନ୍ଧାରରେ ଅଣ୍ଟାଳି ବେକରୁ ତୁଳସୀମାଳି କାଢ଼ି ହାତରେ ଧରିଲା । ବଡ଼

Digitized by PPRACHIN, SOA

ପାଞ୍ଚି କର ନାମ ଡକାଉ ଗୃହ ଖେପାରେ ମାଳାଟିକୁ ଅଣ୍ଟିଏ ବୁଲାଇ ଆଣିଲା । ମାଳ ବୁଲିଲେ ଗଲା, ବେଙ୍ଗିଗୁଡ଼ାଏ ନାମ ଡକାଉ ଗୋଟା ଗୋଟା କରି ମାଳ ଧରି ପଞ୍ଚକୁ ଠେଲି ଝିଙ୍ଟିପିଟି ଲାଗେଁ ଓିକାଲ ପର ଜଳବାହା କୋଡ଼ିଏ କାମ । ବଡ଼ଲୋକଙ୍କୁ ସାଜେ ସିନା !

ନାଥ — ।

ସ୍ୱଧେ, ସ୍ୱଧେ । ନାଥୁଆ ଉଠି ଠିଆ ହେଲା ।

ଶ୍ରୁଷ— ।

ଧୋଖକୁ ଗଲା । ମାଳାଟି ହାତରେ ଝୁଲୁଛି । କହୁଲା, ହିଙ୍କଏ ମାଳା ଧରିଥିଲି ହଜୁର । କହଜା କୁଅନୁ — ।

ମାଳାଟିକୁ ବେକରେ ଗଳାଇଲା ।

ବଜ୍ରବାହୁଙ୍କୁ ଡାକେଦେ ଉ — ।

ଆଜ୍ଞା— ଜାହୁ, ଯୋଡ଼ହସ୍ତ ହୋଇ ପଚେଇ ଅସିଲା । ଷାଠିଏ ବର୍ଷ ପୂରିଗଲେ ବି ନାଥୁଆର ଦେହରେ ଶକ୍ତି ଅଛି । ତୃତୀୟ ଘରଣୀ ମୃତ୍ୟୁ ହୋଇ ଯିବାର କୋଡ଼ିଏ ବର୍ଷ ପୂରିଲା । ସେ ବ୍ରହ୍ମଚାରୀ । ସେଇଦିନୁ ସେ ଜଣ ଗୁରୁଡ଼ି । ଚନ୍ଦା ମୁଣ୍ଡରେ କେଶ ଜନ୍ମୁନି । ଦାଢ଼ି ସେ ଖଉରମଣ କାଟେ । ତେବେ ଅଡ଼ ଉଦରରେ ବଢ଼ାଇଥିବା ଜଣକେ ସେ ହାତ ଦିଏ ନାହିଁ । ସବୁଗୁଡ଼ିକ ପ୍ରାୟ ପାଚିଆସିଲାଣି । ଦୁଇ ଆଙ୍ଗୁଳ ଓସାର । ଦୁଇ ଖଣ୍ଡ ଲମ୍ବ । ସେତିକ ତା'ର ହେବକ । ସେତିକ ତା'ର ସମ୍ବଳ । ମେଉଁମାନଙ୍କର ରାଜ୍ୟ ଗଲା, ଜମିଦାରୀ ଉଠିଲା, ସେମାନଙ୍କର ମୁଣ୍ଡ ସେ କାଟିଛି । ତେବେ, ନାଥୁଆର ଜମିଦାରୀ— ରଣସିଂହଙ୍କ ଉଆସ ତ ଭୂଷୁଡ଼ିପଡ଼ି ନାହିଁ ।

ନାଥୁଆ ଚାଲିଗଲା । ରଣସିଂହେ ଚିନ୍ତା କରିବାକୁ ଲାଗିଲେ, ବଜ୍ରବାହୁଙ୍କୁ କଅଣ ସେ କହିବେ । ବାପ ହୋଇ ଅଜ ପର୍ଯ୍ୟନ୍ତ ସେ ତା'କୁ କୌଣସି ଉପଦେଶ ଦେଇ ନାହାନ୍ତି । ଜମିଦାରୀ ଗଲା ପରେ ସେ ଏମ୍. ଏ. ସେ ପାଶ୍ କଲା ପରେ ଗୋଟାଏ ଚାକିରି କରିବାକୁ ସେ ତା'କୁ ଅନୁରୋଧ କରିଛନ୍ତି ମାତ୍ର । ବଜ୍ରବାହୁଙ୍କୁ ଆଜି ସେ ଉପଦେଶ ଦେବେ, ଦେଖ ସମସ୍ତ ଯେପରି ହେଲାଣି, ନିଜେ ଉପାର୍ଜନକ୍ଷମ ନ ହେଲେ ପରର ଝିଅକୁ ଆଣି ଘରେ ବାନ୍ଧିବା ଉଚିତ ନୁହେଁ । ବୋହୂଟିଏ ଘରକୁ ଆଣିବାକୁ ବାପାମା'ଙ୍କ ମନ ହେଉଥିବ ନିଶ୍ଚୟ, କିନ୍ତୁ ପ୍ରକୃତ ଶିକ୍ଷିତ ପୁଅ ସବୁ କଥା ଭାବି ବିଚାରି ତା'ର କର୍ତ୍ତବ୍ୟ ପାଳନ କରେ ।

Digitized by PPRACHIN, SOA

ରଣସିଂହ ତୃପ୍ତିରେ ନିଶ୍ୱାସ ଗ୍ରହଣକଲେ । କେତେ ସହଜରେ କଥାଟା ଛିଣ୍ଡିଯିବ । ମମତାଙ୍କ ସଙ୍ଗେ ବାଦାନୁବାଦ କରିବା ଲୋଡ଼ା ପଡ଼ିବ ନାହିଁ । ରଣସିଂହେ ମାଳା ଚଢ଼ାଇଲେ । ମନ କହିଲା, କୃଷ୍ଣ ନାମ ସ୍ମରଣ କଲେ ହିଁ ସବୁ ବିଷୟର ସମାଧାନ ହୋଇଯାଏ ସହଜରେ । ଧନ୍ୟ ତେମେ କ୍ଷୀରଚୋର ସ୍ତବର—ଧୀବର, କହିଥିଲ ପରା— ଆଗୋ ଗୋପ-ନାଗରୀ, ଯେବେ ହୋଇବ ପାର — । ଆହା ଆହା, ଭବକାଣ୍ଡାର — !

ମମତା ପଶିଲେ ଘରେ । ତାଙ୍କ ଧରି ସୁପ୍ରଭା ବି ଏଙ୍କରେ ଆସିଛି । ମାଳା ଗୁଡ଼ ଚମକ ଚାହିଁଲେ ରଣସିଂହେ । ମମତା ଆଜି ବେଶ ହୋଇଛନ୍ତି ଯେ ! ରାଜରାଣୀ ବେଶ ! ମହମହ ବାସିଉଠୁଛି ଦେଉଳୀ ଫୁଲର ବାସ । ଆଖିରେ କଜଳ । ମଥାରେ ଦାଉଦାଉ ସିନ୍ଦୂର । ଦାମିକା ଶାଢ଼ୀ । ହାତାଙ୍କରେ ଝଟକ ଉଠୁଛି ସୁନା ଗହଣା । କନ୍ୟାଟିକୁ ବି ସଜାଇଛନ୍ତି ଅବିକାଳ ନାଳ ପରି । ତନ୍ମୟ ଆଖି ରହିଲା ଲାଖି ମୁହୂର୍ତ୍ତେ । ଓଠରେ ଖେଳିଲା ହସ ।

ମମତା ପଚାରିଲେ, କାହିଁକି ଡକେଇଲ ? କଥା ଅଧାକରି ଉଠିଆସିଲି । ପିଲାଟା ପଛରେ ଗୋଡ଼ାଉଛି ।

କହୁନୁ ତୋତେ, ରାଜାପୁଅ ପକ୍ଷୀରାଜ ଘୋଡ଼ାରେ ଯାଇ ଅଗନାଗି ବନସ୍ତ ଭିତରେ କଅଣ କଲା ?

ରହ, ନୂଆମା ଶୁଣିବେ ଯେ —

ସୁପ୍ରଭା କାହିଁ ?

ସନ୍ଧ୍ୟା ଉତ୍ତର ହେଲା, ସେ ବନ୍ଧୁଗୁଡ଼ିକ ବାକ୍ସ ଭିତରେ ରଖୁଛନ୍ତି ।

ଡାକ ତ ।

ସନ୍ଧ୍ୟା ଚାଲି ପରି ଛୁଟିଗଲା ।

ମତେ ପୁଣି କାହିଁକି ଡାକିଲ ?

ବସ ।

ମମତା ଦୂରେଇ କରି ପାଳଙ୍କ ଉପରେ ବସିଲେ ।

ରଣସିଂହଙ୍କର ଆନନ୍ଦର ସୀମା ନାହିଁ । ମମତା ପୋଷା ମାନିଆସୁଛନ୍ତି । ଧନ୍ୟ ଗୁରୁଦେବ, ଧନ୍ୟ ତୁମର ମନ୍ତ୍ର ! ଆହା, ଆଗରୁ ଯଦି ମନ୍ତ୍ର ନେଇ ପାରିଥାନ୍ତେ, କଦାପି କମଦାସ୍ତ ଉଠି ନ ଥାନ୍ତା । ଧନ୍ୟ ତେମେ ରାଧାରମଣ ! ଜୟ, ଜୟ ଆମାଦେର ରାଧାରମଣ !

କଅଣ କହ ।

ସୁପ୍ରଭାର ବିବାହ କଥା ।

ମହାପାତ୍ରଙ୍କ ପୁଅ ଆରତ ସମ୍ବନ୍ଧରେ ?

ମନା କରୁନାହିଁ ତ । ତେବେ, ଶିକ୍ଷିତ ପିଲାର ମତାମତ ନେବା ଉଚିତ ।

Digitized by PPRACHIN, SOA

ମୋ' ପୁଅ ମୋ' କଥା ଶୁଣିବ ନାହିଁ ।
ମୁଁ ଜାଣେ, ଆମ କଥା ସେ ଶୁଣିବ ନାହିଁ ।
କଅଣ ପଚାରିବାକୁ ତା'କୁ ଡକେଇଛ ?
ଶୁକର କଥା ।
ସେ ଶୁକର କରିବ ନାହିଁ ।
ରଣସିଂହ କହିଲେ, କଅଣ କେତେବ କରିବ ?
ହସି ହସି ମମତା କହିଲେ, ଗୁରୁଦେବଙ୍କୁ ଖବର ଦିଅ, ସେ ଆସନ୍ତୁ । ପୁତ୍ର ଦୀକ୍ଷା ନେବ । ମାଳା ଗଡ଼େଇବ । ସମସ୍ତ କଟେଇବାର କଥା ।ଛ !
ରଣସିଂହଙ୍କର ରାଗିବାକୁ ମନ ହେଲା । ମମତା ତାଙ୍କୁ ଉପହାସ କରୁଛନ୍ତି । ମାଳା ପ୍ରତି ଅବମାନନା । ଗୁରୁନିନ୍ଦା ! ସେ ଆଉ ସହିପାରିବେ ନାହିଁ । ରାଗିଲା ଆଖିରେ ମମତାଙ୍କୁ ଚାହିଁ ଚାହିଁ ରାଗରେ ଫାଟି ଫାଟିଗଲା । ମମତା ପାଖକୁ ଘୁଞ୍ଚି ଆସିଲେଣି । ହସୁଛନ୍ତି ।
କହିଲେ, ଏତେ ପିଲାଦିନୁ ଦୀକ୍ଷା ନେବା ଉଚିତ ନୁହେଁ ।
ବଜ୍ରବାହୁର ହାତ ଧରି ସନ୍ଧ୍ୟା ପଶିଲା ଘରେ । ଗୋଟିଏ ହାତରେ ତୁଳସୀ-ମାଳଟିଏ ଝୁଲୁଛି । କହିଲା, ଖୁଡ଼ି ଶୋଇ ପଡ଼ିଥିଲେ । ଉଠାଇ ଆଣିଛୁ ।
ମାଳା କେଉଁଠୁ ପାଇଲୁ , ମମତା ପଚାରିଲେ ।
ନାଥିଆ କବାଟ କୁହୁଣ୍ଡାରେ ଝୁଲେଇ ଦେଇଥିଲା ।
ବଜ୍ରବାହୁ ମୁଣ୍ଡ ତଳେଇ ହସିଲା ।
ରଣସିଂହ ପଚାରିଲେ, ଶୁକର କଥା କ'ଣ ହେଲା ?
ଆଉ ଦୁ' ମାସ ଅଛି ।
ଦୁଇ ମାସ ଭିତରେ ହୋଇଯିବ ? ଗୁରୁ ଭରସା । ଏତେ ପଠ ପଢ଼ି ସବୁକାଣ ଶୁକର ଖଣ୍ଡେ ନ ଧରିଲେ ମଣିଷର ସମ୍ମାନ ରହିବ ନାହିଁ ।
ସୁବ୍ରତ ମା'ଙ୍କ ପାଖରେ ବସିଲା । ସନ୍ଧ୍ୟା ତାର ପଛରେ ବସି ଲମ୍ବ କେଶକୁ ସାଉଁଳିବାକୁ ଲାଗିଲା । କହିଲା, ଜଡ଼ାତେଲ ଲଗେଇ ମୁଣ୍ଡଟା କେତେ ଅଠା ହେଇଛି ମ ! ଭାଇ, କାଲି ମେଥିଦାନା ଟିକେ ଲଗେଇ ଭଲକରି ଧୋଇଦେଲେ ଅଠା ଛାଡ଼ିଯିବ । ନାଇଁକି ବୋଉ— ?
ହାତ ପଛକୁ ବୁଲାଇ ସୁବ୍ରତ ସନ୍ଧ୍ୟାକୁ ଚମୁଟି ଦେଲା । ସେ ପାଟି କରି ଉଠିଲା । ବଜ୍ରବାହୁର କେଶରୁ ପୁଳାଏ ଟାଣି ସେ ରଣସିଂହଙ୍କ ପାଖକୁ ଗଲା ।
ଛି, ସନ୍ଧ୍ୟା — । ମା' ଆକଟିଲେ ।
ସେ କାହିଁକି ମତେ ଚମୁଟିଲେ ?

Digitized by PPRACHIN, SOA

ରଣସିଂହେ ପଚାରିଲେ, ଦୁଇ ମାସ ଭିତରେ ଗୁରୁଙ୍କର ମିଳିବ ବୋଲି ଖବର ଆସିଛି ?

ଠିକ୍‌ଏ ଭୂମିରହୁ ବଜ୍ରବାହୁ କହିଲା, ଖବର ଆସିନ । ଦୁଇ ମାସ ଭିତରେ ଗୁରୁଙ୍କର ନ ମିଳିଲେ ଆଉ ମିଳିବ ନାହିଁ । ମତେ ପଚଶି ବର୍ଷ ପୂରିଯିବ ।

ସବୁ ପାଠ ତୋ'ର ବ୍ୟର୍ଥ ହେବ ?

ମମତା କହିଲେ, ଗୁରୁଙ୍କର ନ ମିଳୁ । ସଂସାରରେ ଯେତେ ଲୋକ ଅଛନ୍ତି ସମସ୍ତେ ତ ଗୁରୁଙ୍କର କରୁନାହାନ୍ତି । ଆଉଥରେ ସଙ୍ଗେ ବାହାଦୁର ହେଲେ କେଶବ ମହାପାତ୍ରେ ତାଙ୍କ ବ୍ୟବସାୟରେ ପୁତ୍ରକୁ ପୂରାଇଦେବେ । ଏ ଜବାବ ସେ ଦେଇଛନ୍ତି ।

ରଣସିଂହେ କହିଲେ, ଜମିଦାରର ପୁଅ ସେରସ୍ତାଜ ଧରି କାରବାର କରିବ ନଶୁଆ ଲେଖି ଯାଇ ନା ? ତୋ'ର କଅଣ ସେଇ ଇଚ୍ଛା ପୁତ୍ର ?

ପୁତ୍ର ନିରୁତ୍ତର ।

ରଣସିଂହ ଉଠି ଠିଆହେଲେ । ମନ ଭିତରେ କୁହୁଳୁଥିବା କ୍ରୋଧ ଓ ଅଶାନ୍ତିର ନିଆଁ ଜଳିଉଠିଲା । ସେ ଅଟ୍ଟହାସ୍ୟ କରି କହି ଉଠିଲେ, ବୁଝିଲ ମମତା ଦେବୀ, ସିଂହର ଧୈର୍ଯ୍ୟ ତୁଟିଛି । ଯେତେ ଦୁର୍ବଳ ହେଲେ ବି ସିଂହ ମୂଷା ହୋଇ ପାରିବ ନାହିଁ । ତିନି ବରଷ ହେଲା ସେଇ ମାଳା ଓ କୋଥଳି ରଣସିଂହଙ୍କ ହାତଗୋଡ଼ ବାନ୍ଧି ରଖିଥିଲା । ଆଜେ ନାଥିଆ, ନାଥିଆ—

ଯାଏ ଯାଏ—

ନାଥିଆ ଘର ଭିତରେ ପଶି ହାତ ଯୋଡ଼ି କହିଲା, ଦେଇମା, ମୋ'ର ମାଳା ନେଇ ଆସିଛନ୍ତି ।

ନେ ତୋ' ମାଳା, କହି ସନ୍ଧ୍ୟା ନାଥିଆର ମାଳା ତଳକୁ ପକାଇଦେଲା । ନାଥିଆ ନଇଁପଡ଼ି ମାଳାଟି ତଳୁ ଉଠାଇ ଆହା ଆହା କହି ମୁଣ୍ଡରେ ଲଗାଇଲା ।

ରଣସିଂହେ ଗର୍ଜି ଉଠିଲେ, ସେ କୋଥଳି ଓ ମାଳାଟା ଆଣ୍ କହୁଛି ।

ମୁଁ ଛୁଇଁବ ?

ନାଥିଆ ହାତ ମାରିଲା ନାକରେ ।

ଉଠା କହୁଛି, ଉଠା—

ଡରି ଡରି ନାଥିଆ କଥା ମାନିଲା ।

Digitized by PPRACHIN, SOA

ରଣସିଂହେ ହସିଉଠିଲେ । ଦଶ ନ ଥିଲେ ବ ହସଟା ଅବକଳ ଜମିଦାର ରଣସିଂହଙ୍କ ହସ ପର ଶୁଭୁଛି । ଆଖି ଦୁ'ଟା ସେମିତ ଆଗ ପର ଜଳୁଛି । କହିଲେ, ସେ ମାଳା ଓ କୋଥଲ ଆଜଠୁଁ ତୋ'ର ହେଲା । ଆଜଠୁଁ ମୋ' ପାଇଁ ବ ତୁ ମାଳା ଗଢ଼େଇବୁ ।

ପାରବ ଆଜ୍ଞା, ଦୁଇ ହାତରେ ଦୁଇଟା ।

ଆରେ ନାଥ, ଯେଉଁ ଗଣ୍ଠି ଗଣ୍ଠିଆ ପିଣ୍ଡଳ ଗୋବମଗ୍ର ଠେଙ୍ଗାରେ ଶମ୍ଭୁଶଙ୍କ ଖୁଣ୍ଟ କରଥିଲ, ସେ ଠେଙ୍ଗାଟା ଯତ୍ନ କର ରଖିବାକୁ କହିଥିଲ ।

ତେଲ୍ ଦେଇ ଦେଇ ତା'କୁ ଲାଲ୍ କର ପଦେଇ ରଖିଛି । ଠେଙ୍ଗା ନୁହେଁ ହଜୁର୍, ସେ ଗୋଟାଏ ଦେବତା ।

ହଁ ଦେବତା । ଦଶ ହଜାର ଟଙ୍କାର ଭୋଗ ସେ ଖାଇଛି । ଆହୁର ଦଶ ହଜାର ସେ ଖାଇବ ।

ରଣସିଂହଙ୍କ ଆଖିରେ ନିଆଁ ଜଳୁଛି । ସନ୍ଧ୍ୟା ଭୟୁସ୍ତ ହୋଇ ମମତାଙ୍କ ପିଠି ପାଖକୁ ଆଉଜି ଆସିଲଣି । ମମତା ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଛନ୍ତି । କେଉଁ ସଇତାନ୍ ଆସି ତାଙ୍କ ମୁଣ୍ଡରେ ବସିଲଣି । ଶମ୍ଭୁଶଙ୍କ ତ ନାହାନ୍ତି, କିଏ ବିପଦରୁ ଉଦ୍ଧାର କରିବ ? ପାରବ ଏ ପିଲାଟା, ବଜ୍ରବାହୁ ? ସେ ପୁଅକୁ ଚାହିଁଲେ । ସୁବ୍ରତ ଗମ୍ଭୀର ହୋଇ ତଳକୁ ମୁହଁ ପୋତ ଠିଆ ହୋଇଛି । ହୁଣ୍ଡା ରଣରଙ୍ଗା ଏତେବେଳ ଯାଏ ଫେରନାହିଁ ।

ନାଥ ଯୋଡ଼-ହସ୍ତ ହୋଇ ପଚାରଲ, ଜମିଦାରୀ ଫେର ଆସିଲା କ ହଜୁର୍ ? ଆହା, ଧନ୍ୟ ସେ ଗୁରୁଦେବଙ୍କ ମହିମା, ଆଉ ଏ ମାଳାର କରାମତ । ରାଧେ, ରାଧେ—

ଆରେ ନାଇଁ ରେ, ରଣସିଂହେ ଫେର ଆସିଲେ ।

କେଉଁଠୁଁ ମା-ବାପ ?

ବୃନ୍ଦାବନରୁ । ମୋ'ର ସେଇ ଠେଙ୍ଗାଟା ଲୋଡ଼ା ।

ଆଣିଦେବ । ହେଲେ, ଜମିଦାରୀ ତ ଫେରଲା ନାହିଁ, ସେଇଟା ହେବ କେମିତ ?

କେଶବ-ମହାପାତ୍ରର ମୁଣ୍ଡ-ଦହି ଖାଇବ ।

ମମତା ଉଠି ଠିଆହେଲେ । ରାଗ ତମତମ ହୋଇ କହିଲେ, ଏତେ ? ମତେ ତମେ ଡରଉଛ ? କେଶବ ମହାପାତ୍ରର କେଶ ଅଗ୍ରଭାଗକୁ ମୋ' ବୋହୂ କରେଇ ଦେବ ନାହିଁ ? ଦେଖିବ ଭଲ । ଏଇ,—କାନରେ ମୋ'ର ଗଣ୍ଠି ପଡ଼ିଲା । ରକ୍ତ-ମାଟିର ରାଜକେମା ଯଦ ମୁଁ ହୋଇଥାଏଁ ତ—

Digitized by PPRACHIN, SOA

ଆଉ କହି ପାରିଲେ ନାହିଁ । ଦୁମ୍ ଦୁମ୍ ପାଦ ପକାଇ ଘରୁ ବାହାରି ଗଲେ । ହାତ ଧରି ସନ୍ଧ୍ୟା ତାଙ୍କର ପଛେ ପଛେ ଗଲା ।

ରଘୁସିଂହଙ୍କ ପୁଅକୁ ସ୍ମୃହି କହିଲେ, ଜମି ଜମିଦାରୀ ପ୍ରଭୃତି ସବୁ ଗଲା । ମାନ ମହତ୍ତ୍ୱ ବି ଗଲା । ମଣିଷର ଆନ୍ ଯାଏ ଯାଏ ତା'ର ବଞ୍ଚିବା ଓ ମରିବା ସମାନ । ତେବେ ଏତେ ପାଠ ପଢ଼ିଲ । କେଉଁଠାରେ ଚାକିରିବାକିରିର ଚେଷ୍ଟା ନ କରି ଘରେ ବସି ଆଳସ୍ୟରେ ବେଳ କାଟୁଛ । ମା' ହେଉନ୍ତୁ, କି ଝିଅ ହେଉନ୍ତୁ, ସେମାନଙ୍କର କଥାରେ ପଡ଼ି କେଣିକି ମହାପାପର ଝିଅକୁ ବିବାହ କରି ମୋ'ର ବଂଶମର୍ଯ୍ୟାଦା ନଷ୍ଟ କରିବ ? ସେ କଥା ହେବ ନାହିଁ ବଜ୍ରବାହୁ । ଏବେ ବି ମୁଁ ବଞ୍ଚିରହିଛି ।

ବଜ୍ରବାହୁ ଲୁହ ଭରା ଭରା ଆଖିରେ ପିତାଙ୍କୁ ଅନାଇଁ ରହିଲା । ସେ ଆଉ କଅଣ କହିଲେ ଶୁଣି ନାହିଁ । ଯେଉଁ ଦୃଶ୍ୟ ଦେଖିଲା, ଯେଉଁ ଭାଷା ଶୁଣିଲା, ମୁହୂର୍ତ୍ତକରେ ତା'ର ପନ୍ଥା ସ୍ଥିର କରିନେଲା । ସେ ଉତ୍ତର ନ ଦେଇ ଘରୁ ବାହାରି ଆସିଲା ପଦାକୁ ।

ଆଖିରୁ ପୋଛିଲା ଲୁହ । ମନ ହେଲା ଉଦ୍ଧାର-ବିଜୟ —ରଣରଙ୍ଗକୁ ଥରେ ଦେଖିବ । ବେଶି ପାଠ ପଢ଼ି ନାହିଁ । ଅଳସୀ ଚଳନ୍ତା ଜାଣେ ନାହିଁ । ଖାଇବା ଶୋଇବା ବେଳ ଛଡ଼ା ଘରେ ମୁହୂର୍ତ୍ତେ ଅଧିକା ରହେ ନାହିଁ । ଗ୍ରାମବାସୀଙ୍କ ସଙ୍ଗେ ମିଶି ସବୁ କାମରେ ଯୋଗଦିଏ । ସେଇ ଏକା ମଣିଷ ।

ରାତି ହେବ ନଅଟା । ଦଶମୀ ଜହ୍ନ ନଇଁ ପଡ଼ିଲାଣି । ଜେବନ୍ତ ଅଳୁଅ ଉଦେବଙ୍କର ମୁହଁରେ ପଡ଼ୁଛି । ଖୋଲା ଦେହ । କାନ୍ଧରେ ଗାମୁଛା । ବନ୍ଧ ଉପରେ ବୁଲି ଆସୁଛି ଗ୍ରାମ ବନ୍ଧନରେ । ପୁତ୍ରଙ୍କୁ ଦେଖି ସେ ଠିଆ ହେଲା । ଆଶ୍ଚର୍ଯ୍ୟ ହୋଇ ପଚାରିଲା, ଏକୁଟିଆ ବନ୍ଧ ଉପରେ ଠିଆ ହୋଇଛ କାହିଁକି ଭାଇ ?

ତତେ ଅପେକ୍ଷା କରୁଛି । କେଉଁଠି ଥିଲୁ ?

ଜଦାଜଦରେ ଛକଡ଼ି ବାଉରି ସାଙ୍ଗରେ ଟେଣ୍ଡାରେ ପାଣି ବୋହୁଥିଲି । ସବସାଧାରଣଙ୍କର ସେ ଯେଉଁ କଳମୀ ଆମ୍ବ ବଗିଚା ହେଉଛି । ଛକଡ଼ିଆ ଟେଣ୍ଡା ଭୁଡ଼ି ହାଲିଆ ହୋଇ ବସିଲା । ମୁଁ ଆହୁରି ଶହେ ଏଗାର ବାଲ୍ଟି ପାଣି ଟାଣିଲି । ସମସ୍ତେ ଆଜ ମୋ ପାଖେ ହାରିଲେ ।

ଖାଲି ପାଣିକଢ଼ାରେ ?

ନାଇଁ, ସେ ଦିନ ଯନ୍ତ୍ରାଳିକୁ କାଠ ଚିରାହେଲା । ଗୁଲା ସେଠି ହାରିଲା ।

କାଠ ଚିରାରେ ?

Digitized by PPRACHIN, SOA

ବାବନା ପଧାନ ମୋ ସଙ୍ଗେ ହକ କରିବାକୁ ଆଉ ସାହସ କରୁନାହିଁ ।

ସୁବ୍ରତ, ଜମିଦାରର ପୁଅ ତୁ, ଶ୍ରେଷ୍ଠ ଲୋକଙ୍କ ସଙ୍ଗେ ମିଶି ଘରର ବେଠି ଖଟିବାକୁ ତତେ ଲାଜ ମାଡ଼ୁ ନାହିଁ ?

ଜମିଦାରୀ ଗଲାଣି ।

ଜମି ଓ କ୍ଷତିପୂରଣ ଟଙ୍କା ତ ମିଳୁଛି ।

ଖୋରାକ ପୋଷାକ ପାଇଁ ଆପଣ ମତେ ଭତ୍ତା ଦିନା ଦେବେ, ଜମି ଓ ଟଙ୍କାର ମାଲିକ୍ ହେବ ନାହିଁ । ହାତ-ଟେକା-ଭତ୍ତା ମୁଁ କାହାଠୁଁ ନେବାକୁ ଚାହେଁ ନାହିଁ ।

ସୁବ୍ରତ ଶୁଣିଲା । କହିଲା, ମୋର ସ୍ୱତ୍ୱ ମୁଁ ତତେ ଦାନ କରିବାକୁ ଚାହେଁ — । ମୁଁ ଭିଖାରୀ ନୁହେଁ ।

ସୁବ୍ରତ ସାନ ଭାଇର ହାତ ଧରିଲା । କହିଲା, ସ୍କୁଲ ଲାଗିବାରେ ସମ୍ମାନ ଅଛି, ନାହିଁ ରେ ? ମୋତେ ଶିଖେଇ ଦେବୁ ?

ସୁବ୍ରତ ହସି ହସି କହିଲା, ଏତେ ପାଠ ପଢ଼ି କେହି କେବେ ସ୍କୁଲ ଲାଗିବାକୁ ଯାଏ ନାହିଁ ।

ସୁବ୍ରତର ହାତ ଧରି ସୁବ୍ରତ ବନ୍ଧ ଉପରୁ ତଳକୁ ଗଡ଼ିଲା । ପଚାରିଲା, ପାଠ ପଢ଼ିଲେ ମଣିଷ କଅଣ କରେ ତେବେ ?

ସୁବ୍ରତ କହିଲା, ଫାଜିମାରେ ।

ବୁଝିଲି ନାହିଁ ତୋ' କଥା ।

ବୁଝେଇବାର ବୁଦ୍ଧି ମୋର ନାହିଁ ।

ନିଜେ ତୁ କଅଣ ବୁଝିଛୁ କହିଲୁ ?

ଯାହା ମୁଁ ଦେଖୁଛି,— ପାଠ ପଢ଼ିଲେ ମଣିଷ ନିକମା ହୁଏ । ଚାକିରି କରେ, ବେପାର କରେ, ନେତା ହୁଏ, ଖବର କାଗଜ ଚଳାଏ । କବିତା, ଉପନ୍ୟାସ ଲେଖେ, ବକ୍ତୃତା ଦିଏ, କେତେ ଆଉ କହିବି ? ଶାଗ ଗଛଟିଏ ବି ସେ ଲଗାଏ ନାହିଁ । ମୁଣ୍ଡଖାଲ ଗୁଣ୍ଡରେ ମାରି ଯେଉଁ ମୂଲିଆ ମୂରୁଖ ଉତ୍ପାଦନ କରନ୍ତି, କେତେ ଉପାୟରେ ପାଠୁଆ ସେତକ ଫାଜିମାରି ନିଏ, ଚେକା ପକେଇ ଖୀର ପୁରି ଖାଇ ଦୁଧରେ ଆଞ୍ଚେଇ ହାକୁଟି ମାରେ ।

ସୁବ୍ରତର କଥା ଶୁଣି ସୁବ୍ରତ ଚମକି ଉଠିଲା । ହାତ ଟାଣିଆଣି ମୁହଁକୁ ଅନ୍ଧା ହୋଇ ଠିଆ ହେଲା । ମୁଣ୍ଡର-ବାଳ ଟାଣି ଉପରକୁ ଚାହିଁଲା । ଚନ୍ଦ୍ରମା ଅନେଇଁଛି, ସତେ କି ବିଦ୍ରୂପ କରି ଅଳସେଇ ହସୁଛି । ସତେ, ପାଠ ତାର ବଳସୀ-ଖଡ଼ା, ଜ୍ଞାନ ତୋର, କଣ୍ଠା ବୁଦ୍ଧି, ଯୋପଡ଼ା କୌଶଳ, ଚେତଣ୍ଡା ଜାଗ୍ରତ, ଚକ୍ଷୁ ପ୍ରଲୋଭନ, ଜଳ ହିଁ ଛେଦ, ଆଉ, ଅଶିକ୍ଷିତ ମାଛ । ଟାଣିବାଟା ହିଁ ଉଦ୍ୟମ !

Digitized by PPRACHIN, SOA

ସୁବ୍ରତ ସୁରତର ହାତ ଧରି ହଲେଇଦେଲା । କହିଲା, ଆରେ, ତୁ ଭୁଲ୍ ବୁଝିଛୁ । ପାଠ ପଢ଼ିଲେ ମଣିଷର ଜ୍ଞାନ ବଢ଼େ, ବୁଦ୍ଧିର ଉତ୍କର୍ଷତା ସାଧିତ ହୁଏ । ବୁଦ୍ଧିର ଚାଳନା ଉଦ୍ୟମ । କାର୍ଯ୍ୟକାରୀ ପରିଶ୍ରମ କର୍ମ । ଆରେ, ସଭ୍ୟତା ବୋଲି ଯାହାକୁ କହନ୍ତି, ସବୁ ବିଦ୍ୟା ଓ ବୁଦ୍ଧି ଚାଳନାର ଫଳ । ଯେଉଁ ଲୁଗାଖଣ୍ଡି ତୁ ପିନ୍ଧୁଛୁ, ଯେଉଁ ଚେଷ୍ଟାରେ ତୁ ପାଣି ବୋହିଲୁ, ଟାଙ୍ଗିଆରେ କାଠ ଅଣିଲୁ, ଲଙ୍ଗଳରେ ହଳ କଲୁ, ସେ ସବୁ ବୁଦ୍ଧି ଚାଳନାର ଫଳ । ଦିନେ ଏ ସବୁ କି ନ ଥିଲା । ପାଠ ପଢ଼ିବା ଯେ କେବଳ ବିଦ୍ୟା, ଏପରି ଭାବିବା ଠିକ୍ ନୁହେଁ । ହଳ କରିବା, ପାଣି ବୋହିବା, କାଠ ଚିରିବା, ହେଁସ ବୁଣିବା, ମାଛ ମାରିବା କି ଗଛ ଚଢ଼ିବା ମଧ୍ୟ ଗୋଟିଏ ଗୋଟିଏ ବିଦ୍ୟା, । ମୁଁ ଇତିହାସ-ବିଦ୍ୟାରେ ଏମ୍. ଏ. ପାଶ୍ କରିଛି । ମୋ ଭାଇ ସୁରତ କେତେ ବିଦ୍ୟାରେ କେତେ ଏମ୍. ଏ. ପାଶ୍ କରି ସାରିଲାଣି । ମୋ ସାର୍ଟିଫିକେଟ୍ କାଗଜ ଉପରେ କାଳିର ଲେଖା । ମତେ ପାଞ୍ଚ ଦଶ ଜଣ ପରୀକ୍ଷା କରିଥିବେ । ତୋ ସାର୍ଟିଫିକେଟ୍ ତୋ ହାତ ଗୋଡ଼ରେ, ତୋ ସାରା ଦେହରେ ଓ ମନରେ ଲେଖା ହୋଇଛି । ତୋର ପରୀକ୍ଷକ ବିଂଶଗଡ଼ର ସହସ୍ର ଲୋକ—ଆବାଳବୃଦ୍ଧବନିତା । ମୋ ସାନ ଭାଇ ସୁରତ ରଣବଙ୍କା ସବୁ ବିଦ୍ୟାରେ ପାରଙ୍ଗମ । ଇତିହାସରେ ଏମ୍. ଏ. ପଢ଼ି ମୁଁ କେବଳ ଶିଖିଛି—ଅର୍ଯ୍ୟମାନେ ଗୋରୁ ଚରାଉଥିଲେ !

ସୁରତ ହସିଉଠିଲା ।

ସୁବ୍ରତ ତା'ର ପିଠିରେ ହାତ ଚୁପଡ଼ି କହିଲା, ଆରେ, ମଣିଷ କେବଳ ପାଠ ପଢ଼ିଲେ ଫାଉ ମାରେ ଏ କଥା କହିବା ଠିକ୍ ନୁହେଁ । ପାଠ ନପଢ଼ି ମଧ୍ୟ ଲୋକେ ଫାଉ ମାରନ୍ତି । ଫାଉ ମାରିବାଟି ଗୋଟାଏ ସ୍ୱତନ୍ତ୍ର ବିଦ୍ୟା ।

କେବଳ ଛଟପଟ-ନିଦ ଆସୁନାହିଁ । ମନରେ ଉତ୍ତେଜନା । ରଣବଙ୍କାର ସବୁ କଥା ମନରେ ଓଲଟ ପାଲଟ ହେଉଛି । ଲହଡ଼ି ଭାଙ୍ଗୁଛି । ରଣବଙ୍କା ମୂର୍ଖ ନୁହେଁ, ନିର୍ବୋଧ ନୁହେ । ତା ହିସାବରେ ସେ ଯାହା ବୁଝିଛି ଠିକ୍ ବୁଝିଛି । ମଣିଷ ଫାଉ ମାରିବାକୁ ଚେଷ୍ଟା କରେ । ଯଦି କୃତକାର୍ଯ୍ୟ ହୁଏ ସେ କୋଠା ବାଡ଼ି, ଧନ-ସମ୍ପତ୍ତି କରେ, ଭଦ୍ରଲୋକ ହୁଏ, ନାମ କରେ, ସମ୍ମାନ ପାଏ । ଚେଷ୍ଟା ଯାହାର ବିଫଳ ହୁଏ, ସେମାନେ ଦରିଦ୍ର ଅପମାନିତ । ମଥା ନୋଇଁ ବାଟ ଚାଲେ । ଫାଉମରା କର୍ମ ଯାହାର ଧରା ପଡ଼େ, ବେଦ, ପୁରାଣ, ପ୍ରଥା ଓ ଆଇନ୍ ଯାହାକୁ ସ୍ୱୀକାର ନ କରେ ସେ ହୁଏ ଚୋର, ଧପ୍ପାବାଜ୍, ଲମ୍ପଟ । ସେ ହୁଏ ଦଣ୍ଡିତ ।

Digitized by PPRACHIN, SOA

ଜୋର୍ ଯାହାର, ମୁଲକ ତାହାର । ଦେହର ଜୋର ହେଉ କି ମନର ଜୋର ହେଉ, ସାହାଯ୍ୟ କରିବାକୁ ଠେଙ୍ଗାବାଡ଼ି, ଖଡ୍ଗ କମାଣ ଓ ବାଣ ଆଉ କି ପୋଥି-ପୁରାଣ, ପ୍ରଥା ଓ ଆଇନ୍ ଆଉ ।

ବଜ୍ରବାହୁର ମୁଦିଲା ଆଖି ଆଗରେ ବଡ଼ ସହରର ଆକାଶ-ମଥାନଲଗା କୋଠାବାଡ଼ି ଘୂରିଲା ।—ଏଇଟା କଲିକତା ମହାନଗରୀ, ଏଇଟା ଦିଲ୍ଲୀ, ବମ୍ବେ, ମାନ୍ଦ୍ରାଜ, କଟକ ! ଏଇଟା ଖାଲିମାଟି, ବଣାଖାପାଟଣା ! ଏଇଟା ସେ ରାଜ୍ୟର ରାଜପ୍ରାସାଦ, ସେ ଗ୍ରାମର ଜମିଦାରଙ୍କ ଉଆସ, ଅମୁକ ସେଠ ବ୍ୟବସାୟୀର ପାଞ୍ଚତାଲା "ଧାନକୁଟୀର" । ସେମାନଙ୍କ ମଧ୍ୟରୁ କେହି କେବେ ଖଡ଼ା ଗଛଟିଏ ହାତରେ ରୋପି ନାହାନ୍ତି । ମାଟି ଚକଟି ଇଟା ଖଣ୍ଡିଏ ପକାଇ ନାହାନ୍ତି । ଖଣି ଭିତରୁ କୋଇଲା ଖଣ୍ଡେ ଉଠାଇ ନାହାନ୍ତି, ପାହାଡ଼ ତଳୁ ଲୁହାପଥର ଖଣ୍ଡେ ସାଉଁଟି ନାହାନ୍ତି । ଜନ୍ତୁ ଧନୁ ସେମାନେ ଜଗିଅଛନ୍ତି । ସେମାନେ ଶକ୍ତିବାନ୍, ସେମାନେ ବୁଦ୍ଧିମାନ ।

ଇତିହାସ ମନେପକାଉଛି—ସେତେବେଳେ ଆର୍ଯ୍ୟମାନେ ଗୋରୁ ଚରାଉଥିଲେ । ସେଇଠୁ ଚାରି ଜାତିର କଳ୍ପନା, ଚାରି ଜାତିର ସୃଷ୍ଟି । ବ୍ରାହ୍ମଣ ବେଦ ଚର୍ଚ୍ଚା କରିବେ, ଦେବତାର ଆରାଧନା କରିବେ, ପୌରୋହିତ୍ୟ, ମନ୍ତ୍ରପାଠ, ପ୍ରେତପୁରୁଷର ଶ୍ରାଦ୍ଧ । କ୍ଷତ୍ରିୟର ରାଜ୍ୟ ଶାସନ, ଅସ୍ତ୍ରଚାଳନା, ମାରହାଣକାଟ । ବୈଶ୍ୟର ବ୍ୟବସାୟ—ନେ ଆଣ ଦେ । ଆଉ ସବୁ କର୍ମ ଶୂଦ୍ରର । ସବୁ ଦୈହିକ କର୍ମ । ଜୀବନମୂର୍ଚ୍ଛା ପରିଶ୍ରମ । ପ୍ରକୃତି ସଙ୍ଗେ ରଣ ।

ଯେଉଁ ଭୂମିରେ ସୁନା ଫଳୁଛି, କିଏ ତା'କୁ ଜମି କରିଛି । ବାଘ ଭାଲୁ ସାପ, ବର୍ଷା ତୋଫାନ ବଜ୍ର ବିରୁଦ୍ଧରେ ଲଢ଼େଇ କରି ଜୀବନ ଦେଇ ଯେ ଜଙ୍ଗଲ କାଟି, ପାହାଡ଼ ଟାଳି, ପ୍ରାଣ ମୂରୁଛି ଭୂମି କରିଥିଲା, କାହାନ୍ତି ସେମାନଙ୍କର ପିଲାକବିଲା । ଜମିର ମାଲିକ ଆଜି କିଏ ?

କେବଳ ଜମି ଉତ୍ପାଦନ ବିଷୟରେ ଫାଉମରା ନୀତି ଅବସାନ ହେଲେ କି ମାନବ-ନ୍ୟାୟ ହେଲା ବୋଲି କହି ହେବ ନାହିଁ । ସବୁ କ୍ଷେତ୍ରରେ ସେଇ ମଣିଷ-ନ୍ୟାୟର ପ୍ରଚଳନ ହେଲେ ହିଂସା, ଦ୍ୱେଷ ଦୂର ହେବ । ଫାଉମରା ନୀତି ଲୋପ ହେବ । ଅତି ଉପଯୁକ୍ତର ହେବ ଏ ଦୁନିଆଁ, ପୁଣି, ସମସ୍ତେ ହେବେ ଅତି ଉପଯୁକ୍ତ । ଅନୁପଯୁକ୍ତ ଟଳି ପଡ଼ିବେ । ଦେବତାର ଡର, ମନ୍ତ୍ର, ପୁରାଣ ପୋଥି, ପଦ ଓ ଜାତିର ଟେକ, ଲୁଫସ୍କାର, କେହି ଅନୁପଯୁକ୍ତଙ୍କୁ ରକ୍ଷା କରି ପାରିବେ ନାହିଁ ! କିପରି ଦୁନିଆଁରେ ପ୍ରକୃତ ମଣିଷ ନୀତିର ପ୍ରଚଳନ ହେବ ?

ବିନୋବା—ବିପ୍ଳବ ? ମନର ପରିବର୍ତ୍ତନ ?

Digitized by PPRACHIN, SOA

ବଜ୍ରବାହୁ କେଶ ଝାଣିବାକୁ ଲାଗିଲେ । କ୍ଷୁଦ୍ର, ସେ, କ୍ଷୁଦ୍ରାଦପି କ୍ଷୁଦ୍ର ! ଏତେ ବଡ଼ ବଡ଼ କଥା ଖାଲି ଉନ୍ନିଦ୍ର ହେବ କାହିଁକି ?

ମା' ଆଜି ଉତ୍ତେଜିତ ହୋଇଛନ୍ତି । ଚିରଦିନ ଅବହେଳିତ ହୋଇ ପିତାଙ୍କ ବିରୁଦ୍ଧରେ ଆଜିଠାରୁ ତାଙ୍କର ଅଭିଯାନ ଆରମ୍ଭ ।

ଆରତିକୁ ସେ ବୋହୂ କରିବେ ।

ଉଜ୍ଜ୍ୱଳ ହୋଇ ଯାଉଚି ସେ ଆଖି ଆଗରେ । ବରଷଜ ତଳେ ଗୋପୀକୃଷ୍ଣଙ୍କ ମନ୍ଦିର ଭିତରେ, ସନ୍ଧ୍ୟା-ଆରତି । ସମସ୍ତେ ମଥା ନୋଇଁଲେ । ଠିଆହୋଇ ରହିଲେ ଦୁଇଟି ଜୀବ—ଏପାଖେ ସୁବ୍ରତ, ସେପାଖେ ଆରତି । ଯଜ୍ଞର ସ୍ୱେଚ୍ଛ ସ୍ୱାହାଣୀ । ସୁର ଆଖିର ମିଳନ । ଦୁଷ୍ଟ ସନ୍ଧ୍ୟାର ଆବାକାବା ଶବ୍ଦ । ମାଡାଙ୍କର ଦୃଷ୍ଟି । ମୁହଁରେ ତୃପ୍ତି ଓ ସନ୍ତୋଷର ଆଭା । ଆଖିରେ ଅନୁମୋଦନ । ଓଠରେ ଆନନ୍ଦର ସ୍ମିତ । ଆରତିର ଚିବୁକରେ ହାତ ।

ଆରତି — ଲବଣୀ ପିତୁଳା ସେ ନୁହଁ, ଲାବଣ୍ୟ-ପିତୁଳା ।

କିନ୍ତୁ, ଆହୁତ ! ତା'ର ରୂପ ସେ ଦେଖି ନାହିଁ । ଦେଖିଛି ଆଖିଝଲସା ରଙ୍ଗ । ଆଗରେ ଠିଆହୁଏ ସତେ କି ବହ୍ନିଶିଖା ! ଦୃଷ୍ଟିରେ ବଜ୍ରଲିର ତେଜ । ବାକ୍ୟରେ ତୋଫାନର ଶକ୍ତି ! ଦୁର୍ବଳ ଦେହରେ ପାହାଡ଼-ଗଡ଼ା ଝରଣାର ଅମାନିଆ ଚଞ୍ଚଳତା ।

ମା ତାକୁ ଦେଖି ନାହାନ୍ତି । ଦେଖିଲେ ଚମକି ଠିଆ ହେବେ । ବୋହୂ କରିବାକୁ ଆଗ୍ରହୀ ହେବେ କି ?

ଆହୁତ — କେହି କିନ୍ତୁ ପାରିବେ ନାହିଁ । ସେ କାହାକୁ ଭଲ ପାଏ । ସ୍ନେହ କରେ ତ ସଭିଙ୍କୁ ।

ଖଇ, ଖଇ — ଗଧ —

ଛି, ଏ କି ଡାକ ସନ୍ଧ୍ୟା ?

ଆଉ କେମିତି ଡାକିବ ? ଖରା ପଡ଼ିଲାଣି । ନିଦ ଭାଙ୍ଗୁନାହିଁ । ବାଡ଼ ପୋଖରୀରେ ନାଥିଆ ଝେପାଜାଲ ପକେଇ କେତେ ବଡ଼ ଖଲୁଡ଼ ଧରିଛି । ବାପା ଠିଆହୋଇ ଦେଖୁଛନ୍ତି । କେମିତି ମଜା : ହେଉଛି, ମାଛ କୋଥିଲ ପୋଖରୀ କୂଳରୁ ଅଣିଛି ।

ସୁବ୍ରତ ଆଖି ଖୋଲିଲା । ଝରକା-ଫାଙ୍କଦାଟେ ଖରା ପଡ଼ିଛି ଦୋତଲା ଉପର କୋଠରୀରେ । ସନ୍ଧ୍ୟା ତାକୁ ଗୁଡ଼ୁଛି, ଖଇ ଉଠ । ଖଇ, ଗଧ —

ନୂଆ ମା ଆକଟ କରୁଛନ୍ତି, ଛି, ସନ୍ଧ୍ୟା — ।

Digitized by PPRACHIN, SOA

ସୁବ୍ରତ ଆଜି ଅତି ଗମ୍ଭୀର । ଉଦାସ ଶୁନ୍ୟ ଗାଆଁରେ ବୁଲୁଛି । ଦେହରେ ଛିଣ୍ଡାକୁର୍ତ୍ତା । ଖାଲି ଗୋଡ଼ । ହାତରେ ରିଷ୍ଟୱାଚ୍ ନାହିଁ । ଅଣଜଡ଼ା କେଶ । ରଣଗଡ଼ର ଭବିଷ୍ୟତ୍ ଉତ୍ତରାଧିକାରୀ—ଯାହା ପରେ ଜମିଦାରୀ ।

ଆଜି ତା ଆଖିରେ ରଣଗଡ଼ ନୂଆ ରୂପ ଧରି ଠିଆ ହୋଇଛି । ଯେଉଁମାନେ ତାକୁ ଦେଖୁଛନ୍ତି ପଦେ-ଅଧେ ପଚାରିଦେଇ ଆଡ଼େଇ ଯାଉଛନ୍ତି । ଯେଉଁକେତେ ଖଣ୍ଡେଦୂର ଗୋଡ଼ାଇ ଯାଉଥିଲେ । ଭୟ ବା ସମ୍ମାନ ପାଇଁ ନୁହେଁ । କେବଳ କୌତୂହଳ !

କାହାକୁ ସେ କିଛି କହୁ ନାହିଁ । ସବୁ ପ୍ରଶ୍ନର ଉତ୍ତର ଦେଉଛି ମୁରୁକି ହସରେ; ଓଠର ନୀରବ ହସରେ । କାନରେ ପଡ଼ୁଛି —ପ୍ରଶ୍ନ ଓ ଉତ୍ତର—ଜମିଦାରୀ ଫେରି ପାଇଲେ କ'ଣ, ଦେଖୁନା ଢଙ୍ଗଟା, କପୁଷ, ଛକୋଟ, ନିଜ ଦଖଲ ସରକାର ପୁଣି ବାଜ୍ୟାପ୍ତ କଲେ ପରା; ଆରେ, ଅନାଥ ବଟେ ମ, ଆଲୁଅଟା ତାଙ୍କ ଅନାଥ ରଖେ ଯେ, ଶୋହ୍ ଭିଖାରୀ କି ?

ସେମାନେ କିଏ ଏ ବିଷୟ ଜାଣିବାକୁ ସେ ଆଗ୍ରହୀ ହୋଇ ନାହିଁ । ସେ ବୁଝିଛି, ଯାହା କାନରେ ପଡ଼ୁଛି ସେତକ ଯୁଗଯୁଗରୁ ସଞ୍ଚିତ ଘୃଣାର ଲୁହାଣି । ଯୁଗର ସତର୍କ ବାଣୀ । ସ୍ୱୟଂ ଦେଶର ନିର୍ଭୀକ ନିମନ୍ତ୍ରଣ ।

ସୁବ୍ରତ ଗ୍ରାମ ପାର ହୋଇ ଗହୀର ବିଲ ପାଖକୁ ଆସିଛି । ଫେରି ବୁଝିଛି । ସ୍ୱାଧୀନତା ପରେ ଦେଶ ଓ ଗ୍ରାମ କେତେଦୂର ଆଗେଇଛି ?

ଗ୍ରାମ ରାସ୍ତାର ଉନ୍ନତି ହୋଇଛି, କେତୋଟି ପୋଖରୀ ଓ କୂଅ ସଫା ହୋଇଛି । ସ୍କୁଲଘର ଓ ହଷ୍ଟେଲ, ଶ୍ରମଦାନ ଘର, ଲାଇବ୍ରେରୀ, ଖେଳର ସରଞ୍ଜାମ, ଦେଶ-ବିଦେଶର ଖବର ଜାଣିବାକୁ ରେଡ଼ିଓ, ଗ୍ରାମସେବକ, ପଞ୍ଚାୟତ ସଭା, ଅଦାଲତୀ ପଞ୍ଚାୟତ, ଡାକ୍ତରଖାନା, ଧାନଗୋଲା, ବହୁମୁଖୀ ସମବାୟ ସମିତି, କୃତ୍ରିମ ପ୍ରଣାଳୀରେ ଗୋ-ପ୍ରଜନନ, ଜାପାନୀ-ପ୍ରଣାଳୀରେ କୃଷି, ଚରଖା-ସଙ୍ଘ, ମେଷପାଳନ, ଜଳସେଚନ ପାଇଁ ପମ୍ପ । ବିଜୁଳି-ଖମ୍ବ ପୋତା ହେଉଛି । ହଁ, ଦେଶ ଆଗେଇ ଚାଲିଛି ।

ଆଗ୍ରହ ହୋଇ ଆସୁଛି । ଚେଷ୍ଟାରେ ଅନ୍ତ ନାହିଁ । ଉଦ୍ୟମ ଖଣ୍ଡିଭଙ୍ଗା ଦେଉଛି । ତଥାପି, ଅଭାବ ବହୁତ । କରିବାକୁ ହେବ ଅନେକ । ଅଧିକାଂଶ ଗ୍ରାମ ଲୋକେ ଦୁଇ ବେଳା ଦୁଇମୁଠା ଖାଇବାକୁ ପାଉ ନାହାନ୍ତି । ଯେଉଁମାନେ ବା ଖାଉଛନ୍ତି କଅଣ ସେମାନଙ୍କର ଖାଦ୍ୟ ? ହେଇଟି ସେମାନେ ଅରମା ବଣରୁ ଶାଗ ତୋଳୁଛନ୍ତି — ମଦରଙ୍ଗା, କନଶିର, ଘିକୁଣ୍ଡା । ସଉକ୍ ନୁହେଁ । ପେଟ-ବିକଳିଆ ! ସେମାନେ ଦର-ଲଙ୍ଗଳା, ଦର-ଲଙ୍ଗୁଳୀ । ଗୋଟେ ଲୁଗା ଦେହକୁ ପାଉ ନାହାନ୍ତି । ସେ ପୁଣି ଫଟା ।

Digitized by PPRACHIN, SOA

ଏତେ ମଇଳା ଯେ କଥାଁ ଧରିବ ନାହିଁ । ସେ ପିଲାଗୁଡ଼ିକ ଗାଈ ଛେଳି ଚରାଉଛନ୍ତି । ପାଠ ପଢ଼ିବାକୁ ଭଲେ ଉପାସ ରହିବ ଯେ—

ଅଧ ବୁଢ଼ା ସେ ଲୋକଟି କିଏ ? କେହି ତାର ନାହାନ୍ତି କି ? ବୋଝଟିଏ ମୁଣ୍ଡରେ ବହି ବାଡ଼ି ଖଣ୍ଡେ ହାତରେ ଧରି ଗୋଟି ଗୋଟି କରି ପାଦ ପକାଉଛି । ପାଦ ପୁଣି ଅବାଟରେ ପଡ଼ୁଛି । ଆଖିକି ଭଲ ଦିଶୁନାହିଁ ପରା । ଆହା ଗରିବଟି !

ସେ ପିଲା ଦଉଡି କିଏ ହୋଇଥିବେ ? ଦଶ ବର୍ଷର ଝିଅଟି—ସନ୍ଧ୍ୟା ପରି ହେବ । ଛଅ ବରଷର ଭାଇଟି । ରୁଖ ରୁ ବାଳ । ଦୁର୍ବଳ ଦେହ । ଆଟିକା ପରି ପେଟ ବାହାରିଛି । ଆଖି ବସିଯାଇଛି କୋରଡ଼ିଆ । ଦେହରେ ଲୁଗା ନାହିଁ କହିଲେ ଚଳେ । ଆମ୍ବଗଛ ମୂଳେ ବସିଛନ୍ତି । କଅଣ ଖଣ୍ଡିଏ ପାଟିରେ ପକାଉଛନ୍ତି । ଆହା, ଅନାଥ ଶିଶୁ !

ସୁବ୍ରତ ଗହିର ଗୁଡ଼ି ଗାଆଁ ବସ୍ତି ର କଡ଼ ରାସ୍ତାରେ ଚାଲିଲା । ବେଳ ପ୍ରାୟ ଦଶଟା ହେବ । ଖରା ଟାଣ ହୋଇ ଆସିଲାଣି । ଆଜ ସବୁ ଯେପରି ତା ଆଖିକୁ ନୂଆ ଦିଶୁଛି । ସବୁ ଯେପରି ଭାବ ମନରେ ଭେଦୁଛି । ସେ ଅନ୍ଧାର ଗୁହା ଭିତରୁ ଆଲୋକକୁ ବାହାରି ଆସିଛି । କେବଳ ଦେହ ନୁହେଁ, ମନ ବି । ପଚଶଟି ବର୍ଷ ସବୁ ସେ ଦେଖି ମଧ୍ୟ କିଛି ଦେଖି ନ ଥିଲା । ସବୁ ଜାଣି କିଛି ଜାଣି ନ ଥିଲା । ଗତ ସନ୍ଧ୍ୟାରେ ସୁବ୍ରତ ରଣରଙ୍କା ତାର ଆଖି ଖୋଲିଛି ।

ଗାଆଁ ର ଏ ପାଖରେ ସାତତଣିଆ ଉଚ୍ଚ ବୁଲନ୍ଦର । ଚାରିଆଡ଼େ ବାଡ଼ାବନ୍ଧ । କେଡ଼େ ହତା । ଭିତରେ ବଗିଚା । ସୁରକ୍ଷିତ ପୋଖରୀ । ପାଲଗଦାମାନ ମୌନ-ମୁନିଋଷିଙ୍କ ପରି ଧ୍ୟାନମଗ୍ନ ! ଲକ୍ଷ୍ମୀ ଏଇଠି ଅଛନ୍ତି । ଗାଆଁ ରେ ସବୁ ଲୋକଙ୍କର ଘର ଯଦି ଏପରି ହୋଇ ପାରନ୍ତା ! କାହାର ସେ ଘରଟି ! କେତେ ଲୋକଙ୍କର ଭଲ ଘର ତ ଅଛି । କୋଠାବାଡ଼ି ।

ଏ ଘରଗୁଡ଼ିକ ଦରଭଙ୍ଗା ହୋଇଛି କାହିଁକି ? ଏ କୁଡ଼ିଆରେ କେଉଁମାନେ ରହନ୍ତି ? ଅଧ ଦରିଦ୍ର—ମୂଲିଆ । ଏଇମାନେ ପରା ହଳରେ ଚାଷ କରି ଫସଲ ଉଠାନ୍ତି, ମାଂସି ଚକଟି ଇଟା ପୋଡ଼ି ଘର ତୋଳନ୍ତି, ମାଟି ତାଡ଼ି, ପଥର ଭାଙ୍ଗି କୂଅ ପୋଖରୀ ଖୋଳନ୍ତି, ରାସ୍ତା ଗଢ଼ନ୍ତି, ଏମାନଙ୍କର ଅବସ୍ଥା କାହିଁକି ଏପରି ?

କିଏ ତାଙ୍କୁ ଫାଉ ମାରୁଛି ? କେବେ ? କାହିଁକି ସେମାନେ ଜାଣି-ଜାଣି ଠକାମିରେ ପଡ଼ୁଛନ୍ତି ? ନିଜର ପରିଶ୍ରମ ଓ ଜୀବନ ସବୁର ସୁଖ ଆନନ୍ଦ ପାଇଁ ବିନା ଆପତ୍ତି ଅଭିଯୋଗରେ ଅର୍ପଣ କରିଛନ୍ତି ଓ କରୁଛନ୍ତି ? ଠକାମିରେ ପଡ଼ୁଛନ୍ତି ଓ ପଡ଼ୁଛନ୍ତି ବୋଲି ଜାଣନ୍ତି ତ ସେମାନେ ?

ସୁବ୍ରତ ଆଗକୁ ଚାଲିଲା । କୋଳାହଳ ଶୁଭୁଛି ଆର ସାହିରେ । ପାଟି, ତୁଣ୍ଡ, ହସ । କଅଣ ହେଉଛି ?

Digitized by PPRACHIN, SOA

ଆରେ, ସୁବ୍ରତ ଯେ ଏଇଠି ! ଘର ତୋଳା ହେଉଛି । କାହାର ଘର ? ଯାତି ଭୂଷଣ ହସ ବନ୍ଦ ହେଲା । ପୁରୁଷେ ଉଚ୍ଚଯାଏ ଉଠିଥିବା କାନ୍ଥ ଉପରେ ସୁବ୍ରତ ବସିଛି । ପାଖରେ ଆଉ ଦୁଇ ଜଣ । ଜଣେ ହାତକୁ ବଢ଼ାଇ ଦେଉଛି ଇଟା । ଆଉ ଜଣକ ତଳକୁ ଚକଟା ମାଟି ଟେକ ଧରିଛି । କେତେ ଜଣ ଇଟା ବୋହୁଛନ୍ତି, ଆଉ କେତେ ଜଣ ପାଣି, ବାଲି । କେତେ ଜଣ ମାଟି ଚକଟୁଛନ୍ତି । ସମସ୍ତେ କାର୍ଯ୍ୟବ୍ୟସ୍ତ !

ସୁବ୍ରତ ତଳକୁ ଡେଇଁଲା । ମାଟି ବଲ ବଲ ହାତ । ଦେହରୁ ଝାଳ ଝିଟି ପଡ଼ୁଛି । ମୁହଁ ଦିଶୁଛି ଭଙ୍ଗା । ପଗ୍ଗରିଲା, କେମେ କୁଆଡ଼େ ?

ସୁବ୍ରତ ହସିଲା । ଓଲଟି ସେ ପଗ୍ଗରିଲା, କଅଣ ହେଉଛି ?

ଘର ।

କାହାର ?

ଛକଡ଼ି ଦାଉରର । ବର୍ଷାରେ ତା'ର ଗ୍ରେଟ ଗ୍ଳକଦରଟି ଭାଙ୍ଗିଯାଇଥିଲା ଯେ ବଚଗ୍ର ତୋଳି ପାରୁ ନ ଥିଲା । ଗରିବଟା । ପିଲାକୁଆ ତାର ହଇରାଣ ହେଉଥିଲେ ।

କୋଠା ତୋଳୁଛ ?

କୋଠା ନୁହେଁ, ଇଟା କାନ୍ଥର ଘର ।

ବାଉଁଶଟାର ମୂଲ ଲାଗିଛ ତୁ ?

କେହୁ ଆମେ କାହାର ମୂଲ ଲାଗୁନୁ । ଆମେ ସବୁ "ରଣଗଡ଼ ଧର୍ମ-ବେଠିଆ ସଙ୍ଘର" ସଭ୍ୟ । ଆମ ସଙ୍ଘର ସଭାପତି ପୁରୋହିତଙ୍କ ପୁଅ ଧର୍ମାନନ୍ଦ ତ୍ରିପାଠୀ ।

ଧର୍ମାନନ୍ଦ ପାଖକୁ ଆସିଲା । ସୁନ୍ଦର ବଳିଷ୍ଠ ଯୁବକ । ସୁବ୍ରତର ପିଲାଦିନର ସାଥୀ । ବିଚକ୍ଷଣ ବୁଦ୍ଧି, ମନେ ରଖିବାର ଶକ୍ତି । ପୁରୋହିତଙ୍କର ପୁଅ ସେ ।

ଯଜମାନମାନଙ୍କର ଆଶା ଓ ଭରସା—ଗ୍ରହ ଖଣ୍ଡନ, ଦେବଦେବୀଙ୍କର ସନ୍ତୋଷବିଧାନ, ଭୂତପ୍ରେତର ନିର୍ବାସନ, ବିବାହ ବନ୍ଧନ, ନବଜାତର ନାମକରଣ, ଓଷାବ୍ରତ ପାଳନ, ପ୍ରେତଗଣର ମୁକ୍ତିଦାନ, ପ୍ରାୟଶ୍ଚିତ୍ତର ବିଧାନ—ଏସବୁ ତାଙ୍କର କର୍ମ ସିନା, ମାଟି ଚକଟା କ ପାଣିବୁହା ନୁହଁ ତ ।

ପୁରୋହିତ ମହାଶୟଙ୍କର ମତ ଅଛି ଏଥିରେ ?

ମୋତେ ତ୍ୟାଜ୍ୟପୁତ୍ର କରିବାକୁ ଧମକାଉଛନ୍ତି ।

କରୁନାହାନ୍ତି କାହିଁକି ?

ନାତଟିର ଲୋଭ । ମୁଁ ତାଙ୍କୁ କହିଦେଇଛି ଆମ ଧର୍ମ-ବେଠିଆ ସଙ୍ଘର ନିୟମ—ଯିଏ ହଳ ଧରିବ ସେଇ ଏକା ଚାଷ କରିବ । ଯିଏ ଚାଷ କରିବ ଜମି ହେବ ତାହାର । ମୁଁ ତ ତାଙ୍କର ଅବାଧ ହେଉ ନାହିଁ । ପ୍ରତି ଦିନ ପଞ୍ଚଗବ୍ୟସେବନ, ଗାୟତ୍ରୀ ପଠନ, ଯଜମାନର ଦାନ ଗ୍ରହଣ ଇତ୍ୟାଦି କର୍ମ ସମାଧାନ । ମୁଁ ବି ଜଣେ ସଙ୍ଘର ସଦସ୍ୟ ।

Digitized by PPRACHIN, SOA

ଆଉ କୋଉଟିଏ ସଂଘ ଏ ଗାଆଁରେ ଖୋଲୁଛ ?

ଏକା ଏ ଗାଆଁରେ ନୁହେଁ, ସବୁ ରାଜ୍ୟରେ ସବୁ ଗାଆଁରେ । ଅତୀତରେ ଥିଲା, ବର୍ତ୍ତମାନ ବି ରହିଛି ।

ନାମ କ'ଣ ?

ଫାଉମରା ସଂଘ ! ଖସ୍ରା ତେଜଲାରେ ମିଳାଏ, ଲାଗ ଏଥର କାମରେ !

ଧର୍ମାନନ୍ଦ ମାଟି ଚକଟିବାକୁ ଗଲେ । ଯିଏ ଯାହାର କର୍ମରେ ଲାଗିଗଲେ । ଗ୍ରାମଲୋକେ ଓ ମାଇପେ ଠୁଳ ହୋଇ ଏଇ ଧର୍ମଛଡ଼ା ଧର୍ମବେଠିଆମାନଙ୍କର କାମ ଦେଖୁଛନ୍ତି ! ସମାଲୋଚନା କରି କେହି କେହି କହୁଛନ୍ତି, ଯାଆନ୍ତେ, ଘରୁ ଖାଇ ଘୋଡ଼ା ଆଗରେ ଡେଇଁବା କଥା କାନରେ ଶୁଣିଥିବେ, ଏବେ ଆଖିରେ ଦେଖନ୍ତୁ ।

ଲୋକଙ୍କର ସମାଲୋଚନାକୁ ସେମାନେ କାନ ଦେଉ ନାହାନ୍ତି ।

ସୁବ୍ରତ ଗୁହାଁରି ହେଲା । ମନକଲା ସେ ବି ଡେଇଁ ପଡ଼ିବ ଏହି ଶ୍ରମ-ଦାନ ମହାଯଜ୍ଞ ଭିତରକୁ । ସେ ବି ହେବ ଧର୍ମ-ବେଠିଆ ସଂଘର ସଭ୍ୟ ।

ପାରିଲା ନାହିଁ । ସେ ହଇ ଶିକ୍ଷିତ । ଜମିଦାରର ଉତ୍ତରାଧିକାରୀ ।

ଏକମୁହାଁ ହୋଇ ସେ ଘରକୁ ଫେରିଲା ।

ନାଥିଆ ପଙ୍ଖା କରୁଛି । ଢୁଲାଉଛି । ମନ ଡାକୁଛି - ରାଧେ ରାଧେ । ଓହୋ, କେତେ ବର୍ଷ ପରେ କେଜାଣି ସାଆନ୍ତେ ଆଜି ମୁଠିଏ ଭଲକରି ଭୋଜନ କରିଛନ୍ତି । ଭାକୁଡ଼ି ମାଛର ମୁଣ୍ଡ ! ରାଣୀ ମା ରାନ୍ଧିଛନ୍ତି, ନିଜେ ପରଷି ଦେଇଛନ୍ତି ।

ଉପେନ୍ଦ୍ରଦେବ କଡ଼ ଲେଉଟାଇଲେ । ଆଖି ଖୋଲିଲେ । ପାଟି କରି ଉଠିଲେ, ନାଥିଆ ?

ହଜୁର—

ଠେଙ୍ଗା ?

କାନ୍ଥରେ ଡେରା ହୋଇଛି ।

କେଶବ ମହାପାତ୍ର କି ତା ଗାଆଁର ଯଦି କେହି ଉଆସ ପିଣ୍ଡାରେ ପାଦ ପକାଏ ତ ମତେ ଖବର ଦେବୁ । ମୁଁ ତାକୁ ମଡ଼'ର କରିବ ।

ଅଜ୍ଞା ହଁ । ଯଦି ରାତିରେ କିଏ ଆସେ ?

ଜଗିବାକୁ ହେବ ।

ଅଜ୍ଞା ହଁ । ମୁଁ ବାରପଟେ ଜଗିବି । ହଜୁର ତ ଦାଣ୍ଡ କଥା ବୁଝିବେ । ପକ୍କା ଜବାବ ଦେବାକୁ ରାଣୀ ମା ମହାପାତ୍ରଙ୍କୁ ଆସିବାକୁ ଖବର ପଠେଇଲେଣି ।

Digitized by PPRACHIN, SOA

ରଣସିଂହେ ଉଠି ବସିଲେ । ଗ୍ଳାଇ ନେଉଚିଲ୍‌ଣି । ଠେଙ୍ଗାଟା ମୁଣ୍ଡ ଉପରେ କାନ୍ଥକୁ ଆଉଜା ହୋଇଛି । ଚକ୍‌ଚକ୍ ଦିଶୁଛି । ତାକୁ ମଝିରେ ଗୋଟାଏ ପାହାର ଦେଲେ ମହାପାତ୍ରଙ୍କ ମୁଣ୍ଡର ଦହି ବାହାରି ପଡ଼ିବ । ସେଇଠୁ ପୁଲିସ୍ ହାଜତ୍, କେସ୍, ଓକିଲ, ଜଜ୍, ଧାଁ ଧପଡ଼ । ଟଙ୍କା, ଫାସୀ ! ଏଁ, ଫାସୀ ?

ନାଥିଆ— ।

ସାଆନ୍ତେ ।

ତୁ ପାରିବୁ ନାହିଁ ?

ମୋ ହାତ ଅଟକି ।

ନମକ-ହାରାମ୍ ।

ଆଜ୍ଞା ହଁ, ସେଇ କେଶବ ମହାପାତ୍ର । ହେଲେ, ଝିଅଟି ଅତି ଗୁଣବନ୍ତୀ । ଗୋଟିଏ ସୁଉଳରେ ତ ଗଢ଼ା । ଟଙ୍କା ପଇସା ଯାକ ଯୌତୁକ କଥା ପଛରେ କଏ ? ବଜ୍ରବାହୁ ସାନ୍ତଙ୍କ ନାଁ୍ଖି ଏକା ସେ । ଲକ୍ଷ୍ମୀକଳା ତାଙ୍କଠି ଅଛି । ଯେଉଁଘରେ ସେ ପାଦଦେବେ, ସେ ଘରେ ଧନ, ଜନ, ଗୋପ, ଲକ୍ଷ୍ମୀ ପୂର୍ଣ୍ଣ ହୋଇଯିବ । କଏ ଜାଣେ ଜମିଦାରୀ ପୁଣି ଫେରି ଆସିପାରେ ।

ଚୁପ୍ ସଇତାନ୍ ।

ସେଇ କେଶବ ମହାପାତ୍ର ଆଜ୍ଞା । ହେଲେ, କନ୍ୟାରତ୍ନଟିଏ ପାଇଛି ତ । ଏମିତ ରୂପର ଗୁଣର ଝିଅଟିଏ ଖଣ୍ଡ ମଣ୍ଡଳରେ ନାହିଁ ନ ଥିବ ।

ଦେଖିଛୁ ?

କାଖରେ କୋଳରେ ବଢ଼ାଇ ଆଣିଛି । ଶହେ ଥର କି ହଜାରେ ଥର ଦେଖିଛି । ଝିଅ ମା ତ ଦେଖିଛନ୍ତି । ମୁଁ କହୁଛି, ଜମିଦାରୀଟା ହୋଇଯାଉ, ନଗଦ ଦଶ ହଜାର ଟଙ୍କା ମହାପାତ୍ରଠୁଁ ଟିକା ଆଣିବା । ତା ଛଡ଼ା ଯାନଯୌତୁକ । ସେଇଠୁ ତାକୁ ଘର ମନା କରିଦେବା । ନମକ୍‌ହାରାମ, ଚୁପସଇତାନ୍ । କଳାବଜାରୀ— ।

ସେ ଯଦି ଆସେ ?

ଠେଙ୍ଗାରେ ତେଲ୍ ଦେଇ ପଟେଇ ରଖିଛି କ'ଣ ମାହାଲିଆ । ଆସେ ତ—, ତେଣିକି ଆଉ ଦୋଷ ଧରିବ ନାହିଁ ସାଆନ୍ତେ । ମୋ ମୁଣ୍ଡ ପାଇଁ ଦଶ ହଜାର ଆଗତୁରା ଆଦାୟ ହେବ । ତେଣିକି ଏ ମୁଣ୍ଡ ରହିଲେ ରହିବ, ଗଲେ ଯିବ । ସ୍ବକର ଥିଲା ବେଳେ ମହାପାତ୍ର ମତେ ଯେଉଁ ବ୍ରହ୍ମଚଟପଡ଼ା ଦେଇଥିଲେ ସାଆନ୍ତେ, ଆଜଯାଏ ମୋର ମନେ ଅଛି ।

କେବେ କହିନୁ ତ ?

ଲାଜର କଥା କାହାକୁ କହିବ ? ବାଘ ଉଣ୍ଡି ଥିଲି ଅନ୍ଧାରୁଆ କରି ଦକେ ଥୋଇଥାନ୍ତି । ସ୍ବଇଁ ଝଣ୍ଟେ ସେ । ଜାଣି ପାରିଲି କି କ'ଣ ସ୍ବକର ଗୁଡ଼ ଛୁ । ମୁଁ

Digitized by PPRACHIN, SOA

କ'ଣ ଗୁଣ୍ଡବାର ଜନ୍ମ ! ହେଲେ, ଲକ୍ଷ୍ମୀ ଘର ଛିଅ ଖଣ୍ଡେ ନ ଯାଉଛି । ସେଇ ଜନ୍ମ ହେଲା ବନ୍ଧୁ ଧନସମ୍ପତ୍ତି ତାର ମାଡ଼ି ଗଲାଣି । ମା ଏ କଥା ଜାଣନ୍ତି ।

ରାଣୀ ତ ସବୁ ଜାଣନ୍ତି । ବନ୍ଧୁ, ଜାତକ ପୁଛିଛୁ ?

ନ ପୁଛିଥିଲେ ପୁଛିବାକୁ କେତେବେଳ ? ପୁରୋହିତଙ୍କୁ କହିଲେ ସେ ବଳେ ସେଇଁଠୁ ହେଲେ ପାଠ କାଢ଼ି ଜାତକଟା ପୁରେଇ ଦେବେ । ଅବଧାନ ସେତକ ନ ପାରେ, ଡାକବ ତ୍ରିପାଠୀଙ୍କୁ ?

ତୁମ ସାନ୍ତାଣୀଙ୍କୁ ଡାକ ଦେଇ ଯା ।

ବୁଢ଼ା ନାଥିଆର ଆନନ୍ଦର ସୀମା ନାହିଁ । ଏତେ ଦିନ ଘରେ ରଣସିଂହେ ମମତା ଦେବୀଙ୍କର କଥା ରଖିବାକୁ ପ୍ରସ୍ତୁତ ହୋଇଛନ୍ତି । ଏ ସୁଯୋଗ କ'ଣ ସେ ଛାଡ଼ିବ ? ସେଉଁ ଅଲକ୍ଷଣୀ ଗୁଡ଼ାକ ମମତା ଓ ରଣସିଂହଙ୍କ ମଝିରେ ଆସି ଠିଆ ହେଉଥିଲେ ଯୋଡ଼ା ମାଡ଼ ଖାଇ ସେମାନେ କାଏ-କୁଆଡ଼େ ଗଲେଣି । ଆଉ ସେମାନେ ଦାଣ୍ଡ ମାଡ଼ିବେ ନାହିଁ । ସେଉଁ ହତଲକ୍ଷ୍ମୀ ଗୁଡ଼ା ଦୁଇଦା ପେଷି ଟଙ୍କା ଲୋଭରେ ସେ ଗୁଡ଼ାଙ୍କୁ ଆଣି ଜୁଟଉଥିଲେ ସେମାନେ ବି ଅଜ ଖସିଲେଣି । ଜମିଦାରୀ ନାହିଁ କି, ରଣଚଣ୍ଡ ଟଙ୍କା ନାହିଁ । ସେମାନେ ଆଉ ଫେରିବେ ନାହିଁ । ଯଦି ଫେରନ୍ତି ଶଳୁ-ଶଳାଙ୍କର ଟାଣ ଠେଙ୍ଗା ତଳରେ ପାଠ ରହୁଛି କାହିଁକି ?

ନାଥ ମୁଣ୍ଡ ହଲାଇ କହିଲା, ହୁଁ— ।

କ'ଣ ହୁଁ— ?

ସଆନ୍ତେ, ମୁଁ ଭଣ୍ଡାରପିଲା । ଗୋଡ଼ହାତ ମୋଡ଼ୁଥିଲି । ସେତକ ଗୁଣ୍ଡି ଖୁର କରିଛୁ ଧରିଲି, ସେତକ ଗୁଣ୍ଡି ମାଳା ଧରିଲି, ମାଳା ଛୋଟଇ ବି କେମିତି ଦେଇ ନେଇ ପକେଇଲେ । ବୁଢ଼ାଦିନେ ଅଫଲ ପ୍ରାଣନାଶନ ଠେଙ୍ଗାଟା ଧରିବି । ଏବା ସେଇ କେଶବ ମାହାପାତ୍ର ପାଇଁ । ଖବୁଛୁ ସଆନ୍ତେ, ଏ ମୂର୍ଖ ହୃଦୟ ମୋର ଦେଖିହ କି ପକେଇବ ।

କପିଳାସର ମହାଦେବ ଦର୍ଶନ କରିବାକୁ ଯିବୁନାହିଁ ତ ?

ଯାଇଥିଲେ ଠେଙ୍ଗାଟେ ଆଣିବାକୁ ଯିବା ଯାଇଥାନ୍ତି, ସେଇଟା ତ ଅଛି । ଗଲେ ବି ପରବାଏ ନାହିଁ ଆଜ୍ଞା, ଠେଙ୍କା-ସହରର ପଟ୍ଟନାୟକଙ୍କ ଅଖନାୟମାନେ ଯାଇଁ କେଉଁ କଣରେ ଲୁଚିଲେଣି ।

ଆଉ, ତୁ ଆଗ ତମ ମାଙ୍କୁ ଡାକ ଦେ ।

ଆଜ୍ଞା ହଁ, ସେଇଠୁ ଡାକିବି ତ୍ରିପାଠୀଙ୍କୁ ।

ନାଥିଆ ପଦାକୁ ଆସିଲା । ଦୁଇ ହାତରେ ନଣ ପାଉଁଜ ନେଲା । ଖାଲି କାଲିପରି ଲାଗୁଛି ରଣସିଂହଙ୍କର ବାହାଘର । ଏବେ ବି ସେ ବୁଢ଼ା ହୋଇ ନାହାନ୍ତି । ପଚିଶ ପୂରି ନ ଥିବ । ମା ଲକ୍ଷ୍ମୀ କାଲି ଡୋଲିରୁ ଓହ୍ଲାଇଲା ପରି ଦିଶନ୍ତି । ଦିନ

Digitized by PPRACHIN, SOA

ଗଣିଲେ ବୟସଟା ଗୁଣକ୍ଷମ ପର ଆଗରେ ଠିଆହୋଇ ତରବ ଦିନା, ରୂପ ଗୁଣିଲେ, ମନ ଜାଣିଲେ ବୟସ-ଧାରଣାର ଭୂତ ଗ୍ରାଡ଼ିପଳାଏ । ଯାଆନ୍ତେ ଆଜ ଯାଆନ୍ତାଣୀଙ୍କ କଥାରେ ମଗିଛନ୍ତି !

ସୁଟ୍‌କେସ୍ ସଜଡ଼ା ସରିଛି । ଲୁଗା, କାମିଜ, ତଉଲିଆ, ସତରଞ୍ଜି ଖଣ୍ଡେ, ବିଛଣା ଚଦର, ପାନିଆଁ — ।

ଆଉସିଟା ରଖିଲ ନାହିଁ ତ ଭାଇ—

ସୁବ୍ରତ ଗେଲ କଲ ସନ୍ଧ୍ୟାରୁ । କହିଲା, ମୋ ମୁହଁଟା ମୁଁ ଦେଖିବାକୁ ଚାହେଁ ନାହିଁ । ସେଇଟା ଅମଙ୍ଗଳିଆ ମୁହଁ । ସେ ମୁହଁ ଚାହିଁଲେ ସବୁ କାମ ବିଗିଡ଼େ ।

ମିଛୁଆଟା । ବୋଉ କହେ, ସକାଳୁ ଉଠି ଆଗ ଶିବ ଭାଇ ମୁହଁ ଚାହିଁବ ତାର ଦିନଟି ଭଲରେ କଟିବ । ଖୁଡ଼ୀ କହେ ମୋ ସୁବ୍ରତର ମୁହଁ ପରି ଆଉ କାହାର ମୁହଁ ! ସକାଳୁ ଉଠି ଆଜ ମୁଁ ନୂଆ ମାଉ ମୁହଁ ଚାହିଁଥିଲି ଯେ—

କଅଣ ହେଲା ?

ମୁଣ୍ଡ ବାଜିଲା କବାଟରେ । ଆଉସିଟା ରଖ ।

ସେଇଟା ତୁ ନେ ।

କାହିଁ ଖୁଡ଼ୀଙ୍କ ?

ତୁ ନେ । ନଣ କରବୁ ।

କାହିଁକି ସଜାଡ଼ୁଛ, କଟକ ଯିବ କି ? ଚାକିରି ମିଳିଲା ? କେବେ ପୁଣି ଆସିବ ? ବାହାଘର ହେବ । ଆଉଥରେ ଅପା ଆସିବ, ହେବ ମୋ ନୂଆବୋହୂ । ବାପା ରାଜି ହେଲେଣି । ପୁରୋହିତ ଅବଧାନେ ଜାତକ ମିଳେଇଲେଣି । ଦିନବାର ଠିକ୍ ହେବ ।

ସୁବ୍ରତ ସବୁ ଶୁଣିଛି । ବୋଉ ତାକୁ ସବୁ କହିଛନ୍ତି । ଘରର ଅଶାନ୍ତି ଦୂର ହୋଇଛି । କିନ୍ତୁ ସେ ମତ ଦେଇ ନାହିଁ । ନିଜେ ସେ ବେକାର । ଚାରି ପଇସା ଉପାର୍ଜନ କରିବାକୁ ଶକ୍ତ ହୋଇ ନାହିଁ । ଜମିବାଡ଼ିକ ଭାଗଚାଷୀଙ୍କ ହାତରେ । ହାତ ଟେକ ଯେତିକ ଦେବେ ସେତିକ । ପଚଉ ମରଜି — ଭାଗଧାନ କହି କି ଜମିଦାରର କ୍ଷତିପୂରଣ ଧନ କହି । ପାଠ ପଢ଼ି ସେ ଅପଦାର୍ଥ ହୋଇଛି । କୌଣସି କାମ କରିବାକୁ ସେ ଯୋଗ୍ୟ ନୁହେଁ । ଉପାର୍ଜନର ଏକମାତ୍ର ପଥ, ଚାକିରି । ଭୁବନେଶ୍ୱରରୁ ଇଣ୍ଟରଭିଉ ପାଇଁ ନୋଟିସ ଆସିଛି । ଅସ୍ଥାୟୀ କର୍ମଚାରୀ । କ୍ଷୀଣ ଆଶା ।

Digitized by PPRACHIN, SOA

ଭଗବତ୍ପୃଷ୍ଠଙ୍କ ଠାରୁ କିଛି ଜମି ଫେରାଇ ଆଣି ହାତଗୃଷ କରିବାକୁ ସୁବ୍ରତ ପ୍ରସ୍ତୁତ ହେଲେ ବି ପିତା ଅମତ । ଜମିଦାରର ପୁଅ ହାତରେ ହଳ କରିବ ? ସେ "ଧର୍ମ-ବେଠିଆ-ସଙ୍ଘ"ର ସଭ୍ୟ । ପ୍ରତିଦିନ ନୂଆ ନୂଆ ସଭ୍ୟ ଯୋଗ ଦେଉଛନ୍ତି । ତେଲ ତାମ୍ବୁଲ ତୃଷ୍ଣାଭୁଣା । ହାଡ଼ି ବାଉରି ପାଣ; ଜମିଦାର-ପୁଅର ଯେଉଁ ଗୋଟାଏ ଖିଆଲ । ବଡ଼ଲୋକର ଟ୍ରେଣ୍ଡ୍ରେ ଗୃଉଲଭଜା ସ୍ୱେଚ୍ଛା । ଧର୍ମ-ବେଠିଆ ସଙ୍ଘ ନୁହେଁ ତ, ଛତର-କଷ୍ଟମୀ-ସଙ୍ଘ ! ପିତା ସୁବ୍ରତକୁ ତାଗି ଆଗରେ ଧମକ ଦେଇଛନ୍ତି । ସୁବ୍ରତ ହସିଛି ।ମୂଲ ଲଗି ଦିନକୁ ସେ ଟଙ୍କାଟିଏ ରୋଜଗାର କରି ପାରିବ, ମନରେ ଏ ଦୃଢ଼ତା ତାର ଅଛି ।

ସୁବ୍ରତର ସେ ଦୃଢ଼ତା ନାହିଁ । କଗ୍ରୀଗିରି ଏକ ମାତ୍ର ଭରସା । ଷେତକ ହେଲେ ନଜେ ଉପାର୍ଜନକ୍ଷମ ବୋଲି ମନରେ ସାହାସ ଆସିବ । ତା ପରେ ସେ ବିବାହ କରିବ !

ଆରତି—! ଲାବଣ୍ୟ ପ୍ରତିମା !

ଆହୁତ ? ଶିକ୍ଷିତା । ଆଧୁନିକା । କର୍ମକୁଶଳା । ପ୍ରଜ୍ଜ୍ୱଳିତ-ଅଗ୍ନିଶିଖା ! ମନ ପତଙ୍ଗ ପରି ଧାଏଁ ।

ଛୁରୀଟାରେ ମୁଣ୍ଡ କୁଣ୍ଡାଉଛ ଗାଇ ?

ସୁବ୍ରତ ଚମକି ଉଠିଲା । ସନ୍ଧ୍ୟାର ମୁହଁକୁ ଗୃହିଁ ହସିଲା । କହିଲା, କଟକରୁ ତୋପାଇଁ କ'ଣ ଆଣିବ ?

ଆଣିବ ତ ସତରେ ? କିବାର ସତ୍ୟ କର ।

ସତ୍ୟ କଲି କହ । ଏକା ସରଗର ଚନ୍ଦ୍ର ସୂର୍ଯ୍ୟଙ୍କୁ ଛାଡ଼ି । ରେଳଗାଡ଼ି, ମଟର, ଏରୋପ୍ଲେନ,—

ସେ ଗୁଡ଼ା ମୋର ଲୋଡ଼ା ନାହିଁ ।

କଅଣ ତୋର ଲୋଡ଼ା ?

କହିବ ଆଣିବ ସତେ ?

ହଁ, ହୁଲେ କଣ !

ଅସନା କଥା । କିବାର ସତ୍ୟକର ।

ସତ୍ୟ କଲି କହ ।

ସୁସନ୍ଧ୍ୟା ଭାଇର କାନରେ ମୁହଁ ଲଗାଇଲା । କହିଲା, ଆହୁତ ।

ସନ୍ଧ୍ୟାର ହସିଲା ମୁହଁଟିକୁ ମୁହୂର୍ତ୍ତେ ବିସ୍ମିତ ହୋଇ ଗୃହିଁଲା । ହସି ହସି ତାର ଟିକି ଟିକି ହାତ ଦିଓଟି ଧରିଲା । ପଲଙ୍କ ଉପରୁ ତଳକୁ ଓହ୍ଲାଇ ଆଗ୍ରହରେ ପଗ୍ଚରିଲା, କି ଚଳ ସେ କହୁଛି ।

ଜାଣେ ନାହିଁ ।

Digitized by PPRACHIN, SOA

ଆସିବାକୁ କହିଲୁ ଯେ—।

ତମେ ତ ଜାଣ । ମୋଅର ସେଇ ଚଜଟି ଲେଡ଼ା ।

ମୁଁ ଜାଣେ ?

ଜାଣି ନା ତ ଯେତେ ଯେଉଁଠି କାଗଜ ପଡ଼ିଛି ଟେବୁଲ ଉପରେ, ସବୁଥିରେ ନାଲି ପେନ୍‌ସିଲ, ନେଳି ପେନ୍‌ସିଲ, କଳା ପେନ୍‌ସିଲ, କାଳି ସବୁଥିରେ ପ୍ରକାର ପ୍ରକାର ଅକ୍ଷରରେ ଆହୁତ, ଅହୁତ ଲେଖିଛି କାହିଁକି ?

କି ଚଜ ସେ ଜାଣୁ ?

ଭଲ ଚଜ ହୋଇଥିବ ।

ସୁବ୍ରତ ସନ୍ଧ୍ୟାର ନାକ ଟାଣି କହିଲା, ସେଇଟା ଗୋଟାଏ ନାଆଁ ଯେ — ଲୁଚିଁ ହେବ ନାହିଁ, ଧରି ହେବ ନାହିଁ କି ଆସି ହେବ ନାହିଁ ।

ସନ୍ଧ୍ୟା ମୁହଁ ଶୁଖିଗଲା ।

ପିତାଙ୍କର ସୁପୁତ୍ର ସେ,ଆଦେଶ ଅମାନ୍ୟ କରି ନାହିଁ । ବନ୍ଧୁ ରତ୍ନାକରଠାରୁ ସୁପାରିଶ୍ ପତ୍ର ନେଇଛି ।

ରତ୍ନାକର ଗରିବ । କେଉଁ ଦୂର ମୋଫସଲର ପିଲା । ମାଇନର୍‌ରେ ବୃତ୍ତି ପାଇ ସହରକୁ ସେ ଆସିଥିଲା ଉଚ୍ଚ ଶିକ୍ଷା ପାଇଁ । ଶାନ୍ତ ଶିଷ୍ଟ ନମ୍ର । ଅଭାବ ଭିତରେ ମାତ୍ର ଚଳଟି ସେ ଆଗକୁ ଚାଲିଥିଲା । ଚାରି ବର୍ଷ କାଳ ସୁବ୍ରତର ସାହାଯ୍ୟ ସେ ଗ୍ରହଣ କରିଥିଲା । ମାଟ୍ରିକୁଲେସନ୍‌ରେ ଯେଉଁ ବର୍ଷ ସେ ପ୍ରଥମ ହୋଇ ପାଶ୍ କରିଥିଲା, ସୁବ୍ରତ ଗଲା ଅଟକି । ସବୁ କ୍ଲାସରେ ଦମ୍ ନେଇ ନେଇ ସୁବ୍ରତ ସପ୍ଲିମେଣ୍ଟାରି ପରୀକ୍ଷାରେ ବି.ଏ. ପାସ୍ କଲା ବେଳକୁ ରତ୍ନାକର ଅହ୍ଲାହାବାଦ୍‌ରୁ କୃତିତ୍ୱର ସହିତ ବର୍ଷକ ଆଗରୁ ଏମ. ଏ. ପାସ୍ କରି ସେଇଠି ଲୋକଲୋଚନ ଅଗୋଚରରେ ସେ ଆଇ. ଏ. ଏସ୍. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲା । ସେ ଆଇ. ଏ. ଏସ୍. ହେଲା ।

ଶ୍ୱଶୁର ତାର ଇଞ୍ଜିନିୟର । କଟକରେ ବଡ଼ କୋଠା । ପୁଅଟିକୁ ବର୍ଷ ନ ପୁରୁଣୁ ଏବେ ଡିଫେଟିଏ ହୋଇଛି । ରତ୍ନାକର ଆଜି ସେଟଲ୍‌ଡ୍ । ହାକିମାତ— କଲେକ୍ଟରୀର ଦାୟିତ୍ୱ ଓ ଅହମିକା ହାତ ଧରା-ଧରି ହୋଇ ଚାଲିଥିଲେ ବି ସେ ଭଲ ମଣିଷ । ମଣିଷ ଚିହ୍ନେ । ଅତୀତକୁ ପାସୋରି ନାହିଁ କିନ୍ତୁ ଘୋଡ଼ାଇ ଦେବାକୁ ଆଗ୍ରହ । ପରିଚିତଙ୍କ ପାଖରୁ ଆଡ଼େଇ ରହିବାର ଚେଷ୍ଟା । ଅଗତ୍ୟା ସାକ୍ଷାତ୍ ହେଲେ

Digitized by PPRACHIN, SOA

ଭଦ୍ରତାର ମୂର୍ତ୍ତି ଅବତାର । ଆର୍ଥିକ ସାହାଯ୍ୟ ଛଡ଼ା ଅନ୍ୟ ଯେ କୌଣସି ପ୍ରକାର ସାହାଯ୍ୟ ଦେବାକୁ ଅକୁଣ୍ଠିତ ।

ସୁପାରିଶ୍ ପତ୍ର ଦେଇ ଅତୀତ କୃତଜ୍ଞତାକୁ ସେ ସୁଝି ପାରିଛି ବୋଲି ହୁଏ ତ ତାର ଧାରଣା ! ବହୁ ଲିଖିତ ଅଲିଖିତ ସୁପାରିଶ୍‌ର କମିଶନ୍ ହେଉ, କି ବହୁ ପ୍ରାର୍ଥୀଙ୍କର ବିଦ୍ୟା ଓ ଦକ୍ଷତାର ତଉଲ ଫଳରୁ ହେଉ, ଅସ୍ଥାୟୀ ଚାକିରିଗୁଡ଼ିକରୁ ଗୋଟିକ ପାଇଁ ସେ ଉପଯୁକ୍ତ ବିବେଚିତ ହେଲା ନାହିଁ । ତାଙ୍କୁ ଧନ୍ୟବାଦ ଯେ ସେ ଅତି ଉତ୍ସାହରେ ସଙ୍ଗେ ସଙ୍ଗେ କୃତକାର୍ଯ୍ୟ ହୋଇଥିବା ବନ୍ଧୁମାନଙ୍କୁ ଅଭିନନ୍ଦନ ଜଣାଇ ଦେଲେ । ଯେଉଁମାନେ ଅକୃତକାର୍ଯ୍ୟ ରହିଲେ ସେମାନଙ୍କୁ ସହାନୁଭୂତିପୂର୍ଣ୍ଣ କୋମଳ ଭାଷାରେ ଉତ୍ସାହିତ କରି କହୁଥିଲେ, ଭବିଷ୍ୟତ ଉପରେ ଆସ୍ଥା ରଖ ।

ମନ ଦୁଃଖରେ ଖଣ୍ଡଗିରିର ଗୋଟିଏ ନିର୍ଜନ ଗୁମ୍ଫା ଭିତରେ ବସି ଚାରି ଆଡ଼ର ସବୁଜ ପ୍ରକୃତିକୁ ଚାହିଁଲା । ଅରଣ୍ୟ ଭିତରୁ ନାନା ଜାତି ପକ୍ଷୀଙ୍କର କୋଳାହଳ । ଗଛ ଉପରୁ ମାଙ୍କଡ଼ ଦଳର ଦାନ୍ତ ରଗଡ଼ା । ତାକୁ ଯେପରି ତିରସ୍କାର କରି କହୁଛନ୍ତି — ଦୁଃଖ କାହିଁକି, ଭବିଷ୍ୟତ ଉପରେ ଆସ୍ଥା ରଖ ।

ସୁବ୍ରତକୁ ବିରକ୍ତ ଲାଗିଲା । ଆଖି ଫେରାଇଲା ଗୁମ୍ଫା ଭିତରକୁ । କାନ୍ଥରେ ଜୀବନ୍ତ ପରି ଦିଶୁଛି । ନିର୍ଜୀବ ପଥର ମୂର୍ତ୍ତି ଗୁଡ଼ିକ, ତାର ଆଡ଼କୁ ଜଳ ଜଳ କରି ଅନାଇଁ ରହିଛନ୍ତି । ଯୁଗ ଯୁଗ ଧରି ସେଇ ଭଙ୍ଗୀ ସେଇ କର୍ମ । ସେହି ଚାହାଣି । ଯୁଦ୍ଧର ଛବି । ନାରୀ ମୂର୍ତ୍ତିଟିକୁ ଉଦ୍ଧାର କରୁଛନ୍ତି । ଆପ୍ରାଣ ଉଦ୍ୟମ । ଅବଳା ନାରୀର ଚିତ୍କାର । କେତେ ଯୁଗ ବିତି ଯାଇଛି, ତେବେ ବି ସରି ନାହିଁ ।

ଅତି ନିକଟରୁ କାହାର ପାଟି ଶୁଭିଲା । ଭାବନା ଭାଙ୍ଗିଲା । ଏ ସ୍ଥାନ ନିର୍ଜନ ନୁହେଁ । ତାଆରି ପରି କେତେ ଲୋକ ଅତୀତର ପ୍ରେତପୁର ଦେଖିବାକୁ ଆସିଛନ୍ତି; ସେଇମାନଙ୍କ ଭିତରୁ କେହି ହୋଇଥିବେ । ଆଗ ପାହାଡ଼ ଉପରେ କେତେ ଅପରିଚିତ ନରନାରୀ ଏ ଗୁମ୍ଫା ସେ ଗୁମ୍ଫା ପଶି ବିଚରଣ କରୁଛନ୍ତି । ଦୃଷ୍ଟି ଫେରିଲା ସବୁଜ ପ୍ରକୃତି ମଝିରେ ଦୂରରେ ଗଢ଼ା ହୋଇଥିବା ଅସୁମାର କୋଠା ଉପରେ । ନୂଆ ସହର ରାଜଧାନୀ ଭୁବନେଶ୍ୱର । ଦୂରରୁ ଲିଙ୍ଗରାଜଙ୍କର ମନ୍ଦିର ଅନାଇଁ ରହିଛି । ଅତୀତ ଓ ବର୍ତ୍ତମାନର ମିଳନ ସ୍ଥଳ ଏଇ ପୁରୁଣା ଓ ନୂଆ ଭୁବନେଶ୍ୱର, ଅକୃତକାର୍ଯ୍ୟ ଯୁବକ ସୁବ୍ରତକୁ ଉତ୍ସାହିତ କରି ଇଙ୍ଗିତ ଦେଉଛନ୍ତି — ଭବିଷ୍ୟତ ଉପରେ ଆସ୍ଥା ରଖ ।

ଭବିଷ୍ୟତ ତ ଅତୀତ ପରି ଅନନ୍ତ । ସେ ଚିରସ୍ଥାୟୀ ମଥାନତ-କାରୀ । ଆପତ୍ତି ଓ ଅଭିଯୋଗ ତାର ନାହିଁ । କାଳନେମି ଚକରେ ଲାଗିଛି ତାର ସତ୍ତା । ଚକ ବୁଲୁଛି । ଭବିଷ୍ୟତର ସତ୍ତା ଟାଣି ହୋଇ ଆସି ଅତୀତରେ ମିଶୁଛି । ତାର ଅସରନ୍ତି ଭଣ୍ଡାର ଶେଷ ହେଉ ନାହିଁ । ଅତୀତର ଗର୍ଭ ବି ହେଉ ନାହିଁ ପୂର୍ଣ୍ଣ । କିନ୍ତୁ, ସୁବ୍ରତ

Digitized by PPRACHIN, SOA

ବନ୍ଦୀବାନ୍ଧୁର ସୁନ୍ଦରର ଆଶାର ଭବିଷ୍ୟତ୍ ମୋଟେ ଦୁଇଟି ମାସ। ଏଇ ଦୁଇ ମାସ ସେ ଆଶା ମୁଖରେ କେଉଁ ଅନିଶ୍ଚିତ ଅଳଶ କର୍ମର ଅପେକ୍ଷାରେ ବସି ରହିବ ?

ମନ ନାହିଁ ନାହିଁ କରି ଉଠିଲା। ଦୁଇ ମୁହୂର୍ତ୍ତ ବି ସେ ଅପେକ୍ଷା କରିବ ନାହିଁ। ପିତାମାତାଙ୍କୁ ଜଣାଇ ଦେବ, ସେ ଆଉ ସୁନ୍ଦର ପାଇଁ କାହାର ସୁପାରିଶ ଗ୍ରହଣ କରିବ ନାହିଁ। କାହାର ଆଗରେ ଗୋଡ଼ ଭାଙ୍ଗି ଠିଆ ହୋଇ ଆଜ୍ଞା-ହଁ କହି ପାରିବ ନାହିଁ। ସେ ଯୁବକ. ସେ ଦୁଇ ଅକ୍ଷର ପଢ଼ିଛି, ଦେହରେ ତାର ଶକ୍ତି ଅଛି। ମନରେ ଅଛି ଜୋର। ଅନ୍ୟ ଉପାୟରେ ସେ ରୋଜଗାର କରିପାରିବ। ଦେଶରେ ଭୂମିହୀନ ଓ ନିଯୁକ୍ତି-ହୀନ ବହୁ ଲୋକ ଅଛନ୍ତି। ସେ ମଧ୍ୟ ସେହିମାନଙ୍କ ଭିତରୁ ଜଣେ। ବେକାର ଦଳର ସଭ୍ୟ। ଧର୍ମ-ବେଠିଆ ସଂଘର ମେମ୍ବର ହେବାକୁ ସେ ପସନ୍ଦ କରେ ନାହିଁ କି ଫାଉମଗ୍ର ଗୋଷ୍ଠୀର ସଦସ୍ୟ ସେ ହୋଇ ପାରିବ ନାହିଁ।

ସୁବ୍ରତ ଗୁହା ଭିତରୁ ପଦାକୁ ବାହାରିଲା। ଖରା ନଇଁ ଆସିଲାଣି। ଅନ୍ଧକାର ପ୍ରେତପୁରରେ ଆଉ ବେଳ କଟାଇବାକୁ ସୁବିଧେ ନାହିଁ। ସେ ଓହ୍ଲାଇ ଆସିଲା।

ସମସ୍ତେ ସେମାନେ ରୋଜଗାର କରୁଛନ୍ତି।

—ବାବୁ, ବୁଟ୍ ପାଲିସ, ଚନାଗ୍ରେର ଗରମ, ବଙ୍ଗ୍ଲା ହ୍ୱାପତ୍ରା, ହରେକ୍ ଚଜ୍ ଛଅାନା, ଆଜ୍ଞା କୁଲି, ଏଇ ରିକ୍ସା, ଚା ଗରମ, ସମାଜ, କାନ ସଫାଇ,...। ସମସ୍ତେ – ଇଟା ପଥର ବୁହା ଚାଲିଛି, କୋଠା ତୋଳା, ରାସ୍ତାରେ ପଡ଼ୁଛି ଗୋଡ଼ି। ମାଲ୍ ବୋଝେଇ ଶଗଡ଼ ଗାଡ଼ି, ଉନ୍ ପଡଆ ତାଆସ ଖେଳ, ମ୍ୟାଜିକ୍, ସିନେମା, ଥିଏଟର......, ସବୁଠି ନିଯୁକ୍ତି ?

ହୋଟେଲର କୋଠରୀର ତାଲା ଖୋଲିଲା। ସ୍ୱିଚ ଟିପି ଘର କଲା ଆଲୋକିତ। ଦୋତାଲା ଉପରୁ କଟକ ସହରର ବଡ଼ ରାସ୍ତା ଦେଖାଯାଉଛି। ରାସ୍ତା ସେ ପାଖେ ତ୍ରିକୋଣି-ପାର୍କ। ସୁରକ୍ଷିତ ଗଛ ଗହଳି ଭିତରେ ବିଭିନ୍ନ ରଙ୍ଗର ବଲ୍ବ ଆଲୁଅ। ରେଡ଼ିଓର ଘାଉଁ ଘାଉଁ ଶବ୍ଦ—କିଏ କିଅଣ କହୁଛି ଅଥବା ସମ୍ବାଦ। ରାସ୍ତା ଉପରେ ଗାଡ଼ି ମଟର, ଶୁଭୁଛି ଘଣ୍ଟି ଓ ହର୍ଣ୍ଣ। କଟକ ସହର କାର୍ଯ୍ୟ-ବ୍ୟସ୍ତ। ଆଶା ଓ ଉତ୍ସାହ।

ଏକା ହତଭାଗ୍ୟ ସୁବ୍ରତ।

ଗୋପୀ-କୃଷ୍ଣଙ୍କ ପାଖେ ଘିଅ ଦୀପ ଏବେ ବି ଜଳୁଥିବ। ମା ତଳେ ମୁଣ୍ଡ ଲଗାଇ ପ୍ରାର୍ଥନା କରୁଥିବେ—ସୁନ୍ଦର ଖଣ୍ଡି ହୋଇ ଯାଉ, ବୋହୂ ଘରକୁ ଆସିବ। ସୁସମ୍ବାଦଟା ଜାଣିବାକୁ ପିତା ବ୍ୟଗ୍ର ହୋଇ ରହିଥିବେ ଧନ ଆଶାରେ ନୁହ, ମାନ ଆଶାରେ। ସୁବ୍ରତ କପାଳରୁ ଝାଳ ପୋଛୁଥିବ। ସୁସନ୍ଧ୍ୟା ନୂଆମାଆଙ୍କୁ ପଚାରୁଥିବ, ଆତୁରତା କି ଚଳ ?

Digitized by PPRACHIN, SOA

କଟକ ସହରରେ ହେଇ ଗୋଟିଏ ହୋଷ୍ଟେଲରେ ଓ ଗୋଟିଏ କୋଠରୀରେ ତିନୋଟି ଦିନ ସେ କଟାଇ ସାରିଲାଣି । ସକାଳେ ନିତ୍ୟକର୍ମ ସାରି ଜଳଖିଆ ଓ ଚା ଖାଇ ସେ ବାହାରିଯାଏ । ଫେରେ ଦିନ ଦୁଇ ପ୍ରହରରେ । ମୁଠିଏ ଖାଇ ଦେଇ କୋଠରୀ ଭିତରେ ପଶେ । ସବୁ ପ୍ରକାର ଖବର କାଗଜ ଓ ମାଗାଜିନ୍ ପଢ଼େ । କେତେବେଳେ ପୁଣି ନିଦ ହୋଇଯାଏ । ନିଦ ଭାଙ୍ଗେ ପାଞ୍ଚଟାରେ । ଏପାଖ ସେପାଖ ବୁଲୁଁ ବୁଲୁଁ ସଞ୍ଜ ବୁଡ଼େ । ପୁଣି ଜଳଖିଆ ଓ ଚା । ରିକ୍ସା ଫେରୁ ଫେରୁ ରାତି ଦଶ ।

ବେକାର ଜୀବନ ହେଲେ ବି ସ୍ୱାଧୀନ ଜୀବନ । ସମୟ କିପରି କଟୁଛି, କେଉଁଠି କଟୁଛି ପ୍ରଶ୍ନ କରିବାକୁ କେହି ନାହିଁ । ମା ଯେଉଁ ଟଙ୍କା ଦେଇଥିଲେ ପ୍ରତିଦିନ ସେ କମୁଛି । ଏହିପରି ସମୟ କଟିଲେ ଦିନ କେଇଟାରେ ସେତକ ସରିଯିବ । ତା ପରେ ? ଘରକୁ ଫେରି ଯିବ ସେ ହରିଜନ-ଜମିଦାରର ଉତ୍ତରାଧିକାରୀ ବଜ୍ରବାହୁ ? ପିତାମାତାଙ୍କର ସୁପୁତ୍ର ହୋଇ ଆରତିକୁ ବିବାହ କରିବ ? ଦୁନିଆକୁ ପୁଣି ଅପଦାର୍ଥ ପୁଅ ଟିଏ ଆଣି ବେକାର ସମସ୍ୟା ତ କେବଳ ନୁହେଁ ସବୁ ସମସ୍ୟାରେ ଗୁରୁତା ବଢ଼ାଇବ ?

ଏପରି ସୁପୁତ୍ର ସେ ହେବାକୁ ଚାହେଁ ନାହିଁ । ସେଇଥିପାଇଁ ସେ ଠେକ୍‌ଠୋକ୍ ଲେଖିଦେଲା ପିତାଙ୍କ ପାଖକୁ—ଚାକିରି ହେଲା ନାହିଁ କି ହେବ ନାହିଁ । ଆଉ ଚେଷ୍ଟା କରିବା ନିଷ୍ପ୍ରୟୋଜନ । ମାତାଙ୍କୁ ଲେଖିଲା—ମହାପାତ୍ରଙ୍କୁ ଅନ୍ୟ ବ୍ୟବସ୍ଥା କରିବାକୁ କହି ଦିଅ । ସେ ନିଜକୁ କାହାରି ପାଖରେ ବିକିବାକୁ ଚାହେଁ ନାହିଁ ।

ସୁରଥକୁ ଲେଖିଲା—ଯେଉଁ ଦୁଃଖରେ ତୁ ଧର୍ମ-ବେଠିଆ ସଙ୍ଘର ସଭ୍ୟ ହୋଇଛୁ ସେ କଥା ମୁଁ ବୁଝି ପାରୁଛି । ପୁରୁଣା ପ୍ରଥା ଓ ନିୟମ ଅତି ନିଷ୍ଠୁର । ସେ ପ୍ରଥା ଦେବତା ଗଢ଼ି ନାହିଁ । ରଣଗଡ଼ ଜମିଦାରୀ ଗଲେ ମଧ୍ୟ ଯେଉଁ କ୍ଷତିପୂରଣ ଧନ ମିଳୁଛି ଓ ଯେତକ ଜମିବାଡ଼ି ଦୟା କରି ସେମାନେ ଆମକୁ ଭୋଗ ଦଖଲ କରିବାକୁ ଛାଡ଼ି ଦେଇଛନ୍ତି, ସେଥିରେ ତୋର ଓ ହନ୍ୟାର ପୂର୍ଣ୍ଣ ଅଧିକାର ଅଛି । ବରଂ ମୁଁ ଦୂରେଇ ଆସିଛି । ଦୂରେଇ ରହିବ । ନିଜେ ନିଜର ଉପାର୍ଜନର ପନ୍ଥା ଖୋଜି ନେବ । ଦେଖିବୁ ରହି ।

କି ପନ୍ଥା ସେ ଖୋଜିବ ? ପରିଚିତ ଅପରିଚିତ କେତେ ବନ୍ଧୁଙ୍କ ପାଖରେ ତିନୋଟି ଦିନ ସେ କଟାଇଛି । ଧନ ଅର୍ଜନ କରିବାକୁ ସେମାନଙ୍କର ବ୍ୟାକୁଳତା ସେ ଦେଖିଛି । ଧନ ଅର୍ଜନ କରୁଛନ୍ତି ସେମାନେ ।

Digitized by PPRACHIN, SOA

ଅରବିନ୍ଦ ଗ୍ରୁପ ଜୀବନରେ ତାଆର ପର ବୁଦ୍ଧିମାନ ପିଲା ଥିଲା । ଟଳି ଟଳି ଗୋଟିଏ ସୋପାନରୁ ଆର ସୋପାନକୁ ପାଦ ଉଠାଉଥିଲା । କେଉଁଠି ସେ ଅଟକେ ନାହିଁ । କୌଣସି ବିଷୟରେ ତିଶଣ ଘରୁ ଗ୍ଭଳିଶି ତଳର ନମ୍ବର ସେ ରଖି ନାହିଁ । ସପ୍ଲିମେଣ୍ଟାରୀରେ ଆଇ. ଏ. ପାସ୍ କରି ସେ ପୋଥିରେ ଡୋର ବାନ୍ଧିଲା । ଗରିବ ଅନୁନ୍ନତ ଜାତିର ପିଲାଟି । ରୂପଟି ସୁନ୍ଦର । ଦେହଟି ଦୁର୍ବଳ । ସମସ୍ତଙ୍କର ସହାନୁଭୂତି ପାଇବାକୁ ସେ ହକ୍‌ଦାର ।

କଥା କହି ଜାଣେ ନାହିଁ । ପୂର୍ବକାଳରେ ଅଶ୍ୱମାନେ ଡିମ୍ବରୁ ଜନ୍ମ ହେଉଥିଲେ ଏବଂ ଆକାଶରେ ଉଡ଼ୁଥିଲେ । ମାଙ୍କଡ଼ମାନଙ୍କର ହଠାତ୍ ଦିନେ ଲାଙ୍ଗୁଡ଼ କଟିଯିବାରୁ ସେମାନେ ଯନ୍ତ୍ରଣାରେ ଚିତ୍କାର କରୁ କରୁ କଥା କହିଲେ ଓ ମଣିଷ ହେଲେ । କାଳକ୍ରମେ ଅଶ୍ୱମାନଙ୍କର ଡେଣା ଛିଡ଼ିଲା । ଗଛ ଅଗରେ ବସାବାନ୍ଧି ଡିମ୍ବ ପାଡ଼ିବାର ସୁଯୋଗରୁ ବଂଚିତ ହେଲେ । ବାଧ୍ୟ ହୋଇ ଶାବକ ପ୍ରସବ କଲେ । "ଅଗ୍ନି ଖଣ୍ଡିକାର" ଏହି ଅଭିନବ ତଥ୍ୟ ପଢ଼ି ଅରବିନ୍ଦ ଅନୁପ୍ରାଣିତ ହୋଇଥିଲେ । ପ୍ରବନ୍ଧ ଲେଖୁ ଲେଖୁ ସେ ଏଇ ମୂଲ୍ୟବାନ ତଥ୍ୟଟି ଲେଖି ଦେଇଥିଲେ । ଆହୁରି ଲେଖିଥିଲେ, ପୂର୍ବ-କାଳରେ ଗୋରୁମାନେ ଅର୍ଯ୍ୟ ଚରାଉଥିଲେ ।

ସେଇ ଅରବିନ୍ଦ ଆଜି ଇନ୍‌କିଲାବ୍ ଜିନ୍ଦାବାଦ୍ ଡାକୁଛି । ହାତରେ ହରବର୍ଣ୍ଣୀ ପତାକା ଧରି ଅଗେ ଆଗେ ଗ୍ଭଲୁଛି । ବକ୍ତୃତା ଦେଇ ଜାଣିଲଣି । ହାତ ମୁଠାକରି କହି ଶିଖିଲଣି—ଭାଇମାନେ, ଦେଶର ଡାକ କାନରେ ବାଜୁଛି ତ ? ଅନ୍ୟାୟ ଅନୀତି ଅତ୍ୟାଗ୍ଭର ଅଜାଣ୍ଟି ଓ ଅନ୍ଧଯାକ୍‌ ବିରୁଦ୍ଧରେ ଅଭିଯାନ କର । ଏହି ଆମର ପଞ୍ଚ ନୀତି । ଆମ ପାର୍ଟିର ପତାକା ସ୍ୱତନ୍ତ୍ର ପଞ୍ଚବର୍ଣ୍ଣୀ । ମିଶାମିଶି । ଏ ପତାକା ଧର୍ମ ବା ଶ୍ରେଣୀ ବା ଭାଷା ବା ଅଞ୍ଚଳ ବା କର୍ମ ଭେଦର ସୂଚନା ଦେଉ ନାହିଁ । ଏ ପତାକା ରକ୍ତ ମିଶ୍ରଣର ସୂଚନା ଦେଉଛି । ତେଣୁ ଏ ପତାକା ରକ୍ତବର୍ଣ୍ଣ ଓ ସେହି ରକ୍ତ ପତାକା ଦେହରେ ମିଶାମିଶି ଆହୁରି ପଞ୍ଚବର୍ଣ୍ଣ ରହିଛି । ଏ ପତାକା ସୂଚାଇ ଦେଉଛି ବିଶାଳ ଭାରତଭୂମିରେ ଆର୍ଯ୍ୟ, ଦ୍ରାବିଡ଼, ମଙ୍ଗୋଲ, ଅଷ୍ଟ୍ରେଲଡ଼୍ ଓ ଅନ୍ୟାନ୍ୟ ଅଜଣା ଜାତିର ରକ୍ତ ପରସ୍ପର ବିଚିତ୍ର ମିଶ୍ରଣ ହୋଇଛି ଏବଂ ସବୁ ମିଶ୍ରଣର ଫଳ ହୋଇଛି ଏ ବିରାଟ ଜାତି ଗୋଟିଏ ଜାତି—ମଣିଷ ଜାତି ।

ଅରବିନ୍ଦର ଲେକ୍‌ଚର ଶୁଣି ଲୋକେ ଟେକା ପଥର ପକାନ୍ତି । ଯୋକେ ତାଳି ମାରନ୍ତି । ଅରବିନ୍ଦର ବେକରେ ଫୁଲମାଳ ଝୁଲେ । ଦରିଦ୍ର ଅରବିନ୍ଦ କଟକ ସହରର ଉପକଣ୍ଠରେ ସ୍ୱତନ୍ତ୍ରସନ୍ତ୍ରିଆ ବଡ଼ ଜମିଖଣ୍ଡେ କିଣିଛି । ଆଧୁନିକ ଢଙ୍ଗର ଘରଟିଏ ବି ତୋଳିଲଣି । ସେ ବିବାହ କରି ନାହିଁ ।

Digitized by PPRACHIN, SOA

ଓମ ପାଠର ଉଦ୍ଦେଶ୍ୟ କ'ଣ ଅରବିନ୍ଦ ?

ଅନ୍ୟାୟ, ଅନୀତି, ଅତ୍ୟାଚାର, ଅନ୍ଧତ୍ୱ, ଅବିବେକତା, ଅଜ୍ଞତା ଓ ଅନ୍ଧକାର ବିରୁଦ୍ଧରେ ସକ୍ରିୟ ଅଭିଯାନ ।

ଏହାର ଅର୍ଥ ?

ଆମ ଦଳର ନେତା ବୀର ଶ୍ରୀ ବୀରବର ଶ୍ମାନପତି ଙ୍ଖାଡ଼େଶ୍ୱର ଉଦୟ ଚନ୍ଦ୍ରଙ୍କୁ ବନ୍ଦନ । ଯଥେଷ୍ଟ ଗଚ୍ଛିତ ଧନ ତାଙ୍କର ଅଛିରେ ବଜ୍ରବାହୁ!

ତୋର କାର୍ଯ୍ୟ କ'ଣ ?

ରାଜନୀତି ଓ ବେକାର ସମସ୍ୟା ସମାଧାନ । ତୁ ବି ଯୋଗ ଦେଇଦେ ବଜ୍ରବାହୁ । ଏ ଅତି ଗୋପନ କଥା । ଆଖି ଆଖି ଖୋଲି ପାରିଲେ ରାଜନୀତି ଉତ୍ତମ । ଆଖି ଖୋଲିପାରିଲେ ମଧ୍ୟମ ଓ କେବଳ ଖୋଲି ପାରିଲେ ଅଧମ । ଟିକିଏ ଅସାବଧାନ ହେଲେ ଉତ୍ତମ-ମଧ୍ୟମ । ଏ ମହାପଙ୍କ୍ତି ମହାଯତି ଗେଟେ ମହାକବି ଚର୍ଚ୍ଚିଲ୍ଙ୍କୁ କହିଥିଲେ ।

ବଜ୍ରବାହୁ ହସି ହସି ନସ୍ୟାନ୍ତ ହେଲା । ପଚାରିଲା, ତୁ କେଉଁଠୁ ଏ ଖବର ପାଇଲୁ ଅରବିନ୍ଦ ?

ତୁ ବୋଧହୁଏ ଜାଣିନାହୁଁ ଯେ ସବୁବେଳେ ରାଜନୀତିରେ ଯୋଗ ଦେଲେ ଖବର ମାନ୍ୟୁଫାକ୍ଚର କରିବା ଆବଶ୍ୟକ ପଡ଼େ । ବଡ଼ ଲୋକର ନାମରେ ସେ ଖବର ପ୍ରଚାର କରିବାକୁ ହୁଏ । କହିବାକୁ ହୁଏ, ମୃଗମାନବ ମହାତ୍ମା ଗାନ୍ଧି କହିଅଛନ୍ତି ଯେ—, ଯେତେବେଳେ ଯାହା କହିଲେ ଲୋକେ କରତାଳି ଦେବେ ସେଇଆ କହିବାକୁ ହେବ ।

ଚର୍ଚ୍ଚିଲ୍ କବି ହେଲେ କେବେ ?

ଅତି ପିଲାଦିନେ ସେ ଶ୍ରେଷ୍ଠ ଶ୍ରେଷ୍ଠ କବିତା ଲେଖିଥିଲେ -- ଦାର୍ଶନିକ କବିତା ଯଦି ବା ଲେଖି ନଥିବେ ଏବେ ଲେଖିବେ ପ୍ରେମକବିତା । ଆହା ଆହା ସେ ଆଟମ୍-ବମ୍ ଆବିଷ୍କାର କରିଥିବାରୁ ନୋବେଲ୍ ପୁରସ୍କାର ପାଇଛନ୍ତି । ତାଙ୍କର ପିତାଙ୍କର ହିଲ୍ ବା ପାହାଡ଼ ଉପରେ ଯେଉଁ ଚର୍ଚ୍ଚ ବା ମନ୍ଦିର ଥିଲା ସେହି ମନ୍ଦିରରେ ତାଙ୍କର ଜନନୀ ଖ୍ରୀଷ୍ଟ ବା କୃଷ୍ଣଙ୍କର ପ୍ରତିମା ଆଗରେ ଉପାଧିଆ ପଢ଼ିଥିଲେ । ହଠାତ୍ ପବନ ବୋହିଲା, ଇଂରେଜରେ ଯାହାକୁ କହନ୍ତି ୱିଣ୍ଡ୍; କରକାପାତ ହେଲା, ଯାହାକୁ ଇଂରେଜରେ ଷ୍ଟୋନ ମଧ୍ୟ କୁହାଯାଇପାରେ । ସେତିକିବେଳେ ଅଶରୀରୀ ବାଣୀ ହେଲା — ତେମେ ପୁତ୍ରଲାଭ କରିବ — ଯୋଗ-ଜନ୍ମା, ଯୁଗ-ଜନ୍ମା । ସେଇ ପିଲାଟିର ନାମ ହେଲା ୱିଣ୍ଡ୍-ଷ୍ଟୋନ୍-ଚର୍ଚ୍ଚ-ହିଲ୍ । ଇତି ଅରବିନ୍ଦୋବାଚ ।

ସୁବ୍ରତ ବିବ୍ରତ ହୋଇ କହିଲା, କେବେ ତୁ ଏ ଅଗାଧ ପାଣ୍ଡିତ୍ୟ ହାସଲ୍ କଲୁରେ ଅରବିନ୍ଦ ?

Digitized by PPRACHIN, SOA

ପାଠ ଗୁଡ଼ି ଗୁଳକରି ନ ପାଇ ଦୁଇ ଦିନ ଜାଲ ଖଣ୍ଡିଆ ବାଡ଼ି ଟାଣି ଉପାସ ଭୋକରେ ଯେଉଁଦିନ ମୁଁ ଦେଶର ନିଃସ୍ୱାର୍ଥ ସେବା କରିବାକୁ ଶ୍ମାନପନ୍ଥ ଝାଡ଼େଶ୍ୱରଙ୍କର ଜନତା ପାର୍ଟିରେ ଯୋଗ ଦେଲି ସେହି ଦିନ ମୋର ଦିବ୍ୟଜ୍ଞାନ ଉଦୟ ହେଲା । ମୁଁ ହେଲି ଅଜ୍ଞାନ-ତମିସ୍ରାନ୍ଧସ୍ୟ ଜ୍ଞାନାଞ୍ଜନ-ଶଳାକା ।

ଦେଶ-ସେବକଟିଏର ଜ୍ୱଳନ୍ତ ଉଦାହରଣ ଆଖିରେ ଦେଖି, ତାଙ୍କର ଦିବ୍ୟ-ଜ୍ଞାନର ପରିଚୟ ପାଇ ବଜ୍ରବାହୁ ମନକୁ ମନ କହିଲା, ବେକାର ସମସ୍ୟା ସମାଧାନ ଓ ସମ୍ପତ୍ତି ଅର୍ଜନ କରିବାର ଏ ବି ଗୋଟାଏ ଉପାୟ । ଉଦର-ଜ୍ୱାଳା ମୁକ୍ତ ଅରବିନ୍ଦର ତୁଣ୍ଡରୁ ଆଣିଛି ଭାଷା, ନିର୍ବୋଧ ଅରବିନ୍ଦକୁ ଲୋକଚକ୍ଷୁରେ ଠିଆ କରିଛି ଗବେଷକ ଓ ଔପନ୍ୟାସିକ ରୂପରେ ।

ଅଙ୍କରେ ସିଏ ଶୂନ ରଖି ଗୋଟିଏ କ୍ଲାସରେ ଗୋଟିଏ ସ୍ଥାନକୁ ପଚା କରିଥିଲା, ଯାହାର କପାଳଟା ଫଟା ବୋଲି ଶିକ୍ଷକମାନେ ଦୁଃଖ କରୁଥିଲେ ଏବଂ ଝଟାକର ଉପଦେଶ ଦେଇ କହୁଥିଲେ, ପାଠ ତୁମର ହେବ ନାହିଁ ଚକଧର, ଅନ୍ୟ ପଥ ଧର, ସେଇ ଚକଧର ଏବେ କାର୍ ଛୁଟାଇ ବୁଲୁଛି । ପାଠ ନ ହେଲେ ନାହିଁ, ଠ ତାର ହୋଇଛି । ଅଙ୍କରେ ଯେତେ ଯେତେ ଶୂନ୍ୟ ପାଇଥିଲା ସେ ଗୁଡ଼ାକ ବ୍ୟାଙ୍କ ଏକାଉଣ୍ଟରେ ଯୋଗ ହେଉଛି ଡାହାଣ ଆଡ଼େ । ସେ ଆରମ୍ଭ କରିଥିଲା ଆଳୁ ବେପାରରୁ । ଜନେ ବନ୍ଧୁଟିଏ ଥିଲା ବୋଲି ବଜ୍ରବାହୁକୁ ଚିହ୍ନିଲା, ଏଇ ତ ବଡ଼ ଭାଗ୍ୟ !

ସେ ବି ଉପଦେଶ ଗୁଡ଼ାକ ବିନା ମୂଲ୍ୟରେ ବନ୍ଧୁମାନଙ୍କୁ ବିତରଣ କରୁଛି, ବ୍ୟବସାୟ ପାଇଁ ଟଙ୍କା ପଇସା ଲୋଡ଼ା ହୁଏ ନା ରେ ବଜ୍ରବାହୁ, ଲୋଡ଼ା କେବଳ ମନ ଓ କୌଶଳ ।

କପଟ ?

ସେମାନଙ୍କୁ ମୁଁ ହାତରେ ରଖି ପାରିଛି । ସେମାନଙ୍କ ପାର୍ଟିକୁ ମଜବୁତ୍ କରିବାକୁ ଅକାତରେ ଧନଦାନ କରିଛି । ଫୁଲମାଳ, ଟି ପାର୍ଟି, ଅଭ୍ୟର୍ଥନା ସବୁ ଯୋଗାଡ଼ କରେ ମୁଁ । ଦରକାର ବେଳେ ପହିଲ୍‌ମାନ ଓ କରତାଳିଆ ବି ଯୋଗାଡ଼ କରେ । ମୋର ସବୁ ସୁବିଧା ମୁଁ କରେଇ ନିଏ ।

ନିଜର ଦକ୍ଷତା ନ ଥିଲେ ପଧାନ୍ତ ଧରଣୀ ତଳେ କେବେ ଯଦି ହେବୁ ତ ଚକଧର, ଚକ ଘୁଞ୍ଚି ଶଙ୍ଖ ଧରିବାକୁ ପଡ଼ିବ ।

Digitized by PPRACHIN, SOA

ବ୍ୟାଙ୍କ୍ ଏକାଉଣ୍ଟ ? ତା ଛଡ଼ା ଦକ୍ଷତା ହାସଲ ହେଲଣି । ଖାଦ୍ୟକୁ କିପରି ଅଖାଦ୍ୟ କରି ସୁଖାଦ୍ୟ ବୋଲି ପ୍ରଚାର କରିବାକୁ ହୁଏ ସେ ବିଦ୍ୟା ବି ଶିଖିଲଣି ।

ସତ କହେଁ, ତୁ ଖୁଣୀ ?

କହିପାରୁ ବଜ୍ରବାହୁ, ଯେହେତୁ ତୁ ଗୁଣୀ; କିନ୍ତୁ ଟଙ୍କା-ମୁଣି, ଆହ୍ୱା, ସ୍ୱର୍ଣଶିଷ୍ଟ ସହ୍ୱାରଣୀ, ଏ କଥା ତୁ ଭୁଲି ଯାଉଛୁ । ଆରେ ନିର୍ବୋଧ ! ତୋ ବାପର ଧନ ଅଛି । କିଛି ଆଣି ଗୋଟାଏ ବ୍ୟବସାୟ ଆରମ୍ଭ କର ତା ପରେ ମନ୍ତ୍ର ଶିଖିବୁ । ହଉ, ଭାଇ ନମସ୍କାର ।

ଚକ୍ରଧର ଦେଶଦ୍ରୋହୀ । କିନ୍ତୁ, ରଶି-କାନ୍ତ, ଦେଶ-ଦ୍ରୋହୀ ବୋଲି ଯାହା ନାମରେ ନାଗରା ବାଜୁଛି ? ପିତାଙ୍କର କୁପୁତ୍ର ସେ । ସବୁ ସମ୍ପତ୍ତି ବିକି ଖାଇ ବିଭବଶ କରି ହାତରେ ନାଲି ପତାକା ଧରି କେବଳ ଜନତାକୁ ଉତ୍ତ୍ୟକ୍ତ କରେ, ବନ୍ଧୁକ ଆଗକୁ ଠେଲି ଦେଇ ନିଜେ ପଛେଇ ଆସେ ।

କାହିଁକି ରେ ?

ଅତି ସହଜ ପ୍ରଶ୍ନରେ ବଜ୍ରବାହୁ, ଯେତେବେଳେ ହେଲେ ବି କମାଣ ଆଗରେ ଛାତି ଦେଖାଇ ନିଜକୁ ଆତ୍ମ ବଳି ଦେଇ ହେବ, ସେ ସାହସ ମୋର ଅଛି, କିନ୍ତୁ ଅନ୍ଧ ଜନତାକୁ ଉଦ୍‌ବୁଦ୍ଧ କରିବ କିଏ ? ତାଙ୍କର ଅନ୍ତର୍ନିହିତ ଶକ୍ତିକୁ ପ୍ରଜ୍ୱଳିତ କରିବ କିଏ ? ସେଥିପାଇଁ କହୁଛି, ତୁ ବି ଚାଲିଆ—

ବଜ୍ରବାହୁ ହୋଷ୍ଟେଲକୁ ଫେରି ରାତି ଅଧରେ ଛାତକୁ ଚାହିଁ କଡ଼ି ବରଗା ଗଣୁଛି । ସବୁ ବିଷୟ ଚିନ୍ତା କରୁଛି । କେତେ ବନ୍ଧୁ କେତେ ଉପାୟରେ ବେକାର ସମସ୍ୟା ସମାଧାନ କରିଛନ୍ତି । ସେ କରିବ କ'ଣ ?

ଧନଞ୍ଜୟର ଭେଟ ବି ଦିନେ ପାଇଥିଲା ବଜ୍ରବାହୁ ଅନାହୂତ କାଠଯୋଡ଼ି କୂଳରେ । ସଞ୍ଜର ଉଷୁମ ପବନ ତାତିଲା ବାଲି ଉପରୁ ମାଡ଼ି ଆସୁଥାଏ । ମଇଳା ଲୁଗା ଓ ତାଳିପକା ମଇଳା ଖଦଡ଼ କାମିଜ ପିନ୍ଧି ଦେଖା-ଗଢ଼ା ଘାଟ ପାଖରେ ଓସ୍ତଗଛ ତଳ ବନ୍ଧନୀ ଉପରେ ଏକୁଟିଆ ସେ ବସିଥାଏ । ଚିହ୍ନିଲା ଲୋକେ ପାଖକୁ ନ ଯାଇ କଣେଇଁ ଚାହିଁ ବେଗି ବେଗି ପାହୁଣ୍ଡ ପକାନ୍ତି । ନଜାଣିଲା ଲୋକେ ପାଖକୁ ଗଲେ ସେ ମୁହଁ ବୁଲାଏ । କେହି କିଛି ପଚାରିବାକୁ ଚାହିଁଲେ ସେ ପକେଟରୁ ଖଣ୍ଡେ କାଗଜ କାଢ଼ି ଧରାଇ ଦିଏ । ଉପର ଅଧରେ ଧନଞ୍ଜୟର ଫଟୋ ଲଗା ହୋଇଛି । ଆଉ ଅଧକରେ ଫଟୋ ତଳେ ନିଜ ହାତରେ ସେ ଲେଖିଛି—

Digitized by PPRACHIN, SOA

ମୁଁ ଧନଞ୍ଜୟ ଦାସ। ତଳ କୋର୍ଟରୁ ଉଠି ଉଠି ସବା ଉପର କୋର୍ଟ ଯାଏ ଗଲି। ସମସ୍ତଙ୍କ ନଜରରେ ମୁଁ ଧପ୍ପାବାଜ୍ ବୋଲି ପ୍ରମାଣିତ। ଛଅ ମାସ ଜେଲ୍ ଭୋଗି ଚରିତ୍ର ଶୋଧନ କରି ଫେରି ଆସିଛି। ନିୟମ ପ୍ରମାଣେ ମୁଁ ବର୍ତ୍ତମାନ ସାଧୁ-ପୁରୁଷ। ସବୁ ବିଶ୍ୱାସ ହେଉଛି ତ ମୋତେ ନିମନ୍ତ୍ରଣ କରନ୍ତୁ।

ତୁ ସାଧୁପୁରୁଷ, ଏଥିରେ ମୋର କେବେ ସନ୍ଦେହ ନ ଥିଲା କି ଏବେ ବି ନାହିଁ। ତୋତେ ମୁଁ ନିମନ୍ତ୍ରଣ କରୁଛି ଧନଞ୍ଜୟ —

ସତେ ତୋର ଏ ବିଶ୍ୱାସ ଅଛି ? ଖବର କାଗଜରେ ମୋ ସମ୍ବନ୍ଧରେ ଯେଉଁ ସବୁ କଥା ବାହାରିଥିଲା, ତୁ ପଢ଼ିଛୁ ? କୋର୍ଟଗୁଡ଼ିକର ରାୟ ନକଲ ତୁ ପଢ଼ି ନାହୁଁ। ସବୁ ତତେ ପଢ଼ିବାକୁ ଦେବି। ତୋ ପାଖରେ ମୁଁ ଅପିଲ୍ କରିବି।

ଦଣ୍ଡ ତ ଭୋଗ ସାରିଲୁ।

ମୋର ମନ ସେ ଦଣ୍ଡକୁ ଗ୍ରହଣ କରିବ ନାହିଁ। ମୋର ମନ ମୋର ଆସ୍ଥା ଆଗରେ ଏବେ ବି ଦୃଢ଼ଭାବେ ସଂକଳ୍ପ ପ୍ରକାଶ କରୁଛି — ମୁଁ ନିର୍ଦ୍ଦୋଷ। ମୁଁ ଧପ୍ପାବାଜ ନୁହେଁ। ଅନ୍ୟମାନେ ପଇସା ଖାଇ ମୋ ମୁଣ୍ଡରେ ଅଠା ବୋଳିଛନ୍ତି। ଅନ୍ୟମାନଙ୍କ ଉପରେ ପ୍ରଗାଢ଼ ବିଶ୍ୱାସ ରଖି ମୁଁ କାମ କରୁଥିଲି।

ହୋଟେଲ୍‌ରେ ଭୋଜନ ପରେ ବିଜୁବାବୁଙ୍କର ବୈଠକରେ ବସିଲାବେଳେ ସେ କହିଲା ପୁଣି, ଶୁଣ୍, କାନରେ ବାଜୁଛି ସେ ଗୀତଟି, ରେଡ଼ିଓ ଷ୍ଟେସନ୍‌ର ରେକର୍ଡ଼ ସଙ୍ଗୀତ ? ମୁଁ ଲେଖିଛି ତାକୁ; "ଅନ୍ତରା" ଚିତ୍ରର ନାୟିକା ଅନସୂୟା ଗାଇଛି। ଶ୍ରୀମତୀ ସୁକାନ୍ତି ଦେବୀ ଅନସୂୟାର ରୋଲ୍‌ରେ ଗାଇଛନ୍ତି। ଚିତ୍ରତାରକା ସୁକାନ୍ତି ଆଜି ଦେଶରେ ନାମ ରଖିଛନ୍ତି। ଜେଲ୍‌ରୁ ଫେରି ଦେଖା କରିବାକୁ ଯାଇଥିଲି। ଅସାଧୁ ଲୋକଟାକୁ ଦେଖା ଦେବେ ନାହିଁ ବୋଲି ସେ ନାହିଁ କରିଦେଲେ। "ସିନେମା କମ୍ପାନୀ" ମୋର ଯାଇଛି। ଯେଉଁ ବନ୍ଧୁମାନଙ୍କ ଉପରେ ପ୍ରଗାଢ଼ ବିଶ୍ୱାସ ଥିଲା, ବିନା ଲେଖା ପଢ଼ିରେ କେବଳ ବିଶ୍ୱାସ ଉପରେ ଯେଉଁମାନଙ୍କ ହାତରେ ହଜାର ହଜାର ଟଙ୍କା ଗୁଞ୍ଜି ଦେଉଥିଲି, ସେମାନେ ତଳୁ କଣ ଦେଲେ। ସେମାନେ ସାଧୁପୁରୁଷ। ମୁଁ ହିଁ ମ୍ୟାନେଜିଂ ଡିରେକ୍ଟର — ଅସାଧୁ। ମୋର ଘରଦ୍ୱାର ଧନସମ୍ପତ୍ତି ସବୁ ଯାଇଛି। ଅଛି କେବଳ ଯୋଡ଼ାଏ ଟାଇଟିଲ୍ — ଆଗରେ ଗୋଟାଏ ପଛରେ ଗୋଟାଏ — ଦାଗୀ ଶ୍ରୀ ଧନଞ୍ଜୟ ଦାସ, ବି. ଏ.।

ଭୁଲ ଯା ଗତ କଥା, ବର୍ତ୍ତମାନ କହ, କଃ ପନ୍ଥା।

ବୈର।

ଏଁ ?

ଡର୍ ନା। ଜେଲ୍‌ରୁ ଫେରି ମାସ ଛଟେ ଖଲାସ ହୋଇ ପ୍ରଥମେ ଏଇ କାଗଜ ଖଣ୍ଡି ଲେଖି ପାଖରେ ରଖିଲି। ପଢ଼ିଲେ ଲୋକେ ତ ବୁଝିବେ କହନ୍ତୁ, ଅପରଚିତ

ଲୋକେ ଖଣ୍ଡିଖାଣ୍ଡି ମାରି କାଗଜଟି ମୋ ହାତରୁ ବଢ଼ାଇ ଦେଇ ଘଣ୍ଟକୁ ଅନେଇ ଅନେଇ ରହନ୍ତି । ନିଜ ଉପରେ ଆଜି ଆସିଲା ବିଶ୍ୱାସ । ଅନ୍ତତଃ ହଜାର ଜଣଙ୍କ ଭିତରେ ଜଣେ ବନ୍ଧୁ ବି ଅଛି ଯେ ବିଶ୍ୱାସ କରେ ମୁଁ ଅସାଧୁ ନୁହେଁ । ଏତିକି ମୋ ମନରେ କୃତଜ୍ଞତା ଆସିଛି । ମୁଁ ଏଥର ଚେଷ୍ଟା କରିବି ।

ପୁଣି ଫେଲ୍ ଯିବୁ ।

ସେ ଭୟ ନାହିଁ । ଏପରି ପଦାର୍ଥ ସୃଷ୍ଟି କରିବ ପୁଣି ଏପରି ଉପାୟରେ ଯେ ଲୋକେ ମତେ ଦେବେ "ମହାନ୍" ନାମରେ ଭୂଷିତ କରିବେ । ତୁ ଜାଣୁ ସେ ଦକ୍ଷତା ମୋର ଅଛି । ମୁଁ ଏଥର କବିତା, ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ ଲେଖିବି । ବନ୍ଧୁ ଭାଷାରେ ବହୁ ପଣ୍ଡିତ ଏ ସବୁ ବହୁ ପ୍ରକାରରେ ଲେଖିଛନ୍ତି । ନୂଆ କିଛି କରିବା ଲୋଡ଼ା ନାହିଁ । ବହିଗୁଡ଼ାଏ ଯୋଗାଡ଼ କରି କଲମ ଧରିଲେ ହେଲା । ଶେଷ । ମୁଁ କବି ହେବି, ଉପନ୍ୟାସିକ ହେବି, ନାଟ୍ୟକାର ହେବି —

ରକ୍ଷାକର ଧନଞ୍ଜୟ । ଗଣ୍ଡଥିଲି ସିନ୍ଧକାଠି ଧରିବୁ ।
ନାଇଁରେ କଲମକୁ କରିବ ସିନ୍ଧକାଠି ।

ମନ୍ଦ ଉପାୟ ନୁହେଁ । ପେଟପୋଷିବା ଦରକାର ତ ! ଯାଚିଲେ ମଧ୍ୟ ଧନଞ୍ଜୟ ଟଙ୍କା ନେଲା ନାହିଁ । ଗଲା ଚାଲିଗଲା । ବେକାର ସମସ୍ୟା ସମାଧାନ କରିବାକୁ ସେ ଏଥର ସାହିତ୍ୟ ଚର୍ଚ୍ଚା କରିବ । କିନ୍ତୁ ବଜ୍ରବାହୁ କରିବ କ'ଣ ? ସୁପୁତ୍ର ହୋଇ ଫେରିଯିବ ଘରକୁ ? ଆରଥର ପାଣିଗ୍ରହଣ କରି ପ୍ରେମର ପାରାବାରରେ ନୌକା ଚଳାଇବ ?

କେହି କାହା ପାଖରେ ପ୍ରମାଣ ଦେଇ ନ ପାରିଲେ ମଧ୍ୟ ସମସ୍ତେ ସମସ୍ତଙ୍କ କଥା ବିଶ୍ୱାସ କରନ୍ତି ଯେ ସତ୍ୟବାଦୀ ବାଙ୍ଗାଳୀ ଥିଲେ । କୋଡ଼ିଏ ବର୍ଷ ତଳେ ସେ କଟକ ଆସିଥିଲେ । ତାଙ୍କ ସଙ୍ଗେ ତାଙ୍କର କେହି ଅଭିଭାବକ ଥିଲେ କି ନାହିଁ କେହି ସେ ବିଷୟରେ ତଦନ୍ତ କରି ନାହିଁ । ସଙ୍ଗରେ ଦଶ ବର୍ଷର ଝିଅ ଓ ଏକ ବର୍ଷର ପୁଅଟିଏ ଥିଲା ।

ଯେଉଁ ଫ୍ଲାଟ କୋଠାଟି ସେ ମାନସିଂହ ପାଟଣାରେ ଭଡ଼ା ନେଇ ଆଶ୍ରା ନେଇଥିଲେ, କାଳକ୍ରମେ ତାକୁ ସେ କ୍ରୟ କରିଥିଲେ । ଧୀରେ ଧୀରେ ଘର ଓ ବାଡ଼ିକୁ ଲାଗିଥିବା ଜମି ମଧ୍ୟ କିଣିଲେ । ଫ୍ଲାଟ ଘରଟି ଭାଙ୍ଗି ଆଧୁନିକ ଧରଣରେ ବଡ଼ ଘରଟିଏ କରିଛନ୍ତି । ଆଗରେ ବଗିଚା, ପଛରେ ବଗିଚା । ଚାରିଆଡ଼େ କମ୍ପାଉଣ୍ଡ୍ ୱାଲ । ଘରେ ବିଜୁଳିବତୀ, ବିଜୁଳି ପଙ୍ଖା, ପାଣି କଳ ।

Digitized by PPRACHIN, SOA

ଲୋକେ ପୁଣି ଅନୁମାନ କରନ୍ତି, ବିଭିନ୍ନ ବ୍ୟାଙ୍କରେ ତାଙ୍କର ଅନେକ ଟଙ୍କା ଜମା ଅଛି । ସେତେବେଳେ ସତ୍ୟବତୀଙ୍କର ବୟସ ପଇଁତିଶ ହୋଇଥିବ । ସୁନାଖଡ଼ିକା ପରି ଦେହ, ପାନ ପତ୍ର ପରି ମୁହଁ । ଆଖିରେ ଏପରି କଅଣ ଶକ୍ତି ଥିଲା ଯାହା କି ଆବାଳବୃଦ୍ଧବନିତାଙ୍କୁ ବଶ କରେ । ଆଜାନୁଲମ୍ବିତ କେଶ । ମଥାରେ ସିନ୍ଦୂର । ଆଖିରେ କଜଳ । ଦେହରେ ଓ ହାତରେ ସାମାନ୍ୟ ଗହଣା । ପରିଧାନର ପରିପାଟୀ ନାହିଁ । ପରିଷ୍କାର ଓ ଯତ୍ନଶୀଳା ।

ପିଲା ଦିଓଟିଙ୍କର ଯତ୍ନ ନେବାକୁ ଯେଉଁ ଅନାଥିନୀଟିକୁ ଘରେ ଆଶ୍ରା ଦେଇଥିଲେ ସେ ଆଉ ଯାଇ ପାରି ନାହିଁ । ସେ ହୋଇଛି ଘରର ସଂବର୍ଦ୍ଧିକା, ପିଲାଙ୍କର ଖୁଡ଼ୀ । ଗ୍ରାମର ବାଳବିଧବା ତ ହେଲେ ଆସନ୍ତି ଯାଆନ୍ତି କିନ୍ତୁ ସୁଜନ ବୁଢ଼ା ପେଟ ବେମାରି ଭଲ କରିବାକୁ ଆସି ଏ ଘରେ ଗୋଡ଼ ଦେଇ ଆଉ ଫେରି ଯାଇପାରିଲା ନାହିଁ । ଚନ୍ଦ୍ରୋଣୀ ଯେମିତି ପିଲା ଦୁଇଟାଙ୍କର ଖୁଡ଼ୀ, ସୁଜନ ଯେମିତି ତାଙ୍କର ଜେଠା ।

ଗୁଣ ଯାହାର ଥାଏ, କାହିଁ କାହିଁ ସେ ଫୁଟିଉଠେ । ମାସ ନ ପୂରୁଣୁ ପ୍ରହେଳିକାର କୁହୁଡ଼ି ପାତଳ ନ ହେଉଣୁ ସତ୍ୟବତୀ ଯାଇଁ ସୁନା ସିଂ ଘରେ ଉପସ୍ଥିତ । ବୋହୂଟା ପେଟରେ ନଅ ମାସର ପିଲା ମରିଛି । ବଡ଼ ଡାକ୍ତର ପରୀକ୍ଷା କରି କହିଗଲେ, ଶୂଳ ତ ନାହିଁ, ପେଟ ଚିରା ନ ହେଲେ ପିଲା ନ ଆସେ । ବୋହୂଟା ପୁଣି ଏଡ଼େ ଦୁର୍ବଳ ଯେ ପେଟ ଚିରିଲେ ବଞ୍ଚିବ କି ନାହିଁ କିଏ କହିବ ? ଦେହରେ ରକ୍ତ ନାହିଁ । ସୁନା ସିଂଘରେ କାନ୍ଦ-ବୋବାଳି । ଡାକ୍ତରଖାନାରୁ ଗାଡ଼ି ଆସିଲା, ସେ ଯିବ । ସତ୍ୟବତୀ ପେଟ ଆଉଁଷିଲେ । ଦୁଇପାନ୍ ହୋମିଓପାଥି । ମଲାପିଲା ତଳେ ଶୋଇଲା ।

ଏଇ ଗୋଟିଏ ଘଟଣାରେ ମାନସିଂହ ପାଟଣାରେ ଚହଳ ପଡ଼ିଗଲା — ସତ୍ୟବତୀ ମନ୍ତ୍ର ଜାଣନ୍ତି । ହାତରେ ଅମୃତ ଅଛି । ଛୁଇଁଦେଲେ ରୋଗ ବୈରାଗ ଛାଡ଼ି ପଳାଏ । ଯାହାର ଯାହା ହେଲେ ଧାଏଁ ସତ୍ୟବତୀଙ୍କ ପାଖକୁ । ହତାଶ ହୁଏ ନାହିଁ । ଆବଶ୍ୟକ ପଡ଼ିଲେ ରାତି ଅଧରେ ସେ ରୋଗୀ ଦେଖିବାକୁ ଯାଆନ୍ତି । ଲୋକେ ଦେବାକୁ ଆଗଭର ହେଲେ ବି ସତ୍ୟବତୀ ମାନସିଂହ ପାଟଣାର କାହାରିଠାରୁ କିଛି ନିଅନ୍ତି ନାହିଁ । ସତେ ଯେପରି ଏ ଗାଆଁଟି ତାଙ୍କର ଆଉ, ଏ ଗାଆଁରେ ଯେତେ ଲୋକ ବାସ କରନ୍ତି ସମସ୍ତେ ତାଙ୍କର ପରିବାରର ଲୋକ ।

ଅନ୍ୟ କେଉଁ ପଡ଼ାରୁ ଡାକରା ଆସିଲେ ସତ୍ୟବତୀ ଯାଆନ୍ତି । ଅବସ୍ଥାକୁ ଚାହିଁ ଯିଏ ଯାହା ଦିଏ ସେ ଗ୍ରହଣ କରନ୍ତି । ବଗ-ପକ୍ଷୀ ପରି ସବୁବେଳେ ଧୋବ ଧାଉଳିଆ ବେଶ । ମୁହଁରେ ସ୍ନିଗ୍ଧ ହସ, ଅଳପ ଅଥଚ, ଉତ୍ସାହବର୍ଦ୍ଧକ ମନ-ଛୁଆଁ ଭାଷା । କେହି କହେ ସେ ଡାକ୍ତର, କେହି କହେ ସେ ନର୍ସ । କାହାରି କାହାରି ଧାରଣା ସେ ଉପେକ୍ଷିତା ପତ୍ନୀ, କୁଳବଧୂ ।

ରସିକ ପୁରୁଷେ ପ୍ରେମ ନିବେଦନ କରିବାକୁ କେତେ ପ୍ରକାର ଆଗ୍ରହ ଦେଖାଇ ଆଦ୍ୟ ଜୀବନରେ ଆସିଥିଲେ, ସ୍ୱାସ୍ଥ୍ୟ ଓ ଦୈହିକ ଶକ୍ତି, ଧନ ଓ ଭୂସମ୍ପତ୍ତି ଆସନ ଓ

Digitized by PPRACHIN, SOA

ପରାକ୍ରମ, ପ୍ରଭୁତ୍ୱ ଓ କର୍ତ୍ତୃତ୍ୱ, ନମ୍ରତା ଓ ଆନୁଗତ୍ୟର ମୂଳତା ଓ ସଙ୍କେତ ଦେଇଥିଲେ, ସୁଖ ଓ ଜ୍ଞାନର ସୋପାନ ମଣ୍ଡା ଆଗରେ ଆଲୋକ ଧରିଥିଲେ । ଜଡ଼ତା ଓ ସରଳତାର ଦୃଢ଼ତାରେ ସେମାନେ ମିଠା କଥା, ମିଠା ଦୁଧ ଓ ମିଠା ଔଷଧ ଗୁଳାଇ ମୋହମୁଦ୍‌ଗର ନେଇ ଫେରିଥିଲେ ।

ସ୍ୱାମୀଙ୍କର ନାମ ସତ୍ୟବ୍ରତ ଦାସ । ସେ ଜାଏ କେହି ଜାଣନ୍ତି ନାହିଁ । ସେ ଜୀବିତ, ପଳାତକ କି ମୃତ ସେ କଥା କାହାରିକୁ ଜଣାନାହିଁ । ସତ୍ୟବତୀଙ୍କ ଘରେ ତାଙ୍କର ସ୍ୱାମୀ ସତ୍ୟବ୍ରତଙ୍କର କୌଣସି ଫଟୋ ନାହିଁ । ବୈଠକଖାନାର ସୁନ୍ଦର କାନ୍ଥରେ ବୁଦ୍ଧ, ଯୀଶୁ, ମହମ୍ମଦ୍ ଓ ଗାନ୍ଧୀଙ୍କର ବଡ଼-ବଡ଼ ଫଟୋ । କେଉଁ ଧର୍ମ ସେ ମାନନ୍ତି ସେ କଥା କାହାକୁ ଜଣାଇ ଦିଅନ୍ତି ନାହିଁ । ପିଲା ଦୁଇଟିଙ୍କୁ ପ୍ରାଣରୁ ବଳି ଭଲ ପାଆନ୍ତି । ତାଙ୍କର ସେବା, ଯତ୍ନ, ଶିକ୍ଷାରେ ମନ ପ୍ରାଣ ଢାଳି ଦିଅନ୍ତି ।

ସତ୍ୟବ୍ରତ ଦାସଙ୍କର କନ୍ୟା ଶ୍ରୀମତୀ ଆନୁତା ଦାସ ଯେତେବେଳେ କଲେଜରେ ନାମ ଲେଖାଇ ପାଠ ପଢ଼ିଲା, କଲେଜ ଯୁବକଙ୍କର ତରୁଣ ତରଳ ଚଞ୍ଚଳ ମନରେ ଟିକିଏ ତରଙ୍ଗ ଛୁଟିଥିଲା । ଆନୁତା କେବଳ ଅସାଧାରଣ ସୁନ୍ଦରୀ ନୁହେଁ, ସେ ସରଳା, ବୁଦ୍ଧିମତୀ, ଭଦ୍ର, ସ୍ନେହୀ, ମୁକ୍ତହସ୍ତା, କ୍ଷମାଶୀଳା । ମନୁଷ୍ୟଙ୍କର ଯେ ଗୁଣ । ମିଷ୍ଟଭାଷୀ, ମିଷ୍ଟହାସୀ । ସମସ୍ତ ବନ୍ଧୁ ତାକୁ ସ୍ନେହ କରନ୍ତି ।

ସାଧାରଣ ସମୟରେ ଆନୁତା କୋଟିଏ ଅତି ସାଧାରଣ ସରଳ ଝିଅ । ଲାଜକୁଳୀ ଲତା । ଆଖି ଦୁଇ ଭାବପ୍ରବଣ । ମଲ୍ଲୀଫୁଲ ପରି ଚନ୍ଦ୍ର-ଧବଳ ମୁହଁରେ ଗୋଲାପର ରଙ୍ଗ ଝଲକେ । ମୁହୂର୍ତ୍ତକରେ ସେ ରଙ୍ଗ ଉଭାଏ । ମାତ୍ରାଅତି ଗାମ୍ଭୀର୍ଯ୍ୟ । ଦୁଇ ଆଖି ଉଜ୍ଜଳି ଉଠେ । ସତେ କି ତହିଁରେ ପୂର୍ଣ୍ଣନେଇଁ ଜହ୍ନର ଜୋଛନା ଝଲେ । ସେତେବେଳେ ଦିଶେ, କେବଳ ସେତିକି । ମୁଣ୍ଡର ଅଳ୍ପ କୁଞ୍ଚିରଥା ବେଢ଼ିଭଳି ଯାଏ କଟି କେଶ, ଚଉଡ଼ା ମସୃଣ କପାଳ, ସରୁ ଭ୍ରୂଲତା, ଶଣ୍ଢୋଧାର ପରି ନାସା, ଓଷ୍ଠ ପାଟିକଲେ ଗଡ଼ିଲା ପରି ଦୁଇଧାଡ଼ି ମୁକ୍ତା ଧବଳ ଦାନ୍ତ । ପାନପତ୍ର ପରି ମୁହଁ । ଦୀର୍ଘ ସୁଦୃଢ଼ ଆବୃତ ଦେହ । ପରିପାଟିହୀନ ବେଶ ।

ଏ ସବୁ କିଛି ପଡ଼େ ନାହିଁ ଆଖିରେ । ଦିଶେ କେବଳ ଆଖି ଦୁଇଟି — ସତେଜ, ଉଜ୍ଜ୍ୱଳ ।

ସେଇ ଅନୁତା ଦିନେ ପଛରୁ ଆସି ବି. ଏ. କ୍ଲାସରେ ବଜ୍ରବାହୁର ସହପାଠିନୀ ହୋଇଥିଲା । ନ୍ୟାସନେଲ୍ କ୍ୟାଡେଟ୍ କୋରରେ ଛାତ୍ରୀ ବିଭାଗର ସାର୍ଜେଣ୍ଟ୍ ହୋଇଥିଲା । ନାମ କରିଥିଲା । କ୍ରିକେଟ୍ ଖେଳରେ ବଜ୍ରବାହୁ ପରି ସୁଦକ୍ଷ । କଲେଜ ଡ୍ରାମାରେ

Digitized by PPRACHIN, SOA

ସବୁଦେଲେ - ସେ ନାୟିକା- କେବଳ ପଦାଙ୍କର ନିପଦାବଣୀ । ପ୍ରବନ୍ଧ, ବକ୍ତୃତା ଓ କଲେଜ ସ୍ପୋର୍ଟସର ଚାମ୍ପିଅନ୍ । କେହି କେହି କହନ୍ତି, ଆହୁତ ଅଣ୍ଡିସ୍ୱରଶ୍ରୀ — ନାଷ ଦେହ ନର ଅମ୍ବାର ଆଶୟସ୍ଥଳ ।

ସୁବ୍ରତ ବଜ୍ରବାହୁ ଉଳେ କ୍ଲାଲ୍‌ଜିଏ କରି ପକାଇଥିଲା । ଆହୁତର ନିମନ୍ତ୍ରଣ ରକ୍ଷାକରି ଆଗ୍ରହରେ ଧାଇଁ ଯାଉଥିଲା । ସର୍ବୋଦତାଙ୍କର ମାତୃସ୍ନେହ ଆଦର ଅଭ୍ୟର୍ଥନାର ସ୍ୱାଦ ପାଇଥିଲା ଅନ୍ୟ ବନ୍ଧୁଙ୍କ ଘର । ମୌନ୍ତ କଳେବରରେ ଉପଦେଶ ଶୁଣି ମଥା ନତ କରି ନିଜର ଘର ନଜେ ନାଉତୋ ଧରି ଫେରି ଆସିଥିଲା । ଜମିଦାର ପୁଅର ଅହମିକା ଜାଗିଥିଲା ମନରେ । ଧୈର୍ଯ୍ୟ ଧରି ସହିଥିଲା ।

ସୁବ୍ରତକୁ ପଛରେ ଛାଡ଼ି ଆହୁତ ଚାଲି ଆଗେଇ । ବି ଏ. ପାସ୍ କଲା । ସେଉଠୁ ଏମ୍. ଏ. । ଅଙ୍କ ବିଦ୍ୟାରେ । କଲେଜ ଛାଡ଼ିଲା । ଦୁଇ ବର୍ଷ ପରେ ସୁବ୍ରତ ମଧ୍ୟ ଏମ୍. ଏ ପାସ୍ କରି ନିଜର ସମ୍ମାନ ରକ୍ଷି ପାରିଲା । ପ୍ରଥମ ଦେଖା ପରଠାରୁ ଭେଟେଥର ସେ ଆହୁତ ଘରକୁ ଯାଉଛି । ସ୍ନେହ ଓ ସମ୍ମାନ ପାଇଛି । ମନ ତାର ପ୍ରେମ ନିବେଦନ କରିଛି କିନ୍ତୁ ଭାଷା ଓ ଆଶା ଭଦ୍ରତାର ବାଡ଼ ଡେଇଁବାକୁ ସାହସ କରି ନାହିଁ । ଦେଖିଛି କଲେଜ ଛାଡ଼ିଲା ପରେ ଆହୁତର ପରିବର୍ତ୍ତନ !

ଅଧିକ ପାଠ ପଢ଼ିବାକୁ ସେ ମନା କରିଛି । ଗୃହର ଉରି ଧନ ଅର୍ଜନ କରିବାକୁ କେବେ ଯତନ କରି ନାହିଁ । କୌଣସି ଥିଏଟରରେ ଆଉ କେବେ ନାୟିକା ହୋଇ ନାହିଁ । ସେ କେମନେ ସ୍ତ୍ରୀ ଚକୋଷ ଓ ବୃଦ୍ଧା କେଠା ସୁଜନଙ୍କୁ ସାହାଯ୍ୟ କରିଛି । ମା ସର୍ବୋଦତାଙ୍କ ଠାରୁ ହୋମିଓପାଥି ଚିକିତ୍ସା ଶିଖିଛି । ସାନଭାଇ ଅନାହୁତର ପଢ଼ାପଢ଼ି ଉତ୍ତର ନେଇଛି । ବନ୍ଧୁମାନଙ୍କ ସଙ୍ଗେ ମିଷ୍ଟାଳାପ କରି ବିଦାୟ ଦେଇଛି ।

ଆଉ ଭବିଷ୍ୟତ୍ ?

ଆଖିରେ ସେଇ ଜ୍ୱଳନ୍ତ ଆଲୋକ । ମୁହଁରେ ମନଃଶ୍ଚଣା ହସ । କାହାକୁ ଉତ୍ତର ଦେଇଛି— ଭବିଷ୍ୟତ୍ କେୟାଏ ଅଛି ? ସବୁବେଳେ ମୋର ବର୍ତ୍ତମାନ ଉପରେ ଆସ୍ଥା ।

ମନର ଚିନ୍ତା କାହାକୁ ନାହିଁ । ମନ ଭିତରେ ସ୍ୱପ୍ନର ଉଠେ — ଆହା ! ଯଉବନ ଥରେ ଗଲେ ଆଉ ଆସେ ନା, ବୃଥା ବଧୂର ପରାଣପୁରେ ଝୁରେ ବାସନା । ସଙ୍ଗଫୁଟା ଗୋଲାପ ଫୁଲ ପରି ଏ ଯେ ଯୌବନ ଯେ ତ ମଉଳି ଯିବ ! ଗୋଟି ଆସିବ ବର୍ଦ୍ଧକ୍ୟର ପାଣ୍ଡୁରିମା । ତାହାକୁ ଆଶ୍ରାକରି କଟିବ ଶେଷ ଜୀବନ ? କିଏ ହେବ ସାଥୀ ?

ବାହା— ?

ଅହା, କେବଳ ଆହା ! ଆଜିକୁ ସେ ଚାକ୍ଷି ଯାଉଛି । ଚାହିଁଛି ବନ୍ଧୁବର୍ଗଙ୍କୁ ଯେଉଁମାନେ ପ୍ରେମ କରିବାକୁ ଆସନ୍ତି, ହାହାର ପ୍ରଣ ଉଠେଲେ ହସି ହସି ପଛେଇ

Digitized by PPRACHIN, SOA

ଯାଆନ୍ତୁ । ମାତୃତ୍ୱର ସମ୍ମାନ ନା ଅସମ୍ମାନ ଦେବାକୁ ବାରବାର ଅଗ୍ରସର କରନ୍ତୁ ସ୍ୱାମୀ ବୋଲି ପରିଚୟ ଦେବାକୁ ପଶ୍ଚାତ୍‌ପଦ !

କାହିଁକି ଅନୁଭା ସଙ୍ଗେ ଦେଖା କଲା ବଜ୍ରବାହୁ ? ବିଭିନ୍ନ ଭାବନା ମଧ୍ୟରେ ଏଇ ଚିନ୍ତାଟି ବହୁବାର ମନରେ ଜାଗିଛି । ମନକୁ ସେ ବୁଝାଇଲା ଭଳି ଆବୃତ୍ତିଏ ଖୋଜି ପାଇ ନାହିଁ । ଅତୀତ ଅତୀତରେ ସମାଧି ଲଭିଛି ।

ନଳରାଜା ରାଣୀ ଦମୟନ୍ତୀଙ୍କର ପଣତ କାଟି ବେଢ଼େଇ ହୋଇଥିଲେ । ଅଗନାଗ୍ନି ବଣ । ନିର୍ଜ୍ଜନ । ଶ୍ୱାପଦସଂକୁଳ । ଭୟଙ୍କର । ସଜଳସତେଜ ସକାଳ । ଗୁଣ୍ଡ ଖୁଲିଯିବାକୁ ହେବ । ସ୍ୱାମୀର କୋଳରେ ମଥାରଖି ସେ ତ ଶୋଇଥିଲା ଦମୟନ୍ତୀ ଅନୁଭା ! ଏବେ ବି ଶୋଇଛନ୍ତି । ଗୁଡ଼ିଯିବାକୁ ହିଁ ହେବ ! ସୁବ୍ରତର ଆଖିରୁ ଝରଝର ହୋଇ ଲୁହ ଝରିଥିଲା । ମୋ ଦେଶ ଛିଣ୍ଡାଇଥିଲା । ଆକୁଳତାର, ବ୍ୟଥାର, ସହାନୁଭୂତିର ପ୍ରେମ ଟାଙ୍କରା ଶୀତଳ ପ୍ରବାହ ଛୁଟାଇଥିଲା କଲେଜ ଡ୍ରାମାର ଦର୍ଶକମଣ୍ଡଳୀଙ୍କ ଭିତରେ । ନଳମୁ ବ୍ରତର ଦ୍ରୁସ୍ମାନ । କରତାଳି ହିଁ ସିନା ସେପଟେ ସୁବ୍ରତକୁ ଚେତାଇ ଦେଲା—ବାସ୍ତବ ନୁହେଁ, ଥିଏଟର !

ପୁନର୍ମିଳନ ପାଶୋର ଯାଇଛି । ସେଇ ବିଚ୍ଛେଦ ହିଁ ମନେ ଅଛି । ମିଳନଟା କ୍ଷଣିକ ; ବିଚ୍ଛେଦ ହିଁ ଚିରନ୍ତନ । ମିଳନଟା ନିର୍ଜୀବ, ରଙ୍ଗହୀନ, ରସହୀନ । ବିଚ୍ଛେଦଟି ଜୀବନ୍ତ, ରଙ୍ଗ-ରସ ପୂର୍ଣ୍ଣ, ମନୋରମ ।

ଆଠ ନଅ ବର୍ଷ ତଳର କଥା ସେ । କେତେ ଡ୍ରାମାର ନାୟିକା ହୋଇଛି ଅନୁଭା । ସେଲ୍ୟୁକସ୍‌ଙ୍କର କନ୍ୟା ହେଲେନା ସେ, କେତେବେଳେ ବନ୍ଧୁ ଦିବାକର ରାଜା ଚନ୍ଦ୍ରଗୁପ୍ତ । ସେଇ ପୁଣି ପଦ୍ମାବତୀ, ଯେବେ ବନ୍ଧୁ ଧନଞ୍ଜୟ ପୁରୁଷୋତ୍ତମ ! ଯେଉଁଠି ଅନୁଭା ନାୟିକା, ନାୟକ ହେବାକୁ ଛାତ୍ର ମହଲରେ କେତେ ପ୍ରତିଯୋଗିତା !

ସେ ସମସ୍ତ ଯାଇଛି । ଚନ୍ଦ୍ରଗୁପ୍ତ ଆଜି ଆଇ. ଏ. ଏସ୍, ପୁରୁଷୋତ୍ତମ ଦାଗୀ, ଧପ୍‌ପାବାଜ ଏବଂ ନଳରାଜା ବେକାର ।

କାହିଁକି ଯିବ ସେ ଅନୁଭା ପାଖକୁ, କଅଣ କହିବ ? ବଜ୍ରବାହୁ ଭାବି ସ୍ଥିର କରି ପାରିଲା ନାହିଁ । ବଡ଼ ହେଲଣି ଅଠେଇ । ଉଦ୍ଦେଶ୍ୟହୀନ ହୋଇ ରାସ୍ତାରେ ବୁଲୁଛି । କଟକ ସହରର ସବୁଦିନ ଘର ଝାଲେଲାମସ୍ତ ଦୁଇ ପାଖର ଦୋକାନ ଗୁଡ଼ିକରେ ଲୋକ ଗହଳି । ପାଣ୍ଟିରୁଣ୍ଡ । ବିକାକିଣା । ରାଜପଥରେ ଚାଲନ୍ତି ଜନତା, ରିକ୍ସା, ମଟର, ଘୋଡ଼ାଗାଡ଼ି, ସାଇକେଲ । ସାବଧାନ ନ ହେଲେ ହାବୁଡ଼ା ହାବୁଡ଼ି,

Digitized by PPRACHIN, SOA

ଆକ୍‌ସିଡେଣ୍ଟ ! ମନୁଷ୍ୟ-ସାଗର ମଝିରେ ନିଜକୁ ନିସ୍ୱ ଏକାକୀ ଅନୁଭବ କରୁଛି । ଏତେ କୋଳାହଳ ମଝିରେ ସେ ବଧିର ଓ ମୂକ !

ଧାଇଁ ଧାଇଁ ହକର୍‌ମାନେ ଚିତ୍କାର କରୁଛନ୍ତି—'ସମାଜ'—ପରୀକ୍ଷା ଫଳ, ଜାପାନରେ ଭୂମିକମ୍ପ ହେଲା, ଆମେରିକାରେ ନାଗ୍ରୋ ନର ପାଲଟିଲା । 'ସମାଜ'—ଦାସଙ୍କ ଉପରେ ଘୋଡ଼ା ଚଢ଼ିଲା, କଲିକତାରେ ଦିନ ଦି' ପହରେ ଡକାୟତି— । ବକ୍ରବାବୁ ପ୍ରଲୋଭନ ସମ୍ଭାଳି ପାରିଲେନାହିଁ । ଡାକ ଶୁଣିଲେ—ହେ 'ସମାଜ' ! ଗୋଟିଏ ହାତରେ ସମାଜ ଧରି ଆଉ ହାତ ଗଳାଇଲେ କାମିଜ ପକେଟରେ । ହାତ ଗଳି ଯାଉଛି । ଟଙ୍କା-ପଇସା ହରଣ ଚାଲ ! ପିକ୍‌ପକେଟ ହୋଇଛି ।

ଅଳକା ହୋଇ ମୁହୂର୍ତ୍ତେ ଠିଆ ହେଲେ । ତଳକୁ ଚାହିଁଲେ । ଦୃଷ୍ଟି ତଥାପି ଖୋଜିଲା ହଜିଲା ଧନ । ଦୁର୍ଗତି । କିଏ ନେଇ ଯାଇଛି । ଅନ୍ୟମନସ୍କତା ଓ ଅସାବଧାନତାର ଦଣ୍ଡ । କାହାକୁ କହିବ, ଦୋଷ ଦେବ ଅଥବା ଅଭିଶାପ ଦେବ ? ସମସ୍ତେ ଭଦ୍ରଲୋକ । ରାସ୍ତା ଉପରେ ଚାଲି ଯାଉଛନ୍ତି । ନିରର୍ଥକ ଚାଲନ୍ତି ଦୃଷ୍ଟି ପଡ଼ୁଛି ତା ଉପରେ ।

ବାବୁ, ପଇସା ଦିଅ ।

ବକ୍ରବାବୁ କାଗଜ ଫେରାଇ ଦେଇ ଆଗକୁ ଚାଲିଲେ । ପଛରେ ସାଇକେଲ ରିକ୍‌ସାର ଘଣ୍ଟି ଶୁଭୁଛି । ଚାଳକ ବାଟ ଛାଡ଼ିବାକୁ ପାଟି କରୁଛି । ବକ୍ରବାବୁ ପାଖେଇ ଚାଲିଲେ । ଧନ ଚୋରିହେବାର ଦୁଃଖ କାହା ଆଗରେ ସେ କହିବ ? ସହାନୁଭୂତିର ବାଣୀ ପରିବର୍ତ୍ତେ କେବଳ ଶୁଣିବ ଉପଦେଶ ।

ବହୁଦିନ ପରେ ଆଜି ଜୀବନାନନ୍ଦ ସଙ୍ଗେ ଦେଖା । ହଁ, ସତେ ତ, ଜୀବନାନନ୍ଦ ଟିକିଏ ଦୁର୍ବଳ ଦେଖାଯାଉଛି । ଆଖିରେ ଚଷମା, ମୁଣ୍ଡରେ ଶିଖିଟିଏ । ପଛେ ପଛେ ଦୋକାନରୁ ଓହ୍ଲାଇ ଆସିଲା ଝିଅଟିଏ । ସାବନା ଦୁର୍ବଳ ଗୁପିଗୁପିକା ଶାଢ଼ୀ ପିନ୍ଧା । ତାର ଆଖିରେ ବି ଚଷମା । କପାଳରେ ପାହୁଲା ଆକାରର ସିନ୍ଦୂର ବିନ୍ଦୁ । ପାଦରେ ଚପଲ । ହାତରେ କଣା ହୋଇଥିବା ଶାଢ଼ୀ ।

ସୁବ୍ରତକୁ ଦେଖି, ନ ଚିହ୍ନିଲା ପରି ଆଗେଇ ଯାଉଥିଲେ । ସୁବ୍ରତ କହିଲା, ନମସ୍କାର, ଚିହ୍ନିପାରୁ ନାହାନ୍ତି ?

ଜୀବନ ମୁହଁ ଫେରାଇ ଅଳପ ହସି କହିଲେ, ଆରେ, ନଳରାଜା ସୁବ୍ରତବାବୁ ଯେ ! ସବୁ ଭଲ ? ଆଜିକାଲି କେଉଁଠି ?

ଘରେ । ଚାଲିଛି କୌଣସି ମତେ, ଆପଣ ?

Digitized by PPRACHIN, SOA

ହାଇସ୍କୁଲର ସହକାରୀ ଶିକ୍ଷକ ହୋଇଛନ୍ତି ଆଜି । ତମର ଜମସ୍ତୁଣ୍ଟୀ ଦେଖା ମଧ୍ୟ ସେଇଠି । ସେ ସହକାରୀ ଶିକ୍ଷକ ହୋଇ କିଛି ଦିନ ମାତ୍ର ହେଲା ଆମର ସ୍କୁଲରେ ଯୋଗ ଦେଇଛନ୍ତି ।

ସତେ ? ଇନ୍ଦ୍ରଦେବ ଜୀବନାନନ୍ଦଙ୍କ ପାଖରେ ?

ଇନ୍ଦ୍ରଦେବ ଦୋଷ ସମ୍ବାଦ ହୋଇ ପଡ଼ିଲେଣି ।

ଦେଖି ପାରୁଛୁ । ପିଲାଟି ଶୋଇ ପଡ଼ିଲାଣି । ଶଚିଦେବୀ ଆଡ଼ିଏକ ଗଲେଣି । ପଚେଇ ପୁଅକୁ ଛନ୍ତି । ମୋର ନମସ୍କାର କହିବ ତାଙ୍କୁ । ଗାନ୍ଧୀଭକ୍ତ ନାକପୁଡ଼ା ଖୋଜୁଛନ୍ତି କିମ୍ବା । ଧନ୍ୟ ତୁମେ ଜୀବନାନନ୍ଦ, ଦେଶର ଭବିଷ୍ୟତ୍ ନାଗରିକ ଗଢ଼ୁଛ । ଲାଗି ପଡ଼, ଲାଗି ପଡ଼ —, ଯାଅ ଭାଇ, ନମସ୍କାର ।

ହଉ ଭାଇ ନମସ୍କାର । ଆଜୁଡ଼ ଦେଖାକୁ ଇନ୍ଦ୍ରଦେବ ନାକପୁଡ଼ା କର୍ମ ଖୋଜୁଛନ୍ତି ।

ଜୀବନାନନ୍ଦ ଚାଲିଗଲା । ମୁଁ ଲେଖିଁ ଏପେଟା ଉର ବଜ୍ରବାହୁ ଚାଲିଲା ଆଗକୁ । ମନରେ ଭାବମୂଳ ଭାବନା । ଜୀବନାନନ୍ଦ ସମ୍ବାଦ ହୋଇଛି । ମାଷ୍ଟରୀ କରୁଛି । ପତ୍ନୀ ଓ ପୁତ୍ର ଧର ସୁଖରେ ସଂସାର କରୁଛନ୍ତି । ସମସ୍ତେ ତ ସେଇଆ କରନ୍ତି । ସ୍ୱାହାନ୍ତ ବନ୍ଧନ, କର୍ମ । ବନ୍ଧନ ଓ କର୍ମ ମଝିରେ ଛଟପଟ, ଆକୁଳତା, ଭିତରେ ମୁଖ । ଆଲୁଅ ଓ ଗ୍ଲାନ ।

ଆନ୍ତରର ସଂସାର ନାହିଁ । ଅଗ୍ରହ ନାହିଁ ! କାହିଁକି ସେ ଶୃଙ୍ଖଳ ଦେଲା, ଶିକ୍ଷୟିତ୍ରୀ ବୃତ୍ତି ? ଆଦର୍ଶ ? ଅନ୍ଧ-ଜୀବନ ବଞ୍ଚାଇବାକୁ ଗୋଟାଏ କିମ୍ବା ? ଏହିପରି ଗୋଟିଏ ସହଜ କାମ ଯୋଗାଡ଼ କରିବାକୁ ବଜ୍ରବାହୁକୁ କଷ୍ଟ ହେବ ନାହିଁ । ସେଇଁ ବିଦ୍ୟାଳୟରେ ଶିକ୍ଷକତା, କିଉଠନ, ଅଥବା କେଉଁ ଦେଶୀୟ ବା ସମ୍ବାଦପତ୍ର ଅଫିସରେ କିରାଣୀ, ଇନ୍‌ସିଓରେନ୍ସ ଏଜେଣ୍ଟ । କର୍ମ ମିଳିବ । କାଣ୍ଡି ହେବ । ପିତାଙ୍କର ଇଚ୍ଛା ବାହୁବଳର ଆଜିତରେ ବଳାତ୍ ହରିବ । ମାତାଙ୍କର ଧନ ପୁତ୍ର ହୋଇ ସଂସାର କରିବ ।

ବସନ୍ତ ମାତ୍ର ଆସୁଛି । ସ୍ରୋତାଗତ ଜମ୍ବୁମ, ପ୍ରଥା, ଧାରଣା, ଚାଲିନ ବଦଳି ଆସୁଛି । ସମାଜ ଓ ଦେଶ ବଦଳିବ । ହୋଇ ଚୂଡ଼ାନ୍ତ ରୂପ ଦେଖା ଦେବ କେହି ଜାଣନ୍ତି ନାହିଁ । ବଭିନ୍ନ ମୁନି ବଭିନ୍ନ ଆଦର୍ଶ ଥୋଇଛନ୍ତି ଆଗରେ । ଯାହାର ଶକ୍ତି ପ୍ରବଳ, ମାତ୍ର ଚଳଣି ତାହାର ଆଦର୍ଶ ଆଗେଇ ଚାଲିଛି ! କୁହାହେଉଛି ଦେଶର ଜନତା ଏହାକୁ ସମର୍ଥନ କରିଛନ୍ତି, ଗ୍ରହଣ କରିଛନ୍ତି ! ଯେଉଁମାନେ ଅନ୍ୟ ଆଦର୍ଶର ଧ୍ୱଜାଧାରୀ ସେମାନେ ମଧ୍ୟ ଆଗେଇଛନ୍ତି । ଆଶା କରିଛନ୍ତି, ଲୋକଙ୍କର ଭ୍ରମ ଦିନେ ଭାଙ୍ଗିବ । ଦିନେ ସେମାନେ ବୁଝିବେ, ସେ ଆଦର୍ଶ କୁଆ-କୁଇଆଁ ପାଇଁ ଉପଯୁକ୍ତ ନୁହେଁ, ଏଇ ଆଦର୍ଶ ଭଲ ।

Digitized by PPRACHIN, SOA

ବଜ୍ରବାହୁ

ଆଦର୍ଶ ଆଦର୍ଶ ଭିତରେ ସଂଗ୍ରାମ । ମନନ ମନନ ମଧ୍ୟରେ ସଂଘର୍ଷ । ଏ ମିଳନ ତହିଁରୁ । ଯେଉଁ ସୁଯୋଗ ଆଜି ଅଛି, ସେ ସୁଯୋଗ କାଲି ନ ଥିବ । ଯାହା ଅଛି ତାହାର ସୁଯୋଗ ନେବା ବୁଦ୍ଧିମାନର କାର୍ଯ୍ୟ ।

ଭଉଦାସ ଘୋଡ଼ା ଜଳି ଯାଉ । ସୁବ୍ରତ ବଜ୍ରବାହୁର ନାମ ଶେଷରୁ ଏମ୍. ଏ. ପଦ୍‌ବୀ କଟି ଯାଉ । ତେବେ ତାକୁ ନ ପଚାରନ୍ତୁ । ଚାକିରି ନ ମିଳୁ । ସଞ୍ଚିତ ଧନ ଅଛି । ଜମିବାଡ଼ି ମଧ୍ୟ ଅଛି । ପ୍ରଚଳିତ ନିୟମ ପ୍ରକାରେ ସେ ପିତାଙ୍କର ଉତ୍ତରାଧିକାରୀ ।

ଫେରିଯିବ ଗ୍ରାମକୁ । ଭୁଲିଯିବ ସେ ଉଚ୍ଚ ଶିକ୍ଷିତ । ପିତାଙ୍କର ବିଫଳ କାମନା ପାଇଁ ସେ ଦୁଃଖ କରନ୍ତୁ କି ଅନୁତାପ କରନ୍ତୁ । ସେଥିରେ ତାର ଯାଏ ଆସେ କ'ଣ ? ମାତା ଅପେକ୍ଷା କରି ବସିଥିବେ । ତାଙ୍କୁ ସେ ହତାଶ କରିବ ନାହିଁ । ସୁପୁତ୍ର ସେ ।

ଆରତିର ପାଣିଗ୍ରହଣ କରିବ । ହେବ ସେ ବାଧ୍ୟ ପୁତ୍ର, ଅନୁଗତ ସ୍ୱାମୀ ସ୍ନେହୀ ପିତା । ଜୀବନ ଅଟେଇ ଚାଲିବ ଜୀବନାନନ୍ଦର ଜୀବନ ପରି । ବିପ୍ଳବ ଆସିଲେ ମଥା ନୋଇଁବ । ତୋଫାନରେ ଛାଟିକୁଟା ଉଡ଼ିଗଲା ପରି ସେ କେବେ ଉଡ଼ିଯିବ କେଉଁଆଡ଼େ । କେଉଁଠି ହେଲେ ଲାଗିବ ତ ! ତୋଫାନ ସବୁଦିନେ ନ ଥାଏ ।

ଆରତି ସୁଖରେ ଥାଉ ।

ଅବାନ୍ତର ଚିନ୍ତା । ସେ ଆସି କେଉଁଠି ? ଏଇଟା ମାନସିଂହ ପାଟଣା । ଆଗରେ ସେ ଗଳିରେ ଆରତିର ଘର ।

ସୁଜନ ଜେଠା ବାରଣ୍ଡାରେ ଆଲୁଅ ଜାଳିଲା । ମୁହଁକୁ କଟମଟ କରି ଅନେଇଁ ରହିଲା । ସେ ମହାଣୀ ଚମତ୍କାର କରୁଛି । ପଚାରୁ ଉଠୁଛି, ଏତେ ରାତିରେ କିଏ ତୁମେ ଆସି ବିରକ୍ତ କରୁଛ କହ ତ ! କେତେବେଳ ଚିହ୍ନିଲ ପରି ଜେଠା ଜେଠା ବୋଲି ଡାକୁଛ ? ଚିହ୍ନିଲ ନାହିଁ । ଗୋଟିଏ ବର୍ଷର ଅଦେଖା । ସୁଜନ ଆହୁରି ବୁଢ଼େଇ ଗଲଣି । ଦୁର୍ବଳ ହେଲଣି । ତଥାପି ହାତରେ ସେଇ ପୁରୁଣା ଚୌହାଦି ଶବ୍ଦ-ହୁରୁଡ଼ା ଠେଙ୍ଗା ।

କାହାକୁ ଖୋଜୁଛ ? ସୁଜନ ପଚାରିଲା ।

ଅନାହୂତ ଅଛି ? ସୁବ୍ରତ ପଚାରିଲା ।

ସିନେମା ଦେଖିବାକୁ ଯାଇଛି ସେ ଭାବନାଭୂତ । ସାଙ୍ଗ ଟୋକାଏ ଟେଲଟାକୁ ବାଧ୍ୟ କଲେ । ପାଠ ପଢ଼ା ତାର ପଛ, ଛବି ଦେଖା, ଥିଏଟର ଦେଖା ଏସବୁ

Digitized by PPRACHIN, SOA

ଆଗ। କଥା ମାନୁ ନାହିଁ। ସିନେମାକୁ ଯାଅ, ସେଇଠି ତାକୁ ଭେଟିବ। ହଉ ବାବା ଯାଅ –।

ଗେଟ୍ ପାଖ ହେନା ଗଛରୁ ମହକ ଛୁଟିଛି। ପିଣ୍ଡା ଉପରେ ଥୁଆ ହୋଇଥିବ ଟବ୍ ଗୁଡ଼ିକରେ ନାନାଜାତିର ଗୋଲାପ ଓ କ୍ରୋଟେନ୍ ଗଛ। ଆଲୁଅରେ ସୁନ୍ଦର ଦିଶୁଛି। ବୈଠକ୍ ଘରର କବାଟ ବନ୍ଦ। ପଚାରିଲା ସୁବ୍ରତ, ମା ନାହାନ୍ତି?

ସୁଜନ ଉତ୍ତର ଦେଲା, ନାହାନ୍ତି। ଦେହ ଖରାପ ବୋଲି ଦୁଇ ଦିନ ହେବ ବିଛଣାରେ ପଡ଼ିଥିଲେ। ମଙ୍ଗଳାବାଗରେ କାହାର ବୋହୂ ତିନି ଦିନ ହେଲା କଷ୍ଟ ପାଉଛି। ସେ ଝିଅର ବାପ ଆସି କନ୍ଦାକଟା କଲାରୁ ବିଛଣା ଛାଡ଼ି ସତ୍ୟବତୀ, କେତେବେଳୁ ଗଲେଣି। କିଏ ଜାଣେ ଫେରୁ ଫେରୁ କେତେ ରାତି ହେଉଛି। ତମେ ଘରେ ଯଦି ସେମିତି କିଛି ଜରୁରୀ କାମ ଥାଏ ରେ ବାପ ତ ଆଉ କାହାକୁ ଡାକ। ଏସବୁ ଜୀବନ ମରଣ ସଉଦା। ଘଡ଼ିକେ ଘୋଡ଼ା ଛୁଟେ। ଚାହିଁ ବସିଲେ ଜଳକା। ଯାଅ ବାପ, ଯାଅ –

ଆହୁତି ଦେବୀ?

ସୁଜନ ମୁହଁ ବିକୃତ କଲା। ପଚାରିଲା, କାହାଠିଁ ତମର କାମ କହ ତ?

ଆହୁତି ଦେବୀ। ସେ ଅଛନ୍ତି?

ସେଇ କଥା ତ କହିଥାନ୍ତ ବାପ, ଆଉ ୟାକୁ ତାରୁ ଖୋଜୁଛ କାହିଁକି? ଆହୁତି ଦେହ ଭଲ ନାହିଁ। ସେ ଶୋଇକରି ପଡୁଛି। କାଲି ସକାଳେ ଆଇଲେ ଦେଖା ହେବ। ଟିଉସନ୍ ପାଇଁ ତମର କିଏ ପୁଅ କି ପୁତୁରା କି ଭାଇ ଅଛି ପରା! ହେଲେ, ସେ ଟିଉସନ କରିବ ନାହିଁ। ପଚାରିଲେ କି ଲାଭ ମିଳିବ? ଯାଅ ବାପ, ରାତି ଅଧିକ ହେଉଛି। ଠଙ୍କାଦେଲେ କଟକ ସହରରେ ଭଲଭଲ ମାଷ୍ଟର ଯାହିଁକି ଯେତେ।

ସୁବ୍ରତ ହଲି ଉଠିଲା। କହିଲା, ଏମିତି ତଡ଼ି ପକାଉଛ କାହିଁକି ସୁଜନ ଜେଠା! ତାଙ୍କଠିଁ ମୋର ଅନ୍ୟ କାମ ଅଛି। ଖବର ଦିଅ।

ତେମେ ବାପ ଚାହା ଖାଅ ନାହିଁ ତ? ଚକୋରୀ ଚୂଲୀ ଲିଭେଇ ଶୋଇଲାଣି। ମତେ ଷ୍ଟୋଫ୍ ଲଗେଇବାକୁ ଭାରି ଡର ଲାଗେ।

ମୁଁ ଚା ଖାଏ ନାହିଁ।

ଭଲ ପିଲା। ଖରା ଦିନରେ ସରବତ ଭଲ। ପେଟ ଥଣ୍ଡା କରେ କଅଣ ତମର ନାମଟି?

ନଳରାଜା।

ନଳରାଜା? ଭଲ ନାମଟିଏ ତ। ବେଶ୍ ପୁରୁଣା କାଳିଆ ନାମଟିଏ। ଆଜିକାଲି ନାମ ଗୁଡ଼ାକ ମୋ ପାଟିରେ ପଅଟେ ନାହିଁ। ପିଲାଦିନ ମୋ

Digitized by PPRACHIN, SOA

ନାମ ଥିଲା- ଗୋଦରା। କେଡ଼େ ପବିତ୍ର ନା! ଅଜା ମୋର ବାଛି କରି ନାମ ରଖିଥିଲା। ଏଠିକି ଆଇଲାରୁ ନାମ ଦେଲେ ସୁଜନ। କ'ଣଟି ତମର ନାମ?

ନଳରାଜା।

ହଉ, ଅପେକ୍ଷା କର। ମୁଁ ଖବର ଦେଉଛି।

ସୁଜନ ଠେଙ୍ଗା ଧରି ଭିତରକୁ ଚାଲିଗଲା। ସୁବ୍ରତ ବାରଣ୍ଡାରେ ଟହଲିବାକୁ ଲାଗିଲା। ଭାବିଲା, ସେ ବୁଢ଼ା ହେଲାଣି। ଗପୁଡ଼ି ହେଲାଣି। କାମକୁ ପଛେଇଲାଣି, ଆହା ବିଚାରା! ଅନେକଥର ତାକୁ ଦେଖି ମଧ ଚିହ୍ନି ପାରୁନାହିଁ। କିନ୍ତୁ ସେ ନିଜେ କେଡ଼େ ଭୁଲ୍ କରି ପକେଇଛି। ସୁଜନକୁ ଉପହାସ କରିବାକୁ ଯାଇ ନିଜକୁ ପରିଚୟ ଦେଇଛି ନଳରାଜା ବୋଲି।

କେଉଁ ଭୁଲା ଅତୀତର କଥା। ନଳରାଜାର ପାଟି କରିବାକୁ କେତେ ବନ୍ଧୁ ଧାଇଁ ଆସିଥିଲେ। ଆହୁତି ଦମୟନ୍ତୀ ହେବ। ସମସ୍ତେ ଏକମତ। ଛାତ୍ର ମହଲରେ ଉତ୍ତେଜନା ଖେଳି ଯାଇଥିଲା। ରତିକାନ୍ତ, ଧନଞ୍ଜୟ, ଅରବିନ୍ଦ ଓ ରତ୍ନାକର ପାଟି ଗଢ଼ି ପ୍ରୋପାଗଣ୍ଡା ଚଳାଇଥିଲେ। ଖରଚ କରିଥିଲେ। ଭୋଟ୍ ନେବାର ପ୍ରସ୍ତାବ ଉଠିଥିଲା। ଡ୍ରାମାଟିକ୍ ଆସୋସିଏସନ୍ ପ୍ରେସିଡ଼େଣ୍ଟ୍ ପ୍ରଫେସ୍ର ସାହୁ କହିଲେ- ଆହୁତି ଯାହାକୁ ବାଛିବ ସେଇ ହେବ ନଳରାଜା।!

ଛାତ୍ରସମାଜ ଅନେଇଁ ରହିଛି। ଜଣାପଡ଼ିବ ଆହୁତି କାହାକୁ ପସନ୍ଦ କରେ, କାହାକୁ ସେ ପାର୍ଟନର କରିବ। ଏଇଠି ପଡ଼ିବ ଧରା। ପ୍ରଫେସର ସାହୁ ମନ ଭିତରେ କୌତୁହଳ ଓ ଆମୋଦ ଅନୁଭବ କରୁଥିଲେ।

ଆହୁତି କହିଲା, ନଳରାଜାର ପାର୍ଟ ସେମାନେ ସମସ୍ତେ ମୁଖସ୍ତ କରି ସାରିଲେଣି। ଆକ୍ଟିଂ ଦେଖି ସାର୍ ସ୍ଥିରକରିବେ।

ପ୍ରଫେସର ସାହୁ ହସି କହିଲେ, ଆକ୍ଟିଂ ସଭିଙ୍କର ସମାନ।

ତେବେ ସାର୍ ଏଇ ନେଉନ୍ତୁ ପାଞ୍ଚଟି କାଗଜଗୁଳା। ପ୍ରତ୍ୟେକଟିରେ ଜଣ ଜଣଙ୍କର ନାମ ଲେଖା ହୋଇଛି। ଗୋଟିଏ ଉଠାନ୍ତୁ!

ସୁବ୍ରତ ବଜ୍ରବାହୁ!

କରତାଳି।

ଆହୁତିର ମୁଖର ଭାବ ପରିବର୍ତ୍ତନ ହେଲା ନାହିଁ। ଆଖିର ଉଜ୍ଜ୍ୱଳ ଆଲୋକ ସେମିତି ଉଜ୍ଜ୍ୱଳ ହିଁ ରହିଲା।

ବିଭିନ୍ନ ଡ୍ରାମାରେ କାଳକ୍ରମେ ବିଭିନ୍ନ ବନ୍ଧୁ ତାର ପାଟ୍‌ନର ହୋଇଛନ୍ତି। ସମସ୍ତେ ତାର ବନ୍ଧୁ। ସମସ୍ତଙ୍କୁ ସେ ସ୍ନେହ କରେ, ସମ୍ମାନ ଦେଖାଏ!

ଆଜି କଅଣ ମନେ କରିବ ସେ? ଅତୀତର ପିଲା ଖେଳକଥା ପରିଚିତ ବୟସରେ ମନେ ପକାଇବା ଠିକ୍ ହୋଇନାହିଁ। ସେ ଭୁଲ୍ ବୁଝିପାରେ!

Digitized by PPRACHIN, SOA

ବଜ୍ରବାହୁର ମନରେ ଆସିଲା ଅନୁଶୋଚନା । ଭାବିଲା, ଫେରିଯିବ । ହେଉ ପଛେ ଅଭଦ୍ରତା । ଆଉ ଥରେ ଅମୃତର ଦ୍ୱାରସ୍ଥ ସେ ହେବ ନାହିଁ ।

ବୈଠକ ଘରର ବିଜୁଳି ଆଲୁଅ ଜଳିଉଠିଲା । ବଜ୍ରବାହୁର ସ୍ତବ୍ଧ ଉଠିଲା ଚମକି ।

କବାଟ ଖୋଲିଲା । ସ୍ମିତ ହାସ୍ୟ ହୋଇ ଅମୃତ ତାହାର ଆସିଲା ପଦାକୁ ।

ସୁବର୍ଣ୍ଣ ପ୍ରତିମା । ସେହିତ ହସିଲା ମୁହଁ । ଉଜ୍ଜ୍ୱଳ ଝଲସିଲା ଆଖି । ଅଯତ୍ନ କେଶରୁ କେଶଏ କପାଳ ଉପରେ ଝୁଲୁଛି । କାନ ଦୁଇଟିରେ ଝୁଲୁଛି ଚଟୁଳ ଚିକ୍କଣ ହୀରା-କଣି ଲଗା ସୁନାର ଫୁଲ । ଅଙ୍ଗରେ ସବୁଜ ରଙ୍ଗର ଶାଢ଼ୀ । ଦୁଇ ହାତ ଯୋଡ଼ି ନମସ୍କାର କଲା ଅମୃତ । ତୁଣ୍ଡ ଖୋଲିଲା, ଏତେ ଦିନ ପରେ ମନେ ପଡ଼ିଲା ଦମୟନ୍ତୀ ? ଆସନ୍ତୁ ଭିତରକୁ ।

ଅଟକିଲା ଗୁରୁ ଥିର ହେଲା । ସୁବ୍ରତର ମୁହଁ ଲାଜରେ ହେଲା ରଙ୍ଗିନ । ଓଠ ଥରିଲା । କହିଲା, ନମସ୍କାର । ଅସମୟରେ ଆସି ବାଧାଦେଲି—

ସେଥିପାଇଁ ଦୁଃଖ ପ୍ରକାଶ କରିବେ ଓ କ୍ଷମା ମାଗିବେ ପରେ; ସେତିକି ଥାଉ । ଆସନ୍ତୁ ।

ଅମୃତ ବୈଠକଘରେ ପଶିଲା । ସୁବ୍ରତ ଗଲା ତାର ପଛେ ପଛେ । ଘର ମଝିରେ ଗୋଲ ଟେବୁଲ୍ ଉପରେ ଫୁଲଦାନୀ । ଗୋଲ ଟେବୁଲ୍ ଚାରିପାଖେ ଚେୟାର-ଖଣ୍ଡ ପଡ଼ିଛି । ଟେବୁଲ୍‌ର ଚାରିଆଡ଼େ ଗଦିଆ କୁସନ ଚେୟାର । କାନ୍ଥକୁ ଲାଗି ଗୋଟିଏ ବଡ଼ ବଡ଼ କାଚ ଆଲମାରୀ । କେବଳ ବହିରେ ପୂର୍ଣ୍ଣ । ଗୋଟିଏ ପାଖ କାନ୍ଥକୁ ଲାଗି ପଡ଼ି ଗୋଟିଏ ଉଚ୍ଚ ଟେବୁଲ୍ । ତା ଉପରେ ବଡ଼ ରେଡ଼ିଓ । ବିଜୁଳିଘଣ୍ଟା ମୁଣ୍ଡ ଉପରେ ଝୁଲୁଛି ।

ଅମୃତ ଘଣ୍ଟା ଖୋଲିଲା । ଗୋଟିଏ ଚେୟାରରେ ବସିବାକୁ ସୁବ୍ରତକୁ ଅନୁରୋଧ କରି ପାଖ ଚେୟାରରେ ନିଜେ ବସିଲା । ପଚାରିଲା, ଚାହା ଖାଇବେ ?

ମୁଁ ଚାହା ଖାଏ ନାହିଁ । ଧନ୍ୟବାଦ ।

ଅମୃତ ଉଠିଲା । କହିଲା, ଆପଣ କିଛିଏ ଏଣେ ବସନ୍ତୁ । ମୁଁ ନିଜେ ନେଇ ଆସେଁ । ମା ଶୋଇଛନ୍ତି, ଚୂନା ନାହିଁ । ଝିଅଟିର ଦେହ ଭଲ ନାହିଁ । ଜେଠାଙ୍କୁ ସନ୍ଧ୍ୟାରେ ଭଲ ଦେଖାଯାଉ ନାହିଁ ।

ସୁବ୍ରତ କହିଲା, ସବୁ ଖବର ମୁଁ ଜେଠାଙ୍କଠାରୁ ପାଇ ସାରିଛି । ସ୍ନାନ କରାଇ ଚାହା ଜଳେ ଦିଅ ଅନିବାର୍ଯ୍ୟ । ତେଣୁ, ଜେଠା ନିଜେ ସମ୍ବାଦ କରି ନେଇ ଆସିବେ ବୋଲି ଜବାବ୍ ଦେଇଛନ୍ତି ।

Digitized by PPRACHIN, SOA

ହୁଣ୍ଡିଟେ ଯିଏ ଟ୍ରେସ ଟୋଥିଲ ସବୁ ଖଗି ଚନା କରିବେ ।

ଟେବୁଲରେ ଦୁଇ ଗ୍ଲାସ ସର୍ବତ ଦେଖି ସୁଜନ ଜେଠା ଉପସ୍ଥିତ । ମୁଣ୍ଡ ହଲାଇ କହିଲ, ଶୁଣ ମା, ଜଳଖିଆରୁ ଦହି ସର୍ବତ ପସନ୍ଦ କରନ୍ତି । ଅଳ୍ପ ଟିକଏ ସିରପ ଦେଇଛୁ । ଖସଖସର ଦହିପାଣି ଭଲ । ପେଟ ଥଣ୍ଡା କରେ । ଅଜୀର୍ଣ୍ଣ ଦୋଷ ଘଟେ । ଦେଖନ୍ତୁ ଦୁଇ । ଆଉ ଟିକେ ସିରପ ନ ମିଶାଇ ସାଦା ଲୁଣ ଓ ଗୋଲମରିଚ ଗୁଣ୍ଡ ଦିଆ ହୋଇଥାନ୍ତା, ବାୟୁଦୋଷ ବି ଘଟନ୍ତା । ହେଲେ, ତୁମେ ସବୁ ମିଠାପାଟିଆ ହେଲଣି ।

ଦହି ସର୍ବତ ଅତି ଉତ୍ତମ ଜଳ, ସୁବ୍ରତ ଗୋଟିଏ ଗ୍ଲାସ ଉଠାଇ ଆନ୍ତୁତ ହାତକୁ ଦେଲ । ଆଉ ଗ୍ଲାସ୍ଟି ଉଠାଇ ତୁଣ୍ଡରେ ଲଗାଇଲା । ସୁଜନ ଜେଠାର ଆନନ୍ଦ କହିଲେ ନ ସରେ । ଖାଲି ଗ୍ଲାସ ଦୁଇଟି ପୁଣି ଟେବୁଲରେ ରଖି ପଚାରିଲା, ତୁମେ ପୁଅ ବଡ଼, ପିଜା, ସିଗାରେଟ୍ କ'ଣ ଖାଅ ?

କିଛି ନାହିଁ ।

ପାନ ?

ପାନ ବି ଖାଏ ନାହିଁ ।

ଭଲ କରୁଛ ବାପ । ଏ ସବୁ ଅଭ୍ୟାସ ଭଲ ନୁହେଁ । ଅନ୍ତ ଶୁଖେଇଦିଏ । ଆଜିକାଲି ଏଗୁଡ଼ାକର ଯେତିକି ଦାମ୍ ବଢ଼ିଲାଣି, ଅଭ୍ୟାସ ହେଲେ ସରିଲା । କେତେ ରୋଜଗାର କରିବ କର । ପାଟିରୁ ଆମ୍ବିଳ ଦୋଷ ଛାଡ଼ିବାକୁ ଟିକଏ ଚୂନପଥରର ମଞ୍ଜି ପାଟିରେ ପକେଇଲେ ଭଲ ।

ଜେଠା, ପୁଣି ସେଇ ରୋଗ ଦାକ୍ତାରବ ।

ସେଇ ଓଉଟରେ ତ ସେତିକି ମୁଁ ଛାଡ଼ିଲି । ଶୁଖିଲା ଆମ୍ବସଢ ଟିକେ ପାଟିରେ ପକାଇ ଅଭ୍ୟାସ ମେଣ୍ଟାଉଛୁ । ତୁମ ପାଟି ତ ମିଠା ହୋଇ ଯାଇଥିବ ।

ସୁବ୍ରତ କହିଲା, ତା ମନକୁ ମିଠା ଗ୍ରହଣୀୟ ଯେ ।

ହଉ, ହଉ—, କହି ସୁଜନ ଜେଠା ଚାଲିଗଲା । ସୁବ୍ରତ କହିଲା, ଜେଠାର ସ୍ମରଣଶକ୍ତି ବି କମି ଆସିଲାଣି । ଅନେକ ଥର ମୋତେ ସେ ଦେଖିଛୁ, ତଥାପି ଚିହ୍ନି ପାରିଲା ନାହିଁ । ବୟସ ବଢ଼ିଲେ ମଣିଷର ଅବସ୍ଥା ଏଇଆ ହୁଏ ।

ତଥାପି ସେ ଆଳସ୍ୟ କଅଣ ଜାଣେ ନାହିଁ । ମୁହୂର୍ତ୍ତେ ବସିବାକୁ ଚାହେଁ ନାହିଁ । ନିଜ ହାତରେ କି ସୁନ୍ଦର ବଗିଚା ସେ କରିଛି । ଦେହରେ ଅସୀମ ଶକ୍ତି । ଆଜଯାଏ ତାର ଛିଆ କମି ନାହିଁ । କଞ୍ଚା ପରିବା ଚୋବେଇ ଖାଏ । ଦାନ୍ତ ଦ'ପାଟି ସେମିତ ଅଛି । ବଡ଼ତ ଆମର ସୁଜନ ଜେଠା । ଛାଡ଼ନ୍ତୁ ତା' କଥା । ଆପଣଙ୍କ କଥା କହନ୍ତୁ । କଅଣ କରୁଛନ୍ତି ଏବେ ?

କିଛି ନାହିଁ । ପାସ୍ କରି ଆଇ. ଏ. ଏସ୍.କୁ ଅପେକ୍ଷା କରିଛି ଗୃହକର ପାଇଁ ମଧ୍ୟ ଚେଷ୍ଟା କରୁଛି । ବ୍ୟାପାର ହୋଇ ବେକାର-ଦଳର ସଂଖ୍ୟା ବଢ଼ାଇଛି ।

Digitized by PPRACHIN, SOA

ଚାକିରି କରିବେ ଆପଣ!

ଆପଣ ମାଷ୍ଟରାଣୀ ହୋଇଛନ୍ତି?

ନିଯୁକ୍ତି ପାଇଁ। ବର୍ଷ ପରେ ବର୍ଷ କଟିଗଲା। କେତେ ଜାତିର ବହି ପଢ଼ିଲି ହୋମିଓ ପ୍ୟାଥିକ ଶିଖିଲି। ମା'ଙ୍କୁ ସାହାଯ୍ୟ କଲି। ତଥାପି ମୋର ବେଳ କଟିଲା ନାହିଁ। ମୋତେ ସିନେମାରେ ଯୋଗ ଦେବାକୁ ମଧ୍ୟ ନିମନ୍ତ୍ରଣ ଆସିଲା। ଆପଣଙ୍କର ବନ୍ଧୁ ଧନଞ୍ଜୟ-

ସୁବ୍ରତ ବାଧା ଦେଇ କହିଲା, ଆପଣଙ୍କର ବନ୍ଧୁ ସେ ନୁହେଁ କି?କୁହନ୍ତୁ ଆମର ବନ୍ଧୁ।

ଆହୁତି ଭ୍ରୂଲତା ଟେକିଲା।

ମନେ ପଡ଼ିଲା ପିଲାଦିନର କଥା। କଲେଜ ଜୀବନର ଖେଳ। ମିନାମଣ୍ଡଳିତ ଅଭିନୟ। ବନ୍ୟାସାହାଯ୍ୟ ପାଇଁ ଯେଉଁ ଥିଏଟର ହୋଇଥିଲା। ସବୁଥିଲେ ସେ ନାୟିକା। ନ୍ୟୟକାଅନେକ। ଯୁଗେ ଯୁଗେ ସେ ପ୍ରେମିକା, ପ୍ରେୟସୀ। ଅଛିଣ୍ଡା ତାର ଜୀବନର ପ୍ରବାହ। ଇନ୍‌ଫିନିଟରୁ ଆରମ୍ଭ।

ସରୋବରରେ ସ୍ନାନ। ଜଳକ୍ରୀଡ଼ା। ସହଚରୀ ପରିବେଷ୍ଟିତ। ଉପବନ, ମନୋରମ। ସବୁଜ ପ୍ରକୃତି। ପତ୍ରପୁଷ୍ପର ମହୋତ୍ସବ। ବିବିଧ ପକ୍ଷୀଙ୍କର କାକଳି। ଚୋରା ମଳୟର ହିଲ୍ଲୋଳ। ଭରପୁର ଉଚ୍ଛନ୍ନ ଯୌବନ। ମନ ଖୋଜୁଛି ସାଥୀ। ପ୍ରେମିକ ପୁରୁଷ। ଆଖି କୋଜିଛି ପ୍ରିୟତମ। ରାଜକନ୍ୟା ଉଲୁପୀ ପରା ସେ।

ଆହୁତିର ପାଶୋରି ଯାଇଛି। ଉଲୁପୀର ଆତ୍ମା ପଶିଛି ରକ୍ତ-ମାଂସକ ଦେହରେ। ଉଲୁପୀର ଚିନ୍ତା, ଅନୁଭୂତି, ଉତ୍ତେଜନା, ଆକୁଳତା, ବ୍ୟଗ୍ରତା, ଚସବୁ ଛଳଛଳ ଚଞ୍ଚଳ କୂରଙ୍ଗୀ-ଚାହାଣୀ। ବନପଥ-ସପଳ। ମଧ୍ୟମ ପାଣ୍ଡବ। ମନର ମଣିଷ। ଗତି ମନ୍ଥର। ଗତି ସ୍ଥିର। ନିବନ୍ଧ-ଦୃଷ୍ଟି। ଚାରି ଚକ୍ଷୁର ମିଳନ। ମଧ୍ୟମ ପାଣ୍ଡବ ଅର୍ଜୁନ। କୁସୁମର ମାଳା। ବରଣମାଳା କରତାଳି। ଡ୍ରପ୍ ସିନ୍। ଉଳପୀର୍ ଆତ୍ମା ଯାଇଛି ଉଭେଇ। ଆହୁତିର ଆଗରେ ଠିଆ ନିବୋଧ ଅରବିନ୍ଦ। ବେକରେ କୁସୁମ ମାଳା। ହାତରେ କୋଦଣ୍ଡ କାଣ୍ଡ।

ସ୍ୱର୍ଣ୍ଣପଦକ ବୃଷ୍ଟି ହୋଇଛି। ପାଞ୍ଚ ହଜାର ବର୍ଷ ତଳର ରାଜବନତ ଉଲସୀ ପାଇନାହିଁ। ପାଇଛି ଛାତ୍ରୀ ଆହୁତି। ଧନ୍ୟବାଦ ସହ, ସବୁ ସେ ଦାନ କଣ

Digitized by PPRACHIN, SOA

କଲେଜର ଦରିଦ୍ର ଛାତ୍ର ପାଣ୍ଡିକୁ। ଆହୁରି କରତାଳି। ଧନ୍ୟ ଧନ୍ୟ ପ୍ରଶଂସା। ଖବର କାଗଜରେ ଫଟୋ ଓ ପ୍ରଶଂସା!-

ସୁବ୍ରତ ଚାହିଁ ରହିଛି ଉତ୍ତର ପାଇଁ। ଆହୁତି ଆଗରେ ବସିଛି ପରା, ସେମିତି ହସିଲା ମୁହଁ, ଉଜ୍ଜ୍ୱଳ ଆଖି। ଦୃଷ୍ଟି କିନ୍ତୁ ନିବଦ୍ଧ ଫୁଲଦାନୀର ରଙ୍ଗୀନ୍ ଫୁଲଗୁଚ୍ଛ ଉପରେ। ଭ୍ରୂଲତା ଟେକିଛି। ଚିନ୍ତାମଗ୍ନା। ଚିତ୍ରପ୍ରତିମା। ଆହୁତି ପାଖରେ ନାହିଁ। ଦୂରରେ, ଅତି ଦୂରରେ। ହଜିଯାଇଛି। ଦିଶୁଛି ଗୋଟାଏ ନାରୀର ରୂପ କେବଳ। କାହିଁକି ଏ ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ? ଧନଞ୍ଜୟ ଦାଗୀ, ଧପ୍ପାବାଜ। ଭାଗାଦଣ୍ଡ! ସେଥିପାଇଁ ଆହୁତି ତାକୁ ନିଜର ବନ୍ଧୁ ବୋଲି ଗ୍ରହଣ କରିପାରୁ ନାହିଁ। ପ୍ରତ୍ୟଖ୍ୟାନ କରିବାକୁ ତୁଣ୍ଡ ଖୋଲୁ ନାହିଁ। ସୁବ୍ରତ ମଧ୍ୟ ଅନାଇଁ ରହିଲା ଫୁଲଦାନୀକୁ।

ଦାଉଁ ଦାଉଁ ପଡୁଛି। ଅନ୍ଧାର ରାତି। ଘୋର ଅରଣ୍ୟ। ଦୂର ଝରଣାର କୁଳୁକୁଳୁ ନାଦ ନିଶୀଥର ନିଶବ୍ଦତା ଭାଙ୍ଗୁଛି। ନିର୍ମଳ ତାରକିତ ଆକାଶ। ଝରିଲା ଆଲୋକ ଆଖି ଆଗକୁ ଆଣୁଛି ଅସ୍ପଷ୍ଟ ଆକୃତି ଗୁଡ଼ିଏ। କେବଳ ବୃକ୍ଷଲତା, ପଥର, ନିଶାଚର କିନ୍ତୁ। ଯେଉଁ ଶାର୍ଦ୍ଦୁଳର ଭୟରେ ପ୍ରାଣ ବଞ୍ଚାଇବାକୁ କଣ୍ଟାଝଣ୍ଟା ନ ମାନି ସେ ଗୌରି ପଥର ଉହାଡ଼କୁ ଧାଇଁ ଆସିଥିଲା, କେତେବେଳୁ ସେ ଶର୍ଦ୍ଦୁଳ ଘଞ୍ଚ ଅରଣ୍ୟ ଭିତରକୁ ଚାଲିଗଲାଣି। ତା'ର ରହି ରହିକା ପର୍ବତ ଦୋହଲା ରଡ଼ି ଦୂରରୁ, ଆହୁରି ଦୂରରୁ, ଅସ୍ପଷ୍ଟ ଦୂରରୁ, ଶୁଭୁଛି। ପୂର୍ବ ଆକାଶ ଉଜଳି ଆସୁଛି ପରା! କାହିଁ ତାର ପ୍ରାଣର ଦୋସର କେଦାର। କାହିଁ, କାହିଁ?

ପାଗଳିନୀ ଆଜୀ ଗୌରୀ! ଆତ୍ମା ମନ ଦୃଷ୍ଟି କାୟା କେବଳ କେଦାରମୟ। ରାତ୍ରିର ନିର୍ଜନତା ବନର ବିଭୀଷିକା। ଲୋକ-ଲଜ୍ଜା ଅପମାନ ମନରୁ ତ ଅବସାନ। କାହିଁ ତା'ର କେଦାର? ଏଁ, କାହାର ଆର୍ତ୍ତ କ୍ରନ୍ଦନ ଶୁଭୁଛି ସେ ବୃକ୍ଷତଳୁ? ଅସ୍ପଷ୍ଟ ଆକାର?

କେଦାର, କେଦାର!

ପାଗଳିନୀ ଗୌରୀ। ଛାତିରେ ଛୁରିକା- ପ୍ରାଣର ପ୍ରାଣ କେଦାର!

ଚୁମ୍ବନ, ଚୁମ୍ବନ, ଆଲିଙ୍ଗନ।

କେଦାର-

ଗୌରୀ!

କେଦାର।

Digitized by PPRACHIN, SOA

ନରୁଛର । ଏ୍ଲଗଲେ ଏକାକୀ ତ୍ରିମୂର୍ତ୍ତିମ ? ଏକାକୀ ! ସେତେବେଳେ ନୂଆ ହୋଇ ହେବେଣି । ଗୌଶ ହେବ ଏକାକିନୀ ? ନା, ଗୋଡ଼ାଇଗଲି ପଛରେ ।

ହାତରେ ଛୁରିକା । ରକ୍ତ-ବୋଳା । ପ୍ରୀତି ଜଳ ଯାହାମିନୀ । ଗଳାରେ ଛୁରିକା । କେଦାର ଓ ଗୌଶ ! ଉଃ । କରତାଳି ।

ଚନ୍ଦ୍ରଧରର ଛାତି ଉପରୁ ଉଠି ଆସିଛି ଆହୁତ ।

ବନ୍ୟା-ସାହାଯ୍ୟ ପାଣ୍ଠି ପାଇଁ ପାଞ୍ଚ ହଜାର ଟଙ୍କାରୁ ଅଧିକ ଟିକେଟ୍ ବିକ୍ରି ।

ପୁଣି— ଖବର କାଗଜ, ଫଟୋ, ପ୍ରଶଂସା । ଉଜ୍ଜ୍ୱଳ ଭବିଷ୍ୟତ !

ଆହୁତ ଦୀର୍ଘଶ୍ୱାସ ଛାଡ଼ିଲା । ସୁବ୍ରତ ବିଗ୍ରହ, ଖମା ଗୁହାଁ । ଧନଞ୍ଜୟଙ୍କୁ ସେ ଚହ୍ନେ ନାହିଁ । ହୁଏ ତ ସତରେ ସେ ଧପ୍‌ପାବାଜ୍ ହୋଇଛି । ଆହୁତ ତାର ଖବର ରଖିଛି । ଏପରି ଅନ୍ୟତ୍ର ଲୋକ ଆହୁତଙ୍କ ବନ୍ଧୁ ହୋଇପାରେ ନାହିଁ । ସୁବ୍ରତର ବା ସେ ବନ୍ଧୁ ହେବ କପରି ? ତାର ବନ୍ଧୁ ବୋଲି କହି କାହିଁକି ଆହୁତ ତାକୁ ଅପମାନ କରିବ ? ଆହୁତର ଧାରଣାରେ କ'ଣ ମନ୍ତ୍ରିତ ମଧ ଆସିଲା ?

ପିତାଙ୍କର ବନ୍ଧନ ହୋଇଛି ଖୋଲା । ଦୂରରେ ଦିଗ୍ଭ୍ରାନ୍ତ ଶତ୍ରୁ ସେନା, ନଦୀର ଧାର । ଯୁଦ୍ଧକ୍ଷେତ୍ର । ଯୁଆଡ଼େ ଗୁହଁଲେ ମୃତ୍ୟୁର ଭୀଷଣ ଦୃଶ୍ୟ । ଆହତର ଆର୍ତ୍ତନାଦ । ସୂର୍ଯ୍ୟାଲୋକରେ ସବୁ ତ ଦେଖିଯାଉ । ଲକ୍ଷ ଲକ୍ଷ ସାରଥୀ ଓ ଗ୍ରୀକ୍ ସୈନିକ । ସଖୀ ପରିବେଷ୍ଟିତା ହେଲେନା ସୁନ୍ଦରୀ । ହାତରେ ଝଟକୁଛି ଉଜ୍ଜଳ ସ୍ୱର୍ଣ୍ଣର ବରଣ-ମାଳା । ସୈନିକଗଣଙ୍କର ପ୍ରାଣ-ପୁଲକ ଆନନ୍ଦ କଳରବ—ଜୟଧ୍ୱନି । ଯୁଦ୍ଧର ହେବ ଆଜି ଅବସାନ । ସନ୍ଧି ହୋଇଛି ସ୍ଥାନ ସନ୍ଧି । ପରାଜିତ ସେଲ୍ୟୁକସ୍ ଚନ୍ଦ୍ରଗୁପ୍ତଙ୍କୁ କନ୍ୟାଦାନ କରିବେ ! ଆଗରେ ବିଜୟୀ ବୀର ଚନ୍ଦ୍ରଗୁପ୍ତ ! ପିତାଙ୍କର ହସିଲା-ସନ୍ତୋଷ । ଜୟନାଦ । ଶଙ୍ଖଧ୍ୱନି । ସଙ୍ଗୀତ ।

ଚନ୍ଦ୍ରଗୁପ୍ତଙ୍କ ଆଖିର ଆହ୍ୱାନ, ଆମନ୍ତ୍ରଣ, ଅଭିନନ୍ଦନ । ଲାଜ ଆଖିର ଅବ୍ୟକ୍ତ ପ୍ରଶ୍ନୋତ୍ତର । ବରଣ-ମାଳା ଅର୍ପଣ । ଶୁଭଶଙ୍ଖ । ହୁଳହୁଳି । କରତାଳି । ଯବନିକା ପତନ ।

ଆସରେ ମେଧାବୀ ରତ୍ନାକର, ଦରିଦ୍ର ସନ୍ତାନ—ମହାରାଜ ଚନ୍ଦ୍ରଗୁପ୍ତ ।

ମୁହୂର୍ତ୍ତେ ତ ରହି ପାରିଲା ନାହିଁ ଆହୁତ । ସୋପାନଣ ସେଲ୍ୟୁକସ୍ ନନ୍ଦିନୀ ହେଲେନାର ବେଶ ଫିଙ୍ଗି ଦେବାକୁ ଧାଇଁଗଲା ଗ୍ରୀନ୍ ରୁମ୍‌କୁ ।

ଭାବୁଛି ସୁବ୍ରତ, କାହିଁକି ସେ ଆସିଲା ଏଠାକୁ ? ସେ ଜାଣେ ଆହୁତ ନୁହେଁ ଦମୟନ୍ତୀ, ସୁବ୍ରତ ବି ନଳରାଜା ନୁହେଁ । ଅଜଣା କୌଣସି କୌତୂହଳ ତାକୁ ଟାଣି

Digitized by PPRACHIN, SOA

ଆସିଛି । ସ୍ୱପ୍ନ ଜୀବନ ଶେଷ ହୋଇଛି । ଅନ୍ଧକାର ମଧ୍ୟ ସରିଛି । ବାସ୍ତବ ଜୀବନର ହା-ହୁତାଶ ଆଗରେ ଠିଆ ହୋଇଛି । ଆହତ ହୋଇଛି ଶିଳ୍ପୀର ଶିଳ୍ପୀ । ଧନଞ୍ଜୟର ପ୍ରେମରେ ସେ ପଡ଼ିଥିଲା ? ଧନଞ୍ଜୟ କଥା ମନେ ପଡ଼ିବାରୁ ଅତି ଦୁଃଖରେ ସେ ଅଭିଭୂତ ? କିନ୍ତୁ ଦୁଃଖର କାଳିମା ତ ମୁହଁରେ ନାହିଁ । ସେ ଚିନ୍ତାମଗ୍ନ ।

ସାରା ଭାରତର ଉତ୍କଳୀୟ ରୂପ । ଆବାଳବୃଦ୍ଧବନିତା । ନର-ନାରୀ । ଭଦ୍ର ଓ ରାଜାଧିରାଜ । ଲକ୍ଷେ ଲୋକର କୋଳାହଳ ଶୁଭୁଛି ଯେପରି ସିନ୍ଧୁର ଗର୍ଜନ । ବଡ଼ ଦାଣ୍ଡରେ ନଭଶ୍ଚୁମ୍ବୀ ତିନୋଟି ରଥ । ମେଘାଚ୍ଛନ୍ନ ଆକାଶ । ତପନର ତାପ ନାହିଁ । ବଡ଼ଠାକୁର ଆଗରେ ବଡ଼ରାଜା । ଯେପରି କି ସ୍ୱର୍ଗରୁ ଓହ୍ଲାଇ ଆସିଛନ୍ତି ଦେବ । କିନ୍ତୁ, ହାତରେ ନାହିଁ ଅଶନି, ଅଛି ସ୍ୱର୍ଣ୍ଣର ସମ୍ମାର୍ଜନୀ । ବଡ଼ଦାଣ୍ଡରେ ବଡ଼ଠାକୁରଙ୍କ ଆଗରେ ବଡ଼ରାଜା ଛେରାପହଁରା କରୁଛନ୍ତି ।

ଜନତାକୁ ଦୁ'ଭାଗ କରି ବୃଦ୍ଧ ରାଷ୍ଟ୍ର-ମନ୍ତ୍ରୀ ଆଗେଇ ଆସିଲେ । ପଛରେ କାଞ୍ଚୀ ରାଜକେମା ପଦ୍ମାବତୀ ଭୁବନମୋହିନୀ । ସଖୀ ସମାଜ ।

ଜନତା ସ୍ତବ୍ଧ । ଉତ୍କଣ୍ଠିତ । ସବୁ ଦୃଷ୍ଟି ସେଇଠି ସ୍ଥିର । ବୃଦ୍ଧ ମନ୍ତ୍ରୀ ଯୋଡ଼-ହସ୍ତ । ମୁଖରୁ ସ୍ଫୁରିଲା ବାଣୀ,—ଶୁଣ ହେ ଜଗନ୍ନାଥ, ଶୁଣ ସବୁ ଠାକୁର, ସାରା ଭାରତର ଆବାଳବୃଦ୍ଧବନିତା, ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ କଳବର୍ଗେଶ୍ୱର ରାଧିରାଜ ବୀରବର ଶ୍ରୀପୁରୁଷୋତ୍ତମ ଦେବ ମହାରାଜଙ୍କର ପ୍ରତିଜ୍ଞା—। ଏଇ ଯେ କାଞ୍ଚୀରାଜ-କେମା ଲକ୍ଷ୍ମୀପ୍ରତିମା ପଦ୍ମାବତୀ । ତାଙ୍କର ଉପଯୁକ୍ତ ଏକା ବରକର୍ତ୍ତା ଜଗନ୍ନାଥଙ୍କର ଛେରାପହଁରାକାରୀ, ହାତ୍ତ୍ର ମହାରାଜ ଶ୍ରୀ ପୁରୁଷୋତ୍ତମ । ହଅ ମା ବରଣମାଳା ।

ଯାହାର ବେକରେ ପୁଷ୍ପମାଳ ଲମ୍ବାଇଥିଲା ସେଇ ଧନଞ୍ଜୟ । ପରୋକ୍ଷରେ ଧନଞ୍ଜୟ କେଲ୍ଲରୁ ଫେରିଛି ।

ଲୋକେ କହୁଛନ୍ତି ସେ ଧପ୍ପାବାଜ । ଯିଏ ଦିନେ ନଳରାଜା ହୋଇ ତାକୁ କାଣି କାଣି ଅଜାଣତରେ ଆଲିଙ୍ଗନ କରିଥିଲେ, ଯାହାକୁ ନ ଦେଖି ସେ ବ୍ୟଥିତା ବିରହିଣୀ ହୋଇ ଉନ୍ମାଦିନୀ ପରି କନ୍ଦନ କରିଥିଲା ସେଇ ସୁଦ୍ରତ ବଜ୍ରବାହୁ ଅନାହୂତ ଆସି ବାକ୍ୟ ସଂଶୋଧନ କରୁଛନ୍ତି: ଶୁଣନ୍ତୁ ଆମର ବନ୍ଧୁ ! ମନେ ପକାଇ ଦେଉଛନ୍ତି, ଧନଞ୍ଜୟ ଦାଗୀ, ଅସତ୍ ।



Digitized by PPRACHIN, SOA

ଆହୃତର ମୁହଁରେ ହସ । ଭ୍ରୂଲତା ନଚିଲା । ସେ ଦୃଷ୍ଟି ଫେରାଇଲା ସୁବ୍ରତର ମୁହଁକୁ । ଲଜ୍ଜିତା ହୋଇ କହିଲା, କ୍ଷମା କରିବେ ମୋର ଅନ୍ୟମନସ୍କତା ପାଇଁ । ମୁଁ ଧନଞ୍ଜୟବାବୁଙ୍କ କଥା ହିଁ ଭାବୁଥିଲି । କେଡ଼େ ଭଲ ଲୋକ ସେ । ପର ପାଇଁ ନିଜର ସର୍ବସ୍ୱ ଦେଇ ଜେଲ୍ ଭୋଗିଲେ । ଜେଲ୍ ଯିବା ଆଗରୁ ସେ ଆମ ଘରକୁ ଆସିଥିଲେ । ସେତିକି ବେଳେ ସେ ପଚାରିଥିଲେ । ତାଙ୍କର ଆଶା ଥିଲା ମୋ ଖଲାସ ହେବେ, ପୁଣି ସିନେମା ଆରମ୍ଭ କରିବେ । ମୁଁ ହେବି ନାୟିକା ! ମନା କରିଦେଲି ।

ସୁବ୍ରତ ଆଗ୍ରହ ଦେଖାଇ ପଚାରିଲା, ସେ ଦଣ୍ଡ ପାଇବେ ବୋଲି ଆପଣ ଅନୁମାନ କରିଥିଲେ ତେବେ ।

ନା । ବରଂ, ମୁଁ ଆଶା କରିଥିଲି ସେ ନିଷ୍ଟୟ ଖଲାସ ହେବେ । ମୁଁ ଅନ୍ୟ କାରଣରୁ ତାଙ୍କୁ ମନା କଲି । ସେ ବଡ଼ ଜେଣ୍ଟଲମ୍ୟାନ୍ ଲୋକ । ସହାନୁଭୂତିଶୀଳ । ସେ ବୁଝିଲେ ମୋର ମନର କଥା ବୁଝିଲେ । ଦ୍ୱିରୁକ୍ତି କରି ନାହାନ୍ତି । ଓଲଟି ପ୍ରଶ୍ନ ପଚାରି ନାହାନ୍ତି । ଫେରିଗଲେ । କିଛିଦିନ ପରେ ଶୁଣିଲି, ସେ ଜେଲଦଣ୍ଡ ଭୋଗିଲେ ।

ସୁବ୍ରତ ମୁହୂର୍ତ୍ତେ ଚିନ୍ତା କଲା । ଆହୃତର ଧାରଣାରେ ମଧ୍ୟ ଧନଞ୍ଜୟ ଉତ୍ତମ ଲୋକ । ପଚାରିଲା, କି ଉତ୍ତର ଦେଲେ କି ଆପଣ ? ମୁଁ ଭାବୁଛି ଯେଉଁ ନାରୀର ଆତ୍ମମର୍ଯ୍ୟାଦା ଅଛି ସେ କେବେ ଚିତ୍ରତାରକା ହେବ ନାହିଁ ।

ହସିଉଠିଲା ଆହୃତ । ପଚାରିଲା, ଆପଣଙ୍କର ଏପରି ଧାରଣା କାହିଁକି ହୋଇଛି ? ଦୁନିଆ ଆଜି ଚିତ୍ରତାରକା ନେଇ ଉନ୍ମାଦ । ସେମାନେ ଧନ, ମାନ, ଖ୍ୟାତି ଅର୍ଜୁଛନ୍ତି ।

ସେଇଥି ପାଇଁ ମୁଁ କହିଲି । ଘରେ ଘରେ ସେମାନଙ୍କର ଯୁଗଳ-ମୂର୍ତ୍ତି ବା ନାରୀ ହୋଇଥିଲେ ଅର୍ଦ୍ଧ ଉଲଗ୍ନ ମୂର୍ତ୍ତିର ଛବି କେବଳ ଉତ୍ତେଜନା ସୃଷ୍ଟି କରୁଛି । ଆଉରି ଯେତେ ଯିଏ ବାହ୍ୱା ଦେଉ ପଛେ, ଯାହା ମତ୍ୟ ତାକୁ ଘୋଡ଼ାଇ ହେବ ନାହିଁ । ଯେଉଁ ନାରୀ ନିଜର ରୂପର ଓ ଭଙ୍ଗୀର ମହତ୍ତ୍ୱକୁ ମନୁଷ୍ୟଙ୍କର କ୍ଷୁଧିତ, ଆଗ୍ରହୀ, ଆତୁର ମନ ଆଗରେ ବାଢ଼ି ଦେବାକୁ ପ୍ରସ୍ତୁତ ହୁଏ ତାର ଆତ୍ମମର୍ଯ୍ୟାଦା ଅଛି ବୋଲି କହିବେ ?

ସେ ବିଷୟରେ ମୁଁ ଚିନ୍ତା କରି ନାହିଁ । ଆପଣଙ୍କର ଧାରଣା ଯଦି ଠିକ୍ ହୁଏ, ତେବେ ମୋର ମଧ୍ୟ ଆତ୍ମମର୍ଯ୍ୟାଦା ନାହିଁ । ଆପଣ ଜାଣନ୍ତି, ବହୁ ଅଭିନୟର ନାୟିକା ମୁଁ ହୋଇଛି, ଆକ୍ଟିଂ କରିଛି । ଷ୍ଟେଜ୍ ଉପରେ ମୋର ଆକ୍ଟିଂ ଜୀବନ୍ତ କରି ଦର୍ଶକର ମନରୁ ଷ୍ଟେଜ୍‌ର ଧାରଣା ଦୂର କରି ବାସ୍ତବତାର ଧାରଣା ଆଣିବାକୁ ମୁଁ ମଧ୍ୟ

Digitized by PPRACHIN, SOA

ଅସାବଧାନ ଅର୍ଦ୍ଧ-ଉଲଗ୍ନ ହୋଇଛ୍ଛ । ଓ୍ଠାଧରକୁ ଅଛଁକୁଛି, ଆଲିଙ୍ଗନ ଚୁମ୍ବନର ଉଷ୍ଣତା ଅନୁଭବ କରୁଛ୍ଛ । ମୋର ଫିଲ୍ମଗୁଡ଼ିକ ଲକ୍ଷ ଲକ୍ଷ ଦର୍ଶକମଣ୍ଡଳୀଙ୍କ ଭିତରେ ।

ସୁବ୍ରତ ମୁହଁ ତଳେ ହେଲା । ସେ ଜାଣି ନ ଥିଲା ଯେ ଏଥିରୁ ଆହ୍ଲାଦ ନିଜ ଉପରକୁ ଟାଣି ନେବ । କେଜାଣି ବା ଭୁଲ୍ ବୁଝିଥିବ, ଅବଗୁଣ ପାଇଥିବ । ଯାହା ସେ ଭାବୁ, ସୁବ୍ରତ ଭାବିଲା, ସେ ସତ କଥା ହିଁ କହୁଛି । ଏଇ ଅଦ୍ଭୁତ ରୂପ, କଥା, ଚାଲିଚଳନ ଓ ବ୍ୟବହାରରେ ଏପରି କ'ଣ ଉତ୍ତେଜକ ନିଶା ଥିଲା, ଯେଉଁଥିପାଇଁ ଗ୍ରନ୍ଥ ଜୀବନରେ ସେ ଉତ୍ତେଜନାପୂର୍ଣ୍ଣ ପଦ ବି ଲେଖିଥିଲା । ଗୋଟିଏ ରାତି ନିଜରାଜ୍ଞୀ ହେବା ଆଗରୁ ଜାଗ୍ରତ ଓ ନିଦ୍ରିତ ସ୍ୱପ୍ନ ଭିତରେ ଦମୟନ୍ତୀକୁ ଅତି ପାଖରେ କେତେ ଥର ଅନୁଭବ କରୁଛି । ନିଜକୁ ସାପୋଉଛି । ଥିଏଟର ରାତିର ନିଜ-ଭୁଲ୍ ଉତ୍ତେଜନା ଓ ଉନ୍ମାଦନା ପରେ—ବହୁବର୍ଷ ପରେ -- ଅଜାଣତରେ ଆଜି ବି—

ସତେ କି ମନର କଥା ବୁଝିଲା ଆହ୍ଲାଦ । ସୁବ୍ରତର ନୀରବତାର ଉତ୍ତର ଦେଲା, ତାଙ୍କୁ କହିଲା, ଜୀବନରେ ଆଉ କେବେ ଅଭିନୟ କରିବ ନାହିଁ ।

କାହିଁକି ?

ଆହ୍ଲାଦ କହିଲା, ମୋ ତୁଣ୍ଡରୁ ମୋର ଅନୁଭୂତି କଥା ଆପଣ ଶୁଣିବାକୁ ଚାହାନ୍ତି, ଯଦିଚ ଆପଣ ଏହା ଭଲ କରି ଜାଣନ୍ତି । କିନ୍ତୁ ଏ ପ୍ରଶ୍ନ ସେ ପଚାରି ନ ଥିଲେ । କହିବାକୁ ମୋର କୁଣ୍ଠା ନାହିଁ କି ସଂକୋଚ ନାହିଁ । ଶୁଣନ୍ତୁ, ଯେତେ ଅଭିନୟରେ ମୁଁ ନାୟିକା ହୋଇଛି, ନିଜକୁ ନାୟିକାର ଚରିତ୍ର ଭିତରେ ହଜାଇ ଦେଇଛି । ଉଲୁପୀ, ହେଲେନା, ଗୌରୀ, ଦମୟନ୍ତୀ, ପଦ୍ମାବତୀ ଓ ଯୋଗୀର ଚରିତ୍ରମାନଙ୍କରେ ମୁଁ ନିଜର ସତ୍ତା ହଜାଇଛି ଅଥବା ସେମାନଙ୍କର ଆତ୍ମା ଆସି ଅବତରିଛି ମୋ'ଠାରେ ଭିତରେ । କେଜାଣି ବେଳେ ଭାବେଁ, ସେଇମାନେ କ'ଣ ମୁଁ ଯୁଗ ଯୁଗ ଧରି ଅବତାର ଲଭି ଏ ଯୁଗରେ, ଏ ଜନ୍ମରେ ହୋଇଛି ଆହ୍ଲାଦ ? ଆଉ ଯେଉଁମାନଙ୍କର ମୁଁ ପତ୍ନୀ ଥିଲି, ଯେଉଁମାନଙ୍କୁ ଭଲ ପାଉଥିଲି, ସେମାନଙ୍କର ପତ୍ନୀ ବା ପ୍ରେୟସୀ ଆଜି ଏ ଜନ୍ମରେ ଅନାହୂତ ମୁଁ ଅଭିନୟ କରୁଛି ? ଅର୍ଜ୍ଜୁନ, ରତ୍ନାକର, ଧନଞ୍ଜୟ ଓ ସୁବ୍ରତର ଗଳାରେ ଝୁଲିଗଲା ବରଣମାଳା । କେଦାର-ଚନ୍ଦ୍ରଧରର ବିଭ୍ରାନ୍ତ ଦୃଷ୍ଟି ଉପରେ ଲୋଟି ପଡ଼ୁଛି । ସନେଇ-ରତିକାନ୍ତର ପ୍ରେମକୁ ପ୍ରତ୍ୟାଖ୍ୟାନ କରି ପୁଣି ଫେରିପାଇବାକୁ ଝୁରି ଝୁରି ପ୍ରାଣ ହାରିଛି !

ବିସ୍ମୟ-ଭରା ଆଖିରେ ସୁବ୍ରତ ଅନାଇଁ ରହିଲା ମୁହୂର୍ତ୍ତେ । ସତେ କି ସେ ନିଜକୁ ହଜାଇ ଦେଲା ଆହ୍ଲାଦର ପ୍ରଫୁଲ୍ଲ-ସୁନ୍ଦର ବିକଶିତ ବଦନରେ । ଦୃଷ୍ଟି ଇତସ୍ତତଃ କରି ସେ କହିଲା, ଆପଣଙ୍କ ଭାବନାରେ ଗୋଟାଏ ଭୁଲ୍ ରହିଯାଇଛି । ଦୁନିଆଁରେ ଯେତେ କୁଟୁମ୍ବ ଅଛନ୍ତି ବା ଅତୀତରେ ଥିଲେ, ଲେଖି ବସିଲେ ସେମାନଙ୍କର ବିଷୟ ଗୋଟିଏ ଗୋଟିଏ ଡ୍ରାମା ହୋଇପାରିବ । ଯେତେ ଯେଉଁଠି କବି, ଔପନ୍ୟାସିକ,

Digitized by PPRACHIN, SOA

ନାଟ୍ୟକାର ଓ ଐତିହାସିକ ଯେତେ ଯାହା ଲେଖି ଯାଉଛନ୍ତି, ସେ ସବୁ ମଧ୍ୟ ଗୋଟିଏ ଗୋଟିଏ ଡ୍ରାମା । ସବୁ ଯାକ ଅଭିନୀତ ହେବ ଆତ୍ମା ଓ ଆପଣ ଯାକ ନାୟିକା ହୋଇଥାନ୍ତି ଆପଣଙ୍କର ଚରିତ୍ର ଆପଣ ଜୀବନ୍ତ କରି ଅଭିନୟ କରି ପାରିଥାନ୍ତି । ଯେଉଁମାନଙ୍କର ନାମ କହିଲେ, ସେମାନଙ୍କ ପରି ଆହୁରି କେତେ ବ୍ୟକ୍ତିଙ୍କର ଗଳାରେ ମାଳା ପିନ୍ଧାଇ ଆନ୍ତି ଅଥବା, ଗ୍ରୀବାରେ କ୍ରୁଶ ବସାଇ ଆନ୍ତି । ସେମାନେ ବାସ୍ତବ ହୋଇଥାନ୍ତୁ କି କଳ୍ପନାପ୍ରସୂତ ହୋଇଥାନ୍ତୁ, ସମସ୍ତଙ୍କର ପତ୍ନୀ ବା ପ୍ରେୟସୀ ଥିଲେ ବୋଲି ଭାବିବା କେବଳ ଭ୍ରମ ଧାରଣା ।

ଏଁ—!

ଚମକିଲା ପରି କହି ଉଠିଲି ଆହୁତି । ବିସ୍ମୟରେ ବିସ୍ଫାରିତ ହେଲା ଲୋଚନ । ସ୍ଥିର ଦୃଷ୍ଟିରେ ଚାହିଁ ରହିଲି ସୁବ୍ରତର ମୁହଁକୁ । ଦେଖୁ ଦେଖୁ ଉଜ୍ଜ୍ୱଳ ମୁହଁ ମଳିନ ଦିଶିଲା । ସୁବ୍ରତ ଦେଖିଲା, ମୁହୂର୍ତ୍ତକ ଆଗର ଆହୁତି ଅସ୍ତ ହୋଇଛି । ଆଗରେ ବସିଛି ଆଉ ଗୋଟାଏ ନାରୀ । ଆହୁତିର ରୂପ କିନ୍ତୁ ତା ଭିତରେ ଆହୁତି ନାହିଁ । ଅଛି ଗୋଟିଏ ଦୁର୍ବଳ ନାରୀ । ଅବଳା, ସତେ କି ଅନୁତପ୍ତା । କେଉଁ ଦୁଃଖରେ କେଜାଣି ହସିଲା ମୁହଁକୁ ଆଚ୍ଛାଦିତ କରିଛି ବେଦନାର ବଉଦ । ଫୁଲ ପଡ଼ିଛି ମ୍ଳାନ । କାହିଁକି କାହିଁକିର ଉଦ୍‌ବେଗ ଆସିଲା ମନକୁ ।

ପଚାରିଲା ରହି ରହି, ମୋର କଥାରେ ଆପଣଙ୍କ ମନରେ ଦୁଃଖ ହେଲା କାହିଁକି ?

ହୃଦୟ-ସତ୍ୟ ହିଁ ଆପଣ ପ୍ରକାଶ କରିଛନ୍ତି ।

ଆହୁତିର ଓଠରେ ମ୍ଳାନ ହସ । ବିମିତ ହୋଇ ସେ ପଚାରିଲା, କହି ପାରିବେ କି, ଯେତେବେଳେ ମୁଁ ନାୟିକା ହୋଇଛି, ନିଜକୁ ଭୁଲି ନାୟିକାର ଆତ୍ମା, ମନ, ଭାବନା ଓ ଫିଲିଙ୍ଗ୍ ନେଇ ଷ୍ଟେଜ୍ ଉପରକୁ ଓହ୍ଲାଇଛି କାହିଁକି ? ଛଭର୍ପୁ ନିଃସଙ୍କୋଚରେ ନାୟକକୁ ପ୍ରେମ କରିଛି ।

ଷ୍ଟେଜରୁ ଆସି ନାୟିକାର ବେଶ ଖୋପାଡ଼ି ଦେଲା ପରେ କାହାକୁ ସେ ସୁଯୋଗ ଦେଇଛନ୍ତି କି ?

ଯେଉଁ ନାୟକ ଷ୍ଟେଜ୍ ଉପର ସ୍ୱାଧୀନତାର ସୁଯୋଗ ଘର ଜୀବନରେ ନେବାକୁ ଅଟେଇ ଆସିଛନ୍ତି ସେମାନେ ଅନୁତାପ କରି ଫେରିଛନ୍ତି । ଆପଣ ଏ କଥା ଜାଣନ୍ତି ।

ବୁଝିଲେ ତ ଆହୁତି ଦେବୀ, ଆପଣ ଅର୍ଜୁନ, ଚନ୍ଦ୍ରଗୁପ୍ତ, କେଦାର ଓ ନଳରାଜାଙ୍କର ପ୍ରେମରେ ହିଁ ପଡ଼ିଥିଲେ । ବରଂ ଆପଣଙ୍କର ନାରୀତ୍ୱ, ଆପଣଙ୍କର ନାରୀତ୍ୱର ଆଗ୍ରହୀ ଅଭିଳାଷର ପ୍ରେମରେ ପଡ଼ିଥିଲା । ସେ ଅଭିଳାଷ ଭିତରେ ଅର୍ଜୁନ, ଚନ୍ଦ୍ରଗୁପ୍ତ, କେଦାର ନଳଙ୍କର ସ୍ଥାନ ନାହିଁ । ନଳରାଜାର ପୋଷାକ ପିନ୍ଧି, ପାର୍ଟ ମୁଖସ୍ଥ କରି, ଆକ୍‌ଟିଂ ଶିଖି ଆପଣଙ୍କର ପାର୍ଟନର ବଜ୍ରବାହୁ ଦମୟନ୍ତୀକୁ ପ୍ରେମ କରୁ

Digitized by PPRACHIN, SOA

ନ ଥିଲା । ସେ ପ୍ରେମ କରୁଥିଲା ଆହ୍ଲୁତକୁ । ବିଚ୍ଛେଦର ବେଦନା ସେ ଅନୁଭବ କରୁ ନ ଥିଲା, ସେ ଅନୁଭବ କରୁଥିଲା ସେଇ ବେଦନା ଯାହା ନ ଅଭିନୟ୍ତ୍ର ନସ୍ମ ପ୍ରକାରେ ସେ କଣ୍ଢାକୁ ବାଧ୍ୟ ହୋଇଥିଲା । ଦମୟନ୍ତୀ ନୁହେ, ଆହ୍ଲୁତର ମସ୍ତକକୁ କୋଳରୁ ଟେଳି କ ଦୁଃଖରେ ସେ ତଳେ ରଖି ଅଚଳା ପାଦରେ ଏକ୍ସିଟ୍ କରିଥିଲା ! ଅରବିନ୍ଦ ବହ୍ନାକର, ଚନ୍ଦଧର ହୁଏ ତ ଏହା ହିଁ ଅନୁଭବ କରିଥିଲେ ।

ଆହ୍ଲୁତ ଫେରି ଆସିଲା ଛଡା ଭିତରକୁ ।

ମୁଖ ଉଜ୍ଜ୍ୱଳ ହେଲା । ଆଖିରେ ଜଳିଲା ସେଇ ଆଲୋକ ଯାହା ଅନ୍ଧାରରେ ବଜ୍ରବାହୁକୁ ତା'ର ପାଖକୁ ଟାଣି ଆଣିଛି ।

କହିଲା, କଷ୍ଟ ସତ୍ୟ ଆପଣ ପ୍ରକାଶ କଲେ ।

ବହୁ ଦିନର ଘଟନାକୁ ସ୍ଥିର କଲେ । କଥଣ କହି ଆପଣଙ୍କୁ କୃତଜ୍ଞତା ଜଣାଇବ ?

ଆବଶ୍ୟକ ନାହିଁ, ଆହ୍ଲୁତଦେବୀ, ଦତ୍ତ ସମୟ ଅପଣଙ୍କର ନଷ୍ଟ କରିଛି ।

ଅଛନ୍ତି କେଉଁଠି ?

ହୋଟେଲରେ ।

ମା ଫେରିବାଯାଏ ଅପେକ୍ଷା କରିବେ ନାହିଁ ?

କ୍ଷମା କରିବେ, ମୁଁ କେବଳ ଆପଣଙ୍କୁ ଦେଖିବାକୁ ଆସିଥିଲି । ଆପଣ ଶିକ୍ଷୟିତ୍ରୀ ହୋଇଛନ୍ତି ଏ କଥା ମୁଁ ସନ୍ଧ୍ୟାରେ ଜୀବନାନନ୍ଦଠୁଁ ଶୁଣିଲି । ଆସିବି କି ନାହିଁ ଯେଇ କଥା ଭାବୁ ଭାବୁ ଗୋଡ଼ ଦୁଇଟା ମୋତେ ଏଠିକି ଟାଣି ଆଣିଲା ।

ସୁବ୍ରତ ଉଠି ଠିଆ ହେଲା । ଆହ୍ଲୁତ ମଧ୍ୟ ଉଠିଲା । ଅନ୍ୟମନସ୍କ ହୋଇ ଦୁହେଁ ଦୁହିଁଙ୍କ ମୁହଁକୁ ଚାହିଁ ରହିଲେ କ୍ଷଣେ । ଦୀର୍ଘଟିଏ ଦୀର୍ଘଶ୍ୱାସ । ସୁବ୍ରତ ଧୀରେ ଧୀରେ ଘରୁ ବାହାରି ଆସିଲା ବାରଣ୍ଡାକୁ । ଆହ୍ଲୁତ ଆସିଲା ପଛେ ପଛେ । ସୁବ୍ରତ ତୁଳପଡ଼ି ଦୁଇ ହାତ ଯୋଡ଼ି ନମସ୍କାର କରି କହିଲା, ନମସ୍କାର । ଆହ୍ଲୁତ ମଧ୍ୟ ଦୁଇ ହାତ ଯୋଡ଼ିଲା । ପଚାରିଲା, ବାହାଘରର ନିମନ୍ତ୍ରଣପତ୍ର କେବେ ପଠାଇବେ କହିଗଲେ ନାହିଁ ତ ?

ସୁବ୍ରତ କହିଲା, ଯେଉଁ ଦିନ ଆପଣଙ୍କର ପାଇବ ।

ଆହ୍ଲୁତ କହିଲା, ପୋଷ୍ଟବାକ୍ସରେ ପଡ଼ି ଅଚଳ ଯିବ ତ—

ସୁବ୍ରତ କହିଲା, ମୋ ବାହାଘରର ନିମନ୍ତ୍ରଣ ପତ୍ର ତାକୁ ଠେଲିନେବ ତଳକୁ ।

ଦୁହିଁଙ୍କର ଆଖିରେ ଦୁହିଁଙ୍କର ଆଖି । ଦୁହେଁ ହସି ଉଠିଲେ ଏକ ସଙ୍ଗେ ।

Digitized by PPRACHIN, SOA

ସୁବ୍ରତ ବିଦାୟ ନେଲା । କେଜାଣି କାହିଁକି ଆହ୍ଲାଦ ବାରଣ୍ଡାରେ ଠିଆ ହୋଇ ରାସ୍ତା ଆଡ଼କୁ ଚାହିଁ ରହିଲା । ମନରେ ଚିନ୍ତା ନାହିଁ । ଦେହରେ ବି ହଲ୍ଲୋଳ ନାହିଁ । ରହି ରହିକା ଶୀତଳ ଧୀର ପବନ କପାଳ ଉପରକୁ ଲମ୍ବି ଆସିଥିବା କେଶ-ଗୁଚ୍ଛକୁ ଦୋହଲାଉଛି । ମେଘ-ମୁକ୍ତ ଆକାଶର ଅଗଣନ ତାରା ତାଆର ମୁହଁକୁ ମିଟି ମିଟି କରି ଚାହିଁ ରହିଛନ୍ତି ।

ନଳବାବୁ ଚାଲିଗଲେ କି ମା ?

ଆହ୍ଲାଦର ସମାଧି ଭାଙ୍ଗିଲା । ସେ ଏଥର ଚାହିଁଲା ଚାରି ଆଡ଼କୁ । ସତେ ତ, ନଳରାଜା ଚାଲି ଗଲେଣି । ବିରହିଣୀ ଦମୟନ୍ତୀ ଏକାକୀ । ଅଗନାଗ୍ନି ବନ । ଶ୍ୱାପଦ ସଙ୍କୁଳ । ଅନ୍ଧାର ରାତି । ଆଗରେ ନଦୀ । ବର୍ଷା ଜାକ । ବାଦଲ ବଜ୍ରକି । ତୋଫାନ ଆସିବ ମାତ୍ର । ତୋଫାନ ।

ଚାଲିଗଲେ ନଳରାଜା ?

ଆହ୍ଲାଦର ସ୍ୱରରେ ଅଲୁହା-କୋହ । ଆଖି ଛଳ ଛଳ—

ଅଟକେଇଲୁ ନାହିଁ । ଶାଗ ପାଣି ଯାହା କରିଛି ଚଟକୋଣ ମୁଠାଏ ଖାଇ କରି ଯାଇଥାନ୍ତେ । ଅଖିଆ ଅପିଆ ତୋର କେଉଁ ବନ୍ଧୁ ତ ହେବେ ଏ ଘରୁ ଫେରି ନାହାନ୍ତି । ଭୁଲିଗଲୁ କି ଡାକିବାକୁ ମା ?

ଭୁଲିଗଲି ଜେଠା ।

ଆହ୍ଲାଦ ଅଖିରୁ ଝରିଲା ଲୁହ । ସେ ତର ତର ହୋଇ ଘରେ ପଶି କବାଟ କିଲିଲା । ଦୁଇ ହାତରେ ମୁହଁ ଢାଙ୍କି କୋହକୁ ଅଟକାଇ ରଖିବାକୁ ଚେଷ୍ଟା କଲା । ମନରେ ଦୁଗୁଣେଇ ହେଲା, ନଳରାଜା ଚାଲିଗଲେ, ନଳରାଜା ଚାଲିଗଲେ ।

ରାତି ଅଧରେ ସତ୍ୟବତୀ ଫେରିଲେ । ମଟର ଗାଡ଼ି ଗ୍ରୁଣ୍ଡ ଦେଉଥିଲା । ହାତରେ ଝଟକୁଛି ସୁନାର ହାର । ମନ ଆନନ୍ଦରେ ଅଧୀର । ଗୋଡ଼ ତଳେ ଲାଗୁ ନାହିଁ । ସେ ଆଜି ଗଡ଼ ଜିତିଛନ୍ତି । ଯମ ସଙ୍ଗେ ଲଢ଼େଇ କରି ଝିଅଟିକୁ ଉଦ୍ଧାର କରିଛନ୍ତି । କୋଳରେ ଶୋଇ ଶିଶୁ ପୁଅଟି କୁଆଁ କୁଆଁ ରଡ଼ି ଗ୍ରୁଡ଼ୁଛି । ଝିଅଟିର ବାପା ମା'ଙ୍କର ଆନନ୍ଦର ସୀମା ନାହିଁ । ବଡ଼ ଲୋକ । ଗୋଟିଏ ବୋଲି ତ ଝିଅ । ମାଆ ତାର ଖୁସି ହୋଇ ଗଳାରୁ କାଢ଼ି ମୂଲ୍ୟବାନ୍ ହାରଟି ସତ୍ୟବତୀଙ୍କ ଗଳାରେ ଲମ୍ବାଇ ଦେଲେ । କହିଲେ ପୁଣି, କଅଣ ଆଉ ଦେବ ତମକୁ ଭଉଣୀ, ଝିଅ ନାତଙ୍କର ଜୀବ ତ ତମେ ଫେରାଇ ଆଣିଛ ।

Digitized by PPRACHIN, SOA

କବାଟ ପାଖରେ ସୁଜନ ବସି ଘୁମଉଛି । ପାଟି ଶୁଣି ନିଦ ଭାଙ୍ଗିଲା । ଗେଟ୍ ପାଖକୁ ଯାଇ ମନ୍ତ୍ରପାଠ ଓ ଔଷଧର ବ୍ୟାଗ୍‌ଟି ସତ୍ୟବତୀଙ୍କ ହାତରୁ ନେଲା । ସେ ବୁଝିପାରିଲା, କାର୍ଯ୍ୟ ଆଜି ସଫଳ ହୋଇଛି । ବୋଉଙ୍କର ମନରେ ଆନନ୍ଦ । ପଚାରିବା ଆବଶ୍ୟକ ନାହିଁ । ବରଂ ଶାସନ କଲା, ଜୁନାକୁ ତେମେ ଭିନ୍ନ କହୁ ନା । ତୁମେ ବି କିଛି କହୁ ନାହଁ । ଛବି ତାକୁ ବାଜି କରୁଛି । ଘଣ୍ଟା ଦଶଟା ପରେ ସେ ଫେରିଛି ।

ଘରେ ତଗଲା ହେଲାଣି ସେ । କାଲି ତାକୁ ଗାଳି ଦେବ । ଖାଇକରି ଶୋଇଲାଣି ତ ?

ସେଥିବେ ତାର ହେଲା ନାହିଁ ।

ଟୁମା ?

ଶୋଇଲାଣି ।

ସତ୍ୟବତୀ ଘର ଭିତରକୁ ଆସିଲେ । ସୁଜନ ଖଞ୍ଜାର କବାଟ କିଲିଲା । ଟୋକୀଟି ଆଗକୁ ଆସି ପଚାରିଲା, ପୁଅ ହେଲା କି ଝିଅ ହେଲା ଅପା ?

ସତ୍ୟବତୀ ହସି ହସି କହିଲେ ପୁଅଟିଏ । ଧଡ଼ିଆ ଧେଡ଼ଙ୍ଗ ଝିଅ ପେଟରେ ହାଣ୍ଡି-କୁଆଟିଏ ଥିଲା ଟୋକୀଟି !

ସତ୍ୟବତୀ ନିଜ କୋଠରୀ ଭିତରକୁ ପଶିବା ଆଗରୁ ପାଖ କୋଠରୀ ଭିତରକୁ ଅଧା-ପର୍ଦ୍ଦା ଲଗା ଝରକା ବାଟେ ବଙ୍କେଇ ଚାହିଁଲେ । ସେଇ ଘରେ ଆହ୍ଲାଦ ରହେ । ବଡ଼ କୋଠରୀ । ମଝିରେ ପଲଙ୍କ । କାନ୍ଥକୁ ଲାଗି ତିନୋଟି ଆଲମାରୀ । ଗୋଟିକରେ ସେ ତାର ଲୁଗାପଟା ରଖେ, ଗୋଟିକରେ ବହିପତ୍ର । ଆଉଟିରେ ଖେଳନା, ବେଶ ଓ ପ୍ରସାଧନର ଉପକରଣ ଏବଂ ଜିନିଷପତ୍ର । ପୂର୍ବ ପଟର ଝରକା ପାଖରେ ବଡ଼ ଟେବୁଲ୍ । ତା' ଉପରେ ରଖା ହୋଇଛି ବହିପତ୍ର । ଦୁଇ ପାଖେ ଦୁଇଟି ଚେୟାର । ଦକ୍ଷିଣ ପାଖ କାନ୍ଥକୁ ଲାଗି ବଡ଼ ର୍ୟାକ୍ । ସେଥିରେ ଝୁଲୁଛି ଆହ୍ଲାଦର ପାଲଟା ଲୁଗା, ବ୍ଲାଉଜ, ସେମିଜ । କାନ୍ଥ ମଝିରେ ଗ୍ଲୋବ ନେଇଥିବା ଶଲ୍ତ-ନ ଥିବା ବଲ୍ । ଘର ଭିତରଟି ଅଳ୍ପ ଆଲୋକିତ ଦିଶୁଛି ।

ଆହ୍ଲାଦ ଶୋଇ ପଡ଼ିଲାଣି । ପଲଙ୍କ ଉପରେ ଝୁଲୁ ହୋଇଥିବା ମଶାରିଟି ସାମାନ୍ୟ ହଲୁଛି । ସତ୍ୟବତୀ ଅଟକେଇ ଗଲେ । ଆହ୍ଲାଦର କୋଠରୀକୁ ଲାଗି ଅନାହୂତର କୋଠରୀ । ସେ ଘରର ଉପକରଣ ମଧ୍ୟ ସେଇ ପରି । ଘର ଭିତର ଅନ୍ଧାର । ଘଡ଼ଘଡ଼ି ଶୁଭୁଛି । ଅନାହୂତ କଣ୍ଠ ନାଦରେ ଶୋଇଛି ।

ଶେଷରେ ଆସିଲେ ନିଜ କୋଠରୀକୁ । ପଛେ ପଛେ ଟୋକୀଟି । କ'ଣ କହିବ କହିବ ହେଉଛି । ସତ୍ୟବତୀ ଟୋକୀଟି ହାତକୁ ସୁନାର ହାରଟି ଦେଇ, ଲୁଗା ପାଲଟିଲେ । ଟୋକୀଟି ଈର୍ଷା ଭରା ମୁଗ୍ଧ ଆଖିରେ ଚାହିଁ ରହିଲା । କିଏ କହିବ ସତ୍ୟବତୀ ବୁଢ଼ୀ ହେଲେଣି, ପଚାଶ ପାଖେଇଲେଣି ? ସେଇଦିନ ଟୋକୀଟି ଏ ଘରେ

Digitized by PPRACHIN, SOA

ଆଗ୍ରା ନେଇଥିଲ ସେ ଦିନ ତାଙ୍କୁ ଯେପରି ଦେଖିଥିଲ, ଆଜି ବି ସେହିପରି । ରଙ୍ଗ ଉଣା ହୋଇନାହିଁ । ମଥାର କେଶ କେଉଁଠି କେମିତି ଝାଁଉଁ ପାଚଥିଲେ ବି, ସେମିତି ଚକ୍ ଚକ୍ କଳା, ସେମିତି ଲମ୍ବ ରହିଛି । ଦୁଇ ଧାଡ଼ି ମୁକ୍ତା ଖଞ୍ଜିଲା ପରି ଗ୍ଲେଟ ଗ୍ଲେଟ ଦାନ୍ତ । ଗୋଟିଏ ବି ହଲ ନାହିଁ । ସେମିତି ହସ ହସ ମୁହଁ, ସନ୍ଧାନୀ ଭୂତ ଝିଗ ଉଜ୍ଜ୍ୱଳ ଦୃଷ୍ଟି, ଅଳସ ନ ଥିଲ ଗଢ଼, କାର୍ଯ୍ୟତତ୍ପରତା ।

ତାଙ୍କୁ କ'ଣ ଔଷଧ ଜଣା । କାହାକୁ କହନ୍ତି ନାହିଁ କି କାହାକୁ ଦିଅନ୍ତି ନାହିଁ । ନିଜେ ଖାଆନ୍ତି । ଚକୋଷ୍ଠ ବୁଢ଼ୀ ହୋଇଗଲଣି । ବାଙ୍କ ହେଲଣି ସ୍କନ୍ଧଦେଶ । ଅଧେ ଧଳା ଓ ଅଧେ କଳା । ଦାନ୍ତ ଗୁଡ଼ାକ ହଲୁଛି । ଅଣ୍ଟାପାଣି ପାଚିବରେ ଦେଲେ, ଓହୋ, ସେ କି କଷ୍ଟ ! ଯମ ଦଣ୍ଡଠୁଁ ବଳି । ଦାନ୍ତରେ ସିନା ଚର୍ବି ଲାଗୁଛି, କାମ କଲା ବେଳକୁ ଧଇଁସଇଁ ହେଉଛି । ଔଷଧ ଟିକେ ମାଗିଲେ ଚାନ୍ଦ ଗୁଣ୍ଡ ଦେଇ ଉଣ୍ଡ ଦେଉଛନ୍ତି ।

ସନ୍ଧ୍ୟାବଟା ପଙ୍ଖା ଖୋଲା ପଲଙ୍ଗ ଉପରେ ବସିଲେ । ଗୋଡ଼ ହଳଟି ଲମ୍ବାଇ ଦେଲେ ଆରାମ ଚଉକିର ହାତ ଉପରକୁ । ଗୁହଁ ବହୁଛନ୍ତି ଜାନ୍ତ ଜାନ୍ତ, ମୁହଁରେ ଲାଖି ରହିଛି ହସ । ମନ ଯାଉଁ ଦେଖୁଛି—ମା' କୋଳରେ ଟିକି ପୁଅଟି । କି ଆନନ୍ଦରା, ଉଚ୍ଛନ୍ନ ଗାଦ, କାନ୍ଦ ବୋବାଳି । ଛଟପଟ । କେଡ଼େ କଷ୍ଟ ! ଜୁଆଁ ରକ୍ତ । ଆନନ୍ଦର ଡେଉ ଖେଳୁଛି । ଏବୁଝ ମୁହଁରେ ହସ । ଗୋଡ଼ ଛଟକା ଲାଗୁ ନାହିଁ କାହାର । ପୋଷକପ୍ତା କଣେଇଁ ଗୁହଁଛି । ଦୁଃଖ ପାସୋରୁଛି । ଆଖିରେ ପ୍ରାଣ-ପୁଲକ ଆଗ୍ରହ । ଓଠରେ ହସ । ତାଆର ପୁଅ, ସେ ମାଆ ହୋଇଛି । ମରିବ ବୋଲି ଓ ଭାବୁଥିଲା, ବଞ୍ଚିଛି ।

କିନ୍ତୁ, ଆଉ କିଏ ଅଛି ? ସାଡ଼ୁ ଦିନ ତାଳର କଥା । ତନୋଟି ପିଲାର ମାଆ ସେ । ଧନୀ ନୁହନ୍ତି ସେମାନେ । ସ୍ୱାମୀ କେଉଁ ବେପାରି ଘରର ଗୁମାସ୍ତା । ତନି ଦିନ କାଳ କଷ୍ଟ ପାଇଲା । ହାତ ଧରି କହିଲା, ବଞ୍ଚିବାଟି ମାଉସୀ, ମରିଗଲେ ତନୋଟି ଛୁଆଙ୍କୁ କିଏ ପାଳିବ ? ବଞ୍ଚିବାକୁ କେତେ ଅଳି, କେଡ଼େ ବ୍ୟାକୁଳତା, ଛଟପଟ । ଶେଷକୁ ବଡ଼ ଡାକ୍ତର ଆସିଲେ । ସ୍ୱଚ୍ଛ ପାଇଲା । ଆନ୍ନା ତନୋଟି ପିଲାଙ୍କର ମୋହ ଛାଡ଼ି ପେଟର ପିଲାକୁ ପେଟରେ ଧରି ସେ ଚାଲିଗଲା । କାହାର ହାତରେ ଯଶ ଅଛି ଏ ଜୀବନ ମରଣ ସନ୍ଧିବାରେ ?

ଖାଇବ ନାହିଁ କି ଅପା, ଚକୋଷ୍ଠ ପଗ୍ଭରିଲା ।

ମନ ହେଉ ନାହିଁ ଲେ ! ତମେ ସବୁ ଖାଇବ ଯାଅ ।

ଚକୋଷ୍ଠ କହିଲା, ଟୁନା ଖାଇ ଶୋଇଲା । ସୁଜନ ଭାଇ ଖାଇଛି । ଆହୁରି ମନାକଲା । ସେତେ କହିଲି ଶୁଣିଲା ନାହିଁ ।

ନ ଖାଉ । ତୁ ଯା ।

Digitized by PPRACHIN, SOA

ଚକୋରୀ ଉଠି ଠିଆ ହେଲା । ମୁହାଁହାଣ୍ଡି ଟେବୁଲ ଉପରେ ଥୋଇଦେଇ ନିହୁଲା, ମନେ ଥର ବାକ୍ସଟିରେ ରଖିବ । ତଥାପି, ଚକୋରୀ ନ ଯାଇ ଠିଆ ଠିଆ ହେଲା ।

ସତ୍ୟବତୀ ପଚାରିଲେ, କ'ଣ କି ?

ଯାଆନ୍ତୁ ପୂଣ୍ଡୁଆସି ଭୂନ ଭୂନ କହିଲା, ଆନନ୍ଦର ମନରେ ସୁଖ ନାହିଁ ଅପା ! ନଳବାବୁ ବୋଲି ଜଣେ ଲୋକ ଆସିଥିଲେ ଯେ କେତେ ଖୁସିରେ ତାଙ୍କ ସଙ୍ଗେ କଥା-ଭାଷା ହେଉଥିଲା । ସେ ପିଲାକୁ ମୁଁ କେତେଥର ଏମିତି ଦେଖିଛି । ଆମ ଝିଅ ସାଙ୍ଗରେ ପଢୁଥିଲେ କି କଅଣ ।

କ'ଣ ହେଲା କହ ତ ?

ଆନନ୍ଦ ତାଙ୍କୁ ବସେଇ ଦେବାକୁ ପିଆଲୁ ଗଲା । ସେ ତ ଚାଲିଗଲେ । କଅଣ କଥାଭାଷା ହୋଇ ବସେଁ ଲୁଚିଲେ । ଝିଅଟି ସେମିତି ଅନ୍ଧାରରେ ଠିଆ ହୋଇ ରହିଲା । ସେଇଠୁ ଆସି ବାଣ୍ଡଘରେ ପଶିଲା । ଖାଇବାକୁ ଡାକିବାକୁ ଗଲି ଯେ ଦେଖିଲି ଝିଅର ଆଖିରୁ ଦ ଧାର ଲୁହ ଗଡୁଛି । ଏକୁକା ହୋଇ ଠିଆ ହେଇଚାଲି ଅପା ! ମତେ ଦେଖି ସେ ତରତର ହେଇ ଉଠି ମୁହଁ ବୁଲାଇଲା । ଆଖିରୁ ଲୁହ ପୋଛିଲା । ମୁଁ ପଚାରିବା ଆଗରୁ ସେ ବାଣ୍ଡଘରୁ ଆସି ପଶିଲା ନିଜ କୋଠରୀରେ । ପଛରେ ଧାଇଁଗଲି । ପଚାରିଲି, ଖାଇବୁ ନାହିଁ କି ? କହିଲା, ମୋର ଇଚ୍ଛା ନାହିଁ । ଦେହ ଭଲ ଲାଗୁନାହିଁ ।

ତେବେ ବସେଇ ପଚାରିଲି ଆଉ ଜବାବ ଦେଲା ନାହିଁ । ସୁଜନ ଭାଇକୁ ଡାକିବାକୁ ଆଇଲି । ସେ କହିଲା, ଇଚ୍ଛା ନାହିଁ ତ ବଳଉଛୁ କାହିଁକି ? ଶୋଇପଡୁ । ଉପାସ ରହିଲେ ଦେହ ଖାଡ଼ା ରହେ ।

ସତ୍ୟବତୀ ଭାବିବାକୁ ଲାଗିଲେ -- ନଳବାବୁ କିଏ ? କଅଣ ସେ ଅପମାନିଆ କଥା କହିଲା ?

ଡାକିଦେବ ଆନନ୍ଦକୁ ?

ନାଇଁ, ଚକୋରୀ ! ସୁଜନ ଭାଇ ଯାହା କହିଲା ଠିକ୍ । ଉପାସ ଶୋଇଲେ ଦେହ ଭଲ ରହେ । ଯାବୁଡ଼ିଲେ ବସିବାଟା ଭଲ ନୁହେଁ ଲୋ, ବେଳେବେଳେ କାନ୍ଦିବା ଭଲ । ଶୋଉ ସେ । ତୁ ସୁଜନ ଭାଇକୁ ଡାକ ଦେଇ ଯା ଖାଇ ଶୋଇବୁ ।

ଚକୋରୀ ଚାଲିଗଲା । ସୁଜନ ଆସିଲା ପାଖକୁ । ସତ୍ୟବତୀ ଉଦ୍‌ବେଗ ହୋଇ ପଚାରିଲେ, କିଏ ଆସିଥିଲା ?

ସୁଜନର ଆଖିରେ କ୍ଳାନ୍ତି । ନିଦ ମାଡ଼ି ଆସିଲାଣି । କହିଲା, ନଳବାବୁ ।

କେମିତିଆ ଲୋକ ସେ ?

Digitized by PPRACHIN, SOA

ଅତି ଉତ୍ତମ ଲୋକ । ଗୁଣ୍ଡା ଖାଆନ୍ତି ନାହିଁ । ପାନ, ଜର୍ଦ୍ଦା, ସିଗାରେଟ୍, ପିକା, ମଦମାଂସ କିନ୍ତୁ ସେ ଛୁଅନ୍ତି ନାହିଁ । ଦନ୍ତପାଣି ଟିକେ ବି ପିଇଲେ । ସଜାସିଲା ପରି ରୂପ ! ଧୀର କଥା । ବଜାରିଆ ହେଁ ହେଁ ହସ ସେ ଜାଣନ୍ତି ନାହିଁ । କେତେ ଉଦାର । କେତେ ଆନନ୍ଦରେ ଗପ କରୁଥିଲେ । ଭୁଲିଗଲେ ।

ଜାଣିଶିଆ ହେଉ ନ ?

ହେଉ ନଥା ମନେ ପକେଇ ଦେଲା ଝିଅକୁ । ଗପରେ ତ ମାତିଗଲେ । କହିଲ, ମାଆ ଶାଗମୁଗ ହେଉଛି ମୁଠିଏ ଖାଇବାକୁ ଡାକିଲୁ ନାହିଁ ମା ?

ନନ୍ଦବାବୁ ଚାଲି ପରେ ମନେ ପକେଇଲ ପରା !

କେତେବେଳେ ତାଙ୍କର ଏମ ସରବ କିଏ ଆଗରୁ ଜାଣିବ ? ସାଙ୍ଗ କିଏ ଆସିଲେ ନିଜେ ସେ ବ୍ୟସ୍ତ କରି ପକାଏ । ଆଜି ସେ ଭୁଲିଗଲା ।

ସତ୍ୟବତୀ କହିଲେ, ଭଲ ହୋଇଛି । କର୍ତ୍ତବ୍ୟ ଭୁଲି ଅନୁତାପ କରି ସେ କାନ୍ଦୁଛି, ଉପାସ ରହୁଛି ।

ସୁଜନ ବିଦାୟ ନେଲା ।

ସତ୍ୟବତୀ କବାଟ ଦେଲେ । ମଶାରି ଟାଣି ପଲଙ୍କରେ ଶୋଇ ଆଲୁଅ ଲିଭାଇଲେ । କାହିଁକାହିଁର ଚିନ୍ତାକଣ୍ଠା ଆସିଲା ମନକୁ । ପ୍ରଶ୍ନଟିଏ ମନରେ ହେଲା ଓଲଟ ପାଲଟ— ଗପର ସୁଅରେ କର୍ତ୍ତବ୍ୟ ପାଖରୁ ତଡ଼ି ହୋଇଗଲା ଆତ୍ମା ? କ'ଣ ସେ ଗଳ୍ପ ? କିଏ ସେ ନାକ ଯିଏ ଆତ୍ମାର କର୍ତ୍ତବ୍ୟ ଧାରଣାକୁ ଉହାଡ଼ କରି, ତାକୁ ଭୁଲାଇ ଆଗକୁ ଟାଣି ନେଇପାରେ ? ଅନୁତାପ ଓ ଦୁଃଖର ଚେତନା ଆଣିପାରେ ? କିଏ ସେ ନକ ?

ସେ ଥିଲେ ଧନୀ ସୌଦାଗରର କନ୍ୟା । କଲିକତା ମହାନଗରୀ । ଦାସଦାସୀପୂର୍ଣ୍ଣ କୋଳାହଳମୟ ତାଙ୍କର ପ୍ରାସାଦ । କେଉଁ ପୁରୁଷରେ ତାଙ୍କର କେଉଁ ପ୍ରପିତାମହ କଲିକତା ଯାଇ ବେପାର ଆରମ୍ଭ କରିଥିଲେ ତାଙ୍କୁ ଜଣା ନାହିଁ । ବାପ ଦାଦା, ମା, ଖୁଡ଼ୀଇ, ଭାଇ-ଭଉଣୀଙ୍କ ମେଳରେ ଆନନ୍ଦରେ କଟିଥିଲା ବାଲ୍ୟକାଳ ।

ଛାତ୍ର-ଜୀବନ— ବାଲିକା କଲେଜରୁ ବାହାର ଡାକ୍ତରୀ ପଢ଼ା । ଦୁଇଟି ବର୍ଷ ମାତ୍ର କଟିଛି ।

ସତ୍ୟବତୀ ପ୍ରେମରେ ପଡ଼ିଲେ ।

ସେ ବି କେଉଁ ଧନକୁବେରର ପୁତ୍ର ପରା ! କନ୍ଦର୍ପ ପରି ରୂପ । ବିଦ୍ୟା ଓ ବୁଦ୍ଧି ଅମାପ । ସ୍ନେହ-ସୌଜନ୍ୟ ଓ ବଦାନ୍ୟତାରେ ସମସ୍ତଙ୍କୁ ସେ ମୁଗ୍ଧ କରିଥିଲେ ।

Digitized by PPRACHIN, SOA

ଅବାଧ ଗତି । ଯେବେ କଥାରେ ପକେଟ୍ରୁ ବାହାରେ ଚେକ୍ ବହି । ଶହେ କହିଲେ ସେ ଲେଖନ୍ତି ହଜାରେ । ସତେ କି ସେ ମହାଦାନୀ କର୍ଣ୍ଣ !

ଆଗମନରୁ ପରିଚୟ । ପରିଚୟରୁ ଘନିଷ୍ଠତା, ସ୍ୱାଧୀନତା, ସ୍ନେହ, ବିବାହର କଳ୍ପନା । ମିଳାମିଶାର ସୁଯୋଗ, ଆଦର, ଜାତି-ଗୋତ୍ର ଓ ସମ୍ମାନର ଅନୁସନ୍ଧାନ ।

ଅନୁସନ୍ଧାନର ଫଳାଫଳ ଓ ଶେଷ ଜାତିରିକୁ ପାଖାପାଖି, ମିଶାମିଶି ଭିତ୍ତିଟି ଛାଡିଲା ଦେହ, କୁଳକୁଣ୍ଡଳୀ ଓ ସୁଖ-ସ୍ୱପ୍ନବିହ୍ୱଳ ମନ ଅପେକ୍ଷା କଲା ନାହିଁ । ସମ୍ଭ୍ରାନ୍ତ-କୁଳ-ଶୀଳ, ହୃଦୟହୀନ ଗୃହଚାଳନ ଓ ଅସାଧୁ ପନ୍ଥାରେ ଧନ ଉପାର୍ଜନରେ ରତ ବୋଲି କୁଟୁମ୍ବରେ ଯେତେବେଳେ ଉଲ୍ଲଙ୍ଘିତ କଳରବ ଉଠିଲା, ସେତେବେଳକୁ ଦୁଇଟି ତରୁଣ ଦେହ ନୀରବେ ନିବିଡ଼ ବାହୁ-ପାଶରେ ବାନ୍ଧି ହୋଇ ସାରିଥିଲେ । ନାହିଁ ନାହିଁ ଓ ଅଭିମାନ, ନାଲିଆଖି ଓ ଅବଜ୍ଞା, ଶାସନ ଓ ଅପମାନନା, ବାନ୍ଧି ଅଟକାଇ ରଖିବାର ଉଦ୍ୟମ ଓ କୁଟୁମ୍ବ ପରିତ୍ୟାଗ କରି ପଳାୟନ ।

ଅନୁଶୋଚନା ଆସିଲା ବର୍ଷକ ପରେ । ଧନକୁବେରଙ୍କ ଷଡ଼ଯନ୍ତ୍ର ସଙ୍ଗେ ସାରା ଘରର ବିଭିନ୍ନ ସ୍ଥାନରେ ଆତ୍ମଗୋପନ କରି ପ୍ରେମର ପାଖିବାରେ ସନ୍ତରଣ କରି ପୁଣି ଜନ୍ମଦାତାଙ୍କୁ ଫେରି ଆସିଲେ । ଷଡ଼ଯନ୍ତ୍ର ଗୋଟାଏ ଜାଲ୍ ନାମ । ଗୋଇନ୍ଦା ପୋଲିସ ବହୁ ଉଦ୍ୟମରେ ସମ୍ପୃକ୍ତ ରଜନୀକାନ୍ତଙ୍କୁ ହେଲେଟି ଗିରଫ କଲେ ସତ୍ୟବତୀ ଜାଣିଲେ ନାହିଁ । ପରେ ସେ ମଧ୍ୟ ଧରା ହୋଇ ହାଜତରେ ରହିଲେ । ସେ ହେଲେ ମୁକ୍ତ । ରଜନୀକାନ୍ତ ଛଅଟି ବର୍ଷ ଜେଲ ଭୋଗିଲେ । ଯିବା ଆଗରୁ ତୁନି ତୁନି କହିଗଲେ, ଚିନ୍ତା କରନା ପୁଣି ମୁଁ ଫେରି ଆସିବି । ଅସୁବିଧା ହେବ ନାହିଁ ତୁମର । ଏଇ ଏଇ ବ୍ୟାଙ୍କରେ ତୁମ ନାମରେ ଏତେ ଏତେ ଟଙ୍କା ଜମା କରା-ହୋଇଛି ।

କୁଆଡ଼େ ଫେରିଯିବେ ସତ୍ୟବତୀ, କିଏ ଦେବ ଆଶ୍ରା ? ସବୁ ଆନନ୍ଦ, ସବୁ ସୁଖ ତ ପୋଡ଼ିଯାଇଛି । ଜାଲିଆତର ପତ୍ନୀ ସେ । କାହାର ସହାନୁଭୂତି ପାଇବେ ନାହିଁ । ସମ୍ମାନ କି ସ୍ନେହ ତ ଅଲଗା କଥା, ମରିବାକୁ ସେ ସ୍ୱାଧୀନତା ନାହିଁ । ବଞ୍ଚି ରହିବାକୁ ଆଶ୍ରା ନେଲେ ରୂପଜୀବୀଙ୍କ ମେଳରେ ।

ସାତଟି ବର୍ଷ ନରକ ଭିତରେ ଘାଣ୍ଟି ହୋଇଛନ୍ତି । କାନ୍ଦିଛନ୍ତି ଓ ଦୁନିଆକୁ ଚିହ୍ନିଛନ୍ତି । ଧନ ଉପାର୍ଜନ କରି ସଞ୍ଚୟ କରିଛନ୍ତି । ହୋମିଓପ୍ୟାଥିର ଚର୍ଚ୍ଚା କରି ସୁଦକ୍ଷ ହୋଇଛନ୍ତି । ସ୍ତ୍ରୀ ଓ ସ୍ତ୍ରୀରୋଗ ଏବଂ ତାର ଚିକିତ୍ସା ସମ୍ବନ୍ଧରେ ଅଭିଜ୍ଞତା ଓ ସିଦ୍ଧିଲାଭ କରିବାର ସୁଯୋଗ ସେ ପାଇଛନ୍ତି । ବାରନାରୀର ଜୀବନରେ ପ୍ରଥମ ଆସିଲା ଆହୂତ । ଛଅ ବର୍ଷ ପରେ ଅନାହୂତ ।

Digitized by PPRACHIN, SOA

ହେଇମାନଙ୍କର ଭବିଷ୍ୟତର ସୁଖଦୁଃଖ ଚିନ୍ତା ତାଙ୍କୁ ନୂତନ ପଥର ପଥିକ କରୁଛି। ସତ୍ୟବ୍ରତଙ୍କ ସଙ୍ଗେ ଜୀବନରେ ଆଉ ଦେଖା ହୋଇନାହିଁ। ଯେଉଁ ଧନ ସେ ସତ୍ୟବତୀଙ୍କ ନାମରେ ଜମାଇ ଯାଇଥିଲେ, ମୋହିତ ମନେ ସହାଇ ଦେଉଛନ୍ତି, ସେ ସତ୍ୟବ୍ରତଙ୍କର ପତ୍ନୀ।

ଅଜ୍ଞାତ ପାଦେମୋର ଯା'ଇଥିଲା।

ଅଜ୍ଞାତ ଆସି ଠିଆ ହୋ'ଇଛି ଆଗରେ।

ଗୁଣବତୀ କନ୍ୟା ଆହୁତି। କେତେ ବନ୍ଧୁ ଆସିଛନ୍ତି ଯାଉଛନ୍ତି। ସ୍ନେହ କରୁଛନ୍ତି। ପ୍ରେମ କରିବାକୁ ହାତ ବଢ଼ାଇ ହାତ ଟାଣି ନେଉଛନ୍ତି ଯେତେବେଳେ ବିବାହର ପ୍ରଶ୍ନ ଉଠୁଛି।

ଆହୁତି ହସି ହସି ସମ୍ବର୍ଦ୍ଧନା ଜଣାଉଛି ସତୀ, ହସିହସିକା ନେଉଛି ବିଦାୟ।

କିଏ ସେ ନଳବାବୁ ଯାହାଙ୍କୁ ବିଦାୟ ଦେଇ ଆହୁତିର ଆଖିରୁ ଝରୁଛି ଲୁହ ?

ନଳରାଜା ଚାଲି ଯାଉଛନ୍ତି। ଆଖିରୁ ଅନ୍ଧପଟଳ ଖୋଲିଦେଇ ଯାଉଛନ୍ତି। କେତେ ନାଟକର ନାୟିକା ସେ। ରୂପ, ବେଶ ଓ ଅଭିନୟରେ ଚହଳ ପକାଇଛି। ପର ଜୀବନରେ ଚିନ୍ତା କରି ସ୍ଥିର କରୁଛି, ସତେ ସେ ଅଜ୍ଞାତ ଅସ୍ମାର ନୂତନ ଅବସାଦ। କେଡ଼େ ମୂର୍ଖ, କେଡ଼େ ଅବୋଧ ସେ! ବଜ୍ରବାହୁ ବିନା ଚିନ୍ତାରେ ଏଡ଼େ ସହଜରେ କହିଗଲେ, ନାଟକୀୟ ଆଗ୍ରହୀ ଅଭିଳାଷର ପ୍ରେମରେ ହିଁ ପଡ଼ିଥିଲ। ଅଜ୍ଞାତରେ ସେମାନେ ଥିଲେ ତୁମର ପତ୍ନୀତ୍ୱର ପ୍ରତୀକ। ଯେଉଁମାନେ ନାୟକ ହୋଇ ଅଭିନୟ କରୁଥିଲେ ସେମାନେ ଚାହୁଁଥିଲେ କେବଳ ରକ୍ତମାଂସର ଆକୃତି।

ନଗ୍ନ ସତ୍ୟ !

କାହିଁକି ତାର ତରୁଣ ବନ୍ଧୁମାନେ ପ୍ରେମପତ୍ର ଲେଖି ପାଗଳର ପ୍ରଳାପ କରିଥିଲେ ? ରୂପ ଓ ଯୌବନର ମୋହ। ସମ୍ଭୋଗର ଲାଳସା। ଭଲ କଥା ଶୁଣି, ଉପଦେଶ ପାଇ, ଆତିଥ୍ୟ, ଆଦର ଓ ଅବାରିତ ବନ୍ଧୁତ୍ୱର ସୁଯୋଗ ସୁବିଧା ପାଇ ଫେରିଯାଇଥିଲେ। ପର ଜୀବନରେ ସେମାନେ କେବଳ ଭଦ୍ରତାର ଉପାସକ ହୋଇଥିଲେ। ତଥାପି ରୂପ ଓ ଯୌବନର ଶୋଳପି ମଦର ନିଶା ସେମାନଙ୍କୁ ଘାରି ନ ଥିଲା। ଲାଳସାର ଅଗ୍ନି ଦାଉଦାଉ ହୋଇ ମନରେ ଜଳୁଥିଲା। ଆହୁତିକୁ ଯେ ସେମାନେ ସ୍ନେହୁଥିଲେ କି ଏବେ ବି ଚାହୁଁଛନ୍ତି ଏ କଥା ଭାବିବା ଭୁଲ୍। ସେମାନେ ଚାହୁଁଥିଲେ ରୂପଯୌବନସମ୍ପନ୍ନା, ଅକଣ୍ଠହୀନା ଗୋଟାଏ ନାରୀ। ସ୍ନେହ କେବଳ ସେଇଠି ଆବଦ୍ଧ।

Digitized by PPRACHIN, SOA

ବଜ୍ରବାହୁ ସେ କଥା ପ୍ରକାଶ କରି ଗଲେ । ନବଗ୍ରେକାରେ ଗୋଟିଏ ଝିଅ ପାଖରେ ଗୋଟିଏ ପୁଅ । ତରୁଣୀ ଓ ତରୁଣ । ସହପାଠୀ ବନ୍ଧୁ । କଥା ଶୁଣିଛନ୍ତି ମନ ଦେଇ । ଆଗ୍ରହରେ କହୁଛନ୍ତି । ଚାହିଁଛନ୍ତି ସରଳ ଦୃଷ୍ଟିରେ । ହସିଛନ୍ତି, ହସାଉଛନ୍ତି । କଥା ଓ ଚାହାଣୀରେ ଅନର୍ଥକ ଉଦ୍‌ବେଗ ସଙ୍କୋଚ ନାହିଁ, ଅଭଦ୍ରପଣିଆର କୁଟିଳ ଇଙ୍ଗିତ ନାହିଁ । ଝିଅଟିର ମନ କିଣିବା ଚେଷ୍ଟାର ଖୋସାମୋଦ ନାହିଁ । ଗ୍ରାସ କରିବାର ଲୋଭ ନାହିଁ । ଆଶା-ଉଦ୍ଦେଶ୍ୟହୀନ, ଉତ୍ତେଜନାଶୂନ୍ୟ ତାଙ୍କର ଆଗମନ, ସାନ୍ନିଧ୍ୟ, ଚାହାଣୀ, କଥା ଓ ପ୍ରସ୍ଥାନ ।

ଆସିବେ କି ନାହିଁ ଦ୍ୱିଧାର ସମାଧାନ କରିବା ଆଗରୁ ଦୁଇ ଯୋଡ଼ ଆଖି ଟାଣି ଆଣିଥିଲା । କିଏ ତାଙ୍କୁ ଟାଣି ଆଣିଥିଲା କେବେ ? ବନ୍ଧୁତ୍ୱ ? ଦମୟନ୍ତୀ ? ଅନ୍ତରର ରୂପଯୌବନ ? ଅଥବା, ଗୋଟାଏ ନୈସର୍ଗିକ କୌତୂହଳ ? ଦୁଇଟି ନିମନ୍ତ୍ରଣ ପତ୍ର ଏକାଠି ପଠାଇବ, ଏକଥା କହିବାର ଉଦ୍ଦେଶ୍ୟ କ'ଣ ? କହୁ ହୋଇଗଲା ପରା । ବିନା ଉଦ୍ଦେଶ୍ୟରେ ଏପରି ଅନେକ କଥା ପାଟିରୁ ଖସିଯାଏ ।

ଆଖିର ମିଳନ ! ମନଭରା ହସ !

ଶିହରି ଉଠିଲା ସାରା ଦେହ । ଥର ଉଠିଥିଲା ସେ ।

ଚାଲିଗଲେ ନଳରାଜ ଦଶଦିଗନ୍ତ ହସିଲା । ନିଜକୁ ଭୁଲି ଠିଆ ହୋଇଥିଲା । କିଏ କି ଲୁଚିଥିଲା ସୁବ୍ରତ ମାଥିରେ । ଦେହ ଭିତରୁ ସେ ପଦାକୁ ଛୁଟି ପଳାଇଥିଲା । ଫେରାଇ ଆଣିଲେ ସୁଜନ ଜେଠା ।

ଫେରିଆସି ବୁଝିପାରିଲା ସେ, ନିଜକୁ ସୁବ୍ରତର ପାଦ ତଳେ ଲୋଟାଇ ଦେଇଛି । ନିଜକୁ ସେ ସମର୍ପି ଦେଇଛି [illegible] ବଜ୍ରବାହୁ ପାଖରେ ଅଜାଣତରେ, ଅତର୍କିତ ଭାବରେ । ମେଧାବୀ ଛାତ୍ରୀର ଅନୁମିକା, ରୂପସୀ ତରୁଣୀର ପ୍ରଚ୍ଛନ୍ନ ଅହଙ୍କାରଭାବ, କଳା-କୁଶଳତା ପ୍ରାମାଣ୍ୟ ନାସ୍ତିକତାର ସବୁ ବାହା ବାହା ଆଜି ହୋଇଛି ପରାଜିତ । ସେ କେବଳ ପ୍ରେମରେ ପଡ଼ିନାହିଁ, ସେ ବିବାହ ମଧ୍ୟ କରିଛି । ତାର ଆତ୍ମାର ଆକୁଳ ମିଳନ ଆକାଂକ୍ଷାର ନିମନ୍ତ୍ରଣ ଚିଠାଉ ସେ ପଠାଇଛି ଆଗ । ଗ୍ରହଣ କରିଛି ସୁବ୍ରତ । ଦୁଇଟା ମନର ଆକାଂକ୍ଷା ଚିଠାଉ ଯୋଡ଼ି ହୋଇଗଲା, ଏକାକାର ହେଲା ।

ବିବାହ ରାତି, ମିଳନ ରାତି ପୁଣି, ବିଚ୍ଛେଦ ରାତି ।

ନଳରାଜା ଚାଲିଗଲେ । ଦମୟନ୍ତୀ ଆଜି ଏକାକିନୀ !

ଆଖିର ଲୁହ ଅଟକି ରହୁନାହିଁ !

ପୁଣି ହେବ ସ୍ୱୟମ୍ବର । ବରମାଳା ବେକରେ ଦେବ । ଆଲିଙ୍ଗନ କରିବ ନଳରାଜଙ୍କୁ । ଦୁଇଟି ଆତ୍ମା, ଦୁଇଟି ମନ, ଦୁଇଟି ଦେହ ଏକାକାର ହେବ । ଅଭିନ୍ନ ।

Digitized by PPRACHIN, SOA

କେବେ ଫେରିବେ ?

ଆହୁତ ମନର କୋହ ସମ୍ଭାଳି ପାରିଲା ନାହିଁ । ଆଖିର ଲୁହରେ ତକିଆ ଭିଜୁଛି । କହି ଉଠୁଛି । ସେପାଖ ଘରେ ଝୁନା ଶୋଇଛି, ଏପାଖ ଘରେ ମା ଶୋଇଛନ୍ତି । ଚକୋଷି, ମୁଣ୍ଡନ ଓ ମାଙ୍କେର ଶଥା ତାର କାନରେ ପଡ଼ୁଛି । ଆହା, ସ୍ନେହମୟୀ ଦୁଃଖିନୀ ଜନନୀ ତାର । ସ୍ୱାମୀଙ୍କର ଦେଖା ପାଇ ନାହାନ୍ତି ବହୁ ବର୍ଷ ହେଲା । କାହାନ୍ତି ସେ, କେହି ତ ଜାଣନ୍ତି ନାହିଁ । ପ୍ରତୀକ୍ଷାରେ ଜୀବନ ବିତୁଛି । ଆଶା ମୁଖରେ ଚାହିଁ ରହିଛନ୍ତି । ଦୁଃଖ କେବେ ପଶି ନାହାନ୍ତି । ଓଠର ହସ ଅଦ୍ୟାପି ମଧୁର ଅଦ୍ୟାପି ସତେଜ । ଶୁଣିଲେ କେ ଆହୁତର କୋହ ? ହସିଲା ଓଠ ତାଙ୍କର ବିବର୍ଣ୍ଣ ହେବ ?

ଆହୁତ ପାଟିରେ ଭରିଲା ଧଇଁ । ଉଠି ବସିଲା । ପଲଙ୍କ, ମଶାରି, ଘର ଭିତରର ଅସ୍ପଷ୍ଟ ନେଳି ଆଲୋକ, ସମସ୍ତେ ଯେପରି ତାକୁ ଉପହାସ କରୁଛନ୍ତି । ଅଗନାଗ୍ନି ବନ ଏ ନୁହେଁ, ସେ ନୁହେଁ ବିରହ-ବିଧୁରା ପରିତ୍ୟକ୍ତା ଦମୟନ୍ତୀ !

ସହ୍ୟ ହେଉ ନାହିଁ ପରିସ୍ଥିତିର ଉପହାସ ।

କେତେ ଚୁମ୍ବନ କେତେ ଆଲିଙ୍ଗନର ଉତ୍ତେଜନା ଦେହରେ ମନରେ ଭରିଛି । ତାରୁଣ୍ୟର ଅସହ୍ୟ ଉଷ୍ଣତା ପ୍ରଚଣ୍ଡ ତୋଫାନ ଭଳି ଉଠି ତାକୁ ହଲାଇଛି, ଦୋହଲାଉଛି । ଦୃଢ଼ ହୋଇ ଠିଆ ହୋଇ ଭିତରର ସେହି ତୋଫାନରୁ ଆତ୍ମରକ୍ଷା କରିବାକୁ ସବୁ ଚେଷ୍ଟା ତାର ପଣ୍ଡ ହୋଇଛି । ସେ ନଇଁଛି, ମଥା ଲୋଟିଛି ଧୂଳିରେ । ତୋଫାନ ଥମିଛି । ମଥା ଟେକି ହସ ହସ ହୋଇ ଚାହିଁଛି ସେ ଆଶା-ଚନ୍ଦ୍ରମାର ପରିତୃପ୍ତ ମୁହଁକୁ । ଶୀତଳ, ଉଦାର, ହସ ହସ ।

ନାଇଁଛି ତାର ନିବେଦନ କରିଛି, ପାଦ ତଳେ ସ୍ଥାନ ଦେବ କି ବାନ୍ଧବୀକୁ ?

ନିଃସଙ୍କୋଚ ହସିଲା ଉତ୍ତର ଶୁଣିଛି ସେ, ଓଷ୍ଠର ଭାଷାରେ, ଆଖିର ଆଲୋକରେ, ଓଠର ହସରେ, ବାହୁ ବଲ୍ଲରୀର ବେଷ୍ଟନରେ, ଏ କି ପ୍ରଶ୍ନ କରୁଛ ହେଲୁପି, ତମର ସ୍ଥାନ ତ ଅନ୍ତଃପୁରର ଗୃହତଳେ ? କାହିଁକି ମନରେ ସନ୍ଦେହ ଉଠୁଛି ହେଲେନା, ଆଗୋ ପଦ୍ମାବତୀ, ତମର ସ୍ଥାନ ଯେ ଚନ୍ଦ୍ରଗୁପ୍ତର ଅଙ୍କରେ; ପୁରୁଷୋତ୍ତମଙ୍କର ବାମ ପାଖରେ ସ୍ୱର୍ଣ୍ଣ ସିଂହାସନରେ । ବିଦ୍ୟାବୁଦ୍ଧି ଧନସମ୍ପତ୍ତି, ବଂଶ-ଗୌରବ ଓ ପ୍ରତିପତ୍ତି କାହାର କ'ଣ କାହାର କେତେ ସେ କଥା ଆହୁତ କେବେ ଭାବି ନାହିଁ । ତାର ତାରୁଣ୍ୟ ଚାହିଁଛି ବନ୍ଧନ ।

କେତେ ଆଗ୍ରହ ଦେଖାଇଛନ୍ତି କରୁଣାମୟୀ ଜନନୀ, ସୁଖାଭିଳାଷିଣୀ ପରସ୍ପରର ମନ ଚିହ୍ନିବାକୁ, ଉଦ୍‌ବେଗ ଓ ଉତ୍ତେଜନାକୁ ଅନୁଭବ କରିବାକୁ, ସାନ୍ନିଧ୍ୟ ଓ ସ୍ୱାଧୀନତାର ପ୍ରଶ୍ରୟ ଦେଇଛନ୍ତି । ଆତିଥ୍ୟର ପରାକାଷ୍ଠା ଦେଖାଇଛନ୍ତି । ଆଶୀର୍ବାଦର

Digitized by PPRACHIN, SOA

କୁସୁମାଞ୍ଜଳି ଅର୍ପିତ ହେଉଛନ୍ତି ବୁଢ଼ାଙ୍କ ଉପରେ । କୋମଳ ଦୟା, ସ୍ନେହ ଓ ଅନୁରୋଧ ମିଶା । ଆଉ ଅଭିନନ୍ଦନ, ନିଜର ଅନୁଭବ ଧନଞ୍ଜୟ ! ଦାସ ବାବା, ମୁଁ ଆହୁତିକୁ ଡାକ ଦେଉଛି ।

ମୁଁ ଆସୁଛି ମା, ଶୋଷିତ ଅସାଧ କେଶ । ସୃଜନ ଖେଳ ବି ସଙ୍ଗରେ ଯିବ । ଆସୁ ଆସୁ କେତେ ରାତି ହେବ କେଜାଣି ।

ଶୁଣ ମା, କୋଉ ଦିନୁ ଟିକେ ନ ଶୋଇ ନ ପେଟର କ୍ଷୁଧାରୁ ନାହିଁ ।

କେଉଁ ବାବା, ପଳେଇବ ନାହିଁ । ଲୁଆଣ୍ଡ ଗଲା ସେ ଚଗଲାମି, ଟୁନା । ପାଠ ଛାଡ଼ି ସିନେମା ଦେଖିବାକୁ ଧାଉଁଛି ବୁଝି । ସେ ଫେରିବା ଯାଏ ଘରେ ଥିବ ବାପ ।

କେଉଁଠି ମରଣ ତାର ମନକି ।

ଜିଆଇ ଭବିଷ୍ୟତ ପାଇଁ ବ୍ୟାକୁଳତା ।

ସମସ୍ତେ ବୁଝେଇ ଯାଉଥିଲେ—ଭୁଲ ଅତୀତର ଦୋଷବୃନ୍ଦ । ଅତୀତକୁ ବର୍ତ୍ତମାନକୁ ଟାଣି ଆଣି ଜଣ ଜଣ କରି ଅତୀତକୁ ଭବିଷ୍ୟତକୁ ଠେଲି ଦେଉଛନ୍ତି । ଦୂରରୁ ପୁଣି ଡାକ ଶୁଭୁଛନ୍ତି ଆସ, ଆସ, ଅତୀତକୁ ଜୀବନ୍ତ କରିବା ।

ଦେଖିଛନ୍ତି ସେମାନେ ଜ୍ୱଳନ୍ତ ଶିଖା ଆହୁତିର । ଜଣାଇ ଦେଉଛି ତାର ଜ୍ୱଳନ୍ତ ଆଖିର ବହ୍ନିଶିଖା—ଏଥର ତମେ ପତଙ୍ଗ ହେବ, ଜଳିଯିବ । ଦୂରେଇ ରହ । ଧନ୍ୟବାଦ ତୁମକୁ, ତମେ ଶିଖାଇଛ ସାବଧାନତା । ଦେହ ଓ ମନର ଉତ୍ତେଜନାର ସ୍ୱାଦ ତମେ ଚଖାଇଛ ହେ ମୋର ଅତୀତ ଯୁଗର ପ୍ରିୟତମ !

ସେଇ ଅଭିଜ୍ଞତା ଲୋଡ଼ା ଥିଲା ସାବଧାନତା ପାଇଁ, ନିଜ ଭିତରର ତୋଫାନକୁ ଆୟତ୍ତ କରିବା ପାଇଁ ! ବନ୍ଧୁ ଅନ୍ଧ । ଧରିତ୍ରୀର ସମ୍ମାନ ଦେବାକୁ ତେବେ ପଚ୍ଛାଉଛ; ପଳେଇ ଯାଅ—।

ନିଜ ଭିତରର ପ୍ରବଳ ଅନଳ ଶିଖାରେ ସ୍ନାନ କରୁଛି ସେ ଅବକୁ ଅବ । ଦେହ ଓ ମନର ଉତ୍ତେଜନା ଓ କାମନାକୁ ଇନ୍ଧନ କରି ଜଳାଇଛି, ଜଳାଉଛି ନିରନ୍ତର । ସେ ପୋଡ଼ିଜଳି ଶୁଦ୍ଧ ସୁବର୍ଣ୍ଣ ହୋଇଛି । ତଥାପି, ମନର କେଉଁ କଣରେ ଧୂଆଁ ଉଠୁଛି ଦ୍ୱିଧା, ସେ ଦମୟନ୍ତୀ ହୋଇ ପାରିବ ନାହିଁ । ଦମୟନ୍ତୀର ପବିତ୍ରତା ତାର ନାହିଁ ।

ଆହୁତିର ନୋହୁ ଉଠିଲା । ଆଖିରୁ କେତେ କେତେ ଲୋତକ ଝରିଲା । କହିଁଲା ଅସ୍ପଷ୍ଟ ମାଳ ଅଲୁଅର ସାନ୍ତ୍ୱନା ଲାଗୁଛି ଅଭିଶାପ ପରି ! ପଲଙ୍କ ଉପରୁ ଓହ୍ଲାଇଲା । ଥରିଲା ପାଦରେ କାନ୍ଥ ପାଖକୁ ଯାଇ ଆଲୁଅ ଲିଭାଇଲା । ଫେରି ଆସିଲା ପଲଙ୍କ

Digitized by PPRACHIN, SOA

ଉପରକୁ । ଜହ୍ନ ବୁଡ଼ିଗଲାଣି । ବାହାରେ ଅନ୍ଧାର । ଘର ଭିତରେ ଅନ୍ଧାର । ଅନ୍ତରାତ୍ମା ବନ ଓ ଅନ୍ଧାର ଗୂଢ଼ତର ଧାରଣା ଆସିଲା ମନକୁ । ଅସ୍ଥିର ଲାଗିଲା । ଆଖିରୁ ଲୋତକ ପୋଛୁ ଶୋଇଲା । ଅନୁଭବ କଲା ନଳରାଜାଙ୍କ କୋଳରେ ରଖିଛି ମଥା, ପ୍ରିୟତମ ସୁବ୍ରତ ବଜ୍ରବାହୁ !

ନଳରାଜା ଚାଲିଗଲେ !

ଆଖି ଖୋଲିଲା ଅନ୍ଧାରରେ । ହାତ ଅଣ୍ଡାଳିଲା ।

ହଁ, ଚାଲିଗଲେ ।

ସେ ଉଠି ବସିଲା । ଚିନ୍ତା କଲା, କ'ଣ ତାର ହୋଇଛି ଆଜ ? କାହିଁକି ଲାଗୁଛି ଉନ୍ମାଦ ପରି ? କିଏ ସେ ନଳ, ଆଉ, ଦମୟନ୍ତୀ ବା କିଏ ? ଆସିଥିଲେ ସୁବ୍ରତ ବଜ୍ରବାହୁ । ବସିଥିଲେ । ବନ୍ଧୁ ବୋଲି ପରିହାସ କଥା କହିଲେ । ତାର ଅବୋଧତା ଓ ଭାବପ୍ରବଣତାକୁ ଉପହାସ କରିଥିଲେ । ଉନ୍ମତ୍ତ ହୋଇ ରହିଥିଲେ ଦୁଇ ଥର । ମୁହୂର୍ତ୍ତିକ ପାଇଁ ବିଭ୍ରାନ୍ତ ହୋଇଥିଲେ । ରୂପର ଶିଖାରେ ଆହୁତ ହେବାକୁ ନଇଁ ଆସି ନ ଥିଲେ ସେ ।

ସେ ପତଙ୍ଗ ନୁହନ୍ତି । ସେ ତୋଫାନ୍ । ଫୁଙ୍କି ଦେଇଗଲେ ଅନଳ ଶିଖା ! ଅବାଚନେ, ଦୋହଲାଇଲେ । ବାତ୍ୟାବେଗରେ ଉଡ଼ାଇ ନେଲେ । ଫେରି ଚାହିଁଲେ ନାହିଁ ।

ନାଟକର ପ୍ରଚ୍ଛନ୍ନ ଅନ୍ତସ୍ମିକାକୁ ସେ ଗୋଡ଼ରେ ଦଳିଦେଇଗଲେ । ସେ ନଳରାଜ ନୁହନ୍ତି, ସେ ନୁହନ୍ତି ରୂପଲୋଭୀ ଇନ୍ଦ୍ର । ସେ ନାରଦ !

ନିଜେ ସେ ଜଳୁଛି ଆହୁତ । ତାରୁଣ୍ୟର ଅଦମ୍ୟ କାମନା, କାମନାର ଲୋଭିଲ ଅଭିଜ୍ଞତା, ଅଭିଜ୍ଞତାର ପୁନରାବୃତ୍ତିର ବ୍ୟାକୁଳ ଆଶା ତାକୁ କରୁଛି ଛଟପଟ । ଆରେ, ତେଇଶି ବର୍ଷର ଯୁବତୀ ସିଏ, ବିଶ୍ୱବିଦ୍ୟାଳୟର ଶେଷ ଉପାଧ୍ୟାୟ କୃତୀ ଛାତ୍ରୀ, ଶିକ୍ଷୟିତ୍ରୀ ଆହୁତ, ନିଜର ମାତୃତ୍ୱ-କାମନାର ପ୍ରେମରେ ପଡ଼ି ଛଟପଟ ହୋଇ କାନ୍ଦୁଛି ?

ବୀର ବିକ୍ରମରେ ଚାଲି ଯାଉଥିବା ବନ୍ଧୁ ବଜ୍ରବାହୁ, ହସି ହସି, ହସିହସିକା—!

ଗମ୍ଭୀର ହେଲା ମୁହୂର୍ତ୍ତେ । ନାକ ଉପରେ ଜଟିଳ ହେଲା କୁଞ୍ଚିତା । ଦାନ୍ତ ଚିପିଲା । ସଁ ସଁ ହୋଇ ନିଶ୍ୱାସ ଛାଡ଼ିଲା । ଦୁଇ ହାତରେ ଦୁଇ କାନ ଧରି ମୋଡ଼ିଲା । ମାରିଦେଲା ଆପୁଡ଼ା । ଶବଦ ବାଜିଲା କାନରେ । ଆଘାତ ବେଦନା ମନରେ ।

ସ୍ଥିର ହୋଇ ବସିଲା ମୁହୂର୍ତ୍ତେ । ପୁଣି ଧରିଲା କାନ । ନିଜକୁ ଶୁଣାଇ କହିଲା ଆଉ ଦିନେ, ଆଉ ଦିନେ ?

ନିଜେ ଦେଲା ଉତ୍ତର, ନା, ନା, ନା,—।

କାନ ଛାଡ଼ିଲା ।

Digitized by PPRACHIN, SOA

କ'ଣ 'ନା' ଆହୁତ ?

ନିଜକୁ ପଚାରିଲା ନିଜେ ? ନିଜର ଉତ୍ତର ନିଜ ଭିତରେ ଅନୁଭବ କରି ପିନ୍ଧାଙ୍କ ପରି ବଡ଼ ପାଟିକରି ହସି ଉଠିଲା । ଥରି ଉଠିଲେ ପଲଙ୍କ । ଦୋହଲି ଉଠିଲା ଘରଟା । ଅନ୍ଧାର ଯେପରି ହସି ଉଠୁଛି—ଏ ଲୁହେ ଅଗନାଗ୍ନି ବନ । କଟକ ସହର ମଝିରେ ସତ୍ୟବତୀ ଦେବୀଙ୍କର କୋଠାର ପ୍ରକୋଷ୍ଠଟିଏ । ସେ ଲୁହନ୍ତ ନଳଗଞ୍ଜା, କେଉଁ ବନାଢ଼ିତ ଜମିଦାରର ବେକାର ପୁତ୍ର । ସେ ଲୁହେ ସତୀ ସାଧ୍ୱୀ ପତିଗତାପ୍ରାଣା ଗୁଣୀ ଦମୟନ୍ତୀ, ସେ ଶିକ୍ଷୟିତ୍ରୀ ଆହୁତ ।

ଲଜରେ ସଢ଼ିଗଲା ।

ବନ କେଇଟି ପଦାର୍ଥ ବୃଦ୍ଧ ପ୍ରକାଶ ହୋଇ ବେକାର ଜୀବନର ଦୁଃଖ ଓ ଅଭିଜ୍ଞତା ନେଇ ଘରକୁ ଫେରିଆସିଛି ବଜ୍ରବାହୁ । ଜମିଦାର ପୁତ୍ର କ ବଶ୍ଵବଦ୍ୟାଳୟର ଉପାଧିଧାରୀ ହୋଇ ମନରେ ଯେଉଁ ଗର୍ବ ଥିଲା ସେତକ ଦୂର ହୋଇଛି ।

ଉପସ୍ଥିତର ଦୁନିଆ ଏ । ଏଠି ଜୀବନ-ସଂଗ୍ରାମ ବଜୟୀ ହେବାର ପନ୍ଥା ନ ଜାଣିଲେ ପ୍ରତି ପଦରେ ପତନ ସୁନିଶ୍ଚିତ । କେବଳ ବଦ୍ୟା, ବୁଦ୍ଧି, ବଳ, ରୂପ, ବାକ୍ପଟୁତା, ଆଭିଜାତ୍ୟ, ପରିଶ୍ରମ, ଭଲପଣିଆଁ, ସ୍ୱାର୍ଥପରତା କ ଆତ୍ମତ୍ୟାଗ ଅଥବା ଏ ସବୁର ମିଶାମିଶି ପୁଣି ସତ୍ୟ, ଅହିଂସା, ମିଥ୍ୟା ଓ କୁଟିଳତା ଏ ସବୁର ପ୍ରୟୋଗ ଜୀବନ-ସଂଗ୍ରାମରେ ବଜୟ ଆଣି ଦଏ ନାହିଁ ।

ଆଉ, ଜୀବନ ସଂଗ୍ରାମଟା କ'ଣ, ଜୀବନଟା କ ପଦାର୍ଥ, ସଂଗ୍ରାମଟା କ ପ୍ରକାର କର୍ମ, ବଜୟ ଓ ସଫଳତା କପରି ବସ୍ତୁ ? ଏ ସଂଗ୍ରାମରେ କେଉଁମାନେ ମଣିଷର ଶତ୍ରୁ, କେଉଁମାନେ ବନ୍ଧୁ, ଲକ୍ଷ୍ୟସ୍ଥଳ କଅଣ ? ଏ ସବୁର ରୂପରେଖ ଜାଣିବା ପାଇଁ ସେ ଆଜ ବ୍ୟାକୁଳ ।

ଚାକିରି ନ ପାଇ ପୃଷ୍ଠଭଙ୍ଗ ସୈନିକ ପରି କଟକ ଫେରି ଆସି ବହୁ ପରିଚିତ ଓ ଅପରିଚିତ ବ୍ୟକ୍ତିଙ୍କର ସଂସର୍ଗରେ ସେ ଆସିଛି । ଯେଉଁମାନଙ୍କୁ ସେ ନ ଦେଖିଛି ସେମାନଙ୍କର ଜୀବନ, କର୍ମ ଓ ସଫଳତା କ ବଫଳତା ସମ୍ବନ୍ଧରେ ସେ ଆଗ୍ରହରେ ଶୁଣିଛି । ଧନ ଉପାର୍ଜନ କରିବା ଏବଂ ନିଜେ ଦୁଃଖକଷ୍ଟ ଭୋଗି ଧନ ସଞ୍ଚୟ କରିବା ହିଁ ଯେପରି ଅଧିକାଂଶଙ୍କର ଲକ୍ଷ୍ୟ । ସେମାନେ ମନେ କରନ୍ତି ଧନ ଅର୍ଜନ ହିଁ ଜୀବନର ସାର୍ଥକତା ଓ ଧନ ସଞ୍ଚୟ ଜୀବନର ସଫଳତା ।

ରାଜତ୍ୱ ଲୋପ ହୋଇଛି । ଜମିଦାରୀ ଉଠିଛି । ସବରାକାରୀ ମକଦ୍ଦମ, ଗଉଁତି, ଇନାମ୍‌ଦାରୀ ସବୁ ଯାଇଛି । ଯେଉଁମାନେ ବଡ଼ ବଡ଼ ଧନୀ ଥିଲେ, ଶହ ଶହ ମାଣ

Digitized by PPRACHIN, SOA

ଜମିର ମାଲିକ ଥିଲେ ସେମାନଙ୍କର ଭଇଷ-ଚଷାଜମି ବଳଭ ପାଇଛୁ । ଜମି-ଜମିଦାରୀ ସମ୍ବନ୍ଧୀୟ ସବୁ ଆଇନ୍ ବଦଳିଛି । କେତେ ଭୂମିହୀନ ଲୋକ ଭୂମି ପାଇଛନ୍ତି । ଯେଉଁମାନେ ପରର ପରିଶ୍ରମକୁ ଫାଉ ମାରି ନିଜେ ଆଳସ୍ୟ ଓ ବ୍ୟସନରେ ସମସ୍ତ କଟାଉଥିଲେ ସେମାନେ ଆଜ ଆକାଶକୁ ଅନେଇଁ ବସିଛନ୍ତି । ଘାସଟିଏ ଓପାଡ଼ିବା କି ଖଡ଼ାଟିଏ ଗ୍ରେପିବାର ଯେଉଁମାନଙ୍କର ଶକ୍ତି ନ ଥିଲା ଅଥଚ ହାତରେ ଠେଙ୍ଗାବାଡ଼ି, ଖଣ୍ଡା ବନ୍ଧୁକ, ପଞ୍ଚା ସନନ୍ଦ ଧରି ନାଲିଆଖି ଦେଖାଇ ଫାଉ ମାରୁଥିଲେ, ସେମାନେ ଦୀର୍ଘଶ୍ୱାସ ଗ୍ରୁଡ଼ୁଛନ୍ତି, ଭଗବାନଙ୍କୁ ସ୍ମରଣ କରି ଦୁନିଆକୁ ଅଭିଶାପ ଦେଉଛନ୍ତି—ହେ ରାଜା-ରାମ, ଦୁନିଆ ଧ୍ୱଂସ ହେଉ ।

ଶୁଣିଛୁ ଅନ୍ଧାରୀଗଡ଼ ରାଜାଙ୍କ କଥା ।—ଲୁହ ର ମଣିଷ ସର୍ ଦାର୍ ପଟେଲଙ୍କ ଆଗରେ ରାଜୁତି-ଗ୍ରୁଡ଼ପତ୍ରରେ ସ୍ୱାକ୍ଷର ଦେଇ ପାଗଳାଙ୍କ ପରି ସେ ଛୁଟି ଆସିଲେ ଦେଶକୁ । ରାଜପ୍ରାସାଦ ଭିତରକୁ ପଶି ଯାଇ ଜନନୀଙ୍କୁ କୁଣ୍ଢାଇଧରି ଶିଶୁ ପରି ରୋଦନ କରିବାକୁ ଲଗିଲେ । ପଦଟିଏ ବି କଥା ତୁଣ୍ଡରୁ ବାହାରୁ ନାହିଁ । ଶୋଧନ ରଧର ମରଣ ସମ୍ବାଦ ଜାଣିବା ଆଗରୁ ଭରିକ ଶୋଧନର ମରଣ ଖବର ପାଇ ରାଜ୍ୟଯାକ ଯେପରି ଦିନେ କାନ୍ଦିଥିଲେ, ଅବିକଳ ସେହିପରି ରାଜାଙ୍କର ପର୍ବତ-ଫଟା କନ୍ଦନ ରଡ଼ି ଶୁଣି ରାଜନକରର ଆବାଲବୃଦ୍ଧବନିତା ସମସ୍ୱରରେ ରୋଦନ କରିଥିଲେ । ଏକା ରାଜାମାତା ପୁତ୍ରର ଲୋତକ ପୋଛୁଥାନ୍ତି । ତୁଣ୍ଡରେ ନାହିଁ ଭାଷା । ଆଖିରୁ ଗଡ଼ି ପଡ଼ୁଛି ଲୁହଧାର ।

ରାଜା ପ୍ରକୃତିସ୍ଥ ହେଲାରୁ ମାତା ପଚାରିଲେ, କ'ଣ ହୋଇଛି ବାବୁ ?

ରାଜା ଉତ୍ତର ଦେଲେ, ନିଜ ତଣ୍ଟିରେ ମୁଁ ଛୁରି ବସାଇଛି ମା— !

ସବୁ କଥା ଶୁଣି ରାଜମାତା କହିଲେ, ଏଥିକୁ ଦୁଃଖ କାହିଁକି ? ସମସ୍ତଙ୍କର ଯାହା ହୋଇଛି, ତୋର ମଧ୍ୟ ସେଇଆ ହୋଇଛି । ସେମାନେ ଯେ ବର୍ଷକୁ ଦେଢ଼ ଲକ୍ଷ ଟଙ୍କା ଭତ୍ତା ଦେବାକୁ ରାଜି ହୋଇଛନ୍ତି, ସେଇ କ'ଣ ଯଥେଷ୍ଟ ନୁହେ ?

ଏ ଭତ୍ତା ବି ହୁଏତ କେବେ କଟିଯିବ ମା !

ତେଣୁ ବାପ, ବେଳ ହୁଁ ସାବଧାନ ହୁଅ । ନିଜେ କିପରି ଉପାର୍ଜନକ୍ଷମ ହେବ, ସେ କଥା ବିଚାର କର ।

ରାଜା ସେହି କଥା ହିଁ ବିଚାର କରୁଛନ୍ତି । ବର୍ଷ ପରେ ବର୍ଷ କଟି ଯାଉଛି । ବିଚାର ସରୁନାହିଁ । ରାଜୁତି ଗଲେ ବି ଆଡ଼ମ୍ବର ପୂର୍ଣ୍ଣ ମାତ୍ରାରେ ରହିଛି । ବୁଦ୍ଧି ତୀକ୍ଷ୍ଣ କରିବାକୁ ସୋମରସ ପାନ ଆରମ୍ଭ ହେଲାଣି । ଭତ୍ତା ନିଅଣ୍ଟ ହେଲାଣି । ନମସ୍କାର ମିଳିବ ନାହିଁ ବୋଲି ସନ୍ଧ୍ୟା ନ ହେଲେ ରାଜଭବନରୁ ସେ ବାହାରନ୍ତି ନାହିଁ । ସନ୍ଧ୍ୟାରେ ବାହାରିଲେ ଗୋଟିଏ ରାସ୍ତାରେ କାର୍ ଛୁଟେ ସହର ବାହାରକୁ । ପୁଣି କେତେବେଳେ ଫେରେ କେହି ଦେଖନ୍ତି ନାହିଁ । ସ୍ୱାଧୀନ ମଣିଷ ସଙ୍ଗେ ଆଳାପ

Digitized by PPRACHIN, SOA

ନାହିଁ । ମିଳାମିଶା ନାହିଁ । ଦୂରେଇ ଯାଉଛନ୍ତି । ଆତ୍ମସମ୍ମାନ ହାନି ହେବ ପରା ! କାହିଁ ଅଛି ଆତ୍ମସମ୍ମାନ ? ଏ ଅମୂଲ୍ୟ ଧନ କ'ଣ ଥାଏ ଉଚ୍ଚାରେ, ପୂର୍ବ-ପୁରୁଷରୁ ଗଡ଼ି ଆସୁଥିବା ଗୋଟାଏ ପଦବୀରେ ? ଲୋକଙ୍କ ପାଖରୁ ଦୂରେଇ ରହିବାରେ ?

ବଜ୍ରବାହୁର ମନ ନାହିଁ କରି ଉଠିଲା । ବାହାରର ରାଜ୍ୟ ଓ ଲୋକଙ୍କର ବେଶ, କର୍ମ, ଚଳନ, ଗୋଟିଏ କଥାରେ କହିଲେ ଲୋକଙ୍କର ସ୍ୱାଧୀନତା ଉପରେ ହସ୍ତକ୍ଷେପ ବା ଶାସନରେ ଆତ୍ମସମ୍ମାନ ବଢ଼େ ନାହିଁ, କମେ । ଯିଏ ଅନ୍ୟର ଆତ୍ମାକୁ ସମ୍ମାନ କରି ନ ପାରେ ତାର ନିଜ ଆତ୍ମାର ସମ୍ମାନ କଥା ବିଚାର କରିବା କେତେ ଭ୍ରମାତ୍ମକ । ସବୁ ମଣିଷ ସବୁ ଆତ୍ମା ତ ସମାନ । ତେବେ, କାହିଁକି ଏ ଅହମିକା ?

ବାହାରର ରାଜ୍ୟ ସାନ । ନିଜର ଭଲପଣିଆଁ, ଆତ୍ମତ୍ୟାଗ ଓ ଦେଶ-ବାସୀଙ୍କର ସମୃଦ୍ଧ କଲ୍ୟାଣ କାମନାରେ ନିଜକୁ ନିୟୋଗ କଲେ ମନର ରାଜ୍ୟରେ ସେମାନେ ତ ରାଜତ୍ୱ କରି ପାରନ୍ତେ ! ଅନ୍ୟ ଆତ୍ମାକୁ ସମ୍ମାନ କରି ନିଜର ଆତ୍ମ-ସମ୍ମାନ ଯେ କେତେ ପବିତ୍ର, ସୁନ୍ଦର, ମହତ୍ ଓ ବ୍ୟାପକ ସହଜରେ ଅନୁଭବ କରି ସୁଖ, ସ୍ୱଚ୍ଛନ୍ଦ ଓ ଆନନ୍ଦରେ ସମୟ କଟାଇ ପାରନ୍ତେ !

ସେମାନେ ଥିଲେ ଚଳନ୍ତି ବିଷ୍ଣୁ, ପୁଣି ନିତ୍ୟ ନବନାଗର ନଟବର ସୁନ୍ଦର; ଆଶ୍ରିତ ଖୁସାମଦକାରୀ ପରିବେଷ୍ଟିତ । ସେମାନେ ଥିଲେ ପ୍ରଜାଙ୍କର ଯମ ଓ ପିଠିରେ କୋରଡ଼ା ମାଡ଼ ବସାଇ ମଧ୍ୟ ଆଶା କରୁଥିଲେ ହସି ହସି ସେ ଚିତ୍କାର କରୁ, ହେ ଭଗବାନ ! ନ୍ୟାୟବନ୍ତ ଦୟାବନ୍ତଙ୍କର ମଙ୍ଗଳ କର । ରାଜ୍ୟ ଗଲା । ପରେ, ସେମାନେ ଆତ୍ମ-ସମ୍ମାନ ଭୟରେ, ଅଥବା ନିଜର କର୍ମଜନିତ ଆଶଂକାରେ ପ୍ରଦେଶରେ ଅନ୍ୟ କେଉଁ ସ୍ଥାନରେ କି ପ୍ରଦେଶ ବାହାରେ ବସବାସ କଲେ । ସେମାନେ ବୁଝି ମଧ୍ୟ ସତେ କି ବୁଝି ନାହାନ୍ତି ଯେ ଦେଶର ଲୋକେ ତାଙ୍କୁ କ୍ଷମା କରି ସାରିଛନ୍ତି । ସବୁ ଦୁଃଖ ସବୁ ଅତ୍ୟାଚାର ଭୁଲି ସେମାନଙ୍କୁ ନିଜ ଭିତରୁ ଜଣେ ଜଣେ ବୋଲି ଆନନ୍ଦରେ, ଆଦରରେ ନିର୍ମଳ ମନରେ ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇଛନ୍ତି । ହୃଦୟରୁ ଡାକ ଛାଡ଼ୁଛି ଆସ ମିଶ, ଆମ ସଙ୍ଗରେ ଯୋଗ ଦେଇ ଦେଶର କଲ୍ୟାଣ ପାଇଁ ଧନ ମାନ, ଜୀବନ ସମର୍ପଣ କର, ଆସ — ।

ଜଣେ ନିଶଦାଢ଼ି ଛାଡ଼ି ସନ୍ନ୍ୟାସୀ ହୋଇଛନ୍ତି—ଏକାଥରେ ମୌନୀ । କିନ୍ତୁ ଦ୍ୱାର ଅବାରିତ । ମନର ଭାବ ପ୍ରକାଶ କରନ୍ତି କାଗଜ କଲମରେ । ଆଉ ସେ ଭାବ କ'ଣ ? ସବୁ ପ୍ରଶ୍ନର ଏକା ପ୍ରକାର ଉତ୍ତର – ଭଗବାନ ଅଛନ୍ତି ତାଙ୍କୁ ପଚାର, ତାଙ୍କର ଆଜ୍ଞା ନିଅ । ସେ ଜାଣନ୍ତି ।

Digitized by PPRACHIN, SOA

ଟୋକା ବୟସ । ଖଦ୍ଦର ବାହୁ'ରେ ଶିକ୍ଷା । ଚଳୁଥିଲେ ସାହେବୀ ଢଙ୍ଗରେ । ଆସିଲା ପରିବର୍ତ୍ତନ । ଅତି ସ୍ୱଳ୍ପ ଭୂଖଣ୍ଡର ସେ ଥିଲେ ରାଜା; ଜନନୀ-ଜନ୍ମଭୂମି-ସ୍ୱର୍ଗାଦପି-ଗରୀୟସୀ-ଅତି ସେ ଦେଶ ।

ଜଟାଜୁଟଧାରୀ ଜାନକୀବଲ୍ଲଭଙ୍କର ରୂପ ସିନା ଅଦୃଷ୍ଟିଶୀଳ, ରାଜା ରାମ ହେବାର ଆଉ ସୁଯୋଗ ନାହିଁ । ଗେରୁଆ ବସନ ପରିହିତ ମୌନୀ ମହାତ୍ମା । ସାତ୍ତ୍ୱିକ ଆହାର । ମନ ବେଳେବେଳେ ବୋବେଇ ଉଠୁଛି । ସବୁକୋ ସନ୍ମତି ଦେ ଭଗବାନ । ଅନୁପାଜିତ ଭତ୍ତା ଆସୁଛି, ଖର୍ଚ୍ଚ ସଙ୍ଗେ ସଙ୍ଗେ ଦାନ ମଧ୍ୟ ଦିଆଯାଉଛି ଅଯାଚିତରେ, ଯେଉଁମାନଙ୍କର ଗୁଣ ବଢ଼ ପାଟିକରି ଚର୍ଚ୍ଚା କରୁଛି, ମହାତ୍ମା, ମହାତ୍ମା, ନର ଦେହରେ ନାରାୟଣ ସାକ୍ଷାତ୍ । ମନ ଖିଲ୍ ଖିଲ୍ ହସୁଛି, ଗୁମର ହଉଛି ଗମ୍ଭୀର ଘରେ ନବୋଧ, ନବୋଧ ଆହୁରି ଲୁଚିବାକୁ ହେବ, ଆହୁରି — ଈମୁପାୟମ୍ ?

ଖାଇବା-ପିଇବା-ମରିବା ଏ ମତ ବି ଧରିଛନ୍ତି କେତେ । ଟୁକୁନ୍ ଲୁ ଆଖିରେ ଏଇ ତଥ୍ୟ ସେ ବଖାଣନ୍ତି ସଭିଙ୍କ ଆଗରେ । ସମସ୍ତ ଲୋକେ କୌତୂହଳ ମେଣ୍ଟାଇବାକୁ ପାଖକୁ ଯାଆନ୍ତି । ଦୁର୍ଦ୍ଦଶା ଦେଖି ଉପଦେଶ ଦେଇ ପଠେ ଦିଅନ୍ତି । ଉପଦେଶ ବିନା ମୂଲ୍ୟରେ ପ୍ରଦାନ କରନ୍ତି । କେବଳ ସୁଖ-ସାଗର ନିମଜ୍ଜିତ ସୁବର୍ଣ୍ଣଟିର ଗୁଣରୁ ମହା ନିଡ଼ିବାକ୍ୟ ଶୁଣିବେ ଓ ସୁଖ ଜଳର ଛପିଲ୍ ଆନନ୍ଦକୁ ଦୋହଲାଇବେ । କାହା ଉପରେ ଅଭିମାନ କରି ନିଜର ଓ କୁନ୍ଦ୍ମୂର ସର୍ବନାଶ କରୁଛନ୍ତି ସେ ? ରାତିଟା ତାଙ୍କର ଦିନ ହୋଇଛି, ଦିନଟା ହୋଇଛି ରାତି । ରାତି ନଅଟାରୁ ଆରମ୍ଭ ହୁଏ ସୁରାପାନ । ଆଶ୍ରିତମାନେ ପ୍ରସାଦ ସେବନ କରନ୍ତି । ଗୁଲେ ଗାନା ବାଜଣା । ଓଡ଼ିଆ, ବଙ୍ଗଳା, ହିନ୍ଦୀ— କେବଳ ଅଶ୍ଳୀଳ ସଙ୍ଗୀତ । ଯେତେ ପ୍ରକାର ଅଶ୍ଳୀଳ ଭାଷାରେ ଆଦିରସର ଭାବ ଓ ରୂପ ପ୍ରକାଶ କରାଯାଇ ପାରେ ।

ସୂର୍ଯ୍ୟୋଦୟ କି ସୂର୍ଯ୍ୟାସ୍ତ ସେ କେବେ ଦେଖିବାର ସୁଯୋଗ ପାଇନାହାନ୍ତି ।

ଏଇ, ଗୁ' ଅଣ, ଗୁ—

ଖଟଣିଆ ମଦ୍ୟପାତ୍ର ଦିଏ ହାତକୁ । ମୁହଁରେ ଲଗାନ୍ତି ପାତ୍ର । ସୁଡ୍ କାଏ ନେଇ କହନ୍ତି, ହଁ, ଦୁଲୁ,— କି ହେଲ୍ଲାରେ, କହୁଚ ନୁହଇ—; ଆବେ ଗୁଲୁ, ତୋ'ମାନେ ଭଲେ ବେସେ—; ହୁଁ ଚଲାଓ— , ଆରେ, ମେରେ ସ୍ୱର୍ଗା; ଏଇ ଗୁ—। ପୁଣି ସୁରାପାତ୍ରରେ ମୁହଁ ।

ରାତି ତିନଟାରେ ଢଳି ପଡ଼ନ୍ତି । ସୋଫା ଉପରେ । କ୍ଳାନ୍ତ ଖଟଣିଆ ଟେକି ନିଅନ୍ତି ଅଜ୍ଞାନ ଦେହଟାକୁ ପଲଙ୍କ ଉପରକୁ । ପରଦିନ ସନ୍ଧ୍ୟାରେ ନିଦ ଭାଙ୍ଗେ । ଆରମ୍ଭ ହୁଏ ନିତ୍ୟକର୍ମ । ସ୍ନାନ, ଭୋଜନ, ଦେଖା ଦର୍ଶନ । ପିଲା ଦୁଇଟିଙ୍କୁ ସ୍ନେହ ଓ ଆଲିଙ୍ଗନ । ପତ୍ନୀଙ୍କର ସଜଳ ନୟନ, ଡରି ଡରି ଧୀରେ ଧୀରେ ବଚନ, ହାତଧରି ଅନୁନୟ — ପିଲା ଦୁଇଟିଙ୍କର ମୁହଁକୁ ଚାହାଁନ୍ତି, ନିଜର ଭଲମନ୍ଦ କଥା ବୁଝ । ଜୀବନ

Digitized by PPRACHIN, SOA

ଓ ମାନମର୍ଯ୍ୟାଦା ରକ୍ଷା । ତମେ ଆଜ୍ଞା ସେ ଧ୍ୱଜାର ତୁଅଁ ନାହିଁ । ଅଳଗୁଆ ଖୁସା-ମଡଆଙ୍କ ପାଖରେ ପୁରୁଷ ନାହିଁ —।

ମୁହଁରେ ହସ । ଦୃଷ୍ଟି ଧ୍ରୁବ ସ୍ଥିର । ଦୃଷ୍ଟି ସତେ ଯେପରି ଜୀବନର ଆର ପାରକୁ ଗୁହିଁଛି । ଅନ୍ତର ଭିତରେ ସର୍ବଗ୍ରାସୀ ସର୍ବନାଶୀ ପ୍ରଜ୍ଜ୍ୱଳ ନଳ ଲାଗିଲାଣି । ସେ ଅଳପ ଲାଗି ଉଠିଲାଣି । ଝୋଟକଲାଣି ଜୀବନସଙ୍ଗିନୀ ମନମୋହିନୀ ରକ୍ତବର୍ଣ୍ଣୀ ସୁରୁଦେବୀଙ୍କୁ । ଆଖିରେ ଚହଟିଲାଣି ଆଗ୍ରହ । ନ ଭସ୍କଙ୍କ । ତୁଣ୍ଡରେ ମଧୁର ଆବାହନୀ—ଖାଇବ ପିଇବ ମରିବ । ତମେ ଯାଅ, ତମେ ଯାଅ । ଜାଲ ଦୁଇଟା ଧଳସ୍ମୀ ଅଟ୍ଟହାସ । ଗମ୍ଭୀର କୁହାଟ - ଖାଇବ, ପିଇବ, ମରିବ । ଏଇ, ଯ୍ୱ'— ।

ପରବର୍ତ୍ତୀନର ପ୍ରକୃତ ମୂର୍ଖ ବ ବୁଝିନନ୍ତ ବୁଦ୍ଧିମାନ୍ କେତେ ଜଣ । ତେବେ ସେମାନେ ଧର୍ମକୁ ସବୁ ମଣୁଥିଲେ । ଈଶ୍ୱର, ନରକ୍ଷ ଭରମାଶିଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର କରୁଥିଲେ । ସେମାନେ ଏବେ ଦେଶସେବକ । ଜନତାର ଆଗରେ ଠିଆ । ଅଗ୍ରତଳୁ ବୁଲିଯାଅ ଭାଇମାନେ, ଭବିଷ୍ୟତକୁ ଅନାଅ । ଆଜ ଖାଲି ହାତରେ ଆମେ ତମର ଦୁଆରେ ଠିଆ । ଭିକ୍ଷା ଦିଅ, ଭିକ୍ଷା ଦିଅ, ଧନଦରବ ନୁହେଁ, ଗୋଟିଏ କର ଭୋଟ ।

ଭୋଟ ସେମାନେ ପାଇଛନ୍ତି । ଲୋକଙ୍କର ସ୍ନେହ, ଭକ୍ତି, ସମ୍ମାନ, ଆଶା, କି ସହାନୁଭୂତି, କି କୌତୂହଳ, କି ଯୁଗ-ଯୁଗର ନିପ୍ପେଷଣଜନିତ ଦୁର୍ବଳତାର ଆଶୁ ପ୍ରକିସ୍ଥା, ଅବା ଭଙ୍ଗା କୁଡ଼ିଆ ଆଗର ଅସନା ଅଗଣାରେ, ଯେ ତେବେ ଥିଲେ ହର୍ତ୍ତା-କର୍ତ୍ତା ଓ ବିଧାତା, ତାଙ୍କର ଆବିର୍ଭାବ ଓ ଅନୁରୋଧ ଶୁଣି ମନଫଲ ଆତ୍ମପ୍ରସାଦ, ଏ କଥା ସୁ ବ୍ରତ ଠିକ୍ ବୁଝିପାରେ ନାହିଁ ।

କେତେ ଜମିଦାରଙ୍କର ଅବସ୍ଥା ମଧ୍ୟ ସେହିପରି ହୋଇଛି । ଗ୍ରେଟ ଗ୍ରେଟ ଜମିଦାରଙ୍କ ଅବସ୍ଥା କହିଲେ ନ ସରେ । ସେମାନେ ହୋଇଛନ୍ତି ଘାସକୁ ଗ୍ଲେଟ ପାଳକୁ ଲମ୍ବ । ରଣଗଡ଼ର ଅବସ୍ଥା ସେଇଆ । କର୍ପୂର ଯାଇ ପୁରୁଣା କନାଟା ପଡ଼ିଛି । ସେଥିରୁ ପୁଣି ଭାଗ ପାଇବ ନାହିଁ ବୋଲି ଜାହାକୁ କିଛି ନ କହିଲେ ସୁରତ ବିଦ୍ରୋହ କରିଛି । ପିତା ଆଦେଶ ଜରିଥିଲେ । ଗ୍ରେଟ ଲୋକଙ୍କ ସଙ୍ଗେ ମିଶିବ ନାହିଁ କି ଗ୍ରେଟ କାମ କରିବ ନାହିଁ ବୋଲି ଆଦେଶ ଦେଇଥିଲେ ।

ସୁରତ ଅବାଧ୍ୟ ହେଲା । ପିତାଙ୍କର ମୁହଁ ଉପରେ ଜବାବ୍ ଦେଲା । ସେମାନେ ଦରିଦ୍ର ସତ, ସେମାନେ ଗ୍ଲେଟ ନୁହନ୍ତି ।

Digitized by PPRACHIN, SOA

ଛାଆର ଫଳରୁ ଘରେ ଅଶାନ୍ତି ।
ନଥାଁ କଲୁଛି !

ମୁଣ୍ଡ ଟେକି ଗାଆଁ ଦାଣ୍ଡରେ ଯାଇ ଆସିବା ଅସମ୍ଭବ ହେଲଣି । ଜମିଦାର ଘରର ଗୁମର କଥା ପଦାରେ ପଡ଼ିଲଣି । ସୁରତ ଘରେ ପଶୁନାହିଁ, କୋଠଘରେ ରହୁଛି । ଧର୍ମଦେଟିଆ ସଙ୍ଘର ପରିଚାଳକ ହୋଇଛି । ମନ୍ଦିରର ଖେଚେଡି ଅନ୍ନ ଭୋଜନ କରି ସେ ହୋଇଛି ଅନାହାରୀ ଗ୍ରାମସେବକ ।

ଛି, ଭାଇ, ଏ ବୁଦ୍ଧି କାହିଁକି ଧରିଲୁ । ମା, ଝୁଡ଼ୀ ଦିନରାତି କାନ୍ଦୁଛନ୍ତି । ଖିଆପିଆ ଛାଡ଼ିଲେଣି । ବାପା ଅନୁତାପ କଲେଣି । ତୁ ଧର୍ମ-ବେଟିଆ ସଙ୍ଘର ସଭ୍ୟ ହେଇ ଯାହା କରିବାର କର ପଛେ, ଘରକୁ ଚାଲ । ଗାଁ କୋଠଘରେ ରହି ନଡ଼ିଆ ପଟିରେ ଶୋଇବା କି ଦାନ ଲୋକଙ୍କ ସଙ୍ଗେ ଏକାଠି ବସି ମନ୍ଦିରର ଅଭ୍ୟାଗତ ପାଇଁ ଛଞ୍ଚା ଅନ୍ନ ଖାଇ ବଂଶର ମର୍ଯ୍ୟାଦା ହାନି କରୁଛୁ, ଅରେ ଭାବି ଦେଖିଲୁ ।

ସୁରତ ଝଣାଙ୍କୁ ହସି ଉଠିଲା । କହିଲା, ହେଉଛି ଅନ୍ଧାର ହୋଇଛି ଭାଇ ! ନଈ ଆଡ଼କୁ ଅନାଅଁ ତ । ସବୁ ଦିଶୁଛି ଏକାକାର । କିଛି ବାରି ହେଉ ନାହିଁ । ଦୂରରେ ସେଇ ଗଛଟା ଦେହରେ କେତେ ଜୁଳୁଜୁଳିଆ ପୋକ ନଥାଁ ଜାଳୁଛନ୍ତି । ଆଲୁଅ ଦିଶୁଛି । ଗଛ ଦିଶୁ ନାହିଁ । ସେ ହୋଇଛି ଅନ୍ଧାର ଅନ୍ଧାରର ଗୋଟାଏ ଅଂଶ । ଆମର ଆତ୍ମସମ୍ମାନ ଏଇ ଜୁଳୁଜୁଳିଆ ପୋକର ଆଲୁଅ ସଙ୍ଗେ ସମାନ ହେବ ତ ? ମୁଁ ତ ମୂର୍ଖଟାଏ ଭାଇ —

ତୁ ମୂର୍ଖ କି ପଣ୍ଡିତ କେଉଁ ଜଣକ ? ତୋ' କଥା ଠିକ୍ । ତେବେ, ବାପାଙ୍କର ଆତ୍ମସମ୍ମାନ ଧାରଣାଟା ଏବେ ବି ସେଇ ପୋକର ଆଲୁଅ ପରି ଜଳୁଛି । ତାଙ୍କ ମନରେ ଦୁଃଖ ଦେବୁ ତୁ ? ମା-ଝୁଡ଼ୀଙ୍କୁ କନ୍ଦାଇବୁ ?

ଭାଇ, ମୁଁ କେବେ କାହାକୁ ଡରଇ ନାହିଁ କି କାହାକୁ ଡର ନାହିଁ । ଠକାଇବା କି ମିଛ କହିବା କଥା ମୁଁ କେବେ ସ୍ୱପ୍ନରେ ବି ଭାବି ନାହିଁ । ମକାଦ୍ଦର ପାଖରେ ମୁଁ ପଶି ନାହିଁ । ମୋର ଆତ୍ମସମ୍ମାନ ହାନି ହେବ କାହିଁକି ? ତା ଛଡ଼ା, ଆତ୍ମ ସମ୍ମାନ କ'ଣ ଏକଥା ମୁଁ ବୁଝିପାରେ ନାହିଁ । ଦୈହିକ ହେଉ କି ମାନସିକ ହେଉ କି ଦୁଇଟିଯାକର ମିଶାମିଶି ହେଉ ପରିଶ୍ରମ କରି ନିଜର ଅଭାବ ମେଣ୍ଟାଇବା କ'ଣ ଲାଜର କଥା କି ? ପିତା ମାତା କୋଥଳି ଛାଡ଼ି ପୁଣି ଏବେ ଖଙ୍କାଳିଆରସର ଆଶ୍ରା ଧରିଲେଣି । ବାରଣ କଲାରୁ ମାଙ୍କୁ ମାରିବାକୁ ଧାଇଁ ଆସିଲେ — ।

ତୁନି ହ, ସୁରତ !

Digitized by PPRACHIN, SOA

କଏ ଶୁଣିବ ସବୁ, ପୁଣି ଆତ୍ମସମ୍ମାନ ଓ କଣମର୍ଯ୍ୟାଦାର ଆଳୁଅଟା ଲଭିସିବ । ଏପର ସମ୍ମାନ ଲୋଡ଼ା ନାହିଁ । ଦେଖିନ ଭାଇ, ଆତ୍ମସମ୍ମାନ କେଉଁଠି ଅଛୁ ? ତୁକ ତୁକ ଏହି ଅନ୍ଧାର ଗୁହରେ ଆସି ପାରିବ ମୋ ସଙ୍ଗରେ ? ଦେଖାଇ ଦେବ ?

କେଉଁଠି କ ?

ମୁଁ ଯାହାକୁ ମାନୁଛୁ ମନ୍ଦର ବୋଲି ।

ଗୋଟାଏ ତ ମନ୍ଦର ଏ ଗ୍ରାମରେ ।

ଯେଉଁଟି ପଥର ପ୍ରତିମାରେ ସୁନା ରୂପା ମଣିମାଣିକ୍ୟର ଅଳଙ୍କାର ଖଞ୍ଜା ହୋଇଛୁ ? ସେ ମନ୍ଦର ମୋର ନୁହେଁ । ଯେଉଁ ମନ୍ଦରରେ ଚଳନ୍ତି-ଦେବତାର କାରବାର ! ମୂଲିଆର କୁଟୀର ଭାଇ । ସହସ୍ର ସହସ୍ର ବର୍ଷ ତଳେ ହାତରେ ଟାଙ୍ଗି, ମୁଣ୍ଡରେ ଭଣ୍ଡରେ ମାଶ, ବାପ ଡାଦଙ୍କ ବାଘ ସାପଲ ମୁହଁରେ ଦେଇ ଯେଉଁ ମହାତ୍ମା ଭୂମି କରଥିଲ, ସେ ଦେଇଥିଲ ଭୂମିଦାନ । ସେଇଠୁ ଜୀବନ ଦାନ, ସର୍ବସ୍ୱ ଦାନ ।

ଏବେ ସେମାନଙ୍କର ଶ୍ରମ ଛଡ଼ା ଆଉ କିଛୁ ଦାନ ଦେବାକୁ ନାହିଁ । କଢ କଢ ଆବାଳବୃଦ୍ଧବନିତା ସେମାନେ ନିଜ ଶ୍ରମର ଅଂଶ ଦାନ ଦେଉଛନ୍ତି । ଫସଲ ଫଳୁଛୁ, କୋଠାବାଡ଼ି ଗଢ଼ା ହେଉଛୁ । ରାସ୍ତା ପଡୁଛୁ । କଳକାରଖାନା ବସାଯାଉଛୁ । ସବୁ ସେଇମାନଙ୍କ ଫଳ ।

ଜାଣୁଛନ୍ତି କ ସେମାନେ ?

ନ ଜାଣନ୍ତୁ । ଅଜାଣତରେ ପଛେ ଦେଉନ୍ତୁ । ଦେଉଛନ୍ତି ତ ! ମୋ ଆଖି ଆଗରେ ଦିଶିଯାଉଛୁ ଭାଇ—

କାମରୁ ଫେରି ମୁଠିଏ ପଖାଳ ଓ ଶାଗ ଟିକଏ ଖାଇ ହାଲିଆ ହୋଇ ପଡ଼ି ଯାଇଛୁ ସେ ନଡ଼ିଆ ଖୁଆସ ଉପରେ । ମିଞ୍ଜି ମିଞ୍ଜି ଡିବାଲ ଜଳୁଛୁ । କଡ଼ରେ ଶୋଇଛୁ ପାଞ୍ଚ ବରଷର ପୁଅ । ତୁଣ୍ଡ ଉପରେ ଛଅ ବରଷର ସିଙ୍ଘାଣିନାକୀ ଝିଅଟି ପଡ଼ିଛୁ, ବାପର କାନ ଟାଣୁଛୁ । ହସିହସି ନସ୍ୟାନ୍ତ ହେଲଣି ସେ । ଅସଜ ମାଇପିଟି ତାର ଗୋଡ଼ ମୋଡ଼ୁଛୁ । ସେ ବ ଫେରୁଛୁ କାମରୁ । ପେଟରେ ଛୋଉଣି ମନ୍ଦଏ ପଡ଼ୁଛୁ କ ନାହିଁ, କେଜାଣି ?

ଅନ୍ଧାର ସେ ପାଖେ ହେଇଟି ତ ଜଳ ଜଳ ହୋଇ ଦିଶିଯାଉଛୁ ତା ଘର ଆଉ, ତାର ସ୍ତ୍ରୀ ପିଲାଏ ।

ଶୁଣି ପାରୁଛ ନା ସେ କଅଣ କହୁଛୁ, ଭାଇ ? ଶୁଣ —

ସେତକ ଥାଉ ଗୋଡ଼ଘଷା, କାମ କରି ତମ ହାତ ଦରଜ । ଯାଅ, ମୋ ଗୁଣ, ହେଇଟି, ବୁଢ଼ୀ-ବଡ଼ମା କାଶୁଛୁ । ଦେ ତାର ପାର ଡାକ ମ, କହୁଛୁ, ଭୋକ ହେଲଣି ଖାଇବାକୁ ଦେବୁ ନାହିଁ କ ବୋହୂ ? ଯାଅ—

Digitized by PPRACHIN, SOA

ସ୍ତ୍ରୀ କେମିତି ଜଳସ୍ର ହୋଇ ଚାହିଁକ ଦେଉଛନ୍ତି । କାନରେ ବାଜୁଛି ? ଶୁଣ—ଆରେ, ପ୍ରଣ କନ୍ୟାଙ୍କ ପାଇଁ ପକାଉଛ ? ଇଲ ଥୁନ୍ଦ । ହାଲିଆ ହୋଇଛ, ମାଟି ବୁହା କାମ । ହେଉ ଥାଉ, ବଡ଼ମାନ ଖାଇବାକୁ ଦେଇ ଆସେ, ଅଣ୍ଟା ମୋଡ଼ି ଦେବ ?

ସ୍ୱାମୀ କହୁଛି. ଯା । ଆଇଲେ ମୁଁ ଶୁଝେଇ ଦେବ ସେ !

ହରେ, ଅଧର୍ମ ହେବ ମୋ ପାଦରେ ହାତ ଦେଲେ । ତମୁକୁ ଗ୍ରଣ ଅଛି । ମୁଁ ଜଦରେ ଶୋଇଲେ ତ ! ହେଲ, ବଡ଼ମା କାଣିଲେଣି ପୁଣି, ମୁଁ ଆସୁଛି—

ଅଙ୍କା ହୋଇ ସୁରଚନ୍ଦ୍ର କଥା ଶୁଣିଲେ ବଜ୍ରବାହୁ । କାନରେ ବାଜ ଯାଉଛି ଚନ୍ଦ୍ର ଦେବତାଙ୍କର ଅମୃତ ବାଣୀ । ମନୁଷ୍ୟରେ ଶୁଣି ନାହିଁ ସେ ଏ ବଚନ ସଙ୍ଗୀତ । ସତ୍ୟକୁଠି ଅଛି । ସେ କାନ ତେଉ ନାହିଁ । ସତରେ ଏତ୍ରା, ଆତ୍ମମର୍ଯ୍ୟାଦାର ପ୍ରକୃତ ରୂପ ସେଇଠି ହିଁ ଦଶୁଛି । ପ୍ରତ୍ୟେକେ ଅନ୍ୟମାନଙ୍କର ଆତ୍ମା ପାଖରେ ନିଜ ଆତ୍ମାକୁ ସମର୍ପଣ କରିବା ପାଇଁ ଆକୁଳ ବ୍ୟକୁଳ ।

ଯେଉଁଠି ଅହମିକାରେ ପାଗଳ ହୋଇ ଲୋକେ ଭାବୁଛନ୍ତି ମୋର ଆତ୍ମା ପାଖରେ ଅନ୍ୟମାନଙ୍କର ଆତ୍ମା ନଇଁପଡ଼ୁ, ସେଠି ଆତ୍ମସମ୍ମାନ ବୋଲି କଛି ନାହିଁ ।

ସୁରଚ !

ଭାଇ, ଦେଖ ଦେଖ, ତାର ସେଇ ଭଙ୍ଗା ଗୃହରୁ ଚାଉ ସାପଟା କେମିତି ଫେଁ ହେଉଛି । କେହି ଦେଖି ନାହାନ୍ତି । କାଳେ ଖସି ପଡ଼ିବ ପିଲାଟି ଉପରେ !

ନିର୍ଦ୍ଦୋଷ ସେମାନେ । ହୋଇ, ସାପଟା ଉପରକୁ ଉଠି ଗୁଳିଗଲାଣି । ଭୟ ନାହିଁ ।

ହଁ ଭାଇ । ଆଉ ତଳେ ସେ ଆସିବ । କାଳେ ଖସିପଡ଼ିବ ! କେତେ ଏମିତି ଖମନ୍ତ, ନିର୍ଦ୍ଦୋଷ, ନିର୍ମାୟା ମନୁଷ୍ୟଙ୍କ ପ୍ରାଣ ଯାଏ । ଚାଲ ତାର ଘର କୋଳା ହେବ । ଧର୍ମ-ବେଟିଆ ଢଙ୍ଗ ଏଇଠି ତୋଳିବ ମନ୍ଦିର ।

ବୁଝିଲି ରେ ସୁରଚ, ଖାଲି ବି. ଏ., ଏମ୍. ଏ, ପାସ୍ କଲେ ବିଦ୍ୟା ହୁଏ ନାହିଁ, ବୁଦ୍ଧି ବି ବଢ଼େ ନାହିଁ । ଅଗ ଜନ୍ମ ହେଲେ ବି ମଣିଷ ବଡ଼ଘରର ବଡ଼େଇ କରିପାରେ ନାହିଁରେ । କଅଣ କଲେ ଆମର ଏଇ ଇଟା ପଥରର ପାଚେରୀ ଭିତରେ ଆମେ ଅତ୍ମମର୍ଯ୍ୟାଦାର ପ୍ରକୃତ ଆଲୁଅ ଜାଳି ପାରିବା ? ଯିବ ରୁ ଫେରିଯିଉ— ।

ଫେରିବାକୁ ମୁଁ ମନା କରୁ ନାହିଁ । କିନ୍ତୁ ଫେରିଯାଇ ଦେଖିବ କଅଣ ? ପିତାଙ୍କର ମଦ୍ୟପାନ, ସମସ୍ତଙ୍କ ପ୍ରତି ଘୃଣାଭାବ, ସନ୍ଦେହ ଓ ଅସମ୍ମାନ । ମାତାଙ୍କର ଅବଜ୍ଞା ଓ ପ୍ରତିଶୋଧ ନେବାର ଚକାନ୍ତ । କାହାର ପ୍ରକୃତି ବଦଳାଇ ପାରିବା ପରି ଶକ୍ତି ମୋର ନାହିଁ । କାହାର ଉପରେ ଅଭିମାନ ମୋର ନାହିଁ । ମନ୍ଦିରରେ ପ୍ରସାଦ ସେବନ ପ୍ରକୃତରେ ଗର୍ହିତ କାମ । ତେଣୁ କାଲିଠାରୁ ମୂଲ ଲାଗିବ ।

Digitized by PPRACHIN, SOA

ଛି, ସୁବ୍ରତ !

ସେ ପୁଣି ହସିଲା । ହାତ ଧରି ସୁବ୍ରତକୁ ଆଗକୁ ଟାଣି କହିଲା, ଆସନ୍ତୁ । ବଡ଼ ଅଧିକ ହେଲାଣି । ମୁକ୍ତ ଲାଗି ପେଟ ପୋଷିବାରେ ଲାଜ ନାହିଁ । ସମସ୍ତେ ମୂଲ ଲାଗନ୍ତି, କେବଳ କର୍ମଭେଦ ଓ ମୂଲର ପରିମାଣର ଅଯଥା ଭେଦ । ଆପଣ ବି ମୂଲ ଖୋଜନ୍ତାକୁ ଯାଇଥିଲେ । କ ପାଳ ହନ୍ତାଶ ହୋଇ ଫେରି ଆସିଛନ୍ତି । ମୁଁ ହତାଶ ହେବ ନାହିଁ । ଚାଲ ଦେଖିବେ ।

ସୁବ୍ରତ ଫେରନ୍ତି । ଗୃହିଁ ବସିଥିଲେ ମା ଖଡ଼ିକର । ସୁବ୍ରତ କହିଲା, ଚଳ୍ପା ନାହିଁ ମା, ସ୍ୱରନ୍ତ ବାପଙ୍କର ପ୍ରକୃତ ବଦଳାଇବାକୁ ଗୃହେଁ । ମୁଁ ଜାଣେ, ସେ ପାରିବ । ସେଥିପାଇଁ ସେ ତପସ୍ୟା କରୁଛି । ସେ ଭୋର ସୁନାପୁଅଟା । ଯାହା ସେ ବୁଝିଛି, ଠିକ୍ ବୁଝିଛି । ତାକୁ ତୁ ବାଧା କର ନା । ସେ ପିଲାଦିନରୁ ଏକଜିଦିଆଟା । ତା ସଙ୍ଗେ ବେଶି ଲାଗିଲେ କ ତାକୁ ବାଧା କଲେ ସେ ଯଦି ଆଉ କଅଣ କରି ବସେ ତ ବୁଝି ପାଇବ ନାହିଁ ।

ମମତା ଉତ୍ତର ଖୋଜି ପାଇଲେ ନାହିଁ । ପିଲାଦିନରୁ ସମସ୍ତଙ୍କର ବେଶି ଗେହ୍ଲା ହୋଇ ସୁବ୍ରତଟା ଅବାଗିଆ ହୋଇଯାଇଛି । ବିଶେଷତଃ ତାଙ୍କ ବାପଙ୍କର ସବୁ ଡଙ୍ଗ ସବୁ ପ୍ରକୃତ ନେଇ ସେ ବଢ଼ିଛି ।

ଆହା, କେବେଠୁଁ ମରି ଶଶୁରଶାଶୁ ସ୍ୱର୍ଗପୁରେ ରହିଲେଣି ଜନ୍ମ ଉଦ୍ଦେଶ୍ୟକୁ ଯେଉଁ ସ୍ନେହ ସେ କରନ୍ତି ସେତକ ଭୁଲି ହେଉ ନାହିଁ । ସବୁବେଳେ ଲଙ୍ଗଡ଼ା ପରି ସେ ତାଙ୍କର ପଛେ ପଛେ ଥାଏ । ହେଲେ, ଶଶୁରଶାଶୁ କେବେ ବଂଶ-ମର୍ଯ୍ୟାଦାକୁ ତଳେ ପକେଇ ନ ଥିଲେ କି ଗ୍ରେଟଲୋକଙ୍କ ସଙ୍ଗେ ମିଶୁ ନ ଥିଲେ । ଘର ଭିତରେ ଯେତେ ଯାହା ଘଟିଯାଉ ପଛେ ଦାଣ୍ଡକୁ ବାହାରିଲେ ସେ ସିଂହ । ସୁବ୍ରତଟା କଅଣ କଲା ସତେ ! ଗ୍ରେଟଲୋକଙ୍କ ସଙ୍ଗେ ମିଶିଲା, ଖେଚୁଡ଼ି-ଅନ୍ନ ଖାଇଲା, ଖଟାଳିଙ୍କ ଗୁଡ଼ିଗାଁ ଢୋଠରେ ହାଣ୍ଡି ପାଣ ତେଲ ତାମୁଲ ଟୋକାଙ୍କ ପାଖରେ କାନ ପାରି ଶୋଇଲା ! ଛି !

ମମତା କହିଲେ, ଘରେ ଖାଇ ଘରେ ଶୋଇ ସକାଳୁ ଉଠି କେଉଁଠି ଯାଇଁ ଧର୍ମ-ବେଠି କରୁଛି ତ କରୁ । ତୁ ତାକୁ ବୁଝାଇଦେଲୁ ନାହିଁ ?

ମୁଁ ବୁଝାଇଲେ ସେ ବୁଝିବ ନାହିଁ । ମୋ ସଙ୍ଗେ ସେ ତର୍କ କରିବ । ତା କଥାକୁ ମୁଁ କାଟି ପାରିବ ନାହିଁ କି ତାକୁ ହରେଇ ପାରିବ ନାହିଁ । ତୁ ତାକୁ କାଲି ପଚ୍ଚାରୁ । ସବୁଦିନେ ତୁମକୁ ଦେଖା କରିବାକୁ ଆସୁଛି ବୋଲି ସେ କହୁଥିଲା— ।

Digitized by PPRACHIN, SOA

ଭାରତୀ କହିଲେ, ହଁ ପୁଅ, ଆସୁ ଆସୁ ଯିବାକୁ ତରତର। କେଉଁଠି ଘରଛୋଟାଳି କାମ ଅଧା ପଡ଼ିଛି, କେଉଁଠି ରାସ୍ତାକୁ ମାଟି ବୁହା ହେବ, କାହାର ଯୋଝଣା ସଜା ହେବ–ଏମିତି କେତେ କଥାର ଗପି ସଙ୍ଗେ ସଙ୍ଗେ ଗୁଳି ଯା'ଆନ୍ତି।

ଯେତେବେଳେ ସେ ଘରକୁ ଆସିବ ସେତିକବେଳେ ତାକୁ ପେଟେ ଖୁଆଇ ଛାଡ଼ୁନା ଝିଅ!

ସେ ତ ମନା କରନ୍ତି ନାହିଁ।

ତେବେ ମା ଏମିତି ବ୍ୟସ୍ତ ହେଉଛନ୍ତି କାହିଁକି?

ସବୁ ଦିନେ ଠିକ୍ ସମୟରେ ଆସିଲେ ମୁଁ ମୋଟେ ବ୍ୟସ୍ତ ହୁଅନ୍ତି ନାହିଁ। କେଉଁଦିନ କେତେବେଳେ ଆସିବ। କାଉ ଖୁମିଲା ପରେ ପାଟିରେ ଦି'ଗୁଣ୍ଡା ପୁରେଇ ଚୁ। ହେଇ ଏବେ ଦେଖ, ଆଜି ଗୋଟାଏ ଦିନ ଯେ ସେ ଘରେ ପାଦ ପକେଇ ନାହିଁ।

ଭାରତୀ କହିଲେ ସେଇଥିପାଇଁ ଏତେବେଳଯାଏ ଅପା ପାଟିରେ ପାଣି ମାରି ନାହାନ୍ତି।

ସୁବ୍ରତ ମୁହୂର୍ତ୍ତେ ତୁନି ରହିଲା। ଦୁଃଖରେ ହେଲା ଅଭିଭୂତ। ମା ସେ। ସ୍ନାନ ପୁଅ ଚେଲ୍ଲା ପୁଅ ତାଙ୍କର ଦୂରେଇ ଯାଇଛି। ତା ପାଟିରେ ଅଧାର ନ ଦେଲେ ସେ ଖାଇବେ ନାହିଁ। କିନ୍ତୁ, କେତେଦିନ ଏପରି କଟିବ? ସୁବ୍ରତ ଯଦି ଏ କଥା ଜାଣେ ଆହୁରି କ'ଣ କାଣ୍ଡ ଭିଆଇବ। ସେ କର୍ମୀ। ଆଜି ରଣଗଡ଼ ହେଇଛି ତାର କାର୍ଯ୍ୟକ୍ଷେତ୍ର। ସାରା ଦେଶର ଦୁଃଖୀ ଦରିଦ୍ର ତା ଆଖିକୁ ଜଳଜଳ ହୋଇ ଦିଶି ଯାଉଛନ୍ତି। ସେ ଯଦି ଗାଆଁ ଛାଡ଼ି ଚାଲିଯାଏ ତ! ସୁବ୍ରତ କହିଲା, ଏ କଥା ଠିକ୍ ନୁହେ ମା, ସୁବ୍ରତ ପିଲାଟିଆ ତ ହୋଇ ନାହିଁ। ତାର ପକ୍ଷୀ ଲାଗିଲାଣି। ଏ ଡାଳରୁ ଉଡ଼ି ସେ ଡାଳରେ ବସିବାର ଶକ୍ତି ତାର ହେଲାଣି। ତା କଥା ଭାବି ନିଜେ ଦୁଃଖ ପାଇବା ଉଚିତ ନୁହେଁ।

ମମତା ଅନ୍ୟମନସ୍କ ହୋଇ ଆଲୁଅ ତେଜିଲେ। କହିଲେ, ତମେସବୁ ନ ଖାଇଲେ ମୋ ପାଟିକୁ ଅନ୍ନ ଯିବ କିପରି ବାପ?

ସୁବ୍ରତ କଣ ଭା'ବୁଛି ଜାଣ? ସେ ଭାବୁଛି, ତା ଗାଁ ଲୋକେ ସମସ୍ତେ ମୁଠିଏ ଭଲ ଖାଇବେ, ଭଲ ଘରେ ରହିବେ, ଭଲ କରି ଖଣ୍ଡେ ପିନ୍ଧିବେ। କାହାରିକୁ ରୋଗବୈରାଗ ହେବ ନାହିଁ, ସମସ୍ତେ ସଦ୍‌ବୁଦ୍ଧି କରିବେ, ପାଠ ପଢ଼ି ଶିକ୍ଷିତ ହେବେ। ଏମିତ ଦେତେ ବଡ଼ ବଡ଼ କଥା ସେ ଭାବୁଛି। ସେଥିପାଇଁ ସେ ଉଦ୍‌ଦେଶ୍ୟ ଛୁଆସ ଗୁଡ଼ ଗାଁ କୋଠଘରେ ଆଣ୍ଡା ନେଇଛି। ତୁ ଭାବୁଛୁ ତୋର ଗୋଟିଏ ପୁଅର ଭଲମନ୍ଦ କଥା, ସୁବ୍ରତ ଭାବୁଛି ଗାଁଟାଯାକର ଭଲମନ୍ଦ କଥା।

ଝିଅ କହିଲେ, ଏ ସବୁ ତାଙ୍କର ବାଇଆ ବୁଦ୍ଧି। ପାଞ୍ଚ ଆଙ୍ଗୁଠି ସମାନ ହେବ କି ପୁଅ? ଯେତେ ଟାଣିଲେ ଓଟାରିଲେ ବଡ଼ ସାନ ରହିବ। ଧନ, ମାନ,

Digitized by PPRACHIN, SOA

ବନ୍ଧ୍ୟା, ବୁଢ଼ି, ପ୍ରକୃତ ସବୁଥିଲେ । ସୁବ୍ରତ ବାଇଆ ବୁଢ଼ି ଧରିଛନ୍ତି । ତମ ଦାଦା ଯଦି ଆଜି ଥାଆନ୍ତେ ଦ' କାନ ଧରି ଦ' ଗାଲରେ ଦଉଟି ବ୍ରହ୍ମଚୁମ୍ବା ଥୋଇଲେ ବାଇଆ ବୁଢ଼ି କୁଆଡ଼େ ଗୁଡ଼ି ପଳାନ୍ତା । ଘରପିଲା ଘରକୁ ଆସି ସୁଧାର ଗାଣ୍ଡୁ ପରି ଠିଆ ହୁଅନ୍ତେ । ନାହିଁ କି ଅପା ?

ସୁବ୍ରତ ଖୁଡ଼ୀଙ୍କ ମୁହଁକୁ ଅନେଇଲା । ଆଖିରେ ଲୁହ ଛଳଛଳ ହେଲାଣି । ସେ ଆଉ ସିଧାସଳଖ ଚାହିଁ ପାରୁ ନାହାନ୍ତି । ବସିଥିବା ସତରଞ୍ଜିର ଫୁଲ ଉପରେ ଦୃଷ୍ଟି ନିବଦ୍ଧ କଲେ, ଆଖିରୁ ଝରି ଆସିଲା ଲୁହଧାର । ମମତାଙ୍କର ଆଖିରେ ପଡ଼ିଲା ସେ ଲୁହ-ଝରା ମୁହଁର ଆକୁଳତା । ସେ ଗମ୍ଭୀର ହେଲେ । ବୁଝିଲେ, ଭାରତୀର ମନ ଆଗରୁ ଉଭା ହେଲେଣି ନଟବର ଶତ୍ରୁଶଲ୍ୟ !

ସୁବ୍ରତ ହିଁ ମନେ ପକାଇଦିଏ । ଦାଦାର ଛୁଟିକା ନେଇ ସେ ଜନ୍ମ ହେଇଛି । ଆଖି କାନ ନାକ ଅବିକଳ ସେମିତିକା । ଚାଲିଚଳନ ଢଙ୍ଗ ବି ସେହିପରି । ଜନମ ଦିନ ଦେଇଛନ୍ତି ମମତା, ସବୁ ସ୍ନେହ ସବୁ ସୋହାଗ ତାଆରି ଉପରେ ଢାଳି ଦେଇଛନ୍ତି ହତଭାଗିନୀ ଭାରତୀ । ନିଜ ହାତରେ ସବୁ ସେ ତାରି କରିଛନ୍ତି, ବଢ଼ାଇଛନ୍ତି ।

ସୁବ୍ରତ ଆସି ଆଗରେ ଠିଆ ହେଲେ ଗୁଡ଼ାଏ ଚମକିଉଠେ — ନଟବର ଫେରି ଆସିଲେ କି ସେ ପୁରରୁ ? ଖୁଡ଼ୀ ବୋଲି ଡାକ ଶୁଭିଲେ ଭ୍ରମ ଭାଙ୍ଗେ । ରଣସିଂହଙ୍କର ସ୍ୱର ।

ସୁବ୍ରତ ଆଜି ଘରକୁ ଆସି ନାହିଁ । ଭାରତୀଙ୍କର ଆଖି ଫୁଟିଲା ପରି ଲାଗୁଛି । ସେଇଥିପାଇଁ ସେ ମନେ ପକାଇଛନ୍ତି ଶତ୍ରୁଶଲ୍ୟଙ୍କୁ । କାନ୍ଦୁଚନ୍ତି ।

ମମତାଙ୍କର ଗୁଡ଼ାଏ ତଳେ ଛପିଲା ବ୍ୟଥା ବାହୁଡ଼ି ଉଠିଲା — ଆହା, ଶତ୍ରୁଶଲ୍ୟ ରଣସିଂହେ ଅଛନ୍ତି, ସେତିକି ତାଙ୍କର ଗର୍ବ, ସେତିକି ତାଙ୍କର ସମ୍ମାନ । ହଁ, ସେ ମମତାଙ୍କୁ ଭଲପାଇ ନାହାନ୍ତି । ପାପ ଓ ଅନୀତିର ପାରାବାରରେ ହବୁଡ଼ୁବୁ ହୋଇ ବୁଡ଼ିଛନ୍ତି । ସମୁଦ୍ର ଶୁଖିଛି । ହୋଇଛନ୍ତି ବିରକ୍ତବୈଷ୍ଣବ । ଶୁଖିଲା ଠାଉଠାଉ ସମୁଦ୍ର । ଆଖି ଫେରାଇଛନ୍ତି, ହାତ ବଢ଼ାଇଛନ୍ତି । ପାଇ ନାହାନ୍ତି ଦୂରେଇ ଦେଇଥିବା ଚନ୍ଦ୍ର ।

ମାଳା କୋଉଠି ଯାଇଛି ! ପ୍ରକୃତ ପୁଣି ତାକୁ ଓହ୍ଲାଇ ନେଇଛି ତଳକୁ ପଙ୍କ ଖୋଜିବାକୁ । ତଥାପି ସେ ଅଛନ୍ତି, ଶତ୍ରୁଶଲ୍ୟ ନାହାନ୍ତି !

ମମତାଙ୍କ ମନ ତରଳିଲା । ସେ କହିଲେ, କାନ୍ଦୁଛୁ କାହିଁକି ଭାରତୀ, ସୁବ୍ରତ ବାଇଆ ବୁଢ଼ି କରୁ ପଛେ ଏଇ ଗାଁରେ ଅଛି, ଖାଉଛି ପିଉଛି, ତା ମନ ଯାହା ତାହା କରୁଛି । ସତ କଥା, ସେ ପିଲାଟିଆ ହୋଇ ନାହିଁ । ବୁଝିଆକୁ ସେ ଚହ୍ଲି-ନାହିଁ ରେ ସୁବ୍ରତ, ଯେଉଁମାନଙ୍କ ପାଇଁ ସେ ମାନ ମହତ୍ତ୍ୱ ତଳେ ପକାଇ ବାଇ

Digitized by PPRACHIN, SOA

ହୋଇଛନ୍ତି ସେମାନେ ଧନେ ତାଙ୍କୁ ଚେଷ୍ଟା ଦେବେ । ସେଇଠୁ ସେ ବାଟେ ବୁଝିବ, ଘରକୁ ଫେରିବ ।

ସୁବ୍ରତ ଟିକେ ହସି କହିଲା, ଏ ବିଶ୍ୱାସ ତୋର ଅଛି ତ ଉପାସ ରହି ବେଳ କାଟିଲୁ କାହିଁକି ?

ଭୁଲ ହୋଇଛି ବାପ; ତୁ ଆଗ ଖାଇବୁ ଚାଲ୍ - ସୁବ୍ରତ ପଚାରିଲା, ବାପା ଖାଇଲେଣି ?

ତାଙ୍କର ଉପର ଖଣ୍ଡରେ ଉଠିଲେ ଘୋଷର ଆରମ୍ଭ ହେଲାଣି । କେତେ ଅଳସୁଆ ପୁରୁଷ ଯାଙ୍ଗ ଜୁଟିଗଲେଣି । ମେଳ ଘରେ ଚାଲିଛି ପଶା ପାଲି ଖେଳ, ଦାନରାତ୍ର ଚାଲୁଥିବେ । ପାଖକୁ ଯାଇ ପଦେ କହିବାକୁ ବସିଲେ ଚିହିଙ୍କି ଉଠୁଛନ୍ତି । ମଦ ନିଶାରେ ମତୁଆଳ ପାଗଳ ହେଉଛନ୍ତି । ଯେଉଁମାନେ ଆସି ଯୋଗ ଦେଇଛନ୍ତି, ସେମାନଙ୍କର ଲଜ୍ଜା ବା ମହତ ନାହିଁ । ପ୍ରବର୍ତ୍ତାଇଛନ୍ତି ପଛେ, ନିବର୍ତ୍ତାଉ ନାହାନ୍ତି । ତୁ ଗଲା ପରେ ସେ କଟକ ଯାଇ କ'ଣ ଖତପୂରଣ ଟଙ୍କା ଆଣିଥିଲେ । ମାଗିବାକୁ ମୁଁ ଗଲି ଯେ ଟଙ୍କା ଦେବେ କ'ଣ ମାରିବାକୁ ଗୋଡ଼ାଇ ଆସିଲେ —

ସୁବ୍ରତ ଅବାକ୍ ହୋଇ ଶୁଣିଲା । ସାରା ଦେହ ଥରି ଉଠିଲା । କଣ୍ଠରେ ଲାଗିଲା ନାହିଁ । ଘନଘନ ନିଶ୍ୱାସ ଛାଡ଼ିଲା । ହାତ ହେଲା ମୁଠାମୁଠା । ଦାନ୍ତ ଚିପି ମୁଣ୍ଡ ହଲାଇ କହିଲା, ସତେ ?

ତାର ମନରେ ଯେଉଁ ଭାବନା ଓଲଟପାଲଟ ହେଉଛି ସେତକ ଅନୁମାନ କରି ମମତା ହସିଲା ମୁହଁରେ କହିଲେ, ତାଙ୍କର ଦୋଷ ମୁଁ ଦେଉ ନାହିଁ । ଭାଗ୍ୟର ଦୋଷ ସିନା ! ଲକ୍ଷ୍ମୀ ଛାଡ଼ିଲେ ମଣିଷର ପ୍ରକୃତି ଏମିତି ବିପରୀତ ହୁଏ । ଯାଉ ଦିନା-କେତେ, ବଳେ ସେ ନିଜର ଭୁଲ ବୁଝିବେ । ଏତେବୁଡ଼ାଏ ଟଙ୍କା ଦିନ କେଇଟାରେ ସେ କ'ଣ କଲେ କେଜାଣି, ଧାଇଁ ଆସିଥିଲେ ମୋ ପାଖରୁ ଗହଣା ନେବାକୁ । ମନା କଲାରୁ ଠେଙ୍ଗା ଧରି ଉଠିଲେ । ସୁବ୍ରତ ବାଧାଦେଲା । ଚାଲିଗଲେ ବକିବୁଲି ଗାଳିଦେଇ । ସେଇ ଦିନରୁ ସୁବ୍ରତ ଘର ଛାଡ଼ିଛି ।

ସୁବ୍ରତ କହିଲା, ତାଙ୍କର ଅତ୍ୟାଚାର ଆଉ ସହି ହେଉ ନାହିଁ ? ମା, କୁଳର ମାନ ଓ ବଂଶର ମର୍ଯ୍ୟାଦା ଆଉ ରହିଲା କେଉଁଠି ? ନିଆସ ଭିତରେ କୋଠା ଘରେ ରହି ଖୀରି ପୁରି ଖାଇ ପଲଙ୍କରେ ଶୋଇଲେ ତ ମର୍ଯ୍ୟାଦା ରହେ ନାହିଁ । ଯେଉଁ ଘରେ ସ୍ନେହ ସଦ୍ଭାବ ନାହିଁ, ଯେଉଁ ଘରର କର୍ତ୍ତା ସବୁବେଳେ ମଦନିଶାରେ ବୁଡ଼ି ବିବେକ ହରାଇ ପ୍ରକୃତିଛଡ଼ା ହୋଇ ବସି ଥାଆନ୍ତି, ସେ ଘରର ମହତ୍ତ୍ୱ ଅଛି କହିଲେ ହସ ମାଡ଼େ । ସୁବ୍ରତ ଠିକ୍ କରିଛି ଖୁଡ଼ୀ, ଏ ଯୁଗର ମାନ, ମହତ୍ତ୍ୱ, ବଡ଼ପଣିଆଁ କ'ଣ, ସେଇ ଏକା ଭଲ କରି ବୁଝିଛି ।

ସମସ୍ତେ ନୀରବ ହେଲେ ।

Digitized by PPRACHIN, SOA

ସୁବ୍ରତ ହସିଉଠିଲା । କହିଲା, ଏ ସବୁର ପ୍ରତିକାର ମୁଁ କରିପାରିବ ନାଁଆ ମା, ତମେ ସବୁ ଚିନ୍ତା କର ନାହିଁ । ପିତୃସତ୍ୟ ପାଳନ କରିବାକୁ ରାମଚନ୍ଦ୍ର ଚଉଦ ବରଷ ବନବାସ କରିଥିଲେ ।

ତରଳ ଆଖିରେ ମମତା ସୁବ୍ରତର ଚନ୍ଦ୍ରାକୃତ ମୁହଁକୁ ଅନାଇଁଲେ । ପଗ୍ଗରିଲେ, କେଉଁ ସତ୍ୟଟା ତାଙ୍କର ଅଛି କ ? ସେ ଯାହା କରିବାର କରୁଥାନ୍ତୁ । ଧନେ ବନେ ତାଙ୍କର ମନ ବଦଳିବ । ଜମିଦାରୀ ଗଲା ପରେ ସେ ନଷ୍ଟମ୍ପି ହେଲେ । ଚେଷ୍ଟା କଲେ ମାଳାଧରି କୃଷ୍ଣନାମ ଜପି ବେଳ କଟାଇଦେବେ । ସେଇଥିରେ ତୃପ୍ତ ରହିଲେ । ମନରେ ତ ଭକ୍ତି ନାହିଁ । ଧନାକେତେ ପରେ ବିରକ୍ତି ଆସିଲା । କିପରି ଆଉ ତାଙ୍କର ବେଳ କଟିବ ?

ମାଆଙ୍କର ମନ ବୁଝୁଛି, ସୁବ୍ରତ ଭଲ ପିଲା, ଭଲ କାମ କରୁଛି, ଯେଉଁ ଦରିଦ୍ର ନାରାୟଣଙ୍କର ସେବା ସେ କରୁଛି ସେମାନଙ୍କର କଲ୍ୟାଣରୁ ସୁବ୍ରତ ସୁଖୀ ହେବ । ଗ୍ରାମରେ ସମସ୍ତେ ତାଙ୍କୁ ଭଲପାଆନ୍ତି । କେହି ତାର ଅନିଷ୍ଟ କରିବେ ନାହିଁ । ଶାଗଭାତ ଖାଇ ତଳେ ଶୋଇଲେ ଯଦି ମଣିଷ ସୁଖୀ ହୋଇପାରେ, କ୍ଷୀରସର ଶେଯ-ସୁପାତି ଲୋଡ଼ା ହେବ ନାହିଁ ।

ସମସ୍ତେ ନିର୍ଜ୍ଜନରେ ଶୋଇଲେଣି । ସୁବ୍ରତର ଆଖିକୁ ନିଦ ନାହିଁ । ବାହାରେ ଫିକା ଜହ୍ନଆଲୁଅ । ନିଶବଦ ରାତି । ବୋଧହୁଏ ଦୁଇଟା ହେବ । କେତେ ଚିନ୍ତା ମନ ଭିତରେ ଆଉଟି ହେଉଛି । କେତେ ଦୃଶ୍ୟ ଆଖି ଆଗରେ ଉଭା ହେଉଛି । ଅତୀତ ଓ ବର୍ତ୍ତମାନ ମିଶି ହେଉଛି ଏକାକାର ।

ଶଙ୍କର—ଭବିଷ୍ୟତ ଉପରେ ଆସ୍ଥା ରଖ ।
ବ୍ୟବସାୟୀ—ଧନଞ୍ଜୟର ଦୁର୍ଦ୍ଦଶା ।
ରାଜମାତ—ଅଦ୍ଭୁତର ବନ୍ଧୁତା !
ହବାହ—ଦମୟନ୍ତୀ ଆହୁତ ।
ନିଦ ହେଉ ନାହିଁ । ଛଟପଟ । ଅସ୍ଥିରତା ।

ସାପ—ଚିତି ନୁହେଁ, ଫଣାଟେକା ନାଗ । ଦରଦ୍ରର ଭଙ୍ଗା ଘରକୁ ଓହ୍ଲାଇ ନାହିଁ, ଗାତ ଭିତରୁ ମୁହଁ କାଢ଼ିଛି, ଠିକ୍ ସୁବ୍ରତର ମୁଣ୍ଡ ପାଖରେ । ବାହୁ ଉପରେ ମଥା ରଖି ସେ ଶୋଇ ପଡ଼ିଛି କୋଠରିରେ । ନିଶ୍ଚିନ୍ତ ନିଦ । ଘନଘନ ନିଶ୍ୱାସ ଗୁଡ଼ୁଛି । ଭୟଭ୍ରାନ୍ତ ମନରେ ନାହିଁ । କେତେ ପ୍ରବଳ ସେମିତ ଶୋଇଛନ୍ତି ସେଇ

Digitized by PPRACHIN, SOA

ଘରଟିରେ । ବଷଧରଟା ବାହାରିଛି ସୁବ୍ରତର ମୁଣ୍ଡ ପାଖରେ । ଫଣା ଟେକିଲାଣି । ଅନେଇଁ ରହିଲାଣି । ସୁବ୍ରତ ଘନଘନ ନିଶ୍ୱାସ ଛାଡ଼ୁଛି ।

କର ନେଉଟାଇବ କ, ଏଁ, କଡ଼ ନେଉଟାଇବ ? ତା' ହେଲେ—?

ସୁବ୍ରତର ସାରା ଶରୀର ଝିମେଇଁ ଉଠିଲା । ଛାତି ହେଲା ଦାଉଁଦାଉଁ । ଝାଳେଇ ଉଠିଲା ଦେହ । ସେ ଶଳଙ୍କ ଉପରେ ଉଠି ବସିଲା । ସପନ ତ ନୁହେଁ । ସତେ କି ଆଖି ଆଗରେ ଦଶିଯାଉଛି ! ବୃଥା ଆଶଙ୍କା । କିନ୍ତୁ, ମନ ତ ମାନୁନାହିଁ ।

ସୁବ୍ରତ ଉଠିଲା । ତକିଆ କଡ଼ରେ ରଖା ହୋଇଥିଲା ଟର୍ଚ୍ଚ ଆଲୁଅ । ଟର୍ଚ୍ଚ ଧରିଲା । ଥରିଲା ପାଦରେ କବାଟ ଖୋଲି ବାହାରକୁ ଆସିଲା । ଦୁଇଖଞ୍ଜା ପାର ହୋଇ ଆସିଲା ଦାଣ୍ଡ ଖଞ୍ଜାକୁ । ସମସ୍ତେ ନଘୋଡ଼ ନିଦରେ ଅଚେତନ । ଦାଣ୍ଡ ଘରର କବାଟ ଖୋଲା । ସନ୍ଦେହ ପଶିଗଲା ମନରେ । ଗ୍ରେଟ ପ୍ରଶ୍ନଟିଏ—କବାଟ ଖୋଲା କାହିଁକି ? କେମିତି ମାଡ଼ିମାଡ଼ି ପଡ଼ିଲା ।

କାହାର ଫୁସ୍‌ଫୁସ୍ କଥା କାନରେ ବାଜିଲା କି ? ଶୁଣିଲା । ବାହାରେ ଫିକା ଜହ୍ନଆଲୁଅ । କବାଟ ମେଲିଦେଇ ଘର ଭିତରେ ଟର୍ଚ୍ଚ ଆଲୁଅ ପକାଇଲା । ଚଉପାଢ଼ୀ ଉପରେ ନାଥିଆ ଶୋଇଛି । ଘୁଙ୍ଗୁଡ଼ି ମାରୁଛି । ହାତ ପାଖରେ ପଡ଼ିଛି ତେଲ-ପଗ୍ଗ କଳିଲାପିଆ ଠେଙ୍ଗା । ନାଥିଆର ଗୋଡ଼ ତଳେ ଓଲଟା ଦିଗକୁ ମୁଣ୍ଡ କରି ଶୋଇଛି ବାବନା ପଧାନ । ତା ହାତ ପାଖରେ ବି ଠେଙ୍ଗା ! ଦିନେ ସେ ଏ ଘରର ଶତ୍ରୁ ହୋଇଥିଲା । ଏବେ ସେ ପିତାଙ୍କର ବିଶ୍ୱାସୀ ଚାକରିଆ ।

ଦୁଇଟିଯାକ ନବୋଧ ଠେଙ୍ଗା ଧରି ପହରା ଜଗିଛନ୍ତି !

ସୁବ୍ରତ ବାବନାର ଠେଙ୍ଗାଟି ଉଠାଇ ହାତରେ ଧରିଲା । କବାଟ ଆଉଜାଇ ଦାଣ୍ଡକୁ ଓହ୍ଲାଇଲା ।

ଗାଆଁ ଦାଣ୍ଡ ଶୂନ୍ୟ । ମଝି ରାସ୍ତାରୁ ଗଳିଗୁଡ଼ିକ ଲମ୍ବିଯାଇଛି । ଛୋଟ ଛୋଟ ମଝି ରାସ୍ତା ଓ ଗଳି ଗୁଡ଼ିକର ଦୁଇ ପାଖେ ଘର । ଆଗରେ ବାଡ଼ । ରାସ୍ତା କଡ଼କୁ ବାଡ଼ । କେତେ ଜାତର ଗଛ । ଅନ୍ଧାରିଆ ଦଶୁଛି । ଦୂରକୁ ଗୋପୀ-କୃଷ୍ଣଙ୍କର ପୁରୁଣା ମନ୍ଦିର ଆଖପାଖର ମଥାନ ଉପରେ ମଥା ଟେକିଛି । ସତେ କି ସେ ସତର୍କ ପ୍ରହରୀ । କାହାର ସ୍ୱରଶବ୍ଦ ଶୁଣାଯାଉ ନାହିଁ । ରାସ୍ତା କଡ଼ରେ ଶୋଇଥିବା ଗାଁ-କୁକୁର ମଥା ଟେକି ପୁଣି ମଥା ନୋଇଁଛନ୍ତି । କେହି କେହି ଟେଙ୍କିଉଠୁଛନ୍ତି—ହୁ କମ୍‌ସ ଦେଆର୍ ?

ଫ୍ରେଣ୍ଡ୍ ।

ପାସ୍

କୋଠଘର । ଦରଜାରେ କବାଟ ଲାଗିନାହିଁ । ଘର ତୋଳା ଶେଷ ହୋଇ ନାହିଁ । ରାସ୍ତା ଉପରେ ପୋଡ଼ାଇଟା, ମାଟି, ବାଲି ଗଦାଗଦା ହୋଇ ଜମା ହୋଇଛି । ଧୀରେ ଧୀରେ କାମ ଚାଲିଛି ।

Digitized by PPRACHIN, SOA

ସୁବ୍ରତ ଘର ଭିତରକୁ ଗଲା । ଆଲୁଅ ଟିପିଲା । କେହି ଲୋକ ଶୋଇ ନାହାନ୍ତି । ଅତି ଲମ୍ବା ଘରଟିର ଗୋଟିଏ ପାଖରେ କେତେଗୁଡ଼ିଏ ଗାଣ୍ଡିଆ, କୋଡ଼ି, କାଙ୍କ, ଶାବଳ ଇତ୍ୟାଦି ରଖାହୋଇଛି । ଦି ଗୃର ହାତ ଗୁନ୍ଦ୍ରା ଖଣ୍ଡି ଖଣ୍ଡି ହୋଇ ନଡ଼ିଆପଟି, ସପ, ସତରଞ୍ଜି ପଡ଼ିଛି । କେତେଜଣ ଯୁବକ ନିଶ୍ଚିନ୍ତ ହୋଇ ଶୋଇଛନ୍ତି ନିଘୋଡ଼ ନିଦ ।

ସମସ୍ତେ ତାର ଚିହ୍ନା ! ରଣଗଡ଼ର ଚାଷୀ, କୁମ୍ଭାର, କହ୍ମାର, ବଢ଼େଇ, କେଉଟ, ବାଉରି, କଣ୍ଡରା ଘରର ପୁଅ । ଏଇ ଧର୍ମ-ପୀଠରେ ସମସ୍ତେ ଶୋଇଛନ୍ତି ଏକାଠି ।

ହେଇଟି ସୁବ୍ରତ — ସମସ୍ତଙ୍କ ମଝିରେ ସେ । ସତରଞ୍ଜି ପଡ଼ା ହୋଇଛି । ମୁଣ୍ଡ ତଳେ ତକିଆ ! ଶବାସନରେ ନିଦ୍ରା । ହାତ ପାପୁଲି ଦିଓଟି ମୁଣ୍ଡର ଦୁଇ ପାଖେ ତକିଆ ଉପରେ ସ୍ଥିର । ନିଶ୍ୱାସ ଗୁଞ୍ଜୁଛି ଘନଘନ । ଖୋଲା ଛାତି, ପଡ଼ୁଛି ଉଠୁଛି ।

ଆଲୁଅ ବୁଲିଗଲା ଘରର ଅନ୍ଧାକାର । କାହିଁ ସାପ ? ଘର ଭିତରେ କେଉଁଠି ଗାତଟିଏ ବି ଦିଶୁ ନାହିଁ । ବୃଥା ଭୟ । ଆଲୁଅ ଫେରି ଆସିଲା ସୁବ୍ରତ ଉପରକୁ । କେଡ଼େ ପ୍ରଫୁଲ୍ଲ ଦିଶୁଛି ସୁବ୍ରତର ବଳିଷ୍ଠ ସୁନ୍ଦର ଚିନ୍ତାଶୂନ୍ୟ ନିଷ୍କଳଙ୍କ ମୁହଁଟି !

ଏଇ ତାର ଖେଳ୍ନା ଖଇଟା । ଶେଳ କରିବ କି ମୁହଁରେ, ନିଦ ଆସିବ ? ଶୋଇପଡ଼ିବ ତାଆରି ପାଖରେ ? ଦୋତାଲା ଉପର ପଲଙ୍କରେ, ଯେଉଁଠି ହାତେ ବହଳର ଗଦି ଓ ବିଛଣା କରା ହୋଇଛି, ଲହୁଣୀ ପରି ଧୋବ ଫରଫର ବିଛଣା-ଚଦର ପଡ଼ା ହୋଇଛି, ସୁଗନ୍ଧ୍ୟା ପୁଣି ତକିଆ ପାଖରେ ଢୁଡ଼େଇ ଦେଇଛି ମଲ୍ଲୀଫୁଲ, ଟଙ୍ଗା ହୋଇଛି ଧଳା-ସିଲ୍କର ମଶାରି, ସେଠି ତ ତାକୁ ନିଦ ହେଲା ନାହିଁ !

ଫେରି ଆସିଲା ଦ୍ୱାରବନ୍ଧକୁ । ଆଲୁଅ ଲିଭାଇଲା । ନିସ୍ତବ୍ଧ ହୋଇ ଠିଆ ହେଲା । ଭାବିଲା, ରାତି ପାହିଲେ ଚହଳ ପଡ଼ିବ — ରଣଗଡ଼ର ଉତ୍ତରାଧିକାରୀ ଜମିଦାରଙ୍କର ଜ୍ୟେଷ୍ଠପୁତ୍ର ସୁବ୍ରତ ବଜ୍ରବାହୁ ଇତର ଲୋକଙ୍କ ପାଖେ ଶୋଇଛି ! ପିତାଙ୍କର ଅହମିକା ଚୂନା ହେବ । ମା ଖଣ୍ଡୀ ଆବାକାବା ହୋଇ ଚାହିଁବେ । ପଚାରିବେ, କାହିଁକି ଏହା କଲୁ ରେ ବଜ୍ରବାହୁ ! ପିତୃପୁରୁଷଙ୍କର ମାନ-ସମ୍ଭ୍ରମ ଧୂଳିରେ ଲୋଟାଇଲୁ ? ରାଜ୍ୟ ପଛେ ଯାଉ, ରାଜ-ଉଆସ ରହିଛି, ନାମଟା ଏବେ ବି ଲୋକେ ଉଚ୍ଚାରଣ କରୁଛନ୍ତି !

ଉଚ୍ଚଶିକ୍ଷିତ ବୁଦ୍ଧିମାନ୍ ପୁରୁଷ ଜୀବନ ଧାରଣ ପାଇଁ, ସୁଖ ଆନନ୍ଦ ଓ ନାମ ପାଇଁ, ଦୈହିକ ପରିଶ୍ରମ କରେ ନାହିଁ । ଜନତାର ପଛରେ ଧାଏଁ ନାହିଁ । ନିଜର ବଡ଼ପଣ ଓ ପ୍ରଶସ୍ତି ପ୍ରଚାର କରି ବୁଲେ ନାହିଁ । ସେ କରେ ବିଦ୍ୟା, ବୁଦ୍ଧି, ଜ୍ଞାନ ଓ ଧନର ପ୍ରୟୋଗ । କିମ୍ଭୁ ଯତ୍ର ଚତୁଷ୍ପଥମ୍ ? ସର୍ବୋପରି ବାକ୍‌ପଟୁତା, ପୁଣି ଚଙ୍ଗଡ଼ର ଗୁଣ ଗାୟନ । ଜନତା ପଛରେ ଧାଏଁ, ଗୁଣ, ଗାଏ, କର୍ମରେ ନିଜକୁ ଦିଏ ଆହୁତି ।

Digitized by PPRACHIN, SOA

ସୁବ୍ରତ ଜନତା ଭିତରୁ ଜଣେ । ତାର ସ୍ଥାନ ଏଇଠି ଏମାନଙ୍କ ମଝିରେ ।

ସୁବ୍ରତର ସ୍ଥାନ ତ୍ରିତଳ ପ୍ରାସାଦରେ, ହାତୀଦାନ୍ତଖଞ୍ଜା ପଲଙ୍କ ଗ୍ରୁଡରେ, ହାତେ ବହଳରେ ଗଦି ଉପରେ । ରାମ ହିଁ ରାଜା—ଅଯୋଧ୍ୟାର ରାଜସିଂହାସନ ହେଉ ବା ଦଣ୍ଡକାରଣ୍ୟର ଶୈଳାସନ ହେଉ । ଲକ୍ଷ୍ମଣ ପ୍ରହରୀ — ।

ଫେରି ଆସୁଛି ବଜ୍ରବାହୁ । ମନରେ ଅବାନ୍ତର ଚିନ୍ତାର ପ୍ରବାହ । ନିର୍ଜନ ନିଶୀଥ । ଶୀତଳ ଚନ୍ଦ୍ରାଲୋକ । ସଧୀର ସମୀର ।

ଆଗରେ ଉଆସ । ଉଚ୍ଚ ଘର ସଗର୍ବରେ ମୁଣ୍ଡ ଟେକି ଠିଆ ହୋଇଛି । ଅତୀତର ମୂକ ସାକ୍ଷୀ ! ରାଜ୍ୟ ଯାଇଛି, ଏ ଘର ବି ଦିନେ ମାଟିରେ ମିଶିବ । ହରପ୍ପା ଓ ମହେଞ୍ଜୋଦାରୋର ସଭ୍ୟତା ଧ୍ୱଂସ ହୋଇଛି । ମହା-ପ୍ଲାବନରେ ଦ୍ୱାରକାର ଅସ୍ତିତ୍ୱ ହଜିଛି । ଧଉଳୀ-ସଭ୍ୟତାର ଚିହ୍ନବର୍ତ୍ତି ନାହିଁ । କୋଣାର୍କ-ମନ୍ଦିର ପୋଥି ଓ ଜନ-ଶ୍ରୁତିର କିମ୍ବଦନ୍ତୀ । ତଞ୍ଜାମ ନଗର ଶ୍ମଶାନ ଓ ଧାନକ୍ଷେତରେ ପରିଣତ । ରଣଗଡ଼ ଉଆସ ବାରବାଟିର ନବତଳ ପ୍ରାସାଦ ପରି ମାଟି ପଥରର ଗଦା ହେବ, ଶିଶୁପାଳ-ଗଡ଼ ପରି ଭୂଗର୍ଭରେ ସମାଧି ନେବ । ଏ ତ ଭବିଷ୍ୟତର କଥା ।

ଆଜି, ଏଇ ସୁନ୍ଦର ନିର୍ମଳ ଜୋଛନା ହିଙ୍ଗୁଳ ରାତିରେ ରଣଗଡ଼ ଉଆସ ହସି ଉଠୁଛି ।

କିଏ ସେ ହସୁଛି ?

ରଣଗଡ଼ ଉଆସ ନୁହେଁ, ଅତୀତର ପ୍ରେତ ନୁହେଁ, ଜୀବନ୍ତ ମଣିଷ ! ଦୂରରୁ ଦେଖୁଛି ସୁବ୍ରତ, ଘରଆଗ ପ୍ରଶସ୍ତ ମେଳଣ ଦାଣ୍ଡରେ ବଉଳଗଛର ଉଚ୍ଚ ପକ୍କା ଚାନ୍ଦନୀ ଛୁଇ ତଳୁ । ଉଚ୍ଚ ପିଣ୍ଡାରୁ ଓହ୍ଲାଇ ଆସିଲା ନାରୀଟି । ସଫେଦ୍ ଶାଢ଼ୀରେ ଆବୃତ ଦେହ । ମଥାରେ ନାହିଁ ବସନ । ଚିହ୍ନି ହେଉନାହିଁ । ପଛେ ପଛେ ପାହାଚ ଉପରୁ ଓହ୍ଲାଇ ଆସୁଛି ବାବନା ପ୍ରଧାନ । ତୁନି ତୁନି କ'ଣ କହୁଛି ସେ । ହସି ଉଠିଲା ନାରୀ-ମୂର୍ତ୍ତିଟି !

ଥକ୍କା ହୋଇ ରହି ରହିଲା ସୁବ୍ରତ । ଆଗକୁ ପାଦ ଚଳିଲା ନାହିଁ । ପଛକୁ ସେ ଫେରି ପାରିଲା ନାହିଁ । ସତେ କି ଦେହରେ ନାହିଁ ଜୀବନ । କେବଳ ରୁଦ୍ଧ ଦାଉ ଦାଉ ! ଭାବନା ହଜିଲା । ଗୋଟିଏ ପ୍ରଶ୍ନ ମନ ଭିତରେ ଓଲଟ ପାଲଟ ହେଉଛି— କିଏ ସେ ?

ମେଳଣ ଦାଣ୍ଡର ଜଡ଼ବାଟରେ ମନ୍ଦିର ପଛ ଗଳି ଆଡ଼କୁ ଚାଲିଗଲା, ସେ ନାରୀଟି । ପଛରେ ବାବନା । ଦୁହେଁ ଅଦୃଶ୍ୟ ହେଲେ । ଦୁହିଁଙ୍କର ଥିରିଥିରି ହସ ।

Digitized by PPRACHIN, SOA

ହାତ ହେଉଛି କଲବଲ । ଧାଇଁ ଯିବ କି ପଛରେ ? ହାତର ଠେଙ୍ଗା ଖସି ଛିଟିଲା । ଟର୍ଚ୍ଚ-ଲାଇଟ୍‌ର ଆଲୁଅ ଟିପିବାକୁ ମନ ହେଲା । କେଉଁ ଅଜଣା ଭୟ ସବୁ ଶକ୍ତି ତା'ର ଦେହରୁ ଅପହରଣ କରିଛି । ଆଲୁଅଟା ବି ଟିପିବାକୁ ତା'ର ଶକ୍ତି କି ସାହସ ହେଉନାହିଁ ।

ସୁବ୍ରତ ଗୃହମା ଉପରକୁ ଆଉଜି ପଡ଼ିଲା । ଉଦ୍ଦେଶ୍ୟହୀନ ଚକ୍ଷୁରେ ଉଆସ ଆଡ଼କୁ ଅନାଇଁ ରହିଲା ।

ଝୋଲା କବାଟ ବାଟେ ପଦାକୁ ଆସିଲେ ରଣସିଂହ । ଜହ୍ନ ଆଲୁଅରେ ଚହଲି ହେଉଛି । ଉଚ୍ଚ ପିଣ୍ଡାରେ ଟହଲିବାକୁ ଲାଗିଲେ । ସତେ ଯେପରି କାହାକୁ ସେ ଅପେକ୍ଷା କରୁଛନ୍ତି । ଟହଲୁ ଟହଲୁ ଠିଆ ହୋଇ ଆକାଶକୁ ଚାହୁଁଛନ୍ତି । ଏଣେ-ତେଣେ ଅନାଉଛନ୍ତି । ପୁଣି ଟହଲୁଛନ୍ତି ।

ସୁବ୍ରତ ବୁଝିଲା ।

ଭୟ ପରିବର୍ତ୍ତେ କ୍ରୋଧରେ ଦେହ କମ୍ପିଉଠିଲା । ମନେ ପଡ଼ିଲା ବାଲ୍ୟ-ବନ୍ଧୁର ବୃଦ୍ଧ ଜମିଦାରଙ୍କ କାହାଣୀ । ସ୍ୱର ପୁଅ ତାଙ୍କୁ ଦିନ ଦୁଇପ୍ରହରେ ଘରେ ପୁରାଇ ଜୀବନ୍ତ ଦହନ କରିଥିଲେ । ପିଲାଦିନେ ଏ କାହାଣୀ ଶୁଣିଲେ ରକ୍ତ ଟକମକ ହୋଇ ଫୁଟେ । ମନ କହେ, ପିତୃହନ୍ତା ! ପଛରେ, ସେମାନେ ଫାଶି ପାଇଲେ ନା ? କେହି କେହି କହନ୍ତି, ପ୍ରମାଣ ଅଭାବରୁ ଖଲାସ ହେଲେ ।

ସୁବ୍ରତର ମନହୁଏ ଧାଇଁଯାଇ ସେମାନଙ୍କୁ ଶାସ୍ତି ଦେବ । ସେମାନେ ନାହାନ୍ତି । ସେମାନଙ୍କର ପିଲାମାନେ ମଧ୍ୟ ବୁଢ଼ା ହୋଇ ପ୍ରେତପୁରକୁ ଚାଲିଗଲେଣି । ଆଉରଙ୍ଗଜେବ୍ କି କାରାଗାରବାସୀ ସାହାଜାହାନ୍ ମଧ୍ୟ ନାହାନ୍ତି ।

ଯମଦଗ୍ନିଙ୍କର ନିଷ୍ଠୁର ଆଦେଶ କାନରେ ବାଜିଯାଉଛି । ଆଖି ଆଗରେ ଦିଶି ଯାଉଛନ୍ତି ପରଶୁରାମ । ଗୋଟିଏ ହାତରେ ରକ୍ତାକ୍ତ ପରଶୁ, ଆର ହାତରେ ଗର୍ଭଧାରିଣୀ ମାତାଙ୍କର ରକ୍ତାକ୍ତ ମସ୍ତକ । ଉପରେ ସୀମାହୀନ ସୁନୀଳ ଆକାଶ । ଖଣ୍ଡିଆ ଜହ୍ନ । ମିଟି ମିଟି ତାରା । ସମସ୍ତେ କହି ଉଠୁଛନ୍ତି — ଆକାଶଠୁଁ ବଡ଼ ପିତା । ପାଦ ତଳେ ଧରଣୀ । ସେ ବି ଥରି ଉଠୁଛି । ସେ ବି କହି ଉଠୁଛି — ମାତା ବଡ଼ ପୃଥିବୀ ଅପେକ୍ଷା ।

ନିଜର କଅଁଳିଆ କୁଆଁ କୁଆଁ ରଡ଼ି ପଚିଶି ବର୍ଷ ତଳ ଅତୀତରୁ ଭାସି ଆସୁଛି, କାନରେ ବାଜୁଛି । ଦଓଟି ହସିଲା ମୁହଁ, ପାଖାପାଖି ହୋଇ ଚାହିଁରହିଛି ଆଗ୍ରହରେ — ମାତା ଓ ପିତା !

ଦୁଇ ଆଖିରେ ତଳ ତଳ ଲୁହ । ସୁବ୍ରତ ଚାହିଁଲା । ପିତା ଦିଶୁନାହାନ୍ତି । ଘର ଭିତରକୁ ଚାଲିଗଲେଣି । ବାବନା ପାହାଚରେ ଉଠୁଛି । ସେଇ ତ ପାପ । ପିତାଙ୍କର ଦୁର୍ଗତିର ସହାୟକ । ଏଇ ପାପଟାର ମୁଣ୍ଡ ଛେଚିଦେଲେ ଭଲ ହୁଅନ୍ତା ତ !

ବାବନା କବାଟ କିଳିଲା ।

Digitized by PPRACHIN, SOA

ଆଖିରୁ ଲୁହ ପୋଛୁ ପୋଛୁ ସୁବ୍ରତ ଶ୍ମଶାନ ପଛ ଗ୍ରାଇରୁ ଆଲଅକୁ ଆସିଲା । ଦୀର୍ଘଶ୍ୱାସ ଛାଡ଼ିଲା । ଘର ଭିତରକୁ ପଶିହେବ ନାହିଁ । ତାକ ଗ୍ରାଡ଼ି ସେମାନଙ୍କୁ ଜଣାଇଁ ଦେବନାହିଁ ଯେ ସୁବ୍ରତ ସବୁ ଦେଖିଛୁ ।

ଠେଙ୍ଗା ଓ ଝିଙ୍କ ଆଲୁଅ ସେଇ ଶ୍ମଶାନ ଉପରେ ପଡ଼ୁଥିଲା । ମୁହଁ ଫେରାଇ ଉଦ୍ଦେଶ୍ୟହୀନ ପାଦ ପକାଇ ବ୍ୟଥିତ ଚନ୍ତାଗ୍ରସ୍ତ ସୁବ୍ରତ ଉଆସ ଆଗରୁ ଚାଲି-ଆସିଲା ।

ନଈକନ୍ଦ । ପାଦ ଅଟକି ରହୁ ନାହିଁ । ନଈକୂଳର ବୁଢ଼ା ଓସ୍ତଗଛ ଗମ୍ଭୀର ହୋଇ ଅନେଇଁ ରହିଛି ।

ସୁବ୍ରତ ଗଛମୂଳକୁ ଆସିଲା । ଜରେଖି ଗ୍ରୁହିଁଲା । କେହି ନାହିଁ । ପକ୍ଷୀଙ୍କିଏର ଖସ୍ ଖସ୍ ଶବଦ୍ ବ ଶୁଭୁନାହିଁ । ମାଟି ଗଢ଼ା ଘୋଡ଼ା ହାତୀ ମୂର୍ତ୍ତିଗୁଡ଼ିକ ସେମିତ ପଡ଼ି ରହିଛନ୍ତି । ସୁନ୍ଦରଲଗା ଦେବଦେବୀଙ୍କର ସଙ୍କେତଚୁଡ଼ିକ ଝାପ୍ସା ଆଲୁଅ ଓ ଅନ୍ଧାରରେ ଅସ୍ତିତ୍ୱ ହରାଇଛନ୍ତି ।

ଆଗରେ ବାଲୁକାରାଶି । ଧୂସର । ପାଦକୁ ଲାଗୁଛି ଶୀତଳ । ନଦୀର କ୍ଷୀଣ ଧାରଟି ସେ ପାଖ କଣ୍ଠି ତଳେ ଚକ୍ ଚକ୍ ଦିଶୁଛି । ନଈ ସେପାଖ ଗଛ ଗହଳ ଅନ୍ଧାରିଆ ଦିଶୁଛି । ସତେ କି ଗୋଟାଏ ପ୍ରାଚୀର । ସୁବ୍ରତ ଜଳଧାର କୂଳରେ ଠିଆ ହେଲା । ତରଳ ଆଖିରେ ଗ୍ରାର ଆଡ଼କୁ ଗ୍ରୁହିଁଲା । ଜର୍ଜନର୍ତ୍ତା ଅଜଣା ଭୟ ମନରେ ସଂଗ୍ରାର କରୁଛି । ଗ୍ରାତର ସ୍ପନ୍ଦନ ହେଉଛି ଦ୍ରୁତତର ।

ସୁବ୍ରତ ପାଣି କୂଳରେ ବସିଲା । ଆଖିକୁ ନିଦ ନାହିଁ । ମନ ଚଞ୍ଚଳ । ମୁହଁ ଧୋଇଲା । ମୁଣ୍ଡରେ ମାରିଲା ପାଣି । ଅଞ୍ଚଳରେ ହାତ ପୋଛିଲା ।

ଭାବିବାକୁ ଲାଗିଲା, କାହିଁକି ଏ ଅନର୍ଥକ ଉତ୍ତେଜନା ? ନୂଆ କିଛି ହୋଇ ନାହିଁ ତ । ତାର ପୂର୍ବପୁରୁଷଙ୍କର ପ୍ରକୃତିର ପୁନରାଭିନୟ ! ଜମିଦାର ହୋଇ ଆହୁ ପାଞ୍ଚଟାଙ୍କ ପରି ସେ ମଧ୍ୟ ଏଇ ଅଭିନୟ କରିଆସିଛି । ପାଠପଢ଼ାରେ ସମୟ କଟାଇଛି । ଦେହକୁ ସବଳ ସୁସ୍ଥ ରଖିବା, ଲୁଗା ଓ ପୋଷାକରେ ମନ ଦେବା, ବିବିଧ ପ୍ରକାର କ୍ରୀଡ଼ା, ଥିଏଟର, ଦଳ, ଅଡ୍ଡା ତମସା, ସାଙ୍ଗମେଳରେ ବକ୍ତୃତା, ସିନେମା ଓ ଉତ୍ତେଜନା, ପ୍ରେମପତ୍ର ଲେଖାରେ ଛାତ୍ରଜୀବନ କଟାଇଛି । ସଙ୍ଗ-ଦୋଷରେ ସ୍ଖଳନର ପଙ୍କରେ ପାଣ୍ଡି ହୋଇ ଦୁର୍ନାମ ଉଦରେ ପଡ଼ିଯାଇ ଆସିଛି । ଅନୁତାପ କରିଛି ।

ପାଠ ନ ପଢ଼ି ଜମିଦାରୀର ଉତ୍ତରାଧିକାରୀ ସବୁ ଘରେ ବସି ଆଳସ୍ୟରେ ସମୟ କଟାଇଥାନ୍ତି, ତେବେ ତାର କଟନ୍ତା କପରି ? ପ୍ରାଚୁର୍ଯ୍ୟର ମଝିରେ ସ୍ୱେଚ୍ଛା-

Digitized by PPRACHIN, SOA

ଚାଳାଘରର ବନ୍ଧନୀ ଭିତରେ ଜମିଦାର ପୁତ୍ର କଉନ୍ତା କଅଣ ? କେତେ ପ୍ରଲୋଭନ ଆସିଛି ତ ଜୀବନରେ ଏଇ ଭଣଗଡ଼ ଉଆସ ଭିତରେ । ବାହାରି ଦଳରେ ସେତେବେଳେ ଉଆସ ଥିଲା ମୁଖର । କେତେ ହସ, ଆଖିଠାର, ଖଣ୍ଡାଙ୍ଗ ପୁରାଣ ଚର୍ଚ୍ଚା !

ନରକ ।

ନୂଆ କଥା କିଛି ନାହିଁ ।

ଦୋଷ କାହାର ?

ବିନା ପରଶ୍ରମରେ ଲବ୍‌ଧନ ଓ ପ୍ରଭୁତ୍ୱର । ଦୁର୍ବଳ ସମାଜରେ ଧନ ଓ ସମ୍ପତ୍ତିର ଅସାମଞ୍ଜସ୍ୟ ବଣ୍ଟନର ଫଳ । ଯେଉଁ ନାରୀଟି ନିଜର ମର୍ଯ୍ୟାଦା ଦେବାକୁ ଆସେ, ସେ ପ୍ରେମ କରିବାକୁ ଆସେ ନାହିଁ । ତାକୁ ପ୍ରୀତି କରେ ନାହିଁ ସହ୍ୱାସିନୀ । ସେ ଆସେ ମୁଠିଏ ଅନ୍ନ କ ସମାଜ ଆଖିରେ ମର୍ଯ୍ୟାଦା ରକ୍ଷା କରିବା ପାଇଁ, ଖଣ୍ଡିଏ ବସନ ପାଇଁ, ଅଥବା ମୁଣ୍ଡ ଗୁଞ୍ଜିବା ପାଇଁ । ଘୁଞ୍ଚିଏ ପାଇଁ । ଘରେ କେହି ବେମାର ପଡ଼ିଛି କ ? କାଲି ପାଇଁ ଅନ୍ନ-ସମସ୍ୟା ସମାଧାନର ଉପାୟ ଦିଶୁ ନାହିଁ ପରା ! ଅଯନ ଓ ବ୍ୟସନର ଅପରିପୂର୍ଣ୍ଣ ବାସନା ?

ଆଦ୍ୟ ଯୌବନର ଲଗାମହୁଗୁଳା ଉତ୍ତେଜନା କଥା ସ୍ୱତନ୍ତ୍ର । ବିବାହ ପରେ ମଧ୍ୟ ବିବାହିତ ଜୀବନର ଅରଣା ଚାଲିନ କାହିଁକି ? ଧନନଗରର ରାଜପୁତ୍ର ବା ଜମିଦାର ପୁତ୍ର ସଙ୍ଗେ ବଉଦପୁରର ରାଜା ବା ଜମିଦାର କନ୍ୟାଙ୍କର ବିବାହ ! କାହିଁ ସେଠି ପ୍ରେମ ? ଧନ ସଙ୍ଗେ ବଉଦର ମିଳନ । ଦୁଇ ରାଜ୍ୟ ବା ଜମିଦାରୀର ସମ୍ବନ୍ଧ । ନିଜ ନିଜର ଧାରଣା ପ୍ରଭାବରେ ପବିତ୍ର ଅନାବିଳ ରକ୍ତର ମିଳନ । ସେଇ ମିଳନସମ୍ଭୂତ ସନ୍ତାନ ହିଁ ଧନନଗର ବା ବଉଦପୁରର ଭବିଷ୍ୟତ ଉତ୍ତରାଧିକାରୀ ହେବେ ।

ଧନ ଓ ବଂଶମର୍ଯ୍ୟାଦା ଅହମିକାର ବନ୍ଧନ ଓ ମିଳନ ସିନା, ହୃଦୟର ମିଳନ କାହିଁ ? କର୍ତ୍ତବ୍ୟ ଧାରଣା, ସହାନୁଭୂତି, ଲୋକଲଜ୍ଜା, ପବିତ୍ର ରକ୍ତ ଓ ବଂଶ-ମର୍ଯ୍ୟାଦା ଓ ପ୍ରେତକର୍ମ କରିବାକୁ କୁଳର ସନ୍ତାନ—ଏଇ ସବୁ ହୁଏ ତ ବନ୍ଧନ । କାହିଁ ପ୍ରେମ ?

ଦିଶିଯାଉଛି ପ୍ରେମର ପ୍ରକୃତ ରୂପ ।—କ୍ଳାନ୍ତ କର୍ମୀ ମଶିଣା ଉପରେ ପଡ଼ିଛି । ମିଞ୍ଜି ମିଞ୍ଜି ଲଣ୍ଠନ ଜଳୁଅଛି । ଛାତି ଉପରେ ଓଳ ବର୍ଷର ଝିଅଟି । ବାପର ନାକ ଟାଣୁଛି । ହସି ହସି ଖେଳ କରୁଛି ଶ୍ରମିକ । ପାଦ ଚିପୁଛି ଅନ୍ତଃସତ୍ତ୍ୱା ପତ୍ନୀ । ହସୁଛି ସେ ।

ଦିଶିଯାଉଛି ତାର ମଳିନ ମୁହଁଟି । ଶୁଭେ ଯାଉଛି, ଖାଇବ ନାହିଁ କ ?

ଉତ୍ତର ଦେଉଛି ଶ୍ରମିକ, ଭାଷାରେ ଉଦ୍‌ବିଗ୍ନତା, ଆରେ ତମ ମୁହଁଟା ଶୁଖିଲା ଦିଶୁଛି ଯେ, ନ ଖାଇ ନ ପିଇ ଅପେକ୍ଷା କରି ବସିଛ ? ତେମେ ଅତି ଅମାନିଆଁ । ଉଠ, ବାଢ଼—।

Digitized by PPRACHIN, SOA

ହଁ ଦଶିଯାଉଛି — ଅସଜ ପତ୍ନୀ ତାର ଶୋଇ ପଡ଼ିଛି । କର୍ମ-କ୍ଳାନ୍ତ ଦେହ ଅଚେତନ । ବଳବଳଉଛି । ଶ୍ରମିକ ଆଲୁଅ ଜାଳୁଛି । ଘୁଁହି ରହୁଛି ଏକ ଆଖିରେ । ଏଇ ତାର ପତ୍ନୀ, ଆଉ ଏଗୁଡ଼ିକ ତାର ପିଲାଟିମାନେ ।

କାହା ପାଇଁ ତାର ଜୀବନ-ମୂର୍ଚ୍ଛା । ପରିଶ୍ରମ ? କାହା ପାଇଁ ସେ ହଳ କରେ, ପାଣିରେ ଓଦା କାଦୁଅ ଚକଟେ, ବିଲ ବାଛେ, ବେଉଷଣ କରେ, ଅଳ୍ପ ପିଆଜ କ୍ଷେତରେ ପାଣି ମଡ଼ାଇବାକୁ ଗିଠ ଅଧଯାଏ ଚେଷ୍ଟା ଚାଲେ ? ଏଇମାନଙ୍କ ମୁହଁକୁ ଅନେଇଁଦେଲେ ସବୁ ଦୁଃଖ କଷ୍ଟ ଉଡ଼ି ପଳାଏ । ଏଇମାନେ ତାର ଜୀବନରୁ ବଳି ଅଧିକ ।

ଏଇ ତାର ସୁଖଦୁଃଖର ଭାଗୀ ଘରଣୀ । କଥା ଅକଥାରେ ଡାଳି ନହେ । ଖାଇ ଦେଇ ଟୋପାଣି ପିଏ, ସ୍ୱାମୀ ଓ ପିଲାଙ୍କର ଶୁଭ ମନାସି ନିଜ ଜୀବନକୁ ଦେବଦେବୀଙ୍କ ପାଖରେ ପାଣି ଛଡ଼ାଏ ।

ଦଶିଯାଉଛି, ଟହ୍ଳୀର ପାଦ ଦଉଛି ଶ୍ରମିକର କୋଳରେ । ଆଉଁଷୁଛି ଏଇ କ୍ଳାନ୍ତ ମଣିଷଟି, ତାଆର ପିଲାଙ୍କର ଜନନୀ ।

ନିଜର ଭାବନାରେ ନିଜେ ସେ ମୁଗ୍ଧ । ପୁଣି ଭାବୁଛି, ଅଭାବ ଅନଟନ ମଝିରେ ସୁଖ ଆନନ୍ଦର ସଂସାର ରଚିଛି ସେ ଶ୍ରମିକ । ସ୍ନେହ, ପ୍ରେମ ଓ ଭକ୍ତି ସେଇଠି ହାତ ଧରାଧରି । ବିନା ପରିଶ୍ରମଲବ୍ଧ ଅନ୍ୟାୟ ଧନ ଜୀବନର ବିଷ, ସେଠି ନାହିଁ । ନିଜର ମନରେ ଚହଟିବ, ପୁଣି ଅଭାବଗ୍ରସ୍ତକୁ ଘାରିବ । ପରିଶ୍ରମ ହିଁ ଜୀବନର ଅମୃତ-ଧାର । ସେଇ ପରିଶ୍ରମର ପ୍ରକୃତ ମୂଲ୍ୟ ନିରୂପଣ କଲେ, ଅଳସୁଆକୁ ଧନସଂଚୟ କରିବା ବା ବିନା କର୍ମ ଓ ପରିଶ୍ରମରେ ବିଭବ ଲାଭ କରିବା ସୁଯୋଗରୁ ବଞ୍ଚିତ କରି ପାରିଲେ ସମାଜରେ ବିଭବ ଲାଭର ସମତା ଆସି ପାରିବ । ସମସ୍ତେ ରହିବେ ସୁଖରେ, ଆନନ୍ଦରେ । ସ୍ନେହ ପ୍ରେମ ଭକ୍ତି ଓ ସମ୍ମାନର ସୁଧାଧାର ବହିବ ସବୁ କୁଟୁମ୍ବରେ, ସମାଜରେ, ଦେଶରେ ଓ ସାରା ଦୁନିଆରେ ।

ଜମିଦାରୀ ହଟିଛି । କର୍ପୂର ଯାଇଛି, କନାଟା ପଡ଼ି ରହିଛି । କର୍ପୂରର ବାସ ନ ଥିଲେ ବି ବାସନାର ଧାରଣା ରହିଛି । ସେଇ ଧାରଣାକୁ ଧାରଣା ଦେଇ ସେମାନେ ବାହୁସ୍ଫୋଟ ମାରୁଛନ୍ତି । ଶରୀର ଶକ୍ତି ନ ଥିଲେ ବି ନିଜର ଅହମିକାକୁ ସେ ତେଜ ରଖିବାକୁ ମନ କରୁଛନ୍ତି ।

ଦୀପରୁ ତେଲ ସରିଛି । ସଳିତା ଏବେ ବି ତେଲିଆ ଅଛି । ଜଳୁଛି ।

ଅସନବସନଲାଳସୀ, ଭବିଷ୍ୟତ୍ ଜୀବନର ଦୁଃଖହରଣ ପ୍ରୟାସୀ, ବର୍ତ୍ତମାନର ଅଭାବ ଅସୁବିଧା ମେଣ୍ଟନ ମାନସୀ ପତଙ୍ଗ, ଅଭିଜାତ୍ୟର ଜ୍ୱଳୁକ ଆଲୁଅ ପାଖକୁ ଧାଇଁ ଆସୁଛନ୍ତି । ଲଜ୍ଜା, ଭୟ, ଅପମାନ, ନିର୍ଯାତନ ହିଁ କରୁଛି ସେମାନଙ୍କୁ ନିଶାଚର ।

Digitized by PPRACHIN, SOA

ଯେଉଁ ଅଜଣା ନାଗୁଣି, ଗ୍ରାମର ପଡ଼ଙ୍ଗ । ହୁଏ ତ ତାର ଦୋଷ ନାହିଁ ।

ଆହା, ହତଭାଗିନ ! କଏ ଜାଣେ ତାର ଜୀବନର ଇତିହାସ ? ହୁଏ ତ ଅନାହାରୀ । ହୁଏ ତ ନର୍ଯ୍ୟାତିତା' କେଜାଣି ବା କେଉଁ କାରଣରୁ ସ୍ୱାମୀସ୍ନେହ-ବଞ୍ଚିତା । ନିଃସହାୟା ବିଧବାଟିଏ କି ? ଦୁଃଖିନୀର ନୟନ ତାରା ସନ୍ତାନଟି ରୋଗଶଯ୍ୟାରେ ଛଟପଟ, ଔଷଧର ବ୍ୟବସ୍ଥା କରି ପ୍ରାଣ ବଞ୍ଚାଇବାକୁ ସ୍ନେହମୟୀର ଧନ ଲୋଡ଼ା ? ଅଥବା ତା ପ୍ରାଣାଧିକ ସ୍ୱାମୀ ମୁମୂର୍ଷୁ, ନୋହିଲେ ଋଣଗ୍ରସ୍ତ । ମୁଣ୍ଡଗୁଞ୍ଜିବାର ସ୍ଥଳଟି ପବନରେ ଉଡ଼ିଯାଇଚ, କ୍ରୁର ଋଣି ଜଳ୍ଲମ ଉଠିଛୁ ।

ବାବନା ପ୍ରଧାନ ଯିଏ ତାକୁ ପାପପଙ୍କକୁ ଭୁଲାଇ ଆଣିଛୁ, ହୁଏ ତ ସେ ବି ଅଭାବଗ୍ରସ୍ତ । ସେଇଥିପାଇଁ ସେ ଜମିଦାରଙ୍କର ଦାସତ୍ୱ ବରଣ କରିଛୁ । ଧନ ଜ ମଦ୍ୟର ଲୋଭରେ ନିଜ ଧର୍ମର ମାନତା ଓ ପରିଣତ କଥା ଭୁଲିଛୁ । ତାଆର ମଧ ଦୋଷ ଦେଇ ହେବ ନାହିଁ ।

ଦୋଷ ତେବେ କାହାର ? ଜଣେ କେଉଁ ମଣିଷର କି ଅଗ୍ରତରୁ ଚଳି ଆସୁଥିବା କେଉଁ ପ୍ରଥା, ନିୟମ, ଆଇନର ?

ଦେହ ଶୀତେଇ ଆସିଲାଣି । ନଈ ସେପାର ଗଛ ଗହଳ ଝାପ୍‌ସା ଦିଶିଲାଣି । ଜହ୍ନର ପ୍ରଭା ହେଲାଣି ମଳିନ । ପୂର୍ବ ଦିଗ ଉଜ୍ଜ୍ୱଳ ଦିଶିଲାଣି । କୁଆଁ ତାରା ଦିଗ୍‌ବଳୟ ପାଖକୁ ଓହ୍ଲାଇ ଆସିଲାଣି । ନଈ ସେ ପାଖରୁ ପକ୍ଷୀଙ୍କର ରାବ ବାଜୁଛି କାନରେ । ରଣଗଡ଼ ଆଡ଼ୁ କାହାର ପାଟି ଶୁଭୁଛି । ଏଥର ରାତି ପାହିବ ।

ସୁବ୍ରତ ଉଠିଲା । ପାଣିଧାର କୂଳେ କୂଳେ ଆଗେଇ ଚାଲିଲା । ଓସ୍ତଗଛ ଆଡ଼େ ଚାହିଁଲା । କେତେଜଣ ଲୋକ ବାଲି ଉପରକୁ ଗଡ଼ିଲେଣି । କଥାଭାଷା ଶୁଭୁଛି । କଏ ସେମାନେ ?

ଆରେ ସୁବ୍ରତର ପାଟି ପରି ଶୁଭୁଛି ଯେ, ଧର୍ମ-ବେଠିଆ ଦଳ କି ?

ସୁବ୍ରତ ଅପେକ୍ଷା କଲା ।

ଦକ୍ଷିଣ ପାଖରେ ଝରକା ଖୋଲା । ସେ ପାଖେ ବାରଣ୍ଡା ନାହିଁ । ଘର ମଥାନ ଆର ପାଖେ ଦୂରରେ ଲମ୍ବଲମ୍ବ ଗଛଗୁଡ଼ିକର ଅଗ ଦିଶୁଛି । ସବୁଜ ପତ୍ର ଗହଳ ଉପରେ ଧୀର ପବନ ଓ ମହଳନ ନର୍ତ୍ତନ ଖରାର ଖେଳ ।

କେତେବେଳୁ ସୁବ୍ରତର ନିଦ ଭାଙ୍ଗିଗଲାଣି । ଏକ ଦୃଷ୍ଟିରେ ଦୂର ଗଛଗହଳ ଓ ନେଳଆ ଆକାଶକୁ ଚାହିଁ ନିରୋଳାରେ ସେ ଗତ ରାତିରେ ଦେଖିଲା କଥା ଭାବୁଛି । ସତ ଲାଗୁଛି ସପନ ପରି । ମନେ ପଡ଼ୁଛି ସୁବ୍ରତର ଆଗମନ କଥା ।

ପାହାନ୍ତାରୁ ଉଠି ଏକା ନଈକୁ ଅସିଛ କାଇ ?

Digitized by PPRACHIN, SOA

ତପେଁ ବି ଡରନ୍ତେ କି ?

ପାଗଳା ବିଲୁଆ, ହେଣ୍ଟାବାଘ, ସାପ, ଏମାନଙ୍କୁ ସମସ୍ତଙ୍କର ଡର । ହାତରେ ଆଲୁଅ କି ବାଡ଼ି ଥିଲେ ଭୟ ନାହିଁ । ଏଇ ଦେଖ, ଆମ ସମସ୍ତଙ୍କ ହାତରେ ବାଡ଼ି । ଆଲୁଅ ବି ଅଛି । ଅସିଲା ଦାଣ୍ଡରେ ଓଡ଼ ମୂଳେ ଗୋଟାଏ ମସ୍ତବଡ଼ ସାପର ମୁଣ୍ଡ ଅଜା ଛେଚି ଦେଇଛି ।

କି ସାପ ରେ ?

କିଏ ଜଣେ କହିଲା, ବୁଢ଼ା ନାଗ ।

ସୁବ୍ରତର ଦେହରେ ଖେଳିଲା ଚମକର କମ୍ପନ । ସେଇଠି ସେ ଠିଆ ହୋଇଥିଲା । ଗଛର ମୂଳପାଖେ ଗୁଳି ମାଟି ଗଢ଼ା ଘୋଡ଼ା-ହାତୀ ଦେଖୁଥିଲା । ମରିବାର ଯୋଗ ନାହିଁ । ଘଣ୍ଟାଏ ଆଗରୁ ଯଦି ସେ ସାପଟା ଗାତରୁ ବାହାରିଥାନ୍ତା କି ସେ ଯଦି ଘଣ୍ଟାଏ ପରେ ଆସିଥାନ୍ତା, ହୁଏ ତ ଜୀବନ ପାଇଁ ଟଣାଓଟରା ଲାଗିଥାନ୍ତା ଏବେ । ହୁଏ ତ ସେ ମରିଥାନ୍ତା ।

ସେ ହସି ଉଠିଲା ।

ସୁବ୍ରତ ପଚାରିଲା, ହସିଲ କାହିଁକି ?

ମୁଁ ଏବେ ବି ବଞ୍ଚି ରହିଛି ସୁବ୍ରତ । ସାପ ମତେ ଦେଖି ପାରି ନ ଥିଲା, କି ଦେଖି ମଧ୍ୟ ମାରି ନ ଥିଲା ।

ସୁବ୍ରତର ପାଟିରୁ ବାହାରିଲା, ନିର୍ଦ୍ଦୋଷ ଲୋକର ସେ ଅନିଷ୍ଟ କରନ୍ତା ନାହିଁ ।

ଏ ବିଶ୍ୱାସ ଯଦି ତମର ଅଛି ତ ତାକୁ ମାରିଲ କାହିଁକି ? ତମେ ସବୁ ତ ନିର୍ଦ୍ଦୋଷ । ଯେଉଁ ଦରିଦ୍ରର ଭଙ୍ଗାଘରରୁ ସାପ ଖସି ଗ୍ରୀଷ୍ମରେ ପଡ଼ି କପାଳରେ ମାରେ ସେ ବି ନିର୍ଦ୍ଦୋଷ ।

ସୁବ୍ରତ ହାରିଲା । କହିଲା, ହଁ ଭାଇ, ସେ ନିର୍ଦ୍ଦୋଷ । ମଣିଷର ଅନିଷ୍ଟକାରୀ ଜନ୍ତୁଙ୍କୁ ମାରିବା ଦରକାର ।

ସେ ଯଦି ଦ'ଗୋଡ଼ିଆ କଥାକୁହା ଜନ୍ତୁ ହୋଇଥାଏ ?

ସେ ବି ମଣିଷ ଭାଇ, ତା'ର ବଞ୍ଚିବାର ଅଧିକାର ଅଛି । ତା ପାଇଁ ଅନ୍ୟ ଶାସ୍ତିର ବିଧାନ କରାଯାଇପାରେ ।

ମତେ ଯଦି ସାପ ମାରିଥାନ୍ତା ?

ଜାଣିଥିଲେ ବଞ୍ଚାଇବାକୁ ଚେଷ୍ଟା କରାଯାଇଥାନ୍ତା ।

ଚେଷ୍ଟା ବିଫଳ ତ ହୁଏ ।

ସଫଳ ବି ହୁଏ ତ !

ଯଦି ସଫଳ ହୋଇ ନ ଥାନ୍ତା ?

Digitized by PPRACHIN, SOA

ଯାହା ଘଟି ନାହିଁ, ସେକଥା ଅନୁମାନ କରି ତା ଉପରେ ତର୍କ କରିବା ଉଚିତ କି ଭାଇ ? ସଂସାରରେ କେତେ ବିପଦ ଅଛି । ସବୁ ମଣିଷ କେତେ କେତେ ଆପଦ ବିପଦକୁ ହାତ ମୁଠାରେ ଧରି ଚାଲିଛନ୍ତି । ଉଡ଼ାଜାହାଜ, ରେଳ, ମଟର, ଆକ୍ସିଡେଣ୍ଟ ହେଉଛି । ବଜ୍ର, ତୋଫାନ, ବନ୍ୟା, ରୋଗ ବୈରାଗ, ଉତ୍ପାତ, ଭୂମିକମ୍ପ, ଦୁର୍ଘଟଣା, ଯୁଦ୍ଧ, ଏପରି କି ଝୁଣ୍ଟି ପଡ଼ିଲେ କି କଣ୍ଟା ମାଡ଼ିଲେ ବି ମରଣ ହେଉଛି । ତଥାପି ମଣିଷ ବଞ୍ଚିଛି ଓ ବଞ୍ଚିବ । ବଞ୍ଚିବ କଥା ହିଁ ଭାବିବା ସାର । ମରିବା କଥା ଭାବିଲେ ଯାହା ବୁଝିଥା ତ ମୁହୂର୍ତ୍ତକରେ ମରିଛି ବୋଲି ଭାବିଲେ ଭୁଲ ହେବ ନାହିଁ ? ସେଇଟା ଭାଇ, ଅସାର କଥା । ବଞ୍ଚିବାକୁ, ପୁଣି ସୁଖରେ ରହିବାକୁ ସିନା ଆମର ଚେଷ୍ଟା; ମରିବାକୁ ଆଉ ଦୁଃଖ ପାଇବାକୁ ତ ଆମର ଚେଷ୍ଟା ନୁହେଁ ?

ତୋ ପାଖରେ ମୁଁ ହାରିଲି ସୁରତ ।

ସୁରତ ହାତଯୋଡ଼ି ନମସ୍କାର କଲା । କହିଲା, ମୁଁ ମୂର୍ଖଟା । ଆମେ ଭାଇ ସମସ୍ତେ ମୂର୍ଖ । ଆମକୁ ପରୀକ୍ଷା କରିବା ତମ ପକ୍ଷରେ ଉଚିତ ନୁହେଁ ।

ସୁବ୍ରତ କେବଳ ହସିଲା ।

ବଞ୍ଚିରହିବାକୁ ସମସ୍ତଙ୍କର ସବୁବେଳେ ମନ । ସୁଖରେ ଓ ସ୍ୱଚ୍ଛନ୍ଦରେ ବଞ୍ଚିବାକୁ ସମସ୍ତଙ୍କର ଆଗ୍ରହ । ସେଥିପାଇଁ ଆପ୍ରାଣ ଉଦ୍ୟମ । ସେଇଥିପାଇଁ ମଣିଷପିଲାର ଜନ୍ମରୁ ମରଣ ଯାଏ ସାବଧାନତା ଶିକ୍ଷା ଓ ଅବଲମ୍ବନ । ସବୁ ସତର୍କତାର ଫାଙ୍କରେ ବିପଦ ଓ ମୃତ୍ୟୁ ଛପି ବସିଥାଏ । ଖୋଜୁଥାଏ, ଟାକି ରହୁଥାଏ ଟିକିଏ ଅସାବଧାନତା, ଟିକିଏ ଅସତର୍କତାର ସୁବିଧା ।

ବୁଢ଼ା ଉହାଡ଼ରେ ଗଛ ଗହଳି ଫାଙ୍କରେ ଲୁଚି ବସିଛି କୋକିଶିଆଳୀ । ହିଡ଼ ତଳ ଗାତ ଭିତରୁ ଅଳପ ମୁହଁକାଢ଼ି କିଛି ନ ଦେଖିଲା ପରି, କିଛି ନ ଜାଣିଲା ପରି ମିଟିମିଟି ଚାହିଁଛି କାଳିଆ ନାଗ । କ୍ଷେତ ମଝିରେ ମୂଷା ଦିଓଟି ପିଲା ଖେଳଉଛନ୍ତି, ଖୋଉଛନ୍ତି, ଟୋକୁଛନ୍ତି ଝଡ଼ିଲା ଧାନ । ତରଙ୍ଗ ତରଙ୍ଗ ଗୁହାଳୀ । ଜମ୍ବୁଗଛର ପତ୍ର ଫାଙ୍କରୁ ଅନେଇ ରହିଛି ଛଞ୍ଚାଣ, ବାଗ ଉଣ୍ଡୁଛି, ବୁଦା କଡ଼ରେ କୁକୁଡ଼ା ଖେଳଉଛି ତାର ଦଶଟି ଛୁଆ, ସତର୍କ ଆଖି, ସତର୍କ କାନ !

ପ୍ରାକୃତିକ ଆପଦ ବିପଦ ମାଡ଼ି ଆସିଛି ସମୁଦ୍ରର ଢେଉ ପରି ଥରକୁ ଥର, ସୃଷ୍ଟିର ଆରମ୍ଭରୁ, ସତେ କି ସେ ପ୍ରଳୟ କରିବ; ଧ୍ୱଂସ କରିଛି କେତେ ସମାଜ, କେତେ ଦେଶ, ପୁଣି ମଥା ନତ କରି ପଛେଇ ଯାଇଛି । ମଣିଷଜାତିର ଧୈର୍ଯ୍ୟ, ସହିଷ୍ଣୁତା, ସଦ୍‌ବୁଦ୍ଧି ସହାନୁଭୂତି, ସାବଧାନତା, ସହନଶୀଳତା ଓ ସତ୍‌କର୍ମ ପୁଣି ଗଢ଼ିଛି ନୂଆ ସମାଜ, ନୂଆ ଦେଶ । ତାର ଉଦ୍ୟମ ଓ ସାଧନା ପ୍ରକୃତିର ପ୍ରକୋପ୍ୟା ଗୁଡ଼ିକୁ ଧୀରେ ଧୀରେ ପୋଷା ମନଉଛି ।

Digitized by PPRACHIN, SOA

ମଣିଷର ଅହମିକା, ସ୍ୱାର୍ଥପରତା, ପ୍ରଭୁତ୍ୱ-ଲାଳସା, ଭୋଗବିଳାସର ସ୍ପୃହା ଓ ଦୁର୍ବୁଦ୍ଧି ପ୍ରକୃତିର ବିକୃତ ପ୍ରକ୍ରିୟାଗୁଡ଼ିକୁ ପ୍ରୟୋଗ କରିଛି ମଣିଷର ଧ୍ୱଂସସାଧନ ପାଇଁ । ପଥର ଯୁଗର ମୂନିଆଁ ପଥର-ବର୍ଚ୍ଛା ଓ ଏ ଯୁଗର ଆଟମ୍‌ବମ୍, ହାଇଡ୍ରୋଜେନ୍ ବମ୍ ମଝିରେ ଯେତେ ଯାହା ମାରଣ-ଅସ୍ତ୍ର ! ଧ୍ୱଂସ ପରେ ସଦ୍‌ବୁଦ୍ଧି ଆସିଛି । ମଣିଷ ହୋଇଛି ସତର୍କ, ମଣିଷ ହୋଇଛି ସାବଧାନ ! ତଥାପି, ସବୁ ସତର୍କତାର ମଝିରେ ରହିଯାଉଛି ଫାଙ୍କ—ସେଇଠି ଲୁଚି ବସିଛି ବିପଦ, ଧ୍ୱଂସର ସ୍ଫୁଲିଙ୍ଗ—ମରଣ—ପରାଜୟ—

ସୁବ୍ରତ ଗୁହିଁଛି ଦକ୍ଷିଣପଟର ଝରକା ଆଡ଼କୁ । ଦୃଷ୍ଟି ଭ୍ରମୁଛି ଅତୀତରେ, ଲମ୍ବିଯାଉଛି ଭବିଷ୍ୟତକୁ । ସେ କେବଳ ଭାବୁଛି । ଗୋଟିଏ ବିଷୟରୁ ଡେଇଁ ପଡ଼ୁଛି ତାର ଭାବନା ଅନ୍ୟ କେଉଁ ବିଷୟକୁ, ଅସଲଗ୍ନ, ଜାଣି ହେଉ ନାହିଁ ।

ଅସାବଧାନତା, ଅନ୍ୟମନସ୍କତା, ପରାଜୟ ।

ଗୋଲ୍ ଗୋଲ୍—

ରେଫରିର ହୁଇସିଲ୍ । ବିପକ୍ଷ ପକ୍ଷର କୋଲାହଳ କରତାଳି । ଫାଇନେଲ୍ ମ୍ୟାଚର ଚୂଡ଼ାନ୍ତ । ସିଲ୍ଡ଼ ନେଉଛି ବାରିପଦା କଲେଜ । ରେଭେନ୍‌ସା ହାରିଛି । ଅସମ୍ଭବ ଅପ୍ରତ୍ୟାଶିତ । ବଲ୍‌ଟା ବାରିପଦା ପାଖେ ଲୁଚି ରହିଥିଲା ବରାବର । ସୁବିଖ୍ୟାତ ସେଣ୍ଟର ଫରୱାର୍ଡ଼ ଅରବିନ୍ଦର ବୁଲେଟ୍ ପରି ସୁଟ୍‌ଗୁଡ଼ାକ କେତେ ଥର ବାରିପଦାର ଗୋଲ୍-ପୋଷ୍ଟ ଛୁଇଁ ଉପରେ ଓ ଦୁଇ ପାଖେ ଖସିଯାଇଛି । ହାଫ୍ ଟାଇମ୍ ସରିଲା । ଏଇଥର ବାରିପଦା ଗୋଲ୍ ଖାଇବ । ଦେଖିବ ରହ । ଗୋଟାଏ ନୁହେଁ, ତିନିଟା । ରେଭେନ୍‌ସାରେ ବଜ୍ରବାହୁ—ଅଜେୟ । ତାକୁ ଅତିକ୍ରମ କରି ବଲ୍ କେବେ ଯାଇ ପାରିବ ନାହିଁ ।

ମୁହୂର୍ତ୍ତିକର ଅନ୍ୟମନସ୍କତା ! ଲାଇନ୍ ପାଖରେ ଦର୍ଶକମଣ୍ଡଳ କଡ଼ରେ ଆସୀନା ସହପାଠିନୀ ତରୁଣୀ ଶ୍ରୀମତୀ ଆହୁତି ଦେବୀ ! ରୂପର ପ୍ରଦୀପ ଜଳୁଛି । ଗୁହିଁ ରହିଛି ଅରବିନ୍ଦକୁ । ସେ ବଲ୍ କ୍ୟାରି କରି ନେଉଛି । କିଏ କେତେବେଳେ ଗୁହିଁ କରିଥିବ ! ବଜ୍ରବାହୁ ଦେଖିନାହିଁ । ପାଖ ଦେଇ ବଲ୍ ଗୋଟାଏ ଗୁଲିଗଲା । ପଛକୁ ଗୁହିଁଲା ବେଳକୁ ଚିତ୍କାର ଶୁଭୁଛି, ଗୋଲ୍ ଗୋଲ୍— ।

ଗୋଲ୍‌କିପର ରବିକାନ୍ତ ତଳେ ପଡ଼ିଛି ।

ମୁହୂର୍ତ୍ତିକର ଅସାବଧାନତା ! କାହାକୁ ସେ କହିପାରିବ, ଏଥିପାଇଁ କିଏ ଦାୟୀ ?

ଆହୁତି-ଦମୟନ୍ତୀ ! ଛାତ୍ରଜୀବନ ସରିଛି । ବେକାର ଜୀବନ ସରିଛି । ବେକାର ଜୀବନର ସମାଧାନ କରିବାକୁ ଯାଇ ଅନାହୂତ ଆହୁତି ପାଖରେ ଉପସ୍ଥିତ ।

ବିଦାୟ—ଚିରବିଦାୟ । ଠିକ୍ ସେ ବୁଝିପାରିଥିବ । ସୁବ୍ରତ ବଜ୍ରବାହୁ ପ୍ରେମ ନିବେଦନ କରିବାକୁ ଯାଇ ନ ଥିଲା । ଯାଇଥିଲା, ଟିକିଏ ଉପହାସ କରିବାକୁ, କହି ଆସିବାକୁ ଯେ ସୁବ୍ରତ ସ୍ତାବକ ନୁହେଁ— ।

Digitized by PPRACHIN, SOA

ଷାଇ, ଖଞ୍ଚ,— ପେଗୁ —

ସୁସନ୍ଧ୍ୟା ଡାକୁଚ୍ଛି ।

ସୁବ୍ରତର ଭାବନା ଭାଙ୍ଗିଲା । ସେ ପଲଙ୍କ ଉପରୁ ଉଠି କବାଟ ଖୋଲିଲା । ନୂଆ ମା ହସିହସିକା ଭଲକୁ ଓହ୍ଲାଇ ଯାଉଛନ୍ତି । ସନ୍ଧ୍ୟା ଆଗରେ ଠିଆ ହୋଇ ଚଟି ବଢ଼େଇ ଦେଉଛି ।

ଚଟି ହଳ ଖଣ୍ଡି ନେଇ ସୁବ୍ରତ ସନ୍ଧ୍ୟାର ହାତ ଧରିଲା ପଗ୍ଭରିଲା, ପେଗୁ-କଅଣ କଲେ ?

ଆରେ, ଗ୍ଭଡ଼ ମୋ ହାତ । କାଟୁଛି । ଓଃ —

କହ — ।

ମୁଁ ଜାଣେ ନାହିଁ । ନୂଆ ମା ତ କହିଲେ —

ନୂଆ ମାଙ୍କର କଥା ତାର କାନରେ ବାଜୁଛି, ପେଗୁମାନେ ଗ୍ରରେ ବାହାରନ୍ତି । ପଗ୍ଭ ମାଉଁସ ଖୋଜି ବୁଲନ୍ତି ।

କାହିଁକି ସେ ଏ କଥା କହୁଥିଲେ ? ଗ୍ରରେ ସେ କଅଣ ଦେଖିଛନ୍ତି ? କାହାକୁ କରିଛନ୍ତି ସନ୍ଦେହ ?

ସୁସନ୍ଧ୍ୟାର ହାତ ଗ୍ଭଡ଼ିଦେଲା । ଘର ଭିତରକୁ ଆସି ଚିଠିଗୁଡ଼ିକ ଖୋଲିଲା ।

ଧନଞ୍ଜୟ ଲେଖିଛି ନୂଆ ଧରଣର ମାସିକ ପତ୍ରିକାଟିଏ କାଢ଼ିବ ବୋଲି ସ୍ଥିର କରିଛି । ସେ ପତ୍ରିକାର ନାମ ଦେବ — "ଦାଗୀ" । ତୋର ଶୁଭେଚ୍ଛା ଜଣାଇବୁ । ମୋର ବେକାର ସମସ୍ୟା ସମାଧାନ କରିବାର ସୁବିଧା ମୁଁ କରିପାରିଛି । ଗୋଟିଏ ନୂଆ ପ୍ରେସ୍‌ର ମୁଁ ହୋଇଛି ପ୍ରୁଫ୍‌ରିଡ଼ର୍ । ପଗ୍ଭଶଟି ଟଙ୍କା ଦରମା । ଚଳିଯିବ ।

ଭୁବନେଶ୍ୱରରୁ ସରକାରୀ ଚିଠି ଆସିଛି — ଜଣାଇ ଦିଆଯାଇଛି ସେ ତାକୁ ସତୁରୀ ଟଙ୍କା ଦରମାରେ ସରକାରର ଅସ୍ଥାୟୀ ଭାବରେ ନଗରଉପତ୍ୟକା ବିଭାଗରେ ଜଣେ ସହକାରୀ ରୂପେ ନିଯୁକ୍ତ କରିଅଛନ୍ତି । ସେ କୌଣସି ମୁହୂର୍ତ୍ତରେ ପୂର୍ବରୁ ନୋଟିସ ନ ଦେଇ ଓ କୌଣସି କାରଣ ନ ଜଣାଇ, ଆବଶ୍ୟକ ମଣିଲେ କାର୍ଯ୍ୟରୁ ଅନ୍ତର କରି ଦିଆଯାଇ ପାରିବ । ନିଯୁକ୍ତିପତ୍ର ତାରିଖର ପନ୍ଦର ଦିନ ମଧ୍ୟରେ କାର୍ଯ୍ୟରେ ଯୋଗ ନ ଦେଲେ ନିଯୁକ୍ତିଟି କଟିଯିବ ।

ଶ୍ରୀମତୀ ଆଲୁଅ ଦେବୀ ଲେଖିଛନ୍ତି — ନଳରାଜ, ଦମୟନ୍ତୀ ଶବ୍ଦେ ଟଙ୍କିଆ ଶିକ୍ଷୟିତ୍ରୀ ସ୍କୁଲଟିକୁ ଗ୍ଭଡ଼ିଦେଲେ । ବର୍ତ୍ତମାନ ସେ ବେକାର ହୋଇ ବସିଛନ୍ତି । ସେ ଭାବୁଛନ୍ତି, ବୋମ୍ବେଟଙ୍କର ନିମନ୍ତ୍ରଣ ରକ୍ଷାକରି ସେ ବମ୍ବେ ଗ୍ଭଲିଯିବେ । ଗ୍ଭରି ମାସ ତଳେ ସେ ତାଙ୍କର ଫଟୋ ସହ ଦରଖାସ୍ତ ପଠାଇଥିଲେ । ଦେଖା-ପରୀକ୍ଷା ପରେ

Digitized by PPRACHIN, SOA

ବେତନ ସ୍ଥିର ହେବ । ଆଠ ଦଶ ଦିନ ମଧ୍ୟରେ ସେ କଟକ ଯାଉଛନ୍ତି । ଏ ସମ୍ବାଦ ଆପଣଙ୍କୁ ଜଣାଇ ଦେବାକୁ ତାଙ୍କର ଆଗ୍ରହ ହେଲା ।

ସୁବ୍ରତ ଚାହିଁ ରହିଲା ଆଗକୁ । ଉନୋଟି ପତ୍ର ଟେବୁଲ ଉପରେ ସେମିତ ପଡ଼ି ରହିଲା । ମନରେ ସନ୍ଦେହ କୌଣସି ଚିନ୍ତା ପଶିଲା ନାହିଁ ।

ଯାଉ ଦିନ ଅତୀତ ହୋଇଛି । ଅଗ୍ନିକାଣ୍ଡ, ଝଡ଼ ତୋଫାନ ବା ଦଳେଇ ଘାଇ ଭଙ୍ଗା ବନ୍ୟା ପରେ ସବୁ ଯେପରି ହତଶ୍ରୀ ଦେଖାଯାଏ, ବଜ୍ରବାହୁ ସେହିପରି ହା-ହତଶ୍ରୀ ଭାବ ଅନୁଭବ କରୁଛି । ବଡ଼ ସକାଳୁ ଆଖି ଖୋଲିବା ପରଠାରୁ ରାତି ଅଧରେ ବିଛଣାରେ ଆଖି ବୁଜିବା ଯାଏ ସବୁକର୍ମ ତାର ଅନ୍ୟମାନେ କରି ଦେଉଛନ୍ତି । ସେ ହୋଇଛି ସନ୍ତାନ କ ତାର ପିତାମହ-ଜମିଦାର ! କେବଳ ଜମିଦାରୀ ନାହିଁ କ ପ୍ରଭୁତ୍ୱ ନାହିଁ ।

କୋଠରୀ ଭିତରେ କୁସୁମ ଉଦ୍ୟାନର ମହକ । ରାଜକୋମା ସୁସନ୍ଧ୍ୟାର ଖେଳ, ଗେଲ, ଉଲ୍ଲାସ । ମାତାଙ୍କର ସ୍ନେହ । ଖୁଡ଼ୀଙ୍କର ଯତ୍ନ । ବୁଢ଼ୀ ନୂଆ ମାଆଙ୍କର ଶ୍ଳେଷବାଣୀ । ଲୋଡ଼ା କେବଳ ସୁଖ ଓ ଖୁସି । ଜମିଦାର ଓ ରାଜାର ଉତ୍ତରାଧିକାରୀ ପକ୍ଷରେ ଏ ସବୁ ମଧ୍ୟ ଲୋଡ଼ା । ଦୋଷାବହ ନୁହେଁ । ଆଭିଜାତ୍ୟର ବିଜୟ କେତନ । ଲାଜ ବା ସଂକୋଚର ସ୍ଥାନ ସେଠି ନାହିଁ ।

ଉଆସ ଭିତରେ ସବୁ ସମସ୍ତଙ୍କର ଦେହ-ସହା ହୋଇ ଯାଇଥିବା ସାଧାରଣ ଘଟଣା — ଜୀବନର ସୁଖ ଓ ଆନନ୍ଦ । ସେ ଖଞ୍ଜାରେ ସତୁରି ବର୍ଷର ବୃଦ୍ଧପିତାମହ । ମଝି ଖଞ୍ଜାରେ ବୃଦ୍ଧଙ୍କର ଆଶ୍ୱ-ମରଣକାମୀ ପଚାଶ ବର୍ଷ ବୟସ୍କ ଉତ୍ତରାଧିକାରୀ ପୁତ୍ର । ତଳଖଞ୍ଜାରେ ତିରିଶି ବର୍ଷ ବୟସ୍କ ପ୍ରୋବେସନ୍‌ର ନାତି ଟୋକା । ଦାସୀ ମହଲରେ ଭବିଷ୍ୟତ ବଂଶଧର ଏବେ ବି କୋରକ, ପଣନାତିଟି । ସମସ୍ତେ ସେମାନେ ସୁଖାନ୍ୱେଷୀ ।

ଚମ୍ପା ଆସି ବ୍ୟଞ୍ଜନ କରୁଛି । ମାଙ୍କଠାରୁ ବୟସରେ ସେ ବଡ଼ ହୋଇ-ପାରେ । ଗନ୍ଧରେ ଶୋଭା କୁସୁମଗୁଚ୍ଛ — ମନଲୋଭା । କଜ୍ଜଳ-ପୂରିତ ଲୋଚନା ! ସେ ଗଳ୍ପ କରିବାକୁ ଚାହେଁ । ରାଜପରିବାରରେ ସୁଖ କଅଣ, ଆନନ୍ଦ କପରି ମିଳେ, ଏ ସବୁଥିରେ ସେ ସୁପଣ୍ଡିତା । ସେ ହସହସ ।

ମାଳତୀ ଘର ସଜାଏ, ମହକ ଛୁଟାଏ । ସମବୟସୀ ହୋଇପାରେ । କୁରଙ୍ଗୀ-ନୟନା । ଏଣୀ ଗୃହାଣୀ ହାଣେ । କହେ, ସାଆନ୍ତେ ଆଉଥରେ ଦେଖା କେବେ ଆସିବେ ? ସବୁ ତ ଠିକ୍ ହୋଇ ସାରିଲାଣି । ଏ ଘରର ଲକ୍ଷ୍ମୀ-ବୋହୂ ହେବା ଲାଗି ଏକା ସେ । ବଲବଲ କରି ଚାହେଁ ସୁବ୍ରତ । ଚାଲି ଯା ବୋଲି କହିପାରେ ନାହିଁ ।

Digitized by PPRACHIN, SOA

ଆଖିରେ ତାର ଆଗ୍ରହ ଦେଖେ । ଆଖି କହେ, ମୁଁ ବିଜ୍ଞାନ ଜାଣେ, ଇତିହାସ ବି ସଂଗ୍ରହ କରିଛି । ସୁବ୍ରତ ଚୁପ୍ ରହେ । ବିରକ୍ତ ହୁଏ ନାହିଁ ।

ଯମୁନା ଗୋଡ଼ ଘଷେ । ଚଉଦ ପନ୍ଦର ବର୍ଷର ଛଟକା ହସକୁଡ଼ୀ । ଚାହିଁ ଜାଣେ ନାହିଁ, କହି ଜାଣେ ନାହିଁ । ଦେଖି ତାର ଓଦଓଦ କରି ଚାହେଁ । ଚାଲିଚଳଣ କହେ କଥା ।

ଗୋବିନ୍ଦା ଆଣେ ବେଲପଣା; ଆଜ୍ଞା, ସାମାନ୍ୟ ଟିକେ ଭାଙ୍ଗ ଦେଇଚ ମଜା ଲାଗୁଥିବ । ଖାଇବାକୁ ଭଲ ଲାଗେ । ବଡ଼ ସାଆନ୍ତେ ପସନ୍ଦ କରନ୍ତି ।

ଗୋପାଳିଆ ଧାଇଁ ଆସେ ବଡ଼ ସକାଳୁ । ଖଜୁରି-ରସ ସାଆନ୍ତେ, ଖରା ବାଜିଲେ ମଦ ହୁଏ ସିନା, ତା ଆଗରୁ ତ ଅମୃତ । ଦେହକୁ ଉପକାର କରେ । ପେଟ ଥଣ୍ଡା ରଖେ—

ନିଜକୁ ସେ ଭସାଇ ଦେଇଛି ଆଭିଜାତ୍ୟର ବନ୍ଧ-କଟା ସ୍ରୋତରେ । ଜଳ ଭଣ୍ଡାରରେ ପ୍ରଚୁର ଜଳ ନାହିଁ । ଯେଉଁ ଝର ଜଳ ଯୋଗାଉଥିଲା ସେ ଶୁଖିଛି । ବନ୍ଧ କଟା ହୋଇଛି । ତଥାପି ମା' ଖୁଡ଼ୀ ନୂଆ ମା' ବାଧା ଦେଉନାହାନ୍ତି, କେଜାଣିବା ସେମାନଙ୍କର ଦେହସହା କଥା ମନରେ ପଶୁନାହିଁ । ଜମିଦାରପୁଅକୁ ଜମିଦାରଙ୍କର ଉପଯୁକ୍ତ ଅଧିକାରୀ କରି ଗଢ଼ିବାକୁ ସବୁ ସୁବିଧା ସୁଯୋଗ ଦେଉଛନ୍ତି । ଚାକିରି ହେଲା, ବୟସ ହୋଇଛି । ଭୁବନେଶ୍ୱର ଯିବା ଆଗରୁ ମହାପାତ୍ରଙ୍କ ସଙ୍ଗେ ଦେବା ନେବା ସର୍ତ୍ତ ଛିଡ଼ିବ । ଦଶ ହଜାର କି ପନ୍ଦର ହଜାର, ସେଇଠି ରହିଛି କଥା ।

ଆରତି ବୋହୂ ହୋଇ ଆସିବ । ଆସନ୍ତା ମାର୍ଗଶୀରରେ ଭଲ ଯୋଗ ପଡ଼ୁଛି । ପିତାମାତା ଏଥିରେ ଏକମତ ।

ସରକାରୀ ଚାକିରିରେ ସମ୍ମାନ ଅଛି । ଅଳ୍ପ ବହୁତ ଟଙ୍କାରୁ ମିଳିବ କ'ଣ ? ରଣଗଡ଼ ଜମିଦାର ପୁଅ ପେଟ ପୋଷିବାକୁ ଚାକିରି କରିବ ନାହିଁ, ସେ ଚାକିରି କରିବ କୁଳର ଟେକ ପାଇଁ ।

କର୍ପୂର ଯାଇ ଯେଉଁ କନା ପଡ଼ିଛି, ତାର ମୂଲ୍ୟ ଲକ୍ଷେ ଟଙ୍କା ।

କେବେ ଅନୁକୂଳ କରିବୁ ସୁବ୍ରତ ?

ପରେ କହିବ ।

ପନ୍ଦର ଦିନ ସମୟ, ତହିଁରୁ କଟିଗଲାଣି କେତେ ଦିନ । ଆଉ ଡେରି କରିବା ଉଚିତ ନୁହେଁ ।

ମୁଁ ଭାବିଚିନ୍ତି କହିବି ।

ଏଥିରେ ଭାବିବାର କଅଣ ଅଛି ?

Digitized by PPRACHIN, SOA

ସୁବ୍ରତ ଉତ୍ତର ଦେଲା ନାହିଁ । ତଉଲିଆ କାନିକୁ ନଖରେ ଖୁମ୍ପିବାକୁ ଲାଗିଲା । ସତେ କି ତାର ଉତ୍ତରଟା ସେଇ ନରମ କ୍ଷୀଣ ସୁରୁଣା କାଠ ଭିତରୁ ବାହାରିବ । କଣେଇଁ ଚାହିଁଲା ମାତାଙ୍କୁ । ପଲଙ୍କର କୋଣଟିଏ କଡ଼ରେ ବାଡ଼ାକୁ ଆଉଜି ସେ ହସିଲା ମୁହଁରେ ରଣସିଂହଙ୍କୁ ଅନେଇଁ ରହିଛନ୍ତି । ସୁବ୍ରତର ଦୃଷ୍ଟି ପଡ଼ିଲାରୁ ସେ କହିଲେ, ପଚାରୁନ ?

ରଣସିଂହଙ୍କ ଆଖିରେ ଭାଙ୍ଗ-ନିଶାର ପାଟଳ-ଆଭା । ଗୋଲାପର ଦସ୍ତାରୁ ସେଇ ପାତଳ ପାଣିରୁ ମଗଏ ସୁବ୍ରତ ବି ପାଇଥିଲା । ଜିଭଟା ଶୁଖିଗଲା ପରି ଲାଗୁଛି । ମୁଣ୍ଡ ସାମାନ୍ୟ ଝାଙ୍କୁଛି । ସନ୍ଧ୍ୟା ପାଖେଇ ଆସିଲାଣି ।

ରଣସିଂହେ କହିଲେ, ମହାପାତ୍ରଙ୍କର କନ୍ୟା ଆରତି ସଙ୍ଗେ ସବୁ ମେଳଣ ମିଳିଛି । ଦିନ ବାର ମଧ୍ୟ ସ୍ଥିର ହେଲାଣି । ପନ୍ଦର ହଜାର ଟଙ୍କା ନଗଦ ଟୀକା ଦେବାକୁ ମୁଁ ତାଙ୍କୁ ଲେଖିଛି । ଚାକିରିରେ ଯୋଗ ଦେଇଦେଲେ ଆମର ସମ୍ମାନ ଆଦର ବଢ଼ିବ ।

ସୁବ୍ରତର ଓଷ୍ଠରେ ହସଟିଏ ଫୁଟିଲା । ସେ ବକ୍ରଭାବରେ ପିତାଙ୍କ ମୁହଁକୁ ଚାହିଁଲା । କ୍ରୋଧକୁ ଦମନ କରି କହିଲା, ଚାକିରିରେ ଯୋଗ ଦେଇଦେଲେ ଆପଣ ପୁଣି ପନ୍ଦର ହଜାର ଟଙ୍କାକୁ ବଢ଼ାଇ କୋଡ଼ିଏ ହଜାରରେ କରିବେ କି ?

ନାଇଁ, ନାଇଁ,—,ଆମର ସମ୍ମାନ ବଢ଼ିବ ।

ଏତେ ଟଙ୍କା ହେବ କ'ଣ ?

ଆରେ ବାଇଆ, ଟଙ୍କା କଅଣ ପିତା ଲାଗେ ? ଜମିଦାରୀ ଗଲା ପରେ ଟଙ୍କା-କଉଡ଼ି ପାଇଁ ଘରଆଡ଼ୁ ଟଣାଓଟରା । ଯାହାର ଅଛି, ସିଏ ଦେଇ ପାରିବ ତା ଠାରୁ ଅଣା ନ ଯିବ କାହିଁକି ? ଏ କୁଳର ପ୍ରଥା ସେ । ରଙ୍ଗ ମାଟିଆ ଜମିଦାର ମତେ ତିରିଶ ହଜାର ଟୀକା ଦେଇଥିଲେ । ନୁହେଁ କି ?

ରଣସିଂହେ ମମତାଙ୍କ ଆଡ଼କୁ ଚାହିଁଲେ । ମମତା ଦରହସିଲା ହୋଇ କହିଲେ, ହଁ, ତିରିଶ ହଜାର ।

ସୁବ୍ରତ ପଚାରିଲା, ମହାପାତ୍ରେ କ'ଣ ତିରିଶି ହଜାର ଦେଇ ପାରିବେ ନାହିଁ ? ମୁଁ ଶୁଣୁଛି, ସେ ଟଙ୍କାର ପାହାଡ଼ କଲେଣି ।

ରଣସିଂହେ କହିଲେ, ସତକଥା, କିନ୍ତୁ ଜମିଦାରୀ ଉଠିଲା ପରେ ଏତେ ଟଙ୍କା ମାଗିବାକୁ ଆମର ମୁହଁ ନାହିଁ । ତେବେ, ତୁ ଆଗ ଚାକିରିଟାରେ ଯୋଗଦେଇ ଦେ, ମୁଁ ତାର ଚେଷ୍ଟା କରିବି । ବେଶି ମାଗିଲେ କି ଟାଳଟୁଳ କଲେ, ସେ ଅନ୍ୟଠାରେ ସମ୍ବନ୍ଧ କରିଯିବେ ।

ମମତା କହିଲେ, ଆରତିକୁ ମୁଁ ବୋହୂ କରିବି । ମହାପାତ୍ରେ ଟଙ୍କା ଦେଉନ୍ତୁ କି ନ ଦେଉନ୍ତୁ, ପୁଅ ମୋର ଚାକିରି କରୁ କି ନ କରୁ, ସେଥିକି ମୋର ଚିନ୍ତା ନାହିଁ । ମୋର ବାପା ଯେଉଁ ଧନ ଦେଇଥିଲେ, ତୁମର ବାପା କଅଣ କଲେ ଶୁଣେ ? ଝିଅ

Digitized by PPRACHIN, SOA

ନମିତ୍ୟ ତ ସେ କରୁ ନାହାନ୍ତି ? ସେ ଟଙ୍କା ଓ ଜମିଦାରୀର ଆୟ ଟଙ୍କା ସବୁ ସେ ଉଡ଼େଇ ଦେଲେ । ଖାଇଲେ ଶୁଙ୍ଗୀ, ଖାଇଲେ ଓକିଲ-ମୁକ୍ତାର, ଅନୁସରଣିଆଁ, ଖୁସାମଦିଆ ପ୍ରଭୃତି—, କ'ଣ କହିବ ସେଗୁଡ଼ାକ ପିଲାଟା ଆଗରେ ।

ଗତ କଥା ଖୋଲି ତାଡ଼ୁ ପିଲାଟା ଆଗରେ ମୋ ସଙ୍ଗେ କଜିଆ କରିବାକୁ ତେମେ ଆସିଛ ?

ରଣସିଂହେ ଦାନ୍ତ ଚିପି କଟମଟ କରି ମମତାଙ୍କ ମୁହଁକୁ ଚାହିଁଲେ । ଯୁଦ୍ଧଂ ଦେହିର ଆମନ୍ତ୍ରଣ । ମମତାଙ୍କ ଆଖିରେ ଅନଳର ତେଜ । ସୁବ୍ରତ ଭୟଗ୍ରସ୍ତ ହେଲା । ରହିବ କି ଚାଲିଯିବ, ସ୍ଥିର କରି ପାରିଲା ନାହିଁ ।

ମା ଗର୍ଜି ଉଠିଲେ, ସେମିତି କଅଣ ଅନାଉଁଛ ? ଭାବୁଛ କି ସେଦିନ ପରି ଦେହରେ ହାତ ଦେବ ? ତମର ନିଶା ଛଡ଼େଇ ଦେବି କହୁଛି । ସୁବ୍ରତ ମୋର ପିଲା ପୁଅ ନୁହେଁ । ସୁବ୍ରତ ତାର ବାପ ଅଜାଙ୍କ ପରି ମୂର୍ଖ ନୁହେ । ସେ ଶୁଣୁ, ବୁଝୁ । ଏତେ ଟଙ୍କା କ୍ଷତିପୂରଣ ତମେ ସରକାରଠୁଁ ପାଇଲଣି, ସେ ସବୁ କଅଣ ହେଲା କି ? ମୋ ବାକ୍ସରୁ ଟଙ୍କା ଓ ସୁନାଗହଣା ନେଇ ତମେ କେଉଁ ମାହାଲର ଖଜଣା ଦେଲ, କେଉଁ ଝିଅଟାର ବାହାଘର କଲ ଶୁଣେ ?

ହାତ ମୁଠା କରି ଚଢ଼ିକି ଆସିଲେ ରଣସିଂହେ । ଗର୍ଜି ଉଠିଲେ, ଷ୍ଟପ୍ — ।

କୁଞ୍ଚିତା ସିଂହୀ ପରି ପଲଙ୍କ ଉପରୁ ଡେଇଁ ପଡ଼ିଲେ ମମତା । ରଣସିଂହଙ୍କ ଆଗରେ ଠିଆ ହୋଇ ପାଟିକରି କହିଲେ, ମାରିବ ? ହଉ ମାର । ସୁବ୍ରତ ଦେଖୁ—

ମମତାଙ୍କ ଆଖିରେ ଲୁହ ଟଳ ଟଳ । ରଣସିଂହେ ପଛେଇ ଗଲେ । ପଲଙ୍କ ଉପରେ ବସି ପଡ଼ିଲେ ।

ହସିବ କି କାନ୍ଦିବ ସୁବ୍ରତ ବୁଝି ପାରିଲା ନାହିଁ । ଆଗରେ ପିତା—ସବୁ ଦୁର୍ଗୁଣର ଖଣି । ତଥାପି, ସେ ଆକାଶଠୁଁ ବଡ଼ । ଆଗରେ ପୁଣି ସ୍ନେହମୟୀ ଜନନୀ—ନିର୍ଯ୍ୟାତିତା, ଅପମାନିତା । ସେ ବଡ଼ ପୃଥିବୀ ଅପେକ୍ଷା । ଆଗରେ ଯମଦଗ୍ନି—ସତେ କି ଆଦେଶ ଦେଉଛନ୍ତି—ମାତାଙ୍କର ମୁଣ୍ଡ ଲୋଡ଼ା । ଆଗରେ ପୁଣି କୈକେୟୀ । ସେ ବି ଆଦେଶ ଦେଉଛନ୍ତି, ନ ଥାନ୍ତୁ ଦଶରଥ, ନ ଥାନ୍ତୁ ରାମ, ଅଯୋଧାର ରାଜମୁକୁଟ ଭରତର ଶିରରେ ସ୍ଥାପନ କର ।

ସୁବ୍ରତ ଆଖିରୁ ଲୁହ ଧାର ଗଡ଼ି ଆସିଲା । ସେ ଉଠି ଆସି ମମତାଙ୍କର ହାତ ଧରି କହିଲା, ଏ ସବୁ କଅଣ ହେଉଛି ମା ? ମୋ ପାଇଁ ଘରେ ଏତେ ଅଶାନ୍ତି କାହିଁକି ସୃଷ୍ଟି ହେବ ? ମୁଁ ଯାହା କରିବ ସେ କଥା ତ ଆଗରୁ ସ୍ଥିର କରି ସାରିଛି । ବାପାଙ୍କ କଥା ରହିବ, ତୋ କଥା ବି ରହିବ ।

ମମତାଙ୍କର ହାତ ଧରି ସୁବ୍ରତ ରଣସିଂହଙ୍କ କୋଠରି ଭିତରୁ ବାହାରି ଆସିଲା । ସତେ କି ଗୋଡ଼ ତଳୁ ବସୁନ୍ଧରା ଖସି ପଳାଉଛି । ଆକାଶ ମାଡ଼ି ବସୁଛି ମୁଣ୍ଡ ଉପରେ । ମାଇପଞ୍ଜର ମହଲ ଆଲୁଅ ଦେହସାରା କଣ୍ଟା ଫୋଡ଼ୁଛି ।

Digitized by PPRACHIN, SOA

ନାଥିଆ ପିଣ୍ଡାରେ ଠିଆ ହୋଇ ଅଛନ୍ତି । ବାବନାର ଆଖି ହସୁଛି । ଆଉ ସବୁ ଦାସଦାସୀମାନେ କାର୍ଯ୍ୟବ୍ୟସ୍ତତାର ଛଳନା କରୁଛନ୍ତି । ତଳ ଖଞ୍ଜାରେ ନୂଆ ମା ଗମ୍ଭୀର ହୋଇ ବସିଛନ୍ତି । ଝୁଡ଼ୀ ସନ୍ଧ୍ୟାର ହାତ ଧରି ଅଟକାଇ ରଖିଛନ୍ତି । ସମସ୍ତେ ନୀରବ ।

ଆସ୍ୱାଭାବିକ ନୀରବତାର ଭୀଷଣତା ସହି ପାରିଲା ନାହିଁ । ଝଡ଼ୀକୁ ଦେଖି ମନ-ଗହନର ଅଦମ୍ୟ ଦୁଃଖ ଧୈର୍ଯ୍ୟର ପାହାଡ଼ ଫଟାଇ ପଦାକୁ ଛୁଟି ଆସିଲା ଗୋଟିଏ ଅଶ୍ଳୀଳ ବାକ୍ୟରେ, ଆଜିଠାରୁ ତମ ସୁବ୍ରତର ମରଣ ହୋଇଛି ଝୁଡ଼ୀ— ।

ଏ କି ଅଲକ୍ଷଣା କଥା ତୁଣ୍ଡରେ ଧରୁଛ ବାପ,—ଛି, ଝାରଣୀଙ୍କର ଆଖିରେ ଲୁହ ଚଳ ଚଳ ।

ଘରେ ମାଳତୀ ଆଲୁଅ ଜାଳି ଦେଇଛି । ସୁବ୍ରତ ତାକୁ କଥା କହୁ ନାହିଁ । ସେ ଡରି ଡରି ଫେରିଯାଇଛି । ଯମୁନା ଆସିଛି ଗୋଡ଼ ଘଷିବାକୁ, ଗୋଡ଼ ଘଷାର ସୁଯୋଗ ସେ ପାଇ ନାହିଁ । ଫେରିଯାଇଛି ପଛେଇ ପଛେଇ । ଆସିଛି ସନ୍ଧ୍ୟା ଡରି ଡରି, ପାଦ ଚପିଚପି । ସୁବ୍ରତର ଜଳିଲା ପୋଡ଼ିଲା ମନ ଛଟପଟ ଉତ୍ତେଜନା ନଇଁ ଆସିଛି, ଧରା ଦେଇଛି ସେଇ ପିଲାଟା ପାଖରେ । ମୁହଁରେ ହସ ଫୁଟିଛି । ତୁଣ୍ଡରୁ ଗେହ୍ଲାଳିଆ କଅଁଳ ଡାକ ବାହାରିଛି, ଆ, ମୋ ପାଖକୁ ।

ସନ୍ଧ୍ୟା ପାଖକୁ ଯାଇଛି । ଭାଇପାଖେ ଶୋଇ ଗପ ଶୁଣିଛି । ଗପ କହୁଛି, କେତେବେଳେ ଛୁଟି କରି ଶୋଇପଡ଼ିଛି ।

ଦୁଇ ଦିନ ଦୁଇ ରାତି କଟିଯାଇଛି । ଗୋଟାଏ ସପନ ପରି ସେ ଦିନ ସଞ୍ଜର ଘଟଣାଟା ସମସ୍ତେ ଭୁଲି ଯାଇଛନ୍ତି । ହଥାସ ଭିତରକୁ ଫେରି ଆସିଛି ସ୍ୱାଭାବିକତା । ବୋଲି ଘରେ ଦୋଳିରେ ବସି ସନ୍ଧ୍ୟାକୁ ପାଖରେ ବସାଇ ମା ଝୁଲୁଛନ୍ତି । ମାଳତୀ ଓ ଯମୁନା ଝୁଲାଉଛନ୍ତି । କରି କରି ହସ । ଖଡ଼ି କରୁଛନ୍ତି ସାତ ଉଅଣ ନଅ ଭଜା । ନୂଆ ମା ଓ ଚମ୍ପା ସାହାଯ୍ୟ କରୁଛନ୍ତି । ଗୋବିନ୍ଦ ଗୋପାଳଙ୍କର ତତ୍ପରତା ବଢ଼ିଛି । ପିତାଙ୍କର ପାଲିଖେଳ, ତ୍ରିପାଠୀଙ୍କର କଚେଡ଼ିବାର ରଙ୍ଗରେ ମେଘ ଦୁଲୁକି ଉଠୁଛି ।

ବେଳେ ବେଳେ ସୁବ୍ରତ ଆସୁଛି ଘରକୁ । ସିଏ ଯାହା ଦେଉଛି ବଗୁଲି ଧର୍ମ-ବେଠିଆ ସେତକ ହଦରଷ୍ଟ କରୁଛି । ସନ୍ଧ୍ୟାକୁ ଗେଲ, ଯମୁନାକୁ ବଧା, ମାଳତୀକୁ ଭୁକୁଭୁଣ୍ଡା, ଗୋବିନ୍ଦାଇ କାନ, ଗୋପାଳିଆର ନାକ, ନାଥିଆର ଦାଢ଼ି, ବାବନାର ଚୁଟି ସମସ୍ତେ ତାର ହାତର କରାମତି ମୁହୂର୍ତ୍ତକରେ ଅନୁଭବ କରୁଛନ୍ତି । ମାଆଙ୍କ

Digitized by PPRACHIN, SOA

ଗୁଡରେ ମୁହଁ ଗୁଞ୍ଜୁଛୁ, ଖୁଡ଼ୀଙ୍କ କୋଳରେ ମଥା ରଖୁଛ । ଘଣ୍ଟାଏ ଭିତରେ ହୁଲୁଚ ଲଗାଇ ସୁବ୍ରତ କୁ — ।

ରଣସିଂହେ ଡକେଇଲେଣି ଦ ପହରେ । ମାଆ ବି ତାଙ୍କର ପାଖରେ ଅଛନ୍ତି । ଆଜି ପୁଣି କ'ଣ କାଣ୍ଡ ଘଟିବ ପରା ! କାହିଁକି ଘଟିବ ? ଦୁଇ ଦିନ କାଳ ଚନ୍ଦ୍ରାକର ସେ ସ୍ଥିର କରି ସାରିଛୁ, ଏଣିକି ସେ ବିଦ୍ରୋହ କରିବ । ବଡ଼ଲୋକୀର ଓ ଅଭିଜାତ୍ୟର କୁହେଳିକାକୁ ସେ ଫୁଙ୍କି ଉଡ଼ାଇ ଦେବ । ଏ ଘରକୁ ସେ ରକ୍ଷା କରିବାକୁ ଦୃଢ଼ପଣ କରିଛୁ । ଏ ଘରୁ ଆଳସ୍ୟ ଓ ବ୍ୟସନ ହେବ ଦୂର ।

ସୁବ୍ରତର ପାଟି ଶୁଭୁଛୁ । ହୁତୁଭୁଆ ଦିପହର ଖରାରେ ସେ ଧାଇଁ ଆସିଛୁ । ତା ସଙ୍ଗେ ବି ଟିକିଏ ଆଲୋଚନା ଲୋଡ଼ା ।

ସୁବ୍ରତ ତଳକୁ ଓହ୍ଲାଇଲା । ସୁବ୍ରତ ଖୁଡ଼ୀଙ୍କ ପାଖରେ ଗେଲ ହେଉଛୁ । ଖୁଡ଼ୀ ଅଞ୍ଚଳରେ ତାର ମୁହଁରୁ ଝାଳ ପୋଛୁ ଦେଉଛନ୍ତି । ଆଖି ଛଳଛଳ କରି କହୁଛନ୍ତି, କି ସରି ହେଲଣି ବାପ, ମୁହଁ ତ ଶୁଖି କଳାକାଠ ହେଲାଣି । ହାତରେ ଶିରା ଦଉଡ଼ି ବଳି ହେଉଛୁ । ଗୁଡରେ ଗଣି ହେଲାଣି ବଦାକାଠି । କାହିଁକି ଏ ବୁଦ୍ଧି ଧରିଛୁ ? ତମର ନାହିଁ କ'ଣ ? ଛି, ମୋ ବାପ, ଛି, ମୋ ଧନ, ଫେରିଆସ ଘରକୁ । ବାବନାଭୂତ ପରି ପଦାରେ ବୁଲ ନା…

ମତେ ଟଗଲ କରିବୁ ନାଇଁ ଖୁଡ଼ୀ ?

ନାଇଁ ମୋ କଥା ମାନିବ ତ କହ ।

ସୁବ୍ରତ ଦ୍ୱାରବନ୍ଧ ପାଖେ ଅଟକି ଠିଆହେଲା । ତାର ମନ ବିଗଳିତ ହୋଇଛୁ । ଖୁଡ଼ୀ କେତେ ଭଲପାଆନ୍ତି ସୁବ୍ରତକୁ । ପଲଙ୍କ ଉପରେ ପାଖରେ ବସାଇ ଗୋଟିଏ ହାତରେ ପିଠି ଆଉଁଷି ଦେଉଛନ୍ତି । ଆର ହାତରେ ପଙ୍ଖାଧରି ବିଞ୍ଚୁଛନ୍ତି । ଦୁଇ ଆଖିରେ ଛଳଛଳ ଲୁହ । ସୁବ୍ରତ ଉପରେ କାହାର ଦୃଷ୍ଟି ପଡ଼ୁ ନାହିଁ । ସେ ଆଗ୍ରହରେ ପଚାରିଲା । ଶୁଣିଲ — ?

ମତେ ତୁ ଭଲ ପାଉ ନାହିଁ ଖୁଡ଼ୀ ?

ନା, ମୂର୍ଖଆଟାକୁ ମୁଁ ଭଲ ପାଏ ନାଇଁ ।

କାହିଁକି ସେ ?

ଆଉ କ'ଣ ହସିବ ? ପୁଅ ଯଦି କଥା ନ ମାନିଲା ସେ କି ପୁଅ ? ଦେଖ ତ ସୁବ୍ରତକୁ । ସେଇ ମୋର ଗେହ୍ଲାପୁଅ । ବଂଶର ମର୍ଯ୍ୟାଦା ସେ ରଖିଛୁ । କେତେ ପାଠ ପଢ଼ିଲେ, ସରକାରୀ ଚାକିରି ପାଇଲେ । କାଲି ଗୁଣ୍ଡ ପଥର ଦିନ ବାହାଘର ହେବ । ଘରକୁ ଆମର ବୋହୂ ଆସିବ । କେଡ଼େ ଖୁସି କଥା ।

ମୁଁ ସେ ମୂର୍ଖଟା ଖୁଡ଼ୀ ।

ଏତେ ମୋ ସୁବ୍ରତ ପୁଣି ମୂର୍ଖ ? କଲେଜରେ ସିନା ପାଠ ପଢ଼ି ନ, କେଉଁ ପାଠ ତମକୁ ନ ଜଣା ? ତମ ପାଇଁ କେଡ଼େ ସୁନ୍ଦର ବୋହୂ ମୁଁ ଆଣିବ ।

Digitized by PPRACHIN, SOA

ମୂର୍ଖଙ୍କୁ ମୂଲ୍ୟଆଣଙ୍କୁ କେହି ହିଂସା ଦେବେ ନାହିଁ। ଖୁଡ୍ଡୀ ମା, ବାପ ମୋର ରଜା, ମାଆ ମୋର ରାଣୀ, ସେମାନଙ୍କର ବଡ଼ପୁଅ ମୋର ବଡ଼ଭାଇ ଯୁବରାଜ। ରଜା ହେବେ ସେଇ। ରାଜ୍ୟ ଗଲେ ବି ଶବ୍ଦ ଶବ୍ଦ ମାଣ ଜମି ପଡ଼ିଛି। କେତେ ଅନାବାଦୀ ଅନୁର୍ବର ପଡ଼ିଆ ପୋଖରୀ ବୃଥାରେ ନଷ୍ଟ ହେଉଛି। ଏତେ ବଡ଼ ରାଜପ୍ରାସାଦ କେତେ ଘର କେତେ ସମ୍ପତ୍ତି। କ୍ଷତିପୂରଣ ଟଙ୍କା। ତୋର କ'ଣ ଅଛି ? ମୋ'ର କ'ଣ ଅଛି ? ଖୋରାକ ପୋଷାକ। ସେମାନଙ୍କର ଦୟା। ସେମାନଙ୍କର ହାତ ଟେକା।

ଈର୍ଷା ହେଉଛି କି ପୁଅ ?

ନାହିଁ ମ ଖୁଡ୍ଡୀ। ଲୋକେ ଏଇଆ କହନ୍ତି। କୁଳର ଏଇଆ ପ୍ରଥା। ଆଜି ନୁହେଁ ଯେ ଚିରଦିନ। ଦିନେ ମୋ ମନରେ ଈର୍ଷା ପଶିଥିଲା। ଶୁଣିଲି କେତେ କଥା — ରାଜ୍ୟ ଲୋଭରେ, ସମ୍ପତ୍ତି ଲୋଭରେ କେତେ କେଉଁଠି ରଜା-ଜମିଦାରମାନଙ୍କର ସାନ ପୁଅମାନେ କୌଶଳରେ ଚକ୍ରାନ୍ତରେ ବଡ଼ ଭାଇମାନଙ୍କୁ ମରେଇ ଦେଇଛନ୍ତି, ରଜା-ଜମିଦାର ହୋଇଛନ୍ତି। ଶୁଣିଲାବେଳେ ମୋ ଦେହ ଚମକି ଉଠେ। ମୋ ଭାଇର ରୂପ ମୋ ଆଗରେ ଠିଆ ହୁଏ। କାନ୍ଦ ମାଡ଼େ ମୋତେ। କେମିତି ସେମାନଙ୍କର ମନ ବଳେ ? ଛାର ଧନସମ୍ପତ୍ତି ପାଇଁ ?

ଶୁଣ ହ ସୁବ୍ରତ।

ଶୁଣ। ସେ ଧନସମ୍ପତ୍ତି କଅଣ ହୁଏ ? ଖରଚ ହୁଏ ସୁଖ ଓ ଆନନ୍ଦରେ ! ସେ ସୁଖ ଓ ଆନନ୍ଦ ପୁଣି କଅଣ ? ଅନ୍ୟାୟ ଅନୀତି ! ସେଇ ତ ବଡ ଆଦର୍ଶ ମରଣ। ଦେଖିଲେ ବୁଝିବୁ ମୋ ଖୁଡ୍ଡୀ, ସେଇ ଗରିବ ଚାଷୀ, ସେଇ ଗରିବ ଶ୍ରମିକ ଖଣ୍ଡିଆ ଚାଳତଳେ, ଅଭାବ ଅନଟନ ମଝିରେ କେତେ ଖୁସି ଆନନ୍ଦରେ ଥାଏ। ନିଜ ଦେହରୁ ଝାଳ ନିଗାଡ଼ ଯାହା ଉତ୍ପାଦନ କରେ ତାକୁ ଖାଇଲା ପିନ୍ଧିଲାବେଳେ ସେ ସ୍ୱର୍ଗସୁଖ ପାଏ। ଖୁଡ୍ଡୀ, ଏଇ ଯେଉଁ ଦାମିକା ଶାଢ଼ୀ ତୁ ପିନ୍ଧୁଛୁ ସେଥିରୁ ସୂତା ଖିଏ ତୁ କାଟିଛୁ କି ? ସେଇ ଯେଉଁ ଗାଁଘରର ବୋହୂଟି ବାଡ଼ିରେ କପାଗଛ-ଟିଏ ପୋତିଲା। ପୁଅଠୁ ବଳି ସ୍ନେହ କରି ବଢ଼େଇଲା। କପା ତୋଳି ଅରଟରେ ସୂତା କାଟିଲା, ନିଜ ସୂତାରେ ବୁଣା ଲୁଗା ନିଜେ ପିନ୍ଧିଲା, କେତେ ଆନନ୍ଦ ହେଲା ସେ କହିଲୁ ?

ତମେ ବାଇଆ ହେଲଣି।

ମୁଁ ମୋର ରଜା ହେବି ମ। ନିଜେ ପରିଶ୍ରମ କରିବ। କୁଡ଼ିଆ ତୋଳିବ। ଜମି ଚାଷ କରିବ। ଫସଲ କରିବ। ମୋ ପରିଶ୍ରମ, ମୋ ଦେହର ଝାଳ ମୁଁ ଭୋଗ କରିବ। ଯେଉଁମାନଙ୍କୁ ମୁଁ ସାହାଯ୍ୟ କରୁଛି, ସେଇମାନେ ମତେ ସାହାଯ୍ୟ କରିବେ।

କଲଣି କଏ ସବୁ ?

କାହିଁକି କରିବ ଏବେ ? କୋଠ ଘରେ ତ ଚଳିଯାଉଛି। ପଇସା ଦେଇ ଠାକୁର ପ୍ରସାଦ କିଣି ଖାଉଛି। ଘର କଲେ ରାଜପ୍ରାସାଦ ଛାଡ଼ି ତୁ ମୋ ପାଖେ ରହିବୁ ?

Digitized by PPRACHIN, SOA

ଫସଲ କଲେ ମୋ ପାଇଁ ତୁ କ୍ଷେତ ଉଅଣ ନିଜ ହାତରେ ରାନ୍ଧିବୁ ? ମୋଠୁ ଯଦି କାମିକା ବୋହୂ ଆଣିବାକୁ ମନ କରିବୁ ତ ତୋ କଥା ମୁଁ ମାନିବି । ପାରିବୁ ?

ଛି, ଏ କି କଥା କହୁଛ ? ରଣଗଡ଼ ରାଜବଂଶର ବୋହୂ ମୁଁ, ଉଆସରୁ ପଦାକୁ କାଢ଼ିବ ଗୋଡ଼ ?

ମୁଁ ଜାଣେ, ତୁ ପାରିବୁ ନାହିଁ ଆଜି । ମତେ ତୁ ଭଲପାଉ ନାହିଁ । ତୋ ଉଆସକୁ ତୁ ଭଲପାଉ ।

ଚଗଲ୍ —

ସୁବ୍ରତର ଗାଲରେ ଖୁଡ଼ୀ ମାରିଲା ସବୁ ଗୁପ୍ତଡ଼ା ।

ସୁବ୍ରତର ଆଖି ହେଲା ଛଳଛଳ । ସୁବ୍ରତକୁ ଖୁଡ଼ୀ ଗେଲ କରିଛନ୍ତି, ବୋକା ନୁହେଁ, ସବୁ ଗୁପଡ଼ା—ଅମୂଲ ମୂଲ । ସୁବ୍ରତକୁ ସେ କେତେ ସ୍ନେହ କରନ୍ତି ସତେ । ଗୁଣ୍ଡ ନ ଖୋଲି ମଧ୍ୟ ଯେପରି ତାଙ୍କର ଅନ୍ତରାତ୍ମା ଉଲ୍ଲାସରେ କହୁଥିଲା, ଯିବ ତୋର ହାତଗଢ଼ା କୁଡ଼ିଆ ଘରକୁ ରେ ସୁବ, ତୋର ଝାଳନିଗିଡ଼ା ଅନ୍ନ ମନପ୍ରାଣ ଦେଇ ରାନ୍ଧି ଅମୃତ କରିବ, ଆଉ ସେଇ ଅମୃତକୁ ବସିହେଁ ଖାଇବା । ସୁବର୍ଣ୍ଣ—ପ୍ରଥମା ବୋହୂ ଅଣିବ ମୋ ସୁବ୍ରତ ପାଇଁ; ଲହୁଣୀ-ପିଣ୍ଡୁଳା ହୋଇ ନ ଥିବ ସେ, ହେଇ ନ ଥିବ ଫୁଲରାଣୀ । ଛେଲ୍ସ ପିଟା କାମିକା ଝିଅଟି । ଧନ ଦଉଲତ ଟୀକା ଯୌତୁକ ଯାହାର ହାତ ପାପୁଲିର କର୍ମନିପୁଣତାରେ ଥିବ । ଫୁଲରାଣୀ ହୋଇ ସେ ଶେଯସୁପାଠପରି ବୋଲରେ ଝୁଲିବ ନାଇଁରେ ବାବୁ, ଝୁଲି ଝୁଲି ଯା'ର ଅଳସ ଆଖିପତାକୁ ଚହଟା ନିଦ ଓଜନରିକା, ଛପିଛପିକା ଆସୁ ଆସୁ ଟିକଏ ଶବଦ ଶୁଣି ଓଷ ପଳାଉଥିବ । ଉଁହୁଁ, ସେମିତିକା ବୋହୂ ନୁହେଁ । ହଁହଁ, ଏମିତିକା ବୋହୂ । ଯିଏ ଲୋଟଣୀ ପାରା-ପରି କାମ କରୁ କରୁ ଲେଟି ଯାଉଥିବ ରେ, ଅଳସ, ଅଶୁଭ, ଅସଙ୍ଗତ ଅସନା କଥା ଭାବି ଛଟପଟ ଓହ୍ଲାଳବଳନ ହେବାକୁ ଯା'ର ତର ନ ଥିବ, ଯିଏ ଖାଲି ଭାବୁଥିବ କେମିତି ସୁରୁରୀ କାମ କରିବ, ସମସ୍ତଙ୍କୁ ସୁଙ୍କଶାନ୍ତିରେ ମନ ଖୁସିରେ ରଖିବ; ଆରେ ବାବୁ, ଏମିତିକା ବୋହୂ ଆଣିବ ଯାହାର ଦେହ ଓ ବସନର ବାସ ମନ ହରଷ କରିବ ନାହିଁ ଖାଲି, ଯାହାର ନିର୍ମଳ ସରଳ ସ୍ୱଚ୍ଛ ମନର ପବିତ୍ର ମହକ ଅତ୍ମାକୁ କରିବ ହରଷିତ, ସୁବାସିତ । ସେଇ ମୋର କୋଳରେ ଝୁଲିବ ରେ ସୁବ, ଯାହାକୁ ଶାନ୍ତ ଦେବାକୁ ଘୋଟିଆସିବ କ୍ଲାନ୍ତହରା ନିଦ, ଦୁନିଆର ଛନକା ଶବଦ ମାନିବ ନାହିଁ । ସେଇ ହେବ ମୋର ଦୁଃଖପାସୋରା ବୋହୂ;—ଆରତ ନୁହେଁ କି ଆହୁତ ନୁହେଁ ।

Digitized by PPRACHIN, SOA

ସୁବ୍ରତଙ୍କୁ ସେ ଯାହା ପସ୍କୃଶବ ବୋଲି ମନେ କରଥିଲେ ତାଆର ଉତ୍ତର ସେ ଶୁଣି ସାରଛନ୍ତି—ମୋ ପରଶ୍ରମ, ମୋ ଦେହର ଝାଳ ମୁଁ ଭୋଗ କରିବି । ଉତ୍ତରଙ୍କା ନିଜେ ହିଁ ବଜ୍ରବାହୁର ପ୍ରଶ୍ନର ଚଳନ୍ତି ମୀରବ ଉତ୍ତର ।

ନାଥିଆ ଆସୁଛି । ପିତା ପୁଣି ଡକେଇ ପଠେଇଲେଣି । ତାଙ୍କର ସବୁ କଥାର ଉତ୍ତର ସେ ସହଜରେ ଦେଇ ପାରିବ । ଯାହା ସେ ସ୍ଥିର କରିଛି ସେଥିରୁ ସେ ଦୁରେଇ ଆସିବ ନାହିଁ ।

ସୁବ୍ରତ ଉପର ଝଞ୍ଜାକୁ ଗଲା । ମଝି ଝଞ୍ଜାର କଡ଼ ଧାଉଡ଼ିଆଡ଼ୁ ଗୁଣୁ ଗୁଣୁ ଗୀତ ଶୁଭୁଛି । ହଜାର କଣ୍ଠ ଲକ୍ଷ ସ୍ୱର । ଯମୁନାର ସ୍ୱର ମିଶିଛି ସେଥିରେ । ସେ ସନ୍ଧ୍ୟାକୁ ଢୋଲ ଝୁଲଉଛି ଉଦୁଉଦୁଆ ଢ଼'ପ୍ରହରେ, ଦୋଳଗୀତ ଶିଖାଉଛି । ଧନ୍ୟ ଧନ୍ୟ ଏ ଶିକ୍ଷା, ଏ ଆତ୍ମଚାଞ୍ଚଲ୍ୟ !

ଆହା, ସୃଷ୍ଟି ଭିତରେ ଏ ସବୁ କପର ବଦଳି ପାରନ୍ତା କି, ସୁବ୍ରତର ସ୍ୱପ୍ନ ସଫଳ ହୁଅନ୍ତା ! ପ୍ରକୃତ ସୁଖଶାନ୍ତି ଓହ୍ଲାଇ ଆସନ୍ତା ! ସମସ୍ତଙ୍କର ସୁଖ ଆନନ୍ଦ ଦେଖି ସମସ୍ତେ ହୁଅନ୍ତେ ସୁଖୀ ! ଅନ୍ୟର ଶ୍ରମର ଫଳ ଐଶ୍ୱର୍ଯ୍ୟ ଦେଖି ମନରେ ହେଉଥାନ୍ତା ଈର୍ଷା – ଐଶ୍ୱର୍ଯ୍ୟ ପାଇଁ ନୁହେଁ, ନିଜର ଅପାରଗତା ପାଇଁ । ବାଦବୁଦିଆ ମନ ଶିଖିବାକୁ ଓ ଶ୍ରମର ପୂର୍ଣ୍ଣ ପ୍ରୟୋଗ କରି ଐଶ୍ୱର୍ଯ୍ୟର ବୃଦ୍ଧି ପାଇ ଆକୁଳ ହୁଅନ୍ତା, ପରର ଶ୍ରମ ଶୋଷଣ କରି ନୁହେଁ, ନିଜର ଶ୍ରମର ଉତ୍ପାଦନ ଶକ୍ତି ବଢ଼ାଇ ।

ରଣସିଂହେ ଚକିତ ହୋଇ ଗ୍ୱହିଁଲେ ସୁବ୍ରତକୁ । ଚଉକି ଉପରେ ଆଗରେ ସେ ସେମିତ ବସି ହେଉଛି । ଡବ ଡବ କରି ଅନେଇଛି ତାଙ୍କର ଆଡ଼କୁ । ତା ପାଖ ଆସନ ଚୌକିରେ ପଥରମୂର୍ତ୍ତି ପରି ନିଶ୍ଚଳ ହୋଇ ବସି ରହିଛନ୍ତି ମଂଜୁଳା । ଚକ୍ଷୁରେ ସତେ କି ପଲକ ନାହିଁ ! ଗ୍ୱହିଁଛନ୍ତି ଏକ ଦୃଷ୍ଟିରେ । ସେ ମଧ୍ୟ ସୁବ୍ରତର ଅପ୍ରତ୍ୟାଶିତ ଅସମ୍ଭବ କଥା ଚିନ୍ତା କରୁଛନ୍ତି ।

ସୁବ୍ରତ—ଉପରେ ପଢ଼ ଉନେ ସେ କଥା କହେ ନାହିଁ । ପିତାମାତାଙ୍କର ଆଦେଶ ଅମାନ୍ୟ କରେ ନାହିଁ । କେବେହେଲେ ଅବାଧ ହୋଇ ନାହିଁ । ରଣସିଂହଙ୍କର ପ୍ରତକଥାରେ ଆଜି ସେ ପ୍ରତିବାଦ କରିଛି । ସ୍ୱପ୍ନରେ ଚିନ୍ତା କରି ନ ଥିବା ପ୍ରସ୍ତାବ ସେ ବାଢ଼ିଛି । ତାହାର କୁଶିକ୍ଷାରେ ସେ ପଡ଼ିଛି ।

ମହାପାତ୍ରଙ୍କୁ ମୁଁ ଜବାବ୍ ଦେଇ ସାରିଛି ।

ସୁବ୍ରତ ନିରୁତ୍ତର । ମନର କଥା ସେ କହି ଦେଇ ସାରିଛି । ବହୁ ଅସ୍ଥିରତା, ଉତ୍ତେଜନା ଓ ଦୋଦୁଲ୍ୟମାନ ଭାବନା ପରେ ସେ ଯେଉଁ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଛି, ସେଇ କଥା ହିଁ ତ କହିଛି ।

Digitized by PPRACHIN, SOA

ରଣସିଂହେ ପୁଣି କହିଲେ, ମହାପାତ୍ରେ ପନ୍ଦର ହଜାର ଟଙ୍କା ଟୀକା ଦେବାକୁ ସ୍ୱୀକାର କଲେ । ମୁଁ ତାଙ୍କୁ ପକ୍କା ଜବାବ ଦେଇଛି । ବାହାଘର ଆୟୋଜନ କରିବାକୁ ଲାଗିଲେଣି । ତୋତେ ଭୁବନେଶ୍ୱର ପଠାଇ ମୁଁ ବ ଆୟୋଜନ କରିବାରେ ଲାଗିଯିବି ।

ବାଇଆ ବୁଝି ଭୁ ଗୁଡ଼ ବାପ—, ମମତା ଦୀର୍ଘଶ୍ୱାସ ଗୁଡ଼ି କହିଲେ, ତୋର ଭଲ ତୋର ସୁଖ ଆନନ୍ଦ ପାଇଁ ଆମେ ସବୁ କରୁଛୁ ।

ତାଙ୍କର ଆଖିରେ ଲୁହ ଛଳଛଳ ହେଲା । ପଣତରେ ଆଖି ପୋଛି ସେ ଅନୁନୟ ହୋଇ କହିଲେ, କାହା ଉପରେ ରାଗ ଅଭିମାନ କରୁଛୁ ?

ସୁବ୍ରତର ମନ ନରମିଲା । ସେ ଉତ୍ତର ଦେଲା, ରାଗ ଅଭିମାନ ମୁଁ କରିଛି, ହେଲେ, ସେ ରାଗ ଅଭିମାନ ଦେବତା ଉପରେ ନୁହେଁ, ସେ ରାଗ ମଣିଷ ଉପରେ ନୁହେଁ ।

ରଣସିଂହେ ହସି ଉଠିଲେ । ଉତ୍ସାହିତ ହୋଇ ମମତାଙ୍କୁ ଚାହିଁ କହିଲେ, ଶୁଣିଲ ତ, ତମ ପୁଅଙ୍କର କଥା । ଆଉ ରାଗ ଅଭିମାନଟା ତୋର କାହା ଉପରେ ଶୁଣେ ? ଟଙ୍କା ଉପରେ ? ମହାପାତ୍ରେ ଟଙ୍କା ଦେବାକୁ ରାଜି । ଟଙ୍କା ନେବାଟା ଆମର ଦୋଷ ନୁହେ, ବରଂ ନ ନେବାଟା ଦୋଷ ଓ ନିର୍ବୋଧତା । ଯେତେବେଳେ ଜମିଦାରୀ ସବୁ ଉଠିବାର ପ୍ରଶ୍ନ ପ୍ରଥମେ ସେମାନେ ବିଚାର କରୁଥିଲେ, ଉଠିବ ବୋଲି ଯେଉଁମାନେ ଜାଣିପାରିଥିଲେ ସେମାନେ କଲେ କ'ଣ ? ଯେତେ ଯେଉଁଠି ଯାହାର ଅନାବାଦୀ ଥିଲା—ତୋଟା, ପୋଖରୀ, ପଠା—ସବୁ ବାର ବର୍ଷ ତଳର ପିଚ୍ଛିଲା ତାରିଖ ଦେଇ ଯାହା ପାଇଲେ ସେତକରେ ପଟ୍ଟା କରିଦେଲେ । କେହି କେହି ଲକ୍ଷ ଲକ୍ଷ ଟଙ୍କା ଜମା କରି ଯାଇଛନ୍ତି । ସେମିତି କରି ଟଙ୍କା ଜମାଇ ରଖିବାକୁ ତୁ ମତେ କହିଥିଲୁ ମୋର ମନେ ଅଛି । ସତେ କଅଣ ଜମିଦାରୀ ଉଠିବ, ଏ ବିଶ୍ୱାସ ନ ହେବାରୁ ତୋର କଥା ମୁଁ ଶୁଣି ନ ଥିଲି ।

ମମତା ପଦେ ଟାଣ କଥା କହିବାର ସୁଯୋଗ ପାଇଲେ । କହିଲେ, ତମର ବୁଦ୍ଧି ସେତକ । ପୁଅ କେବେ ଅସଙ୍ଗତ କଥା କହେ ନାହିଁ । ସେମିତ, ଯେତେବେଳେ ରାଗକ୍ଷୀ ଆଇନ୍ ହେବ କି ନ ହେବ କଥା ପଡ଼ିଥିଲା, ରାଜସ୍ୱକ୍ଷୀଙ୍କୁ ଜମି ବିକି ଦିଅ ବୋଲି ସୁବ୍ରତ କହିଥିଲା । ଶୁଣିଲ ନାହିଁ । ତା କଥା ଯଦି କରିଥାଆନ୍ତ ଆଜି ହାତରେ ଦଶ ଲକ୍ଷ କି ପାଞ୍ଚ ଲକ୍ଷ ଆଆନ୍ତା । ସେତକ କଲ ନାହିଁ । ଯାହା ବା ଆସୁଛି ସେତକ ଅବ୍ୟାଜରେ କେମିତ କଅଣ କରି ତମେ ଉଡ଼େଇ ଦେଉଛ ଏକା ତମକୁ ଜଣା ।

ରାଗରେ ରଣସିଂହଙ୍କର ମୁହଁ ନାଲି ଦିଶିଲାଣି । ସୁବ୍ରତ ବୁଝିଲା, ମା ପୁଣି ବିରୁଡ଼ି ବସାରେ ହାତ ମାରିଛନ୍ତି । ବାପା ଏଥର ଚହଟିକ ଉଠିବେ । ପୁଣି ଆରମ୍ଭ ହେବ ଝଗଡ଼ା, ଅଶାନ୍ତି । ସେ କହିଲା, ନାଇଁ ମା, ଟଙ୍କା କଥା କହୁନାହିଁ । ମୋ କଥା

Digitized by PPRACHIN, SOA

ନ ମାନ ବାପା ସେତେବେଳେ ଯାହା କରିଛନ୍ତି ଭଲ କରିଛନ୍ତି । ମହରଣୀ ସମ୍ପତ୍ତି ତ ଗଲା । ଟଙ୍କା କେଇଟା ଆଣି ସାଇତ ରଖିଥିଲେ କେତେ ଦିନ ଚଳନ୍ତା ?

ଶୁଣିଲ ଏବେ, ସୁବ୍ରତ କ'ଣ କହୁଛି ? ମୁଁ କ'ଣ ଧନ ଲୋଭରେ ମହାପାତ୍ରଠୁଁ ପନ୍ଦର ହଜାର ଟୀକା ଆଣିବାକୁ ବସିଛି ? ନା, ସେ ଗୋଟାଏ ମର୍ଯ୍ୟାଦା । ରଣଗଡ଼ ଜମିଦାର ବଂଶ ସୂର୍ଯ୍ୟବଂଶର ଅଂଶ । ଏଇ ବଂଶରେ ଥରେ ଶ୍ରୀରାମଚନ୍ଦ୍ର ଜନ୍ମ ହୋଇଥିଲେ । ମହାପାତ୍ରେ ଏ ବଂଶରେ ବନ୍ଧୁତା ବାନ୍ଧି ଉଚ୍ଚ ଜାତ ହେବାକୁ ମନ କରିଛନ୍ତି— ।

ସୁବ୍ରତ କହିଲା, ଜମିଦାରୀ ତ ଯାଉଛି । ବଂଶ ମର୍ଯ୍ୟାଦାକୁ ବିକି ଟଙ୍କା ଆଣିବା ଲୋଡ଼ା ନାହିଁ । ମୁଁ ଶୁଣିଛି ରାଜା ହରିଶ୍ଚନ୍ଦ୍ର ସୂର୍ଯ୍ୟବଂଶର ରାଜା ଥିଲେ । ସେ ସର୍ବସ୍ୱ ଦାନ କରି ହସି ହସି ବାଟକୁ ଯାଇଥିଲେ । ଜମିଦାରୀ ଉଠିଲେ ବି ଆମର ଏବେ ଶହ ଶହ ଏକର ରସୁତ ଜମି ଅନାବାଦୀ ଓ ନିଜ ଦଖଲ ନିଚାଷ ଜମି ପଡ଼ିଛି । ସେଥିରୁ ଆମର କଡ଼ାକର ଲାଭ ହେଉ ନାହିଁ କି ଅନ୍ୟ କାହାର ଉପକାର ହେଉନାହିଁ । ସେଇଥିପାଇଁ ମୁଁ କହୁଛି, ଆମେ ଯେତକ ଆବାଦ୍ କରି ଫସଲ ଉଠାଇ ପାରିବା ସେତକ ରଖି ବାକିତକ ଦୁଃଖୀ ମୂଲିଆଙ୍କୁ ଦାନ କରିଦେବା । ମହାପାତ୍ରଙ୍କ ଝିଅଙ୍କୁ ଯଦି ବୋହୂ କରି ଆଣିବେ ତ ଆଣନ୍ତୁ କିନ୍ତୁ ବଂଶ ମର୍ଯ୍ୟାଦାକୁ ବିକି ଟଙ୍କା ଆଣନ୍ତୁ ନାହିଁ । ଘୁର କିରାଣି ଚାକିରିଟାଏ କରିବାକୁ ମୁଁ ଭୁବନେଶ୍ୱର ଧାଇଁଯିବାକୁ ଚାହେଁ ନାହିଁ । ପେଟ ପୋଷିବା ପାଇଁ ପରିଶ୍ରମ କରିବାକୁ ହେବ । ଆମର ଯେତେ ଜମି ଅକାମୀ ପଡ଼ିଛି ସେଥିରୁ କିଛି ହାତରେ ଚାଷ କଲେ ଆମର ଅଭାବ ରହିବ ନାହିଁ ।

ହଇ ରେ, ମୂଲିଆଙ୍କୁ ଯଦି ଜମିଦାନ କରିବା, ସେମାନେ ଚାଷବାସ କରି ସୁଖରେ ରହିବେ । ସେଥି ହାତରେ ଯିଏ ହେବେ ଚଉଦ ପା । ତମ କଥା ଶୁଣିବ କିଏ ? ତମ ଜମି ଚାଷ କରିବ କିଏ ? ଗାଈ ବଳଦ ଜଗିବାକୁ କି ବାସନ ମାଜିବାକୁ ଲୁଗା ଧୋଇବାକୁ ବି ଲୋକ ମିଳିବେ ନାହିଁ ।

ରଣସିଂହଙ୍କ ସାର କଥା ଶୁଣି ମମତା ମୁଣ୍ଡ ଟୁଙ୍ଗାରି ସମର୍ଥନ ଜଣାଇଲେ । କହିଲେ, ଯେତେ ବଡ଼ ହେଲେ କି ଯେତେ ପାଠ ପଢ଼ିଲେ ବି ସୁବ୍ରତର ପିଲାବୁଦ୍ଧି ଯାଇ ନାହିଁ ।

ହୁଁ । ହଇ ରେ, ଜଗନ୍ନାଥ ମନ୍ଦିର କି ଭୁବନେଶ୍ୱର କୋଣାର୍କ ମନ୍ଦିର କି ଏସିଆରେ ଯେତେ ଯେଉଁଠି ବଡ଼ କାମ ହୋଇଚି ସେ ସବୁ କ'ଣ ରାଜା ମହାରାଜା-ମାନେ କରିଛନ୍ତି ? ଘର କୋଠାଘର କଲବେଲକୁ ମାଲିକ ଇଟା ଖଣ୍ଡେ ନେଇ ସେଥିରେ ଥୋଇଛି କେବେ ? ସବୁ କରିଛନ୍ତି ଏଇ ମୂଲିଆ, ମଜୁରିଆ, ମିସ୍ତ୍ରୀ । ମୁଣ୍ଡ-ଝାଳ ଗୋଡ଼ରେ ମାରି ନିଜର ଓ ସେମାନଙ୍କର ପିଲାଛୁଆଙ୍କର ପେଟ ପୋଷିବାକୁ, ଧନ ଯଥା ସୁଖରେ ରହିବାକୁ ସେମାନେ ସବୁ କରନ୍ତି । ସେ ଠେଙ୍ଗା ଧରି କରାଏ, ମୂଲ

Digitized by PPRACHIN, SOA

ହେଏ, ତାର ନାମରେ ପତାକା ଉଡ଼େ । ଆରେ ପୁଅ, ଆମ ପୂର୍ବପୁରୁଷେ ନିର୍ବୋଧ ନ ଥିଲେ । ସବୁ ମୂଲିଆ ଯଦି ସୁଖରେ ଥାଆନ୍ତେ ଦୁନିଆରେ କେଉଁଠି କିଛି ବଡ଼ କାମ ହୋଇ ପାରି ନ ଥାନ୍ତା କି ହେବ ନାହିଁ ଭବିଷ୍ୟତ୍‌ରେ ।

ଟିକିଏ ଚିନ୍ତା କରି ସୁବ୍ରତ କହିଲା, ମୋର ଗ୍ଳାନି ଓ ଅଭିମାନ ସେଇ ଅତୀତ ଯୁଗ ଉପରେ ବାପା । କେଉଁଟା ବଡ଼ କାମ କେଉଁଟା ଶ୍ରେଷ୍ଠ କାମ ସେମାନେ ସେତେବେଳେ ଜାଣି ନ ଥିଲେ । ବଡ଼ ମନ୍ଦିର, ବଡ଼ କୋଠା, କି ସ୍ତମ୍ଭଟା ବଡ଼ କାମ କି ମଣିଷର ଦୁଃଖ ଦୂରକରି ତାକୁ ଭଲରେ ସୁଖ ଆନନ୍ଦରେ ରହିବାକୁ ସୁଯୋଗ ଦେବା ବଡ଼ କାମ, ସେତେବେଳେ ସେମାନଙ୍କୁ ଜଣା ନ ଥିଲା । ଲୋକେ ଯଦି ଭୟଭୀତ ହୋଇ ରହି ନ ଥାନ୍ତେ, ସମସ୍ତେ ଯଦି ସମସ୍ତଙ୍କର କପରି ଭଲ ହେବ, କେମିତି ସମସ୍ତେ ସୁଖରେ ରହିବେ ସେହି କଥା ବସ୍ତୁରୁ ଥାଆନ୍ତେ, ସମସ୍ତେ ମିଳାମିଶି ସମସ୍ତଙ୍କର ମଙ୍ଗଳ ପାଇଁ ଆହୁରି କେତେ ବଡ଼ ବଡ଼ କାମ କରି ଥାଆନ୍ତେ । ସେ ଯୁଗ ଯାଇଛି । ଏ ଯୁଗରେ ଯାହା ଅନିବାର୍ଯ୍ୟ ତାହା ହିଁ ଘଟିବ । ସମସ୍ତଙ୍କୁ ସୁଖରେ ରହିବାର ସୁଯୋଗ ଦେଲେ ସମସ୍ତଙ୍କର କଲ୍ୟାଣକର କାର୍ଯ୍ୟ କରିବାକୁ ସମସ୍ତେ ଖୁସିରେ ଆଗେଇ ଆସିବେ ।

ନିର୍ବୋଧ !

କାଲି ଯଦି ଆଇନ୍ ହୁଏ ଯେ ଯେତେ ଯେଉଁଠି ଯାହାର ଅନାବାଦୀ ଭୂଇଁ ପଡ଼ିଥିବ ସବୁ ସରକାର ବାଜ୍ୟାପ୍ତ କରିନେବେ ?

ଡରିଲା ଆଖିରେ ମମତା ପଚାରିଲେ, ଏମିତିକା ଆଇନ୍ ହେଉଛି କି ?

ଆଇନ୍ ତ ଦେଶର ଲୋକେ କରୁଚନ୍ତି । ଯାହା କଲେ ଲୋକଙ୍କର ଉପକାର ହେବ ସେ କଥା ଲୋକେ ବୁଝିଲେଣି ।

ରଣସିଂହେ ଗର୍ଜି ଉଠିଲେ, ସେମାନେ ଚୋର, ସେମାନେ ଡକାୟତ ।

ଆମକୁ ସେମାନେ ସେଇଆ ମଣିଛନ୍ତି ବାପା । କ୍ଷତିପୂରଣ ଧନ ଦେବା ନ ଦେବା ବି ତାଙ୍କର ଇଚ୍ଛା ଓ ଦୟା ଉପରେ ନିର୍ଭର କରେ ।

ରଣସିଂହଙ୍କର ଧୈର୍ଯ୍ୟ ଭାଙ୍ଗିଲା । ସେ ଚହଙ୍କି ଉଠିଲେ । ଟେବୁଲ୍ ଉପରେ ବିଧା ମାରି ସିଂହ ପରି ଗର୍ଜି ଉଠିଲେ, କୁଳାଙ୍ଗାର, ଚାରି ଅକ୍ଷର ଇଂରେଜି ପଢ଼ି ନିଜକୁ ବଡ଼ ଜ୍ଞାନୀଟାଏ ବୋଲି ଠଉରେଇଛୁ ନା ? ଆଇନ୍, ଆଇନ୍ କିଏ ମତେ ଡ଼ରେଇବୁ ? ଆଇନ୍ ଯେତେବେଳେ ଯାହା ହେବ । ତା ବୋଲି ବଣଗଡ଼ର ରଣସିଂହେ ଆଗରୁ ଯାଇ ଛୋଟଲୋକଙ୍କ ଶରଣ ପଶିବେ ? ଲଙ୍ଗଳ କଣ୍ଠରେ ହାତ ଦେଇ ପାଞ୍ଚଣ ଧରି ହଳ ଛଡ଼ କରିବେ ? ରକ୍ତମାଟିର ଜେମା ତୋର ମା . ଆଇନ୍‌କୁ ଡରି ବାସନ ମାଜିବେ, ଲୁଗା ଧୋଇବେ, ନଳା ସଫା କରିବେ ? ହଇ ରେ, ଏ ବୁଦ୍ଧି ମତେ ତୁ ଶିଖେଇବୁ ? ମୋ କୁଳର ଯିଏ ବୋହୂ ହୋଇ ଆସିବ, ସେ ଦୋଳାରେ

Digitized by PPRACHIN, SOA

ଖେଳିବ ନା ଢିଙ୍କିଶାଳରେ ପଶି ଧପଡ଼ କରିବ ? ପବିତ୍ର ସୂର୍ଯ୍ୟବଂଶର ରକ୍ତ ଯାହା ଦେହରେ ଥିବ ତାର ଏପରି ଶ୍ରେଷ୍ଠପଣିଆ ଆସିବ କେମିତି ?

ମମତା କଟମଟ କରି ଚାହିଁଲେଣି ରଣସିଂହଙ୍କୁ । ମନ ତଳା ପକାଇଲଣି— ପୁଅଟା ଆଗରେ ମତେ ଅପମାନ ଦେଉଛ ? ସୋମବଂଶର ଝିଅଟି ମୁଁ, ଯେଉଁ ବଂଶରେ ମାନଗୋବିନ୍ଦ ଦୁର୍ଯ୍ୟୋଧନ ଜନ୍ମ ହୋଇଥିଲେ । ସବୁ ପଡ଼ନ୍ତ ଗଲା, ନିଜେ ପଛେ ମଲେ, ଛୁଞ୍ଚି ଅଗରେ ଭୂମି ଟିକେ ଦେଲେ କି ପାଣ୍ଡବଙ୍କୁ ? ତମ ରକ୍ତରେ ସୂର୍ଯ୍ୟ-ବଂଶର ରକ୍ତ ଅଛି କି ନାହିଁ କିଏ ଜାଣେ ?

ସୁବ୍ରତ ଉତ୍ତର ନ ଦେଇ ଠିଆହେଲେ । ସେ ଅଶାନ୍ତି ସୃଷ୍ଟି କରିବାକୁ ଚାହେଁ ନାହିଁ । ସେ ବାଧ୍ୟ ଶିଶୁ ପରି କିଛି ବିଚାର ନ କରି ପିତାଙ୍କର ଆଦେଶ ମାନିବାକୁ ଚାହେ ନାହିଁ । ସେ ତାର ଖିଆଲ କାମ କରିବ ।

ମମତା କହିଲେ, ସୁବ୍ରତ—

କଅଣ ମା' ?

ମୋତେ ତୁ ବାସନ ମଜେଇବୁ, ନାଳ ସଫା କରେଇବୁ ?

କରିବ ନାହିଁ ତ, ଯୋଗ୍ୟପୁତ୍ର କାହିଁକି ଜନମ କରିଛ ? ରଣସିଂହେ ରାଗ ଓ ତାଚ୍ଛଲ୍ୟରେ କହିଲେ, ସେଇଟା ତ ଛତରା ହେଲା, ମାନ ସମ୍ଭ୍ରମ ଆମର ତ'କଡ଼ା କରି ଧୋଇଲା ଭଳିଆ, ଏଇଟାକୁ ପାଠ ପଢ଼େଇଥିଲି ସେ ବୁଦ୍ଧି ଦେଖ !

ମା, ପ୍ରିୟ ତମର ବୋଲୁ ହେବ—

ସେ କରିବ ଶ୍ରେଷ୍ଠ କାମ ?

ସବୁ କାମ ବଡ଼ ମା, କେଉଁ କାମ ଶ୍ରେଷ୍ଠ ନୁହେଁ । ଏତେ ସମସ୍ତ ନଷ୍ଟ କରି ଏତେ ଦିନ ଘୋଷି ଘୋଷି ମୁଁ ଗଣ୍ଡମୂର୍ଖ ହୋଇଥିଲି । ତୋର ଗେହ୍ଲାପୁଅ ସୁବ୍ରତର କାମ ଦେଖି ମୁଁ ବୁଝିଲି, ମୁଁ ତା'ର ଶ୍ରେଷ୍ଠ ଭାଇ, ବଡ଼ ଭାଇ ନୁହେ । ଆମେ କାହାକୁ କିଛି ନ ଦେଇ, ସମସ୍ତଙ୍କଠାରୁ ଆଣି, ରାଜନଅରରେ ରହି ରାଜ୍ୟ ଓ ମାନ ହରେଇ ଭିକାରି ହୋଇଛୁ ମା' । ତୋର ଯୋଗ୍ୟପୁତ୍ର ସୁବ୍ରତ ଆଜି ରଜା ହୋଇଗଲେ, ସବୁ ଦେଇ ସେ ସବୁ ପାଇଛି । ସମସ୍ତଙ୍କୁ ସୁଖୀ କରିବାକୁ କୋଡ଼ି ଟାଙ୍ଗିଆ ଧରି ଦେହରୁ ଝାଳ ଗଡ଼େଇ ନିଜେ ହୋଇଛି ସୁଖୀ । ସେ ଆଗରେ ଚାଲିଲେ, ପଛରେ ତାର ରଣଗଡ଼ର ସବୁ ପାଗଳ ଟୋକା ଗୋଡ଼େଇ ଯାଉଛନ୍ତି । ଯେଉଁମାନେ ଯାଉ-ନାହାନ୍ତି, ସେମାନଙ୍କର ମନ ଗୋଡ଼େଇଛି ତାର ପଛେ ପଛେ । ରଣଗଡ଼ର ଯୁବରାଜ ନୁହେ ଲୋ ମା, ରଜା ହୋଇଛି ସୁବ୍ରତ । ମୋର ଈର୍ଷା ହେଉଛି—

ମୂଲିଆ ହେବୁ ତୁ, ରଣଗଡ଼ର ଯୁବରାଜ ?

ଶୁଣ ତମ ପୁଅଙ୍କର ବୁଦ୍ଧି ?— ରଣସିଂହେ କହିଲେ ।

ମୂଲିଆ ଯଦି ହୋଇ ପାରନ୍ତି—

Digitized by PPRACHIN, SOA

ଏତେବେଳକେ ମମତା ଗର୍ଜିଉଠିଲେ, ସତେ ତ, ତତେ ଦୁର୍ବୁଦ୍ଧି ଘୋଟିଲାଣି । ତୋଓର ଭଲ, ତୋଓର ଆନନ୍ଦ ପାଇଁ ଯାହା ଆମେ କହୁଛୁ, ତୁ ବାଧା ଦେଉଛୁ । ଏ ସବୁ ଭଲ ପିଲାର ଲକ୍ଷଣ ନୁହେଁ । କେତେବେଳେ କଅଣ ହେବ ବୋଲି ଆଜଠାରୁ ଆମେ ବସି ବାହୁନିବା କରେ ? ସୁବ୍ରତ ଶ୍ରେଷ୍ଠଲୋକଙ୍କ ସଙ୍ଗେ ମିଶିଲା, ତୋର ମୁହଁ ଦେଖି ଆମେ ସେ ଦୁଃଖ ସହିଲୁ । ତୁ ଯଦି ସେମାନଙ୍କ ସଙ୍ଗେ ମିଶୁ ତ ଆମର ଜୀବନ ଧରି ବଞ୍ଚିରହିବା ଅକାରଣ ହେବ । ତୁ ଆଉ ଅବାଧ ହ'ନା ବାପ !

ସୁବ୍ରତ ଘର ଭିତରୁ ପଦାକୁ ବାହାରି ଆସିଲା, କଣେଇଁ ଚାହିଁଲା । ଦେଖିଲା, ପିତାଙ୍କର ଦୁଇ ଆଖିରେ ପ୍ରଳୟ ନିଆଁ ଜଳୁଛି । ମାତାଙ୍କର ଆଖିରେ ବେଦନାର ସିନ୍ଧୁ ହିଲୁଛି ।

କ୍ଷଣ କ୍ଷଣ କରି ସେମାନେ ଆସିଛନ୍ତି, ପୁଣି ଫେରି ଯାଇଛନ୍ତି ରୂପଲେଖା ପ୍ରବର୍ତ୍ତକ ଦଳ । ନୂଆ କଥା କିଛି ନାହିଁ । ଇତିହାସ ସେ ଜାଣେ । ଗଳ୍ପ ଉପନ୍ୟାସ ସେ ଅନେକ ପଢ଼ିଛି; ବିଭିନ୍ନ ଦେଶର କଥା, ବିଭିନ୍ନ ଭାଷାରେ ଲେଖା କେତେ କାହାଣୀ ସେ ଶୁଣିଛି, କେତେ ଘଟଣାର ଛାପ ମନରେ ଧରିଛି । ଯେଉଁମାନେ ତାର ସଙ୍ଗିମା ଥିଲେ, ସେମାନଙ୍କର ଅଭିଜ୍ଞତା ମଧ୍ୟ ତା ପାଖରେ ଅଛପା ନାହିଁ ।

ସତ୍ୟବତୀ ଅଧୀର ଆଖିରେ ଚାହିଁ ରହିଛନ୍ତି, ଭାବୁଛନ୍ତି, ତାଙ୍କର ଆଶା ଦିନେ ଫଳିବ, ଆହୁରି ତାର ମନଲକ୍ଷି ସାଥୀ ବାଛି ନେ ।, ସୁଖରେ କରିବ ସଂସାର ।

ଦୁଇ ଧାର ଲୁହ ଦେଖି ଆହୁରି ବମ୍ବେଷ୍ଟକରେ ଯୋଗଦେବାକୁ ଯାଇନାହିଁ । ପଚାରିଲା, କାହୁଁକି କାହିଁକି ମା ? ସିନେମା ଲାଇନରେ ନାମ କରି-ପାରିଲେ ଧନ ମାନ ଯଶ ସବୁ ତ ମିଳିବ । ନାମ କରିବା ସେତେ କଠିନ କାମ ନୁହେଁ । ତା'ପରେ ମା' ଏ ଶ୍ରେଷ୍ଠ ସହର ଛାଡ଼ି ତମେ ସମସ୍ତେ ମୋ ପାଖକୁ ଚାଲିଯିବ !

ଆଖିରୁ ଲୋତକ ପୋଛି ସତ୍ୟବତୀ କହିଲେ, ତୋର ମଙ୍ଗଳରେ ମୁଁ ବାଧା ଦେବି ନାହିଁ । ହଁ, କଟକ ଶ୍ରେଷ୍ଠ ସହର । ମୁଁ ବି ଦିନେ ବଡ଼-ସହର କଲିକତା ନଗରୀରେ ରହୁଥିଲି । ଧନ, ମାନ ଓ ଯଶ ଆପେ ଆପେ ଆସି ଗୋଡ଼ ତଳେ କୁଢ଼େଇ ହେଉଥିଲା । ଭାବୁଥିଲି, ସେଇ ଜୀବନଟା ଭଲ ଓ କାମ୍ୟ । ଦିନ ପୁଣି ଆସିଲା ଯେତେବେଳେ କଲିକତା ନଗରୀ ମୋର ଶ୍ୱାସରୁଦ୍ଧ କଲା । ନିଜର ଓ ତମ ଦୁହିଁଙ୍କର ପ୍ରାଣ ବଞ୍ଚାଇବାକୁ ଏଇ ଶ୍ରେଷ୍ଠ ସହରକୁ ପଳାଇ ଆସିଲି । ତୋ'ର ପିତା, କାହାନ୍ତି ସେ

Digitized by PPRACHIN, SOA

ଜାଣେ ନାହିଁ । ତମେ ବୁଝେ ମୋର ଦୁଇ ଆଖି । ତୁମକୁ ଦେଖି ଅତୀତକୁ ମୁଁ ଭୁଲି ପାରୁଛି । ମୋତେ ଗ୍ରାମ ତୁ ବଡ଼ ସହରକୁ ଗ୍ଲେଇବୁ, ନାହିଁ କରୁନାହିଁ, ଦୁଃଖ ହେଉଛି ।

ମାଷ୍ଟରାଣୀ ଗ୍ଲାଜିବ ମୁଁ କରିବ ନାହିଁ !

ଗ୍ରାମ ଦେଇଛୁ ତ !

କଅଣ କେବେ କରିବ ?

ଯାହା ତୋର ମନ । ମୁଁ କାହିଁରେ ବାଧା ଦେବି ନାହିଁ । ଭଲ ମନ୍ଦ ସବୁ ତତେ ଜଣା ଅଛି । ଯାହା ତୁ ଭଲ ବୋଲି ବିଗ୍ୱରୁ ସେଇଆ କର । ଦୁନିଆରେ ଲୋକେ ଭଲ ମନ୍ଦ କହିବେ । ସେମାନଙ୍କର କଥାର ମୂଲ୍ୟ ସେମାନଙ୍କ ପାଖରେ ବଡ଼ । ନିଜର ମନର କଷଟି ପଥରରେ ସେମାନେ ଅନ୍ୟର କର୍ମ ପରଖି ଦେଖନ୍ତି । ଯାହା ସେମାନେ ଦେଖନ୍ତି, ସେତକ ବି ସେ କହନ୍ତି ନାହିଁ । ନିଜର ସ୍ୱାର୍ଥ ଓ ପରର ଧାରଣାକୁ ତଉଲ୍ କରି ସେମାନେ ଅନ୍ୟର କର୍ମକୁ ତଉଲି ଦେଖନ୍ତି । ଖାଲି ବିଚ୍ଛୁର, ନିଜର ସ୍ୱାର୍ଥକୁ ଚରିତାର୍ଥ କରିବା କାମନାରେ ଯେତିକ ଲୋଡ଼ା ସେତିକ ସେ ପ୍ରକାଶ କରନ୍ତି । ସୁନା ହୁଏ ପିତଳ, କାଚ ହୁଏ ମଣି । କୁକୁର ବି ଛେଳି ହୁଏ । ଯେତେ ପାଟି କରି ବୋବାଇ ଗ୍ରାମଲେ କ'ଣ ଯିଏ ଯାହା ସିଏ ବଦଳିବ ? ତେଣୁ, ନିଜେ ଯାହା ଭଲ ମଣୁଛ ସେଇଆ କର ।

ସମସ୍ତେ କ'ଣ ଖାଲି ବିଗ୍ୱରି ଭଲ କି ମନ୍ଦ କୁହନ୍ତି ଏ ଦୁନିଆରେ ?

ନାହିଁ । ଅଧିକାଂଶ ତ ଉପରେ ଭାସନ୍ତି । ସ୍ୱାର୍ଥନ୍ୱେଷୀର କୁହାଟରେ ନ ବୁଝି ନ ଶୁଝି ଅଥବା ଭୁଲ ବୁଝି ସ୍ୱର ମିଶାନ୍ତି । ତଥାପି ସେମାନଙ୍କର ସ୍ୱରରେ ସ୍ୱାର୍ଥର ଆଶା ସଫଳ ହେବ କି ବିଫଳ ହେବ, ସେମାନେ ତଉଲି ପାରନ୍ତି ନାହିଁ ।

ଆହୁତର ଭବିଷ୍ୟତ୍ ପଣି ମାତା ଉଦ୍‌ବିଗ୍ନ, ଚିନ୍ତିତ, ଆକୁଳ ଓ ବ୍ୟଥିତ । ତାଙ୍କର ଆଶା, ଆହୁତ ବିବାହ କରୁ, ସଂସାର କରି ସୁଖରେ ରହୁ ।

ସବୁ ଜନନୀ ସେଇଆ ଗ୍ୱହାନ୍ତି ।

ଆହୁତ ମଧ୍ୟ ସେଇଆ ଭାବିଥିଲା । କିନ୍ତୁ, କିଏ ସେ ପୁରୁଷ ଯାହାର ପଦ ତଳେ ନିଜକୁ ସେ ଉତ୍ସର୍ଗ କରିବ ? କିଏ ସେ, ଯିଏ ତାକୁ ପତ୍ନୀତ୍ୱର ଆସନ ଓ ସମ୍ମାନ ଦେବ ?

ଗ୍ରାମଜୀବନର ବନ୍ଧୁମାନେ ଦୂରେଇ ଯାଇଛନ୍ତି । ଅଧିକାଂଶ ନିଜ ନିଜର ସଂସାର ଗଢ଼ି ସାରିଲେଣି । ଯେଉଁମାନେ ଏବେ ବି ଅବିବାହିତ ହେଉଛନ୍ତି ଗ୍ରାମ୍ୟ ଜୀବନରେ କୂଳ ଧରିବାକୁ, ସେମାନଙ୍କ ହାତରେ ପଡ଼ୁଛି ତୃଣଖଣ୍ଡ । ଯିଙ୍ଗିବୁଡ଼ା ଖାଇ ଉପରକୁ ଉଠି ପୁଣି କଅଣ ଗୋଟାଏ ଧରିବାକୁ ଚେଷ୍ଟା ।

Digitized by PPRACHIN, SOA

ଅରବିନ୍ଦର ବିବୃତ ପଢ଼ୁଛି ତାର ଚକ୍ଷୁରେ । ପୁରୁଣା ପାର୍ଟିକୁ ଛାଡ଼ି ସେ ଯୋଗଦେଇଛି ନୂଆ ପାର୍ଟିରେ । ସେ ମୁକ୍ତକଣ୍ଠରେ ସ୍ୱୀକାର କରିଛି ଯେ ଆଜିଯାଏ ଯେଉଁ ପନ୍ଥା ସେ ଅବଲମ୍ବନ କରିଥିଲା ସେ ପନ୍ଥା ଭୁଲ୍ । ଦେଶ ଦଶର ଉପକାର କରିବାକୁ ତାର ପ୍ରାଣର ଯେଉଁ ଆବେଗ ସେଥିରେ ସେ ନ ବୁଝି ନ ବିଚାରି ପାଗଳ ପରି ଛୁଟିଥିଲା ଅବାଟରେ । ପାର୍ଟିର ଅନ୍ୟ କର୍ମୀମାନଙ୍କର ଦୁରବସ୍ଥା ଦେଖି ଓ କର୍ମକର୍ତ୍ତାମାନଙ୍କର ସ୍ୱାର୍ଥପରତା ଦେଖି ସେ ସତର୍କ ହୋଇଛି । ତା ପରି ସଚ୍ଚୋଟ କର୍ମୀ—ସତ୍ୟ ଓ ଅହିଂସା ଉପରେ ଯାହାର ପୂର୍ଣ୍ଣ ବିଶ୍ୱାସ, ତାର ଏକମାତ୍ର ଭରସା ଏ ନୂତନ ପାର୍ଟି । ତାର ଜୀବନର ପଣ—ଅନ୍ୟାୟ, ଅନୀତି ଓ ଅତ୍ୟାଚାରର ବିରୁଦ୍ଧରେ ଅଭିଯାନ । ଦେଶ ଓ ଦଶର ମଙ୍ଗଳ ପାଇଁ ଜୀବନ ଉତ୍ସର୍ଗ କରିବାକୁ ସେ ଏ ନୂଆ ଦଳରେ ଯୋଗ-ଦେଇଛି ।

ମହାପାତ୍ର ଅରବିନ୍ଦ ଦୁଇ ଜଣ କର୍ମୀ ସହ ସଭାପତିଙ୍କ ଘରେ ଉପସ୍ଥିତ । ସମୟ ସକାଳ ଆଠଟା । ସହକର୍ମୀ ଦୁହେଁ ଅଳ୍ପବୟସ୍କ ଯୁବକ । ନିର୍ଦ୍ଦେଶମତେ ସେମାନେ ବାହାରେ ପଡ଼ିଥିବା ବେଞ୍ଚରେ ବସିଛନ୍ତି । ଅରବିନ୍ଦ ବୈଠକ ଘରେ । ଆହୁତର କୌତୁହଳ ସୀମା ନାହିଁ ।

ବମ୍ବେ ଗଲେ ନାହିଁ କି ଆହୁତ ଦେବୀ ?

ଆହୁତ ହସିବାକୁ ଲାଗିଲା ।

ହସୁଛନ୍ତି ଯେ ?

ଅବାନ୍ତର ପ୍ରଶ୍ନ ଶୁଣି । ମୁଁ ବମ୍ବେ ଯାଇ ନାହିଁ ସେ କଥା ଆପଣ ନିଜେ ଦେଖି ପାରୁଛନ୍ତି ।

ଯିବେ ନାହିଁ ତ ?

ନା।

ଅତି ଆନନ୍ଦର କଥା । ସିନେମା-ତାରକାମାନଙ୍କର ଜୀବନ ଆଲୋଚନା କଲେ ଦେଖାଯାଏ ଯେ—

ଛାଡ଼ନ୍ତୁ ସେ କଥା । ଆଗମନର ଉଦ୍ଦେଶ୍ୟ କହନ୍ତୁ ।

ମୁଁ ପଣ କରିଛି, ପ୍ରତିଦିନ ଅନ୍ତତଃ ଏଗାର ଜଣ ସଚ୍ଚୋଟ ଲୋକଙ୍କୁ ମୁଁ ମୋର ନୂଆ ଦଳର ସଭ୍ୟ ତାଲିକାଭୁକ୍ତ କରିବି । ଆଜି ଆପଣ ହେବେ ପ୍ରଥମ ।

ମୁଁ ରାଜନୀତିରେ ଯୋଗ ଦେବାକୁ ଚାହେଁ ନାହିଁ ।

ଏ ସୁଯୋଗ ହରାନ୍ତୁ ନାହିଁ ଅହୁତ ଦେବୀ, ଟିକିଏ ଭବିଷ୍ୟତ ଉପରେ ଦୃଷ୍ଟି ଦିଅନ୍ତୁ । ଆପଣଙ୍କ ପରି ଶିକ୍ଷିତା ଓ ବିଦୁଷୀ ନାରୀ ଆମ ପାର୍ଟିରେ କେହି ନାହାନ୍ତି ।

Digitized by PPRACHIN, SOA

ଆପଣ ତ ନିଶ୍ଚୟ ଜାଣିଥିବେ ଯେ ମନ୍ତ୍ରୀ ପରିଷଦରେ ଅବଶ୍ୟ ଜଣେ ବା ଦୁଇ ଜଣ ମନ୍ତ୍ରୀ କି ଉପମନ୍ତ୍ରୀ ହେବେ ନାଗ ।

ମନ୍ତ୍ରୀ ହେବାକୁ ଆପଣ ଏ ନୂଆ ଦଳରେ ଯୋଗଦେଲେ ?

ନାହିଁ । ଦେଶ ସେବା ପାଇଁ ।

ବୁଝିଲି । ଦେଶସେବକ ବୋଲି ନିଜକୁ ପରିଚିତ କରାଇ କୃତ୍ରିମ ବଢ଼ାଇ ଆପଣ ମନ୍ତ୍ରୀ ହେବାକୁ ପଣ କରିଛନ୍ତି । ଆଗତୁରା ମୁଁ ଅଭିନନ୍ଦନ ଜଣାଉଛି । ମନ୍ତ୍ରୀ ହେବାକୁ ମୋର ଆଗ୍ରହ ନାହିଁ ।

ଆହୁତ ଦୁଇ ହାତ ଯୋଡ଼ି ନମସ୍କାର କଲା । ଉଠି ଠିଆ ହେଲା । ଅରବିନ୍ଦ ପ୍ରତିନମସ୍କାର କରି ଉଠିଲି । ହସି ହସି କହିଲି, ମୁଁ ଜାଣେ ଆପଣ ଅତି ସ୍ପଷ୍ଟବାଦୀ । ମୋର ପ୍ରସ୍ତାବ ଆପଣ ନିଶ୍ଚୟ ବିଚାର କରିବେ । ଆଉ ଦିନେ ମୁଁ ଆସିବି । ସେ ଦିନ ଆପଣଙ୍କୁ ମେମ୍ବର ନ କରି ମୁଁ ଛାଡ଼ିବି ନାହିଁ ।

ନଳିନୀଙ୍କ ଅରବିନ୍ଦ ହସି ହସି ମୁଣ୍ଡ ହଲାଇ ବିଦାୟ ନେଇଥିଲା । ଭବିଷ୍ୟତରେ ମନ୍ତ୍ରୀ ହେବାର ସ୍ୱପ୍ନ ଦେଖି ଦେଖି ମଣ୍ଡୁଥିଲା ସତେ କି ସେ ମନ୍ତ୍ରୀ ହୋଇ ସାରିଛି ଓ ମନ୍ତ୍ରୀତ୍ୱର ଗୁରୁଦାୟିତ୍ୱର ହିମାଳୟ ବୋଝ ବୋହି ଚାଲିଛି !

ମଧ୍ୟମ ପାଣ୍ଡବ ଅର୍ଜୁନର ରୋଲ୍‌ରେ ଅରବିନ୍ଦ ଆଜି ଷ୍ଟେଜ୍ ଉପରେ ଠିଆ ହୋଇ ନାହିଁ କି ଜଳକ୍ରୀଡ଼ାରତା ଉଲୁପୀ ସାଜି ଆହୁତ ପ୍ରେମାକୁଳା ହୋଇ ମୁଗ୍ଧ ଆଖିରେ ଚାହିଁ ରହି ନାହିଁ । ଷ୍ଟେଜ୍ ଏ ନୁହେଁ । ଏ ବାସ୍ତବ ଦୁନିଆ ।

ଆସିଥିଲା ଦିନେ ଧନଞ୍ଜୟ । ଦରିଦ୍ର ବେଶ । ଲଣ୍ଡା ମୁଣ୍ଡ । ଦେହରେ ଦରମଇଳା କାମିଜ୍ ଖଣ୍ଡେ । କାନ୍ଧରେ କାନ୍‌ଭାସ୍ ବ୍ୟାଗ୍ । ରବିବାର ଦ୍ୱିପ୍ରହର । ମୁଣ୍ଡ ନୁଆଁଇ ଆହୁତକୁ ସେ ପ୍ରଣାମ କଲା । ହସ ହସ ମୁହଁ । ବ୍ୟାଗ୍‌ରୁ କାଢ଼ି ବଢ଼ାଇ ଦେଲା ହାତକୁ ନୂଆ ମାସିକ ପତ୍ରିକା —"ଦାଗୀ" ।

ଏ କାହାର ଫଟୋ ?

ଚିହ୍ନିପାରୁ ନାହାନ୍ତି, ଦାଗୀ ଧନଞ୍ଜୟ ଦାସର । ଜେଲରେ ଥିଲାବେଳେ ସେ ଏଇ ପୋଷାକ ପିନ୍ଧୁଥିଲା ।

ବସନ୍ତୁ ।

ମୁଁ ଟିକେ ତରତର ଅଛି । ସବୁଯାକ ପତ୍ରିକା ସଞ୍ଜ ଆଗରୁ ମୁଁ ବିକିବାକୁ ଚାହେଁ । ପତ୍ରିକାର ଦାମ୍ ମୋଟେ ଚାରି ଅଣା । ଆପଣ ଯଦି କିଣିବେ ତ ରଖନ୍ତୁ । ଚାରଣା ପଇସା ଦିଅନ୍ତୁ । ମୁଁ ଆପଣଙ୍କର ବହୁମୂଲ୍ୟ ସମୟ ନଷ୍ଟ କରିବାକୁ ଚାହୁଁ ନାହିଁ ।

Digitized by PPRACHIN, SOA

ମୋର ସମସ୍ତ ଆଳସ୍ୟରେ କଟୁଛୁ ଧନଞ୍ଜୟ ବାବୁ, ଆପଣମାନଙ୍କ ପରି ବନ୍ଧୁଙ୍କ ସଙ୍ଗେ ଦେଖାହେଲେ ମନରେ ଆନନ୍ଦ ଆସେ । ବସିବେ ନାହିଁ ମୁହୂର୍ତ୍ତେ ?

ଧନଞ୍ଜୟ ବସିଲା । ଆହୁତର ମନ ଭିତରେ କୋହ ଜୁଟିଲା । ସେ ବାରମ୍ବାର ଧନଞ୍ଜୟକୁ ଚାହିଁବାକୁ ଲାଗିଲା । ତୁଣ୍ଡରୁ ବଚନ ବାହାରୁନା ନାହିଁ । ବନସ୍ପୀ, ଭଦ୍ର, ସତ୍ୟନିଷ୍ଠ, ସ୍ନେହୀ, ମେଧାବୀ କବି ଧନଞ୍ଜୟ ନିଜେ ନିଜକୁ ଦୁନିଆ ଆଗରେ ଦାଗୀ ବୋଲି ପରିଚିତ କରିବାକୁ କୁଣ୍ଠିତ ନୁହେଁ ।

ପଚାରିଲା, ମୁଣ୍ଡ ଲଣ୍ଡା କରିଛନ୍ତି କାହିଁକି ?

ହସି ହସି ଉତ୍ତର ଦେଲା ଧନଞ୍ଜୟ, ଇକନମି । ଚାରି ମାସରେ ଥରେ ମୁଁ ଭଣ୍ଡାରୀକୁ ନିମନ୍ତ୍ରଣ କରେ । କାଲି ସେ ଦୁର୍ଯୋଗ ଘଟିଲା । ଠିକ୍ ଚାରି ମାସ ପୁରିଲା ବେଳକୁ ଆପଣ ଯଦି ଦାସଙ୍କୁ ଭେଟିଆନ୍ତେ, ତେବେ ଓଲଟା ପ୍ରଶ୍ନ ପଚାରିଆନ୍ତେ ।

ଓଲଟା ଉତ୍ତର କି ପାଇଥାନ୍ତି ?

ନା । ସେଇ ଗୋଟିଏ ପଦ – ଇକନମି । ଆହୁତ ମାସିକ ପତ୍ରିକାଟିକୁ ଓଲଟାଇବାକୁ ଲାଗିଲା । ଚଉଠି କବିତା ଓ ତିନୋଟି ଗଳ୍ପ । ଲେଖକମାନେ ନିଜର ନାମ ଗୋପନ କରି ଅନ୍ୟ ନାମରେ ଲେଖା ପ୍ରକାଶ କରିଛନ୍ତି । ପ୍ରଥମ ପୃଷ୍ଠାର କେଇ ଧାଡ଼ି ଉପରେ ଦୃଷ୍ଟି ପଡ଼ିଲା – ଯେଉଁମାନେ କାରାଗାରରେ କେବେ ଆସି ନାହାନ୍ତି ସେମାନେ ସାଧୁପୁରୁଷ । 'ଦାଗୀ' ସେମାନଙ୍କୁ ଅଭିନନ୍ଦନ ଜଣାଉଛି । ଯେଉଁମାନେ ଅସାଧୁ ବୋଲି ପ୍ରମାଣିତ ହୋଇ କାରାଗାରରେ ସମୟ କଟାଇଲେ ସେଇମାନଙ୍କର ମୁଖପତ୍ର 'ଦାଗୀ' ।"

ଆହୁତ ମୁହଁ ଟେକି ଧନଞ୍ଜୟକୁ ଚାହିଁଲା । ଧନଞ୍ଜୟ କହିଲା, ଆପଣଙ୍କର ଅଧିକ ସମୟ ନଷ୍ଟ କରିବାକୁ ଚାହୁଁ ନାହିଁ । ମୋତେ ବିଦାୟ ଦିଅନ୍ତୁ ।

ମୁଁ କେବଳ 'ଦାଗୀ'ର ଗ୍ରାହକ ହେବାକୁ ଚାହେଁ ନାହିଁ, ମୁଁ ପୃଷ୍ଠପୋଷକ ହେବାକୁ ଚାହେଁ, ଡୋନେସନ୍ ଦେବାକୁ ଚାହେଁ ।

କ୍ଷମା କରନ୍ତୁ ! ଦାଗୀର ସମ୍ପାଦକ ଅନ୍ୟ କାହାର ପୃଷ୍ଠପୋଷକତା ଚାହେଁ ନାହିଁ କି ଦାନ ବି ସେ ଗ୍ରହଣ କରିବ ନାହିଁ । ଦାଗୀ ନିଜର ମୂଲ୍ୟ ନିଜେ ନିରୂପଣ କରିଛି । ସେ ନିଜ ଗୋଡ଼ରେ ଠିଆ ହେବାକୁ ଚାହେଁ । ସିଧାସଳଖ ନିର୍ଭୀକ ଭାବରେ ଆପଣଙ୍କ ମୁହଁକୁ ଅନେଇବାକୁ ଇଚ୍ଛା କରେ । ମୋତେ ଚାରି ଅଣା ତା'ର ମୂଲ୍ୟ !

ଆହୁତ ତର୍କ କଲା ନାହିଁ । ଘର ଭିତରକୁ ଉଠିଯାଇ କିଛି ସମୟ ପରେ ଫେରିଆସି ଦେଖିଲା ଧନଞ୍ଜୟ ଉଠି ଠିଆହେଲାଣି । ପଇସା ନେଇ ସେ ଘର ଭିତରୁ ବାହାରି ଯାଉଥିଲା । ଆହୁତର ଡାକ ଶୁଣି ଫେରି ଚାହିଁଲା ।

ଆହୁତ କହିଲା, ପଚାରିବି କଥାଟିଏ ?

ପଚାରନ୍ତୁ ।

ଦୁନିଆ ଉପରେ ଅଭିମାନ କରିଛନ୍ତି କି ?

Digitized by PPRACHIN, SOA

ନାହିଁ ତ ।

ନିଜ ଉପରେ ଅଭିମାନ କରିଛନ୍ତି ?

ନାହିଁ ।

ମୋ ଉପରେ ?

ଆହୁତ ହସିବାକୁ ଲାଗିଲା । ଧନଞ୍ଜୟ ଫେର ଆସିଲା ଦୁଇ ପାଦ । ଆହୁତର ଛଳ୍ ଛଳ ହସିଲା ଆଖିକୁ ଚାହିଁ ମୁହୂର୍ତ୍ତେ ଠିଆ ହେଲା । ଦରହସିଲା ମୁହଁରେ ତା'ର ଘୋଟି ଆସିଲା ଗାମ୍ଭୀର୍ଯ୍ୟ । ଦୁଇ ଆଖିର ଦୃଷ୍ଟି ଯେପରି କେଉଁ ଦୂର ଅଜାଣତର ଅଜ୍ଞାତ ବସ୍ତୁକୁ ନିରୀକ୍ଷଣ କରୁଛି । ସହସା ସେ ଫେରି ଆସିଲା ନିଜ ଭିତରକୁ । ହସି ଉଠିଲା । କହିଲା, ନା, ମୁଁ ଅଜାଣତରେ ବାସ କରୁ ନାହିଁ । ମୁଁ ଦାଗୀ । ଧନଞ୍ଜୟ । ମୋର କାହାରି ଉପରେ ରାଗ, ରୋଷ କି ଅଭିମାନ ନାହିଁ । ମୁଁ କାହାରି ଧାରୁଆ ହେବାକୁ ଚାହେଁ ନାହିଁ । ତେଣୁ ଆହୁତ ଦେବ, ଆପଣଙ୍କର ଅଯାଚିତ ଦାନ ଗ୍ରହଣ କରିବାକୁ ମୁଁ ରାଜି ହେଲି ନାହିଁ । ମୋ ଉପରେ ଆପଣଙ୍କର ଅନୁକମ୍ପା ହେଉଛି, ନା ?

ଆହୁତ ଚମକି ଉଠିଲା । କବୋଧ ଶିଶୁଟି ପରି ଧନଞ୍ଜୟର ଦରହସିଲା ମୁହଁକୁ ଚାହିଁ ରହିଲା । ସେ ମିଛ କହି ନାହିଁ । ସହପାଠୀ ଧନଞ୍ଜୟର ଅବସ୍ଥା ଦେଖି ମନରେ ତା'ର ଗଭୀର ଦୁଃଖ ହୋଇଥିଲା । ଧନ ସାହାଯ୍ୟ କରି ତା'ର ଅବସ୍ଥା ସୁଧାରିବାକୁ ଆଗ୍ରହ ପ୍ରକାଶ କରିଥିଲା । ସେ ବିନମ୍ର ସ୍ୱରରେ କହିଲା, ବନ୍ଧୁକୁ ସାହାଯ୍ୟ କରିବାର ଅଧିକାର କ'ଣ ତା'ର ବନ୍ଧୁର ନାହିଁ ? ଆପଣ ଏତେ ଅଭିମାନୀ ?

ଧନଞ୍ଜୟ ହସି ହସି ବସିଲା ପାଖ ଚଉକିରେ । ମୁଣାଟିକୁ ଟେବୁଲ ଉପରେ ରଖି ସେ କହିଲା, ଆପଣ ଦାଗୀ ଧନଞ୍ଜୟ ଦାସକୁ ଦୁନିଆ ଆଖିରେ ବନ୍ଧୁ ବୋଲି ଗ୍ରହଣ କରି ପାରିବେ ? ଜାଣେ, ପାରିବେ ନାହିଁ । ଗୃହଜୀବନର ଧନଞ୍ଜୟ ମରିଛି ଆହୁତ ଦେବ, ଆପଣ ସେଇ ଧନଞ୍ଜୟର ଆକୃତିଟା ଦେଖି ବନ୍ଧୁ ବୋଲି ଭ୍ରମରେ ପଡ଼ିଛନ୍ତି । ଦାଗୀ ଧନଞ୍ଜୟ ସବୁ ହରାଇ ବସିଛି । ସେ ନିଃସ୍ୱ । ଯେଉଁମାନେ ଥରେ ବନ୍ଧୁ ବୋଲି ପରିଚୟ ଦେଉଥିଲେ, ସେମାନେ ଧନଞ୍ଜୟକୁ କେଉଁ ଚକ୍ଷୁରେ ଦେଖନ୍ତି ଆପଣ ଜାଣନ୍ତି ନାହିଁ । ଶୁଣିବାକୁ ଧୈର୍ଯ୍ୟ ଅଛି ତ ଶୁଣନ୍ତୁ ।

ଚନ୍ଦ୍ରଧର କଥା କହେ ଆଗେ —

ପଡ଼ାରେ ମୁଁ ଅପେକ୍ଷା କରିଛି । ଚନ୍ଦ୍ରଧର ହାତରେ ବହି ଖଣ୍ଡେ ଦେବି, ଏତିକି ମୋର ଉଦ୍ଦେଶ୍ୟ । ଓଭର୍‌ବ୍ରିଜ ଦସ୍ତାଙ୍କର ବାରଣ୍ଡାରେ ପଡ଼ିଥିବା ବେଞ୍ଚ ଉପରେ ବସିବାକୁ ମୋତେ ଅନୁମତି ଦେଲା । ଏତିକି ମୋର ସୌଭାଗ୍ୟ । କାର୍ଡ଼ ଖଣ୍ଡି ବସ୍ତୁ ହାତରେ ପଠାଇଦେଲି । ସଙ୍ଗେ ସଙ୍ଗେ ଚନ୍ଦ୍ରଧର ଓହ୍ଲାଇ ଆସିଲା ଡ୍ରଇଂ ରୁମ୍‌କୁ ।

Digitized by PPRACHIN, SOA

ପରଦା ଆଢ଼େଇ ଅସିଲ ବାରଣ୍ଡାକୁ । ହଠାତ୍ ତା'ର ମୁହଁଟା କେମିତି ଅମ୍ଳିଆ ହୋଇଗଲା । କୃତ୍ରିମ ହସଟା ମୋଟାଲିଆ ଓଠ ଉପରକୁ ଟାଣି ଆଣି କହିଲା, ଆରେ ସେଇଟା କ'ଣ, ଓ—ଗୋଟାଏ ନୂଆ କମ୍ପାନୀର ପ୍ରସ୍‌ପେକ୍‌ଟସ୍ ପତ୍ର ! ବଡ଼ ଅସୁବିଧାରେ ପଡ଼ିଛୁ ଭାଇ, ସେଲ୍‌ଟ୍ୟାକ୍‌ସ ଆଉ ଇନ୍‌କମ୍ ଟ୍ୟାକ୍‌ସ ମନେ ଖାଇଦେଲା । ମୁଁ ସେଥିର କଣି ପାରିବ ନାହିଁ ।

କହିଲି, ଏ ଗୋଟାଏ ମାଗାଜିନ୍ । ମୁଁ ଏଡିଟ୍ କରୁଛି । ମୋତେ ଗ୍ରାହକ ଧାମ୍ । ମୁଁ ବିକିବାକୁ ଆସିଛି । ଏଥିକ କହି ବହି ଖଣ୍ଡେ ବଢ଼ାଇଦେଲି ।

ନାମଟାକୁ ଦେଖି ସେ ଚମକି ଉଠିଲା । ନାକ ଟେକିଲା । ବହି ଖଣ୍ଡି ହାତରେ ଧରିଲେ ଯେମିତି ସେପରି ତା ଦେହରେ ଦାଗ ଲାଗିଯିବ ଓ ସେ କଳଙ୍କିତ ହୋଇଯିବ । ଦି ପାଦ ପଛକୁ ଘୁଞ୍ଚିଯାଇ ସେ କହିଲା, ଜୀବନରେ କେବେ ମୁଁ ସାହିତ୍ୟଚର୍ଚ୍ଚା କରି ନାହିଁ ତୁ ଜାଣୁ । ଏଇଟା ମୋର ହେବ କ'ଣ ? ହଉ ଭାଇ ନମସ୍କାର ।—

ଚନ୍ଦ୍ରଧର ଘର ଭିତରକୁ ପଶିଗଲା । ମୁଁ ଦୁଃଖିତ ହୋଇ ଫେରିଲି, ମୋ ପାଇଁ ନୁହେଁ, ତା ପାଇଁ । ସେ ନିଜକୁ ଦେଖିଲା ସେ ବହି ଭିତରେ । ଡରିଲା, ମନେ ନୁହେଁ କ ବହିକୁ ନୁହେଁ, ନିଜକୁ । ନିଜ ପାଖରୁ ସେ ନିଜକୁ ଦୂରେଇ ରଖିବାକୁ ଚାହେଁ ।

ଶୁଣନ୍ତୁ ରତ୍ନାକରର କଥା ।

କାର୍ଡ ଦେଖି ସେ ହସି ଉଠି ଆସିଲା । କରମର୍ଦ୍ଦନ କରି ହ୍ୱେଲୋ ବୋଲି ଚତ୍କାର କଲା । ହାତ ଧରି ଭିତରକୁ ନେଲା ତା'ର ଅଫିସ୍ ରୁମ୍‌କୁ । ସିଗାରେଟ୍ ଯାଚିଲା । ସର୍ବତ୍ର ମଗେଇଲା । ଅତି ଆଗ୍ରହରେ "ଦାର୍ଶୀ" ନେଇ ସଙ୍ଗେ ସଙ୍ଗେ ଗ୍ରାହକ ପଇସା ବଢ଼ାଇଦେଲା । ବହିଟି ଓଲଟପାଲଟ କରି କହିଲା—ଓ୍ୱଣ୍ଡର୍‌ଫୁଲ୍ । ଭେରି ଇଣ୍ଟରେଷ୍ଟିଂ । ପ୍ରୋଡକ୍‌ଟ ଅଫ୍ ଏ ମାଷ୍ଟର ବ୍ରେନ୍ । ହ୍ୱଇସ୍ ଇଜ ସକ୍‌ସେସ୍ ମାଇଁ ଫ୍ରେଣ୍ଡ୍ । ଅଲ୍ ରାଇଟ୍ ଥାଂକ୍‌ସ । ଉଇ ଉଇଲ୍ ମିଟ୍ ଏଗେନ୍ । ଉଠି ଠିଆ ହେଲା । ଦୁଇଟି ହାତ ଯୋଡ଼ି ନମସ୍କାର କଲା । ମୁଁ ବି ନମସ୍କାର କରି ବିଦାୟ ନେଲି ।

ରତ୍ନାକର ଚମତ୍କାର ଆକ୍‌ଟିଂ କରି ଜାଣିଲାଣି । ପ୍ରତି ମୁହୂର୍ତ୍ତରେ ସେ ଆକ୍‌ଟିଂ କରୁଛି । ଅତି ସତର୍କ । କାହାକୁ ସେ ଅଫେଣ୍ଡ୍ କରିବାକୁ ଚାହେଁ ନାହିଁ ।

ଭଲ ତ । ଆପଣ କ'ଣ ଏପରି ବ୍ୟବହାର ପାଇବେ ବୋଲି ଆଶା କରି ନ ଥିଲେ ?

Digitized by PPRACHIN, SOA

ସେ ବିଷୟରେ ମୁଁ ଚିନ୍ତା କରି ନ ଥିଲି । ଗେଟ୍ ବାହାରକୁ ଆସି ଅଟ୍‌କା ହୋଇ ମୁହୂର୍ତ୍ତେ ଠିଆ ହୋଇ ଭାବିଲି । ସିଗାରେଟ୍ ମୁଁ ଖାଇନାହିଁ । ସର୍ବତ୍ର ଆସି ନାହିଁ । ଅଭିନୟଟା ସରିଗଲା ଦୁଇ ମିନଟ୍ ଭିତରେ । ବହିଟାକୁ ଓଲଟାଇବାକୁ ଏକ ମିନଟ୍‌ରୁ ଅଧିକ ସମୟ ସେ ଦେଇ ନାହିଁ । ସେଥିଜନରେ ଏତେ ଗୁଡ଼ାଏ ମନ୍ତବ୍ୟ । ମତେ ଅପେକ୍ଷା ନ କରି ଦୁଇ ମିନଟ୍ ଭିତରେ କପରି ବିଦାୟ କରି ପାରିବ, ଏତକ ଆଗରୁ ସେ ସ୍ଥିର କରି କରମର୍ଦ୍ଦନ କରି ପାଗ୍ରେଷ୍ଟି ନେବାକୁ ପଦାକୁ ଆସିଥିଲା । ଭଲମନ୍ଦ ପଦଟିଏ ସେ ପଗ୍ଭରି ନାହିଁ । ସେ କହୁଛୁ, ମତେ କହିବାକୁ ଅବସର ଦେଇ ନାହିଁ ।

ସେ ଆମର ବାଲ୍ୟବନ୍ଧୁ ! ଆହୁରି ଶୁଣିବାକୁ ଚାହାନ୍ତି ?

ଆହୁତି କହିଲା, ଶୁଣନ୍ତୁ ସେ ସବୁ । ମୁଁ ଆପଣଙ୍କର ସହକର୍ମିଣୀ ହେବାକୁ ଚାହେଁ । ଧନ ଆପଣ ନ ନେଉନ୍ତୁ, ମୋତେ ଆପଣଙ୍କ "ଦାଗୀ"ର ସହକାରୀ ସମ୍ପାଦିକା କରନ୍ତୁ ।

ଅଭିନୟ କରିବାକୁ ଚାହାନ୍ତି ?

ଗ୍ରୀନ୍‌ରୁମ୍ ଜୀବନ କଟିଲା ପରେ ଜଣେ ପୁଣି ଅଭିନୟ କରି ବାସ୍ତବତା ସୃଷ୍ଟି କରିବାକୁ ଚେଷ୍ଟା କରିଛି । ମୋର ଅଭିନୟଗୁଡ଼ିକର ବିଷୟବସ୍ତୁ ପୌରାଣିକ ନୁହେଁ କି ଐତିହାସିକ ନୁହେଁ କି କବି, ଉପନ୍ୟାସିକ ଓ ନାଟ୍ୟକାରର କଳ୍ପନା ପ୍ରସୂତ ନୁହେଁ । ବାସ୍ତବ । ସବୁ ଡ୍ରାମାର ନାୟିକା ଆହୁତି । ନାୟକ ଅରୁଣ ଯାକେ ଯେତେ ପୁରୁଣା ଓ ନୂଆ ବନ୍ଧୁ । ଭାବିଥିଲି, ବମ୍ବେ ଟକିଜରେ ଯୋଗ ଦେଇ ପୁଣି ଶତ ଚନ୍ଦର ନାୟିକା ହେବି । ଘର ସଂସାର କରିବାକୁ ମା' ମୋତେ ଅଟକାଇ ରଖିଲେ । ଘର ସଂସାର ପାଇଁ ମୁଁ ଅଟକି ରହି ନାହିଁ । କାହିଁକି ମୁଁ ଅଟକି ରହିଛି ସେ କଥା ଜାଣେ ନାହିଁ । ସମୟଟା ପର୍ବତ ବୋଝ ପରି ମୋ ମୁଣ୍ଡ ଉପରେ ଲଦା ହୋଇଛି । ମୁଁ ସେଥିରୁ ପରିତ୍ରାଣ ପାଇବାକୁ ଚାହୁଁଛି ଚାହେଁ । ତେଣୁ "ଦାଗୀ"ର ସହ-ସମ୍ପାଦିକା ହେବାକୁ ମୋର ଆଗ୍ରହ ।

ଧନଞ୍ଜୟ ଆହୁତିର ମୁହଁରେ ଆନ୍ତରିକତାର ଆଭାସ ପାଇଲା । ମନ ବିଶ୍ୱାସ କରିବାକୁ ରାଜି ହେଲା ନାହିଁ । ଧନୀର ଦୁଲାଳୀ ଆହୁତି—ରୂପ, ଯୌବନ, ବିଦ୍ୟା ଓ ବୁଦ୍ଧିର ଅହମିକାରେ ମନ ଉଚ୍ଛୁଳିତ । ସେ ହେବ ଦୁନିଆ ଆଖିରେ ଯେ ଗୋଟାଏ ଦାଗୀ, ତା'ର ସହକର୍ମିଣୀ, "ଦାଗୀ"ର ସହ-ସମ୍ପାଦିକା ?

ଧନଞ୍ଜୟ ଅଳପ ହସି କହିଲା, କ୍ଷମା କରିବେ ଆହୁତି ଦେବୀ ! ଦୁନିଆରେ ସମସ୍ତେ ସବୁ କର୍ମ ପାଇଁ ଉପଯୁକ୍ତ ନୁହନ୍ତି । "ଦାଗୀ"ର ସହକାରୀ ସମ୍ପାଦିକା ହେବାକୁ ଆପଣ ଯେ ମନ କରିଛନ୍ତି ଏ କଥା ଜାଣି ମୋର ମନରେ ଗର୍ବ ଆସୁଛି । ମୋର ଆତ୍ମମର୍ଯ୍ୟାଦା ମୁଣ୍ଡ ଟେକି ଉଠିଛି । ଏଥିପାଇଁ ଧନ୍ୟବାଦ ଦେଉଛି । କିନ୍ତୁ,

Digitized by PPRACHIN, SOA

ଦାଗୀର ସହକାରୀ ସମ୍ପାଦିକା ହେବାର ଦକ୍ଷତା ଓ ଯୋଗ୍ୟତା ତ ଆପଣଙ୍କର ନାହିଁ । ସେଥିପାଇଁ ଆପଣ ଆତ୍ମତ୍ୟାଗ କରି ପାରି ନାହାନ୍ତି । ଆପଣ ଧନୀ । ଆପଣଙ୍କର ମୂଲ୍ୟବାନ ଶାଢ଼ୀ ଗହଣା, ବଡ଼ଲୋକୀ ଚଳନ ଏ ସବୁ ତ କହିଦେଉଛି ଆପଣ ଦାଗୀର ଅନ୍ତରର କଥା ବୁଝି ପାରିବେ ନାହିଁ । ରୂପର ଆକର୍ଷଣୀ ବଢ଼ାଇବାକୁ ଆପଣ ଚେଷ୍ଟିତ । ମୁହଁରେ ପାଉଡରର ପରସ୍ତ, ଓଠରେ ଲିପ୍‌ଷ୍ଟିକ୍‌ର ମଳିନ ଦାଗ ମୁଁ ଦେଖିପାରୁଛି । ନିଜକୁ ନିଜେ ଆପଣ ବୁଝନ୍ତୁ । ନିଜକୁ ଭୁଲି ପାରି ନାହାନ୍ତି । ପରକୁ, ବିଶେଷତଃ ଦାଗୀକୁ ଚିହ୍ନିବେ କିପରି ? କି ଉପକାର ତାର କରି ପାରିବେ ?

ଏମିତି ମାଡ଼ ମାରିଲା ପରି ଆଉ ଜଣେ, ଆଉ ଦିନେ କଥା କହିଥିଲା ସେ ବଭ୍ରୁବାହୁ । ତା'ର ଅହମିକା ଉପରେ ସେ ଆଘାତ କରିଥିଲା । ଆଖିରେ ଆଣିଥିଲା ଲୋତକ ।

ଆଜି ସେ ଅଭିମାନ କରିବ ନାହିଁ, ରାଗିବ ନାହିଁ । ଅଶିଳ ସ୍ୱରରେ ପଚାରିଲା, କଣ କଲେ ମୁଁ ଉପଯୁକ୍ତ ହୋଇପାରିବି ?

ଜନତାର ହୃଦସ୍ପନ୍ଦନ, ମନର ଆଶା ଆପଣ ଯଦି ଉପଲବ୍ଧି କରି ପାରିବେ ।

କ'ଣ କଲେ ?

ନିଜେ ଲକ୍ଷ୍ୟ ସ୍ଥିର କରନ୍ତୁ । ଦୁନିଆରେ ଦାଗୀ ହୋଇ କେହି ଜନମି ନ ଥାଏ ଆହୁତି ଦେବି, ପରିସ୍ଥିତି ହିଁ ମଣିଷକୁ ଦାଗୀ କରେ । ଅଭାବ ଅନଟନ, ଅଶିକ୍ଷା, ଅସମତା, ଅବିବେକତା ଇତ୍ୟାଦି ଦାଗୀ ପାଇଁ ପରିସ୍ଥିତି ସର୍ଜନା କରେ । ମୋର ଏଇ ପତ୍ରିକାରେ ସେଇ ପରିସ୍ଥିତିର କଥା ମୁଁ ଲେଖିବାକୁ ଚେଷ୍ଟା କରିଛି । ଜେଲ୍‌ରେ ରହି ଦାଗୀ-ଜୀବନର ଅଜ୍ଞାତ ଇତିହାସ ମୋର ସହବାସୀଙ୍କଠାରୁ ମୁଁ ଶୁଣିଛି— ।

ଧନଞ୍ଜୟ ବିଦାୟ ନେଲା ।

ଆହୁତିର ଚଳନରେ ପରିବର୍ତ୍ତନ ଦେଖି ସତ୍ୟବତୀ ଚକିତ ହୁଅନ୍ତି ସିନା, କାହାକୁ କିଛି କହି ପାରନ୍ତି ନାହିଁ । ସବୁବେଳେ ନିଜକୁ କର୍ମରେ ନିୟୋଜିତ କରିଥାଏ । ହସହସ । ଚଞ୍ଚଳ । ଚାକରାଣୀ ସଙ୍ଗେ ମିଶି ଘର କାମ କରେ । ସୁଜନକୁ ସାହାଯ୍ୟ କରେ । ଅନାହୂତକୁ ପଢ଼ାଏ । ବାକି ସମୟ ହୋମିଓପାଥିକ୍ ପୁସ୍ତକ ପାଠ ଓ ବିନା ମୂଲ୍ୟରେ ଔଷଧ ବିତରଣ କରିବାରେ କଟାଏ । ଆବଶ୍ୟକ ମଣିଲେ ମାଆଙ୍କୁ ପରାମର୍ଶ କରେ ।

Digitized by PPRACHIN, SOA

ବିନା ମୂଲ୍ୟରେ ଔଷଧ ନେବାକୁ ସତ୍ୟବତୀଙ୍କ ଘରେ ଜନତା ହୁଏ ଭିଡ଼ । ଲୋକେ ଆହୁତର ଔଷଧକୁ ପ୍ରଶଂସା କରନ୍ତି । ବଢ଼ାଇ କହନ୍ତି, ଅମୃତ-ହସ୍ତା, ସତ୍ୟବତୀଙ୍କୁ ବି ଦିନେ ସେ ଟପିଯିବ ।

ପ୍ରଶଂସା ଶୁଣି ସତ୍ୟବତୀ ମୌନ ରହନ୍ତି । ଭାବନ୍ତି, ଇତିହାସ ପୁଣି ଲେଉଟିବ ?

ମାସ ପରେ ମାସ କଟିଗଲା । ଆସିଲା ଦଶହରା । କଟକ ସହର ପଡ଼ୁଛି ଉଠୁଛି । ଲୋକ ଭିଡ଼ । ନୂନା ତ ଘରେ ମୁହୂର୍ତ୍ତେ ରହୁ ନାହିଁ । ଆଇନ୍ କଲେଜର ଛାତ୍ର । ବନ୍ଧୁମାନଙ୍କ ସଙ୍ଗରେ ଦିନ ରାତି ଦେଖାଦେଖାରେ ବ୍ୟସ୍ତ । କଥା ମାନୁ ନାହିଁ । ଶାସନ କରିବାକୁ ଚେଷ୍ଟା କଲେ ସେ ଚିଡ଼ିକି ଉଠୁଛି ।

ସତ୍ୟବତୀ ଆହୁତକୁ ପାଖକୁ ଡାକି କହିଲେ, ରାତି ଏଗାରଟା ହେଲା, ନୂନାର ଦେଖା ନାହିଁ । ପିଲାଟା କଥା ମାନୁ ନାହିଁ ।

ଆହୁତ ଉତ୍ତର ଦେଲା, ତୁ ଚିନ୍ତା କର ନା । ନୂନା ଭଲ ପିଲା । ଟିକିଏ ଫୁର୍ତ୍ତି କରୁଛି, କରୁ । ମୁଁ ତାକୁ ବୁଝେଇ ଦେବି ।

ତୋ କଥା ବି ମୁଁ ଭାବୁଛି ମା ।

ଆହୁତ ହସିଲା । କହିଲା, ମୋ କଥା ତୁ ଚିନ୍ତା କର ନାହିଁ । ପରର ସେବା କରି ସାରା ଜୀବନ ତୁ କଟାଇଦେଲୁ । ତୁଇ ମୋର ଆଦର୍ଶ ।

ସତ୍ୟବତୀଙ୍କର ଆଖି ଛଳଛଳ ହେଲା । ସେ କହିଲେ ପରର ସେବା କରିବା ମୋ ଜୀବନର ଆଦର୍ଶ ବୋଲି ମୁଁ କେବେ ଭାବି ନାହିଁ । ତମ ଦୁଇ ଜଣଙ୍କୁ ମଣିଷ କରିବାକୁ ବଡ଼ ସହର ଛାଡ଼ି ଛୋଟ ସହରକୁ ଆସିଲି । ପରର କାମ କରି ଧନ ଉପାର୍ଜ୍ଜନ କରି ବଢ଼ାଇଲି । ସବୁବେଳେ ଆଶା କରି ଅନେଇଁ ବସିଛି —

ବୁଝିଛି ମା ।

ଏ ଦୁନିଆ ଅତି ନିଷ୍ଠୁର ।

ହେଉ । ଯୁଦ୍ଧ କରି ଜିତିବାର ସାହସ କି ଶକ୍ତି ଆମର ନାହିଁ । ଦୁନିଆ ଆଗରେ ମଥା ନୋଇଁ ଆମେ ଶରଣ ପଶିବା । ଜୀବନ ରକ୍ଷା ପାଇଁ ଲୋକଙ୍କର ଯେଉଁ ସେବା ତୁ ସାରା ଜୀବନ କରି ଆସିଲୁ ମୁଁ ମଧ୍ୟ ସେଇ ସେବାର ଆଦର୍ଶକୁ ଜୀବନ୍ତ ରଖି ପାରିବି ।

ମୋର କର୍ମର ପ୍ରେରଣା ସେ ତମେ ଦୁହେଁ ।

ଆହୁତ ମାତାଙ୍କର ମୁହଁରେ ବେଦନାର ଛାୟା ଦେଖିଲା । ସେ ଦୃଷ୍ଟି ନୋଇଁଲା । ମୁହୂର୍ତ୍ତକ ଭିତରେ ଅତୀତ ଜୀବନର ସବୁ ଘଟଣା ମନରେ ଜୀବନ୍ତ ହୋଇ ଉଠିଲା

ସତେ, ଏ ଦୁନିଆ ଅତି ନିଷ୍ଠୁର ! ସମସ୍ତେ ନେବାକୁ ଆଶାୟୀ, ଦେବାକୁ ନୁହଁନ୍ତି । ନିଜେ ଆତ୍ମରକ୍ଷା କରି ନ ପାରିଲେ, ଆତ୍ମରକ୍ଷା କରିବାର ସାହସ ଓ ଶକ୍ତି ନ ଥିଲେ ମୃତ୍ୟୁ ଅନିବାର୍ଯ୍ୟ ।

Digitized by PPRACHIN, SOA

ଆହ୍ଲାଦର ଚନ୍ଦ୍ରାରେ ଲାଗିଛି ଅନଳ । ଜଳୁଛି । ଛଟପଟ ହେଉଛି । ସେମାନଙ୍କୁ ସେ ନିଜର ଜୀବନବୃତ୍ତାନ୍ତ କହି ପାରେ ନାହିଁ । ନିଜେ ସେ ଜାଣେ ନାହିଁ । ଯାହା ସେ ଶୁଣିଛି ସେଥିରେ ତା'ର ନିଜର ବିଶ୍ୱାସ ହୁଏ ନାହିଁ । ରୂପସ୍ୱିନୀ ସ୍ନେହମୟୀ ଜନନୀ ତା'ର ଥିଲେ କଅଣ ? କନ୍ୟା ହୋଇ ସେ ସାଙ୍ଗସାଥୀ ହେବ ?

ଆହ୍ଲାଦ ସୁନ୍ଦରୀ, ଶିକ୍ଷିତା, ଭଦ୍ର । ଏତିକି କ'ଣ ଯଥେଷ୍ଟ ନୁହେଁ ? ସେ ଭଲ ଘରଘରେ ଓ ଧନଗର୍ବସ୍ପର୍ଶୀ ହୋଇପାରେ, ଏତିକି କ'ଣ ଯଥେଷ୍ଟ ନୁହେଁ ? କିନ୍ତୁ ସେମାନେ ଏ ସବୁକୁ ବିଶ୍ୱାସ କଲେ ମଧ୍ୟ ପଛେଇ ଯାଉଛନ୍ତି । ଅଜ୍ଞାତକୁଳଶୀଳାର ଯେତେ ଯାହା ଗୁଣ ଥିଲେ ବି ସେ ପତ୍ନୀ ହେବାକୁ ଯୋଗ୍ୟ ନୁହେଁ । ସେ କେବଳ ପ୍ରେୟସୀ ହେବାକୁ ଉପଯୁକ୍ତ !

ଟେଶ ଆସିଲା ଦୁଇଧାର ଲୁହ । ଆହ୍ଲାଦ ମଥା ଟେକି କହିଲା, ମା, ତୋର କର୍ମର ପ୍ରେରଣା ଥିଲୁ ଆଉ ନୁହେଁ । ମୋର କର୍ମର ପ୍ରେରଣା ହେବ ସାରା ଦୁନିଆ । ସେମାନେ ମୋତେ ସ୍ନେହ କରନ୍ତି କିନ୍ତୁ ଗ୍ରହଣ କରିପାରି ନାହାନ୍ତି । ଦୂରେଇ ଯାଉଛନ୍ତି । ମୁଁ କାହାରି ଉପରେ ଅଭିମାନ କରିବାକୁ ଚାହେଁନାହିଁ । ମୁଁ ସାରା ଦୁନିଆକୁ ସ୍ନେହ କରିବି, ଗ୍ରହଣ କରିବି, ସମସ୍ତଙ୍କୁ ସୁଖୀ କରିବାର ଉଦ୍ୟମରେ ନିଜେ ହେବି ସୁଖୀ ।

ଏ କି କଥା ତୁ କହୁଛୁ ଆହ୍ଲାଦ ?

ଉତ୍ତରରେ ସତ୍ୟବତୀଙ୍କର ମୁହଁ ମଳିନ ଦିଶିଲା । କନ୍ୟାକୁ ନୀରବ ଦେଖି ଅଚଳ ସ୍ୱରରେ ସେ କହିଲେ, ଅସମ୍ଭବ କଥା ତୁ ଭାବୁଛୁ । ବିନା ଅବଲମ୍ବନରେ ନାରୀର ଜୀବନଟା ଅଥଳ ଜଳରେ ଭାସେ । ସବୁ ଆଦର୍ଶ ମିଳାଏ । ଭଲ ମନ୍ଦ ବାଛିବାର ବେଳ ନାହିଁ । ଯିଏ ତତେ ସ୍ନେହ କରୁଛି ତାକୁ ହିଁ ଗ୍ରହଣ କର । ଯାହାକୁ ଗ୍ରହଣ କରିବୁ ତା'ର ପ୍ରକୃତିର ଉପଯୋଗୀ କରି ନିଜର ପ୍ରକୃତିକୁ ନୂଆ ଗ୍ରନ୍ଥରେ ଗଢ଼ । ସୁଖରେ ଜୀବନ କଟିବ । ତୋର ସୁଖ ଦେଖି ମୁଁ ସୁଖୀ ହେବି ।

ଆହ୍ଲାଦ କହିଲା, ସେପରି ଅବଲମ୍ବନ ତ ଚନ୍ଦ୍ରାଙ୍କଲେ ଆଗରେ ଆସି ଠିଆହେବ, ହେଉ ପଛେ ସେ ଅପ୍ରାପ୍ୟ ! ସେ କଏ, ଏ ପ୍ରଶ୍ନ ତୁ ମତେ ପଚାର ନା ଏତିକି ଜାଣି ଥା, ଅନ୍ୟମାନଙ୍କ ପରି ସେ ତା'ର ଭାଷାରେ, ଦୃଷ୍ଟିରେ, ଚାଲିଚଳନ, ଭଙ୍ଗୀଭାଙ୍ଗରେ ସ୍ନେହ ପ୍ରକାଶ କରେ ନାହିଁ । ସେ କଠୋର, ଗାମ୍ଭୀର୍ଯ୍ୟ । ସେ କଥାରେ ଆଘାତ କରେ । ତା ପାଖରେ ରୂପଯୌବନ, ଶିକ୍ଷା ଓ ଧନର ମୂଲ୍ୟ ନାହିଁ । ସେ ଆନୁଗତ୍ୟ ଚାହେଁ ନାହିଁ । ସେ କିଛି ଚାହେଁ ନାହିଁ ।

କଅଣ ତୁ ଏପରି ଲୋକଠାରୁ ଆଶା କରୁ ?

କିଛି ନାହିଁ । ନିଜେ କେବଳ ମନରେ ପାଇବି ଗୋଟିଏ ଅବଲମ୍ବନ । ତା ପ୍ରତି ମନର ଗଭୀର ଅନୁରକ୍ତି ମୋତେ ଅନ୍ୟମାନଙ୍କ ପାଖରୁ ଦୂରେଇ ରଖିପାରିଛି ଓ ପାରିବ । ସେହି ଅନୁରକ୍ତି ହିଁ ମୋତେ ଆନନ୍ଦ ଦେବ, ବାଟ କଢ଼ାଇ ନେବ ।

Digitized by PPRACHIN, SOA

ସତ୍ୟବତୀଙ୍କ ଆତ୍ମା ବାହୁନି ଉଠିଲା । ଆହ୍ଲାଦର ଦୃଷ୍ଟିରେ ଯେଉଁ ଅଜଣା ଆନନ୍ଦର ଦୀପ୍ତି ଦେଖି ମଧ୍ୟ ସେ ଭାବିବାକୁ ଲାଗିଲେ, ଝିଅଟା ପାଗଳ ହୋଇଛି । ବେଶି ପାଠ ପଢ଼ି ତା'ର ମୁଣ୍ଡ ଖରାପ ହୋଇଚ । ସଂସାରର ଭଲମନ୍ଦ କଥା ସବୁ ସେ ଜାଣେ । କି ଉପଦେଶ ତାକୁ ସେ ଦେଇ ପାରିବ ?

କଏ ସେ ପିଲାଟି, ଯାହା ପାଖରେ ଆହ୍ଲାଦ ମଥା ନୋଇଁଛି । ଜାଣିବାକୁ ଆଗ୍ରହ ହେଲେ ବି ସେ ପଚାରିପାରିଲେ ନାହିଁ । ନ ପଚାରି ମଧ୍ୟ ରହିବାକୁ ମନଟି ଛଟପଟ ହେଲା ।

ସବୁ ବନ୍ଧପତ୍ର ଆହ୍ଲାଦ ଆଡ଼େଇ ଦେଇଛି । ଟେବୁଲ ଉପରେ ତା'ର ରଖା ହୋଇଛି ବଡ଼ ବଡ଼ ହୋମିଓପାଥିକ୍ ବହି । "ଦାଗୀ" ମାସିକ ପତ୍ରିକା ତିନି ଚାରି ଖଣ୍ଡ ସଜାହୋଇ ରହିଛି । ସବୁ ଗୁଡ଼ିକ ସେ ପଢ଼ିଛି । ପ୍ରତି ପୃଷ୍ଠାରେ ସେ ଦେଇଛି ଦାଗ ।

ଆହ୍ଲାଦ ହୋମିଓପାଥିରେ ଡିଗ୍ରୀ ହାସଲ୍ କରିଚ । ଚଟିଏ କାଗଜ ଉପରେ ନାମ ଛପାଇଛି – "ଶ୍ରୀମତୀ ଆହ୍ଲାଦ ଦେବୀ ଏମ. ଏ, ଏଇଚ. ଏମ. ଡି ।" ବୈଠକଘରଟି ହୋଇଛି ତା'ର ଔଷଧ ଭରା ଆଲମାରିରେ ପୂର୍ଣ୍ଣ । ରୋଗୀମାନଙ୍କୁ ସେଇଠି ସେ ଔଷଧ ବିତରଣ କରେ । ଆବଶ୍ୟକ ମଣିଲେ ସତ୍ୟବତୀଙ୍କ ସଙ୍ଗେ ପରାମର୍ଶ କରେ । ବେଳେବେଳେ ରୋଗୀ ଦେଖିବାକୁ ଯାଏ । ଅତି କଠିନ କେସ୍‌ରେ ସତ୍ୟବତୀଙ୍କ ସଙ୍ଗରେ ଯାଏ ।

ସବୁବେଳେ କାର୍ଯ୍ୟତତ୍ପର । ମନରେ ବିଷାଦ ନାହିଁ । ହସହସ । ଅତି ସରଳ ବେଶଭୁଷା । ଅତି କୋମଳ ସ୍ନେହବୋଳା କଥା । ସମସ୍ତେ ମୁଗ୍ଧ । ସମସ୍ତଙ୍କ ମୁହଁରେ ପ୍ରଶଂସା ।

ସତ୍ୟବତୀ ସୁଖୀ ହୁଅନ୍ତି । ଅନାହୂତ ଓକିଲାତି ପାସ୍ କରି ଆଇନ୍ ବ୍ୟବସାୟ କରିବାକୁ ସଜ ହେଉଛି । ସେ ଭଲ ପିଲା ହେଲାଣି । ସତ୍ୟବତୀଙ୍କର ତପସ୍ୟା ସତେ କି ସଫଳ ହୋଇଛି । ପିଲା ଦୁଇଟି ତାଙ୍କର ମଣିଷ ହୋଇ ପାରିଛନ୍ତି ।

ଦୁଇ ବର୍ଷ କଟିଯାଇଛି । ପୁଣି ଆସିଛି ବଣହରି । ଟେବୁଲ ଉପରେ "ଦାଗୀ" ମାସିକ ପତ୍ରିକା ଗଦା ହୋଇ ଗଲାଣି । ଆହ୍ଲାଦ ସବୁ ପଢ଼େ । ସବୁ ପତ୍ରିକା ଉପରେ ସେଇ ଗୋଟିଏ ଫଟୋ—ଦାଗୀ ଧନଞ୍ଜୟ । ବେଳେବେଳେ ସେ ଆସେ । ପତ୍ରିକା ଦେଇ ଚାଲିଯାଏ । କେବେ କେବେ ଆହ୍ଲାଦ ସଙ୍ଗରେ ତର୍କ କରେ । ସେଇ କ'ଣ ତା'ର ମନର ମଣିଷ ଅବଲମ୍ବନ ?

ସତ୍ୟବତୀ ଅନାଇଁ ରହନ୍ତି । ଧନଞ୍ଜୟର ଫଟୋକୁ ଦୃଷ୍ଟି ଦେଲେ ଆଖିରେ ପଡ଼େ କାନ୍ଥରେ ଟଙ୍ଗା ହୋଇଥିବା ବଡ଼ ଛବିଟି – ନଦୀକୂଳ, ଘୋର ଅରଣ୍ୟ । ଦମୟନ୍ତୀ

Digitized by PPRACHIN, SOA

ନଷ୍ଟି ନ୍ତ୍ର- ନଦ୍ରାରେ ଅଚେତନ । ନଳରାଜା ଦମୟନ୍ତୀଙ୍କୁ ପରିତ୍ୟାଗ କରି ଚାଲି ଯାଉଛନ୍ତି । ଛପିଯାଉଛନ୍ତି ନିଘଞ୍ଚ ଅରଣ୍ୟ ଭିତରେ ।

ମନ ଭିତରେ ଭୁଲି ଅଗ୍ରାତ ଗୁମରି ଉଠେ ।

ଘୁମରି ଉଠେ ସେହି ଷୁଦ୍ର ପଦଟି — ଜୀବନର ସର୍ବସ୍ୱ କରି ଦୁଇ ବର୍ଷରୁ ଅଧିକ କାଳ ଯାହାକୁ ସେ ସାଇତ ରଖିଚ । ଆଜ ପରା କୁମାର ପୂର୍ଣ୍ଣିମା । ଉଜ୍ଜ୍ୱଳ ହସିଲା ଜହ୍ନ ନର୍ମଳ ଆକାଶରେ କେତେ ଉପରକୁ ଉଠିଲାଣି । କୁମାରୀମାନଙ୍କର ଆନନ୍ଦ ଓ ଉତ୍ସବର ରାତ । କାହିଁ ତା'ର ଆନନ୍ଦ ? ସହରରେ ବଢ଼ି ଗ୍ରାମ୍ୟଜୀବନର ସୁଖ ଆନନ୍ଦ କ'ଣ ସେ ଜାଣେ ନାହିଁ । ହାହାକାର କରି ଉଠୁଛି ।

ସମବୟସ୍କାମାନେ କାଏ କେଉଁଠି ସୁଖଦୁଃଖରେ ସଂସାର କରୁଥିବେ । କେତେ ହୁଏ ତ ଜନନୀ ହୋଇ ସାରବେଣି । ସେମାନଙ୍କର ନୂଆ ନୂଆ ଅଭିଜ୍ଞତା । ବିବାହ, ସ୍ୱାମୀର ସଂସାର, ମାତୃତ୍ୱ, ଭବିଷ୍ୟତ ଭାବନା । ତା'ର ଜୀବନ ଗୋଟିଏ ବାଟରେ ଗଡ଼ି ଚାଲିଛି । ଜୀବନଟା ଜୀବନ ପରି ଲାଗୁନାହିଁ, ନନ୍ତଦନିଆଁ ପୁରୁଣା ଜୀବନ ।

ଆଜ ବି ମା ଘରେ ରହିପାରି ନାହାନ୍ତି । କେଉଁ ବୋହୂଟିର ବିକଳ ରୋଦନ ଆସି ପହଞ୍ଚିଛି କାନରେ । ନ ଗଲେ ନ ଚଳେ । କାହାକୁ ସେ କେବେ ହତାଶ କରି ନାହାନ୍ତି । ଶୁଣିବା ମାତ୍ରେ ଚାଲିଯାଇଛନ୍ତି ।

କେତେ ଥର ଆହ୍ଲାଦ ତାଙ୍କ ସାଙ୍ଗରେ ଯାଇଛି । ଆଗେ ସତ୍ୟବତୀ ବାରଣ କରୁଥିଲେ । ଝିଅର ଶିଖିବାର ଆଗ୍ରହ ଦେଖି ସେ ଆଉ ବାଧା ଦେଇ ପାରିଲେ ନାହିଁ । ଆହ୍ଲାଦର ଚମକ ଭାଙ୍ଗିଛି । ନାରୀଜୀବନଟା କ'ଣ, କେତେ କଲବଲ ଛଟପଟ, ପୁଣି ସେହି ଆକୁଳ ବିକଳ ଭାବ ଭିତରେ କପରି ଆଶା ଓ ଆନନ୍ଦର କଲ୍ଲୋଳ ଛୁଟେ, ସେ ଦେଖିଛି ଅନୁଭବ ନ କଲେ ମଧ୍ୟ ଅନୁମାନ କରିପାରିଛି — ସୃଷ୍ଟିର ରହସ୍ୟ । ଟିକି ପିଲାଟିକୁ କୋଳରେ ଧରି ସେ କେତେ ଥର ନିଜକୁ ଭୁଲିଛି, ମାତୃତ୍ୱର ଆନନ୍ଦ ଉପଲବ୍ଧି କରିଛି ।

ଆଡ଼େଇ ଆଡ଼େଇ ଚାହାନ୍ତି ତ ଆହ୍ଲାଦକୁ । କଥାଣ ସେମାନଙ୍କର ଦୃଷ୍ଟି ପଚାରେ ଆହ୍ଲାଦ ଅନୁମାନ କରିପାରେ, — ଏଡ଼େ ବଡ଼ ଝିଅଟା, ବାହା ହୋଇ ନାହିଁ ଗୋ ! କାହିଁକ ବା ? ଏଁ, କାହିଁକ ? ମା' ସଙ୍ଗରେ ପୋଷଣାଘରେ ପଶିଛି । ମୁହଁ ଖୋଲି କେହି କେବେ ପଚାରି ନାହିଁ । ଦୃଷ୍ଟି ହିଁ ପଚାରିଛି ।

ଉତ୍ତର ଦେଇଛି ତା'ର ହତାଶାର ଅବଜ୍ଞା ଭାବ — ସବୁ ନାଟକର ନାୟିକା ମୁଁ, ଲକ୍ଷେ ଘରର ଘରଣୀ, ଅଗଣନ ପୁତ୍ରକନ୍ୟାଙ୍କର ଜନନୀ ! ପ୍ରତି ସଂସାର ତ ଗୋଟିଏ ଗୋଟିଏ ନାଟକ । ପ୍ରତି ସଂସାରରେ ସେ ହୋଇପାରେ ନାୟିକା, ଅଭିନୟ

Digitized by PPRACHIN, SOA

କରିପାରେ, ବୁଝାଇ ପାରେ, ଉଡ଼ାଇ ପାରେ, ନିଜେ [illegible] ହସିପାରେ କାନ୍ଦିପାରେ । ଆଜି ଏଇ ନୂଆ ଜନମ ଭିତରେ ନିଜକୁ ସେ ଅନୁଭବ କରିଥିଲେ, ଦୁଃଖଯନ୍ତ୍ରଣା ସହିଥିଲେ, ଜୀବନ ମରଣର ଦୋହଲା ଅନିଶ୍ଚିତତାର ଦୋଳିରେ ଝୁଲି ଆଶା ଦୁରାଶାର ଉନ୍ମାଦନା ଉପଲବ୍ଧି କରିଥିଲେ ।

ଏଇ ଜୀବନ ଭଲ ।

କାହିଁକି ଛେବେ ଏଟି, ଏଇ ସହରିଆ ଜୀବନ ।

ନଳରାଜ ଘାସ କାଟିବାକୁ ଚାଲି ଯାଉଛନ୍ତି ।

ଆହୁରି ଶୀଘ୍ର ଛୁଟିଲା । ଗଳାଙ୍କ ଉପରୁ ଓହ୍ଲାଇ ଆଲମାରି ଖୋଲିଲା । ଚିଠି ବାକ୍ସରୁ ଖଣ୍ଡିଏ ଚିଠି କାଢ଼ି ପଢ଼ିବାକୁ ଲାଗିଲା । ଦୁଇ ବର୍ଷ ଭିତରେ ପତ୍ର ଖଣ୍ଡିକ ସେ ପଚିଶ ଥର ପଢ଼ି ସାରିଲାଣି, ମୁଖସ୍ଥ ହେଲାଣି । ତଥାପି ପତ୍ରଖଣ୍ଡି ଦୁଇ ଆଖିରେ ଦେଖି ବାରମ୍ବାର ପଢ଼ିବାକୁ ଆଗ୍ରହ ହୁଏ । ଅକ୍ଷରଗୁଡ଼ିକ ଆହୁରି କେତେ କ'ଣ କଥା କହେ । ଅକ୍ଷର ଓ ଲେଖିବାର ଧରଣର ଗୋଟାଏ ସ୍ୱତନ୍ତ୍ର ଭାଷା ଅଛି । ସେ ଭାଷାର ଅର୍ଥ ବିଭିନ୍ନ ସମୟରେ ବିଭିନ୍ନ । —

ପ୍ରିୟା ଦମୟନ୍ତୀ, — ଆପଣଙ୍କର ଉଦ୍ଦେଶ୍ୟ ସଫଳ ହେଉ ଏହା ହିଁ ନଳ-ରାଜାଙ୍କର ଆଶୀର୍ବାଦ । ଆପଣ ରଙ୍ଗ ମଞ୍ଚରେ କେବେ କେଉଁ ନାୟିକାର ରୋଲ୍‌ରେ ଅଭିନୟ କରିବେ ସେ କଥା ଆପଣ ନିଜେ ହିଁ ଏବେ ଅନୁମାନ କରି ପାରୁ ନ ଥିବେ । ଯେଉଁ ନାୟିକାର ରୋଲ୍‌ରେ ଅଭିନୟ କରନ୍ତୁ ପଛେ, ଦର୍ଶକଙ୍କର ଆଖିରେ ଜୀବନ୍ତ ହୋଇ ଠିଆ ହେବେ ଓ ବାସ୍ତବତାର ଧାରଣା ଆଣି ପାରିବେ, ଏ ବିଷୟରେ ନଳରାଜା ନିଃସନ୍ଦେହ । ସେ ମଧ୍ୟ ନିଃସନ୍ଦେହ ଯେ ଆପଣ ନିଜେ ନିଜକୁ ସେଇ ନାୟିକାର କୃତ୍ରିମ ବିଧାଣ ବୋଲି [illegible] ମୁହୂର୍ତ୍ତରେ ଅନୁଭବ କରୁଥିବେ — ।

— ନଳରାଜା ଆଜି ଗୃହର ବନ୍ଧନ ଛିନ୍ନ କରି ଚାଲି ଯାଉଛନ୍ତି । ସେ ମଧ୍ୟ ଅଭିନୟ କରିବାକୁ ସଂକଳ୍ପ କରିଛନ୍ତି । କିନ୍ତୁ ସେ ହେବେ ଗୋଟିଏ ନାୟକ । ତାଙ୍କର ନାଟକ ହେବ ଜୀବନ୍ତ, କେତେ ପରିସ୍ଥିତି, କେତେ ସିନ୍ ସୃଷ୍ଟି କରିବ । କେତେ ନାୟକ ଓ ନାୟିକାଙ୍କ ମଧ୍ୟରେ ସେ କ୍ରୀଡ଼ା କରିବେ, କର୍ମର କ୍ରୀଡ଼ା । ଚାଲିଯିବେ ପୁଣି ଅନ୍ୟ ରଙ୍ଗ ମଞ୍ଚକୁ । ସେଠି ମଧ୍ୟ ସେ ସେହି ନଳ, — ହାତରେ ଦା, ମୁଣ୍ଡରେ ଘାସବୋଝ । ଦର୍ଶକ ତାଙ୍କୁ ଅଭିନନ୍ଦନ ଜଣାଇବ ନାହିଁ, କରତାଳି ଦେବ ନାହିଁ, କାରଣ, ତାଙ୍କର ଦର୍ଶକ ତାଙ୍କର ବାସ୍ତବତାର ସାକ୍ଷୀ — ।

— ଏ ଯୁଗର ଦମୟନ୍ତୀଙ୍କର ଆଉ ଥରେ ସ୍ୱୟମ୍ବର ହୋଇପାରିବ ନାହିଁ, ଏ ତ ଜଣା କଥା । ପୁଣି, ନୂତନ ରୋଲ୍‌ରେ ନୂତନ ନାୟିକା ହେଲାବେଳେ ଦମୟନ୍ତୀଙ୍କର ଦମୟନ୍ତୀତ୍ୱ ତ ରହିବ ନାହିଁ, ସେ ହେବେ ଆଉ କଅଣ । ତେଣୁ ନଳ ଓ ଦମୟନ୍ତୀଙ୍କର ବିଚ୍ଛେଦଟା ଚିରଦିନ ହିଁ ବିଚ୍ଛେଦ ହୋଇ ରହିବ । ସେଇ ବିଚ୍ଛେଦ

Digitized by PPRACHIN, SOA

ହିଁ କାମ୍ୟ, କାରଣ, ସେଥିକ ହେବ ନକଲସ୍ରଷ୍ଟାଙ୍କର ଯାଯାବରଟା ଜୀବନର ସାଥି ଓ ପ୍ରେରଣା ।

—ବଜ୍ରବାହୁ

ଚିଠି ଖଣ୍ଡି ପଢ଼ି ପଢ଼ି ଆଖି ହେଲା ଛଳଛଳ । ଶେଷ ବାକ୍ୟଟିର ଅର୍ଥ କ'ଣ, ଦୁଇ ବର୍ଷ ହେଲା ସେ ବୁଝିବାକୁ ଚେଷ୍ଟା କରୁଛି । ହୁଏ ତ ବୁଝିଛି । ମାତାଙ୍କର ଅନୁରୋଧ ନୁହେଁ, କେବଳ ଏଇ ବାକ୍ୟଟି ବକ୍ଷ ପଥରୁ ତାକୁ ଅଟକାଇ ରଖିଛି । ଉତ୍ତର ଦେବାକୁ ମନ ହେଉଛି ଛଟପଟ । କେଉଁଠିକି ସେ ଉତ୍ତର ପଠାଇବ ? ସେ କାହାନ୍ତି ?

ସେ ଘର ଛାଡ଼ି ଚାଲି ଯାଇଛନ୍ତି । ବାହାର ହୋଇ ଖୁଡ଼ୀ ଖବର କାଗଜରେ ଅନୁରୋଧ ଛାପିଛନ୍ତି ମାସେ ପରେ— ।

ଆହୁରି ପତ୍ରଖଣ୍ଡି ଆଲମାରି ଭିତରେ ସାଇତି ରଖିଲା । ଖବର କାଗଜ କଟିଙ୍ଗ୍ ରଖିଥିବା ନଥିଟି ଆଣି ଓଲଟାଇବାକୁ ଲାଗିଲା । ଦୃଷ୍ଟିରେ ପଡ଼ିଲା ସେଇ କଟିଙ୍ଗ୍ ଟି —

ବାବୁ ସୁବ୍ରତ, ତାହା ଉପରେ ରାଗ କରି, ଅଭିମାନ କରି ଘର ଛାଡ଼ି ଚାଲିଗଲ ? ଗୋଟିଏ ମାସ ପୂରିବାକୁ ବସିଲା । କେଉଁଠି ଅଛ, କପିଏ ଅଳ୍ପ ଲେଖି ଚିଠି ଖଣ୍ଡେ ବି ଦେଉନ । ତମେ ଗଲା ଦିନୁ ତମର ମା ଖିଆପିଆ ଭୁଲିଲେଣି । ସବୁବେଳେ ଆଖିରୁ ଲୁହ ଝରୁଛି । କୁଆଁଥାଇ ବିଲେଇ ପଶୁ ଏ ପାଖ ସେ ପାଖ ହୋଇ ତମର ଫେରିବା ବାଟକୁ ଅନାଇ ରହୁଛନ୍ତି । ତମର ସୁନ୍ଦରୀ ନମ୍ବୁ ଝୁରୁଛି । ତା'ର କଣ୍ଠ ଦୋହଲିଲାଣି । ସୁବ୍ରତ ଆଉ ଘର ମାଡ଼ୁ ନାହିଁ । ଫେରି ଆସି ସମସ୍ତଙ୍କର କ'ଣ ବ୍ୟବସ୍ଥା କରୁଛ କର । ନୋହିଲେ, ତମର ଖବର ଲେଖି ଶୀଘ୍ର ପତ୍ର ଦିଅ । ଆଉ ଡେରି କଲେ ମା'ଙ୍କ ମୁହଁ ଦେଖି ପାରିବ ନାହିଁ । — ତମର ଖୁଡ଼ୀ ।

ଏଇ ଗୋଟିଏ ଅନୁରୋଧ । ଆଉ ଏପରି ଅନୁରୋଧ ଖବର କାଗଜରେ ଛପା ହୋଇ ନାହିଁ ପରା ! ଆହୁରି ଦୃଷ୍ଟି ପଡ଼ି ନାହିଁ ତ । ହୁଏ ତ ବଜ୍ରବାହୁ ଉତ୍ତର ଦେଇଛନ୍ତି, କେଜାଣି ବା, ମାଆ ଖୁଡ଼ୀଙ୍କର ଦୁଃଖ ଦେଖି ଘରକୁ ଫେରି ଯାଇଛନ୍ତି । ତେବେ, "ଧାରା"ର ସେଇ ଲେଖକ ନାୟକଟି କିଏ ? କେତେ ପରିସ୍ଥିତି, କେତେ ନୂଆ ସିନ୍ ସେ ସୃଷ୍ଟି କରିଛନ୍ତି ।

ସେ କରିଛନ୍ତି କର୍ମର କ୍ରୀଡ଼ା ।

ଆହୁରି ପତ୍ରିକାଗୁଡ଼ିକ ଆଣି ଟେବୁଲ୍ ଉପରେ ରଖିଲା । ଚଉକିଟି ପାଖକୁ ଟାଣି ଆଣି ଗୋଟିଏ ପରେ ଗୋଟିଏ ଓଲଟାଇବାକୁ ଲାଗିଲା । କେତେ ଜଣା ଓ ଅଜଣା ଲେଖକ

Digitized by PPRACHIN, SOA

ଯେତେ ଗଳ୍ପ ପ୍ରବନ୍ଧ ଲେଖିଛନ୍ତି କିନ୍ତୁ, ଧାରାବାହିକ ରୂପେ ଲେଖୁଛନ୍ତି କେବଳ ନାୟକ ।

ପ୍ରଥମ ପ୍ରବନ୍ଧ "ଲକ୍ଷ୍ୟ-ଭ୍ରାନ" – ନିଃସ୍ୱ ଯାଯାବର ଜୀବନ, ନିଜେ ସେ ହୋଇଛନ୍ତି ଯେତେ କର୍ମର ନାୟକ । କର୍ମହୀନ ଉଦ୍ଦେଶ୍ୟହୀନ ବେକାର । ବେକାର ଦଳ ସଙ୍ଗରେ ମିଛି ସମୟ କ୍ଷେପଣ । ଅଳସ ଚିନ୍ତା । ବଡ଼ ବଡ଼ ବ୍ୟବସାୟର ପ୍ଲାନ୍ । ଉନ୍ନିଦ୍ର-ରଜନୀ ଓ କେବଳ ପ୍ଲାନ । ବନ୍ଧୁଗଣଙ୍କ ସଙ୍ଗେ ତର୍କ, ମନୋମାଳିନ୍ୟ । ପଳାୟନ !

ଆହା, ବେକାର ଜୀବନର ଦୁଃଖ । ବଡ଼ ହୋଇ କାର୍ ଛୁଟାଇ ଧାଇଁବାର ସ୍ୱପ୍ନ ଓ ନଗଦ ଅନ୍ନ ସମସ୍ୟାର ଟଣାଓଟରା ଯୁଦ୍ଧ । ଚାହା ପିଇ ଦଣ୍ଡେ ଜୀଇଁବାର ଉଦ୍ୟମ ଓ ଆନନ୍ଦ । ଜୁଆଖେଳ ପକେଟ୍‌ମାରୁ ବୃତ୍ତି । ମିଥ୍ୟା । ଧାର ଧନ୍ଦା । ଅନ୍ନସମସ୍ୟା । ନିଜର ମନ ପାଖରେ ସେମାନେ ଦାଗୀ । ଦୁନିଆ ଆଗରେ ଅତର-ମହକା, ସିଗାରେଟ୍-ଟଣା, ଘଣ୍ଟା-ବନ୍ଧା, ଫାଉଣ୍ଟେନ କଲମ-ଖୋସା, ଦରହସା, ବଡ଼ ବଡ଼ କଥାକୁହା ଭଦ୍ରଲୋକ !

ସେଇଠୁ, ଗଳ୍ପଗୁଡ଼ିଏ । ବେକାର ନାୟକର ଭିକ୍ଷା । ପରର ମନ ତରଳାଇ ଧନ ଲାଭର ଫନ୍ଦି । କେବେ ଅନ୍ଧ ଓ ବଧିର, କେବେ ପୁଣି ପଙ୍ଗୁ । କେବେ ସେ ସାଧୁ-ସନ୍ନ୍ୟାସୀ ! ମଣିଷର ଦୟାଭାବ ଓ ସହାନୁଭୂତି ଶୋଷଣ କରୁଛି । ଧନ ଆଣିଛି । ସେ ଦାଗୀ । କିନ୍ତୁ, କେହି ତାକୁ ଦାଗୀ ବୋଲି ବାଛନ୍ତି କରି ନାହାନ୍ତି । ସମସ୍ତେ କହୁଚନ୍ତି, ସେ ଭିକାରି !

ସେ ମୂଲିଆ – ମୁଣ୍ଡଖାଲ ରୁଣ୍ଡରେ । ତଥାପି, ଅଭାବ ମେଣ୍ଟି ନାହିଁ । ଅସମତା ପାଇଁ ମନ ବିଦ୍ରୋହୀ ହୋଇ ଉଠିଛି । ମୁଣ୍ଡ ବଙ୍କାଇ ଚାହିଁଛି ଉଚ୍ଚ କୋଠାକୁ, ଆକାଶର ମଥାନ-ଲଗା ଧାନଗଦାକୁ । ପୁଣି ସେ ଚାହିଁଛି ପୃଥ ଆଡ଼କୁ— ସାହୁକାରର ବଗହଜା ଗହୀର ବିଲକୁ । ଧୂଳି ଉଡ଼ାଇ ତୋଫାନ ବେଗରେ ଛୁଟିଥିବା ମଟରଗାଡ଼ିକୁ । ମୂଲିଆର ମୂଲର ଅଂଶ ସେଇମାନେ ଓଟାରି ନେଇଛନ୍ତି । କିଏ ସେ ଦାଗୀ ? ସେମାନେ ନୁହନ୍ତି । ଯିଏ ଠେଙ୍ଗାଧରି ନ୍ୟାୟ ମାଗିଲା ସେଇ ଏକା ଦାଗୀ । ଯିଏ ପେଟ ପାଇଁ ଛପି ଛପି ଅନ୍ୟର ଟଛିତ ଧନରେ ହାତ ଦେଇ ଧରା ପଡ଼ିଲା, ସେଇ ସେ ଦାଗୀ । ଧରା ଯିଏ ନ ପଡ଼ୁଛି ସେ ଭଦ୍ରଲୋକ ।

ଆହୁରି ଗଳ୍ପ— ନାୟକ ରିକ୍ସା ଟାଣିଛି । ଯେତେକ ମଦ ଅଫିମ ଖାଉଛନ୍ତି । ଦେହରୁ ମଜୁରି ଗ୍ରୁଡ଼ିବ । ରିକ୍ସା ଟାଣିବାକୁ ଦେହରେ ଶକ୍ତି ହେବ । ଯେତେ ଭେଇଲେ ଅଭାବ, କେବଳ ଅଭାବ । ଦେହ ଘୋଡ଼ାଇବାକୁ ଲୁଗା କି ଜାମା ଖଣ୍ଡେ କିଣି ହେଉ ନାହିଁ । ପିଲା କୁଟୁମ୍ବ ଅଧା ଉପାସୀ । ପରର ଧନ ଆଡ଼କୁ ହାତ ବଢ଼ାଇଲେ ସେ ହୁଏ ଦାଗୀ ।

ମାଟିହଣା କଷ୍ଟ କାମ । ନାୟକ ମାଟି ତାଡ଼ୁଛି, ପଥର ଭାଙ୍ଗୁଛି, ପାଣି ବୋହୁଛି, କୋଠା ତୋଳୁଛି, ନାଳ ଖୋଳୁଛି, ରାସ୍ତା ବନ୍ଧୁଛି । ଅଗଣେ ନିଃସ୍ୱ

Digitized by PPRACHIN, SOA

ଶ୍ରମିକଙ୍କ ଭିତରେ ସେ ବି ଜଣେ । ସେମାନେ ଦେଶକୁ ଗଢ଼ୁଛନ୍ତି । ନୂଆ ଦୁନିଆ ସର୍ଜନା କରୁଛନ୍ତି । ଭବିଷ୍ୟତରେ ଯେଉଁମାନେ ଆସିବେ ସେମାନଙ୍କ ପାଇଁ ନିଜର ଶ୍ରମ ସେମାନେ ସଂଚୟ କରୁଛନ୍ତି । ଝାଳ ପଡ଼ୁଛନ୍ତି ନିଜେ ।

ଖାଇବାକୁ ଅନ୍ନ ନାହିଁ । ଦେହ ଘୋଡ଼ାଇବାକୁ ବସନ ନାହିଁ । ଅଖାଦ୍ୟ ଖାଇ ରୋଗରେ ପଡ଼ିଲେ ଔଷଧ ପାଇଁ ସମ୍ବଳ ନାହିଁ । ଶିକ୍ଷା ଅଭାବରୁ ସେମାନେ ଭଲ ମନ୍ଦ ବୁଝି ପାରୁ ନାହାନ୍ତି । ସେମାନେ ଅନ୍ଧ । ନିର୍ମଳ ସୂର୍ଯ୍ୟାଲୋକରେ ଢଳ ଢଳ କରି ଅନାଇ ରହିଲେ ବି ନିଜର ସ୍ୱାର୍ଥ ସେମାନେ ଦେଖି ପାରୁ ନାହାନ୍ତି । ଅଖି ଥାଉଁ ଥାଉଁ ଅନ୍ଧ । ହସି ହସି ଧୂର୍ତ୍ତ ତାଙ୍କର ଶୋଷଣ କରୁଛି ।

ରଙ୍ଗମଞ୍ଚରେ ଅଭିନୟ ହେଉଛି—ଭାତ, ବେକାର, ହା-ଅନ୍ନ । ବଜାର ଆଲୁଅ ଓ ବିଜୁଳିପଙ୍ଖା ତଳେ ଉଦ୍‌ବିଗ୍ନ ଦର୍ଶକମଣ୍ଡଳୀ । ଧନ ଦେଇ ଗରିବର ଦୁଃଖ ଦେଖୁଛନ୍ତି । ଅଭିନୟକୁ ସରସ କରିବାକୁ ବିଶ୍ୱାମିତ୍ର ପୁନର୍ଜନ୍ମ ଲାଭ କରୁଛନ୍ତି । ତପସ୍ୟା ଭଙ୍ଗ କରିବାକୁ ସ୍ୱର୍ଗରୁ ଓହ୍ଲାଇ ଆସୁଛନ୍ତି ମେନକା । ଅର୍ଦ୍ଧଉଲଗ୍ନ ମୂର୍ତ୍ତି, ଗୀତ, ନାଚ, କରତାଳି । ଭିଖାରୀ ଆସୁଛି ଗୀତ ବୋଲି ବୋଲି । କରତାଳି ସଙ୍ଗେ ଏନ୍‌କୋର । ଖେଳ ସରିଛି । ସାଇକେଲ୍ ରିକ୍‌ସା, କାର୍ ଛୁଟି ପଳାଇଛି । ଗ୍ରୀନ୍ ରୁମ୍‌ରେ ନର୍ତ୍ତକୀ ମେନକା ବେଶ ବଦଳୁଛି, ମୁହଁରୁ ରଙ୍ଗ ଧୋଉଛି । ରଙ୍ଗମଞ୍ଚର ଅଧିକାରୀ ଏକାଉଣ୍ଟ ଦେଖୁଛନ୍ତି, ଟଙ୍କା ଗଣୁଛନ୍ତି । ହସ ହସ ମୁହଁ । ଗ୍ରାଣ୍ଡ୍ ସକ୍‌ସେସ୍ !

କିଏ ଦାୟୀ, କହିପାରିବ କି ନାୟକ ଓ ନାୟିକାମାନେ, ଛଳ ଛଳ ଆଖି କରିଥିଲେ ଯେଉଁ ଦର୍ଶକମାନେ ? ଗୋ ଉଲୂପୀ, ହେଲେନା, ରୌଶି, ପଦ୍ମାବତୀ, ଦମୟନ୍ତୀ, ହେ ଅର୍ଜ୍ଜୁନ, ଚନ୍ଦ୍ରଗୁପ୍ତ, କେଦାର, ପୁରୁଷୋତ୍ତମ, ନଳ ଦୁନିଆର ରଙ୍ଗମଞ୍ଚରେ ଯେଉଁ ବାସ୍ତବ ନାଟକଗୁଡ଼ିକ ଅଭିନୀତ ହେଉଛି, ଦେଖିବାକୁ ଆଗ୍ରହ ହେଉ ନି ତମର ? ନିଜେ ଯାହା ସେଇଆ ହୋଇ ଆସିବା କି ? ଦୂର କରି ପାରିବ କି ସେଇ ଦୁଃଖ, ଯାହା ତମେ ଭାତ, ବେକାର, ହା-ଅନ୍ନରେ ଅଭିନୟ କରିଛ ? ହେ ଲେଖକବୃନ୍ଦ, ହେ ଦର୍ଶକମଣ୍ଡଳୀ, ଆସି ପାରିବ କି ?

ଆଜିଠୁ ପତ୍ରିକାଗୁଡ଼ିକ ପୁଣି ସଜାଇ ରଖିଲି । ସେ ବୁଝି ପାରିଲି, ବନ୍ଧୁ ହିଁ ନାୟକ । ଆହ୍ୱାନ ସେ କରୁଛନ୍ତି, ଆସ ଦମୟନ୍ତୀ, ହଜାର ଗ୍ରାମ ଗାଁକୁ ଚାଲି ଆସ । ଦେଶର ଜନତା ଏଇଠି ରହନ୍ତି, ଏଇ ତ ଦୂର ପଲ୍ଲୀରେ ।

କେଉଁଠି ଅଛନ୍ତି ବନ୍ଧୁବାନ୍ଧୁ ସେ ଜାଣେ ନାହିଁ । ଅରବିନ୍ଦ ବି ଜାଣନ୍ତି ନାହିଁ । ନାୟକ କେତେବେଳେ କେଉଁଠୁ ତାଙ୍କର ଗଳ୍ପ କି ପ୍ରବନ୍ଧ ପୋଷ୍ଟ ଦ୍ୱାରା ପଠାଇ

Digitized by PPRACHIN, SOA

ଦଅନ୍ତି । ସେଇଁଠି ସେ ଥାଆନ୍ତି ସେ ଜନତା ଭିତରେ ନିଜକୁ ହଜାଇ ଦେଇଛନ୍ତି । ସେମାନଙ୍କର ସୁଖଦୁଃଖ ରୋଗଶୋକ, ଅଭାବ ଅସୁବିଧାର ଭାଗୀ ସେ ନିଜକୁ କରି ପାରିଛନ୍ତି । ହୃଦୟର ପୂର୍ଣ୍ଣ ଆବେଦନରେ ସେ ଡାକ ଶୁଣିଛନ୍ତି ।

ତାଙ୍କର ଲୁବ୍ଧାଂଶ କାନରେ ବାଜୁଛି — ରଙ୍ଗମଞ୍ଚ ଛାଡ଼ି ବାସ୍ତବ ଦୁନିଆକୁ ଓହ୍ଲାଇପଡ଼ ଆସ୍ଥିତ, ସେଇଠି ତମେ ନିଜ ରୂପରେ ସବୁ ହୋଇପାରିବ — ଜନନୀ, ଭଗିନୀ କନ୍ୟା । ଗ୍ରିନ୍‌ରୁମ୍‌ରେ ପଶି ବେଶ ପିନ୍ଧି, ରୂପ ସଜାଇ ମୁଷ୍ଟିମେୟ ଦର୍ଶକଙ୍କୁ ତିନି ଘଣ୍ଟା ପାଇଁ ମୁଗ୍ଧ କରିବାକୁ ପ୍ରୟାସୀ କାହିଁକି ? ନିଜ ରୂପରେ ବିଶ୍ୱବାସିଙ୍କୁ ମୁଗ୍ଧ କର । ସେମାନଙ୍କର ହୃଦୟର ସ୍ପନ୍ଦନ ଅନୁଭବ କର । କରତାଳି ପରିବର୍ତ୍ତେ ସେଇ ସ୍ପନ୍ଦନ ହିଁ ତମକୁ ଦେବ ଆନନ୍ଦ ।

ପାରିବି ?

ଆହ୍ଲାଦ ଧୀରେ ଧୀରେ ମଥା ଟେକି ଚାହିଁଲା ଝାନ୍ତୁକୁ । ନଳରାଜ ଚାଲି ଯାଇଛନ୍ତି । ସ୍ୱପ୍ନ-ବିଭୋର ଦମୟନ୍ତୀ ଘୋର ନିଦ୍ରାରେ ଅଚେତନ ।

ମନେପଡ଼ିଲା ସେଇ ନାଟ୍ୟରେ ସଞ୍ଜୀବ ଦୃଶ୍ୟଟି । ବଡ଼ବଡ଼ି ଉଜ୍ଜ୍ୱଳ ଆଖି । କାନରେ ବାଜିଯାଉଛି ମନଭୁଲା ସ୍ୱରର ଲହର । ସୁଜନ କକାର କୌତୂହଳିଆ ପ୍ରଶ୍ନ — ନଳବାବୁ ଚାଲିଗଲେ କି ମା ?

ଆହ୍ଲାଦର ଆଖି ହେଲା ସଜଳ । ସେ ପଲଙ୍କ ଉପରୁ ଉଠି ଆସିଲା । ଫଟୋଟି ଛାତି ପାଖରେ ମୁଣ୍ଡ ଲଗାଇ ସେ କହିଲା ଦମୟନ୍ତୀର ନିଦ୍ରା ଭାଙ୍ଗିଛି, ସ୍ୱପ୍ନ ଅପସରିଛି । ତୁମେ ହିଁ ତାର ଦୋଷଭ ।

ରଙ୍ଗମଞ୍ଚର ଅଭିନୟ ଆଜି ଆହ୍ଲାଦର ମନରେ ବାସ୍ତବ ହୋଇଉଠିଛି — ସେ ବିବାହିତା, ସେ ନାରୀ । ସେ ପରିତ୍ୟକ୍ତା । ବନ୍ଦୀ ବଧୂ ।

ତମର ଆହ୍ୱାନ ତାର କାନରେ ପହଞ୍ଚୁଛି । ଆହ୍ୱାନ ନୁହେଁ, ନିର୍ଦ୍ଦେଶ । ସେଇ ନିର୍ଦ୍ଦେଶ ହିଁ ତାର ନାରୀତ୍ୱକୁ ପଥ ଦେଖାଇବ ।

ମା ଫେରି ଆସିଲେ ନି । ସୁଜନ କେଉଁଠାରେ ପାଟି ଶୁଭୁଛି । କେଡ଼େ ଖୁସି ହୋଇ ମା କହୁବେ ଏବେ, ଆରେ ଚୂନି, କି ସୁନ୍ଦର କଇଁଫୁଲ ପରି ଧୋବ ଫରଫର ପୁଅ ହୋଇଛି । ସତେ କି ତାଙ୍କର ଚୂନିର ସେ ପିଲା ।

ଆଖିରୁ ଲୁହ ପୋଛି, ହସହସ ହୋଇ ଆହ୍ଲାଦ ଆସିଲା ବାଡ଼ିକୁ । ଗାଡ଼ିରୁ ଓହ୍ଲାଇ ସନ୍ଧ୍ୟାଶ୍ରୀ ବାରଣ୍ଡାକୁ ଆସିଲେଣି । ଉଜ୍ଜ୍ୱଳ ଜହ୍ନ ଆକାଶର ମଥା ଉପରେ ହସୁଛି ।

ସନ୍ଧ୍ୟାଶ୍ରୀ ନୀରବ ।

ଅଜ୍ଞାତ ଆଶଙ୍କାରେ ଆହ୍ଲାଦର ଛାତି ଭିତରଟା କମ୍ପି ଉଠିଲା । ସେ ଅଧୀର ସ୍ୱରରେ ପଚାରିଲା, କ’ଣ ହେଲା ମା, ପୁଅ କି ଝିଅ ?

Digitized by PPRACHIN, SOA

ସତ୍ୟବତୀ ଦୀର୍ଘଶ୍ୱାସ ଛାଡ଼ି ଘର ଭିତରକୁ ପଶିଗଲେ । ଚଂଚଳା ଆସି ଆଗରେ ଠିଆ ହେଲାଣି । ସେ ମଧ୍ୟ ଜାଣିବାକୁ ଚାହେଁ, ପୁଅ କି ଝିଅ ।

ସତ୍ୟବତୀ କହିଲେ, ସତର ବର୍ଷର ଦୁର୍ବଳ ଝିଅଟି ସେ, ସହିପାରିବ ନାହିଁ— ।

କଥା ଶେଷ କରିପାରିଲେ ନାହିଁ ।

ଆତୁର ଅଳକା ହୋଇ ଠିଆ ହୋଇ ରହିଲା ।

ଆଜି କୁଆଁର ପୁନେଇଁ । ଆକାଶରେ ମଥା ଉପରେ ହସିଲା-ଜହ୍ନ । ଜୋଛନାର କୁଆରରେ ସାରା ପ୍ରକୃତି ଉଲ୍ଲସି ଉଠୁଛି । କେଉଁଠି ଦୂରରୁ ଧୀରେ ଶୀତଳ ସମୀରଣ ହିଲ୍ଲୋଳରେ ଭାସି ଆସୁଛି କୁମାରୀକଣ୍ଠର ମିଶାମିଶି ମନଚୁଳିଆ କୋମଳ ସଙ୍ଗୀତ ।

ଆଉ ଅଗଣାରେ ଯମୁନା ସଙ୍ଗେ ଖେଳୁଛି ସନ୍ଧ୍ୟା । ରହି ରହି ସେ ଦୁହେଁ ଗୀତ ବୋଲୁଛନ୍ତି । ନୂଆମା ବସିରହି ଦେଖୁଛନ୍ତି । ଶୁଭୁଯାଉଛି ମାଳତୀର ଖିଲ୍ ଖିଲ୍ ହସ । ତଳ ଅଗଣାରେ ଜହ୍ନ ଆଲୁଅରେ ମସିଣା ପାରି ବସିଛନ୍ତି ମମତା । ପାଖରେ ଭାରତୀ । ଦୁହେଁ ନୀରବ । ସତେ କି ମନଦେଇ ସନ୍ଧ୍ୟାର ଗୀତ ଶୁଣୁଛନ୍ତି । କେଜାଣି ବା ଝିଅବେଳର କୁଆଁର ପୁନେଇଁ ଖେଳ କଥା ମନେ ପକାଉଛନ୍ତି ।

ମଣିଷ ବୁଢ଼ା ହୋଇ ମାଟିରେ ମିଶେ । ପର୍ବପର୍ବାଣି ଚିର ଯୌବନ, ଚିର ନୂତନ । ମରଣ ପାଖକୁ ଆଗେଇଲା ମଣିଷର ମନରେ ଭୁଲା-ସ୍ମୃତିଗୁଡ଼ିକୁ ଜୀବନ୍ତ କରେ । ନୂଆ ଜୀବନ ସ୍ପର୍ଶରେ ।

ମମତା ହଜି ଯାଇଥିଲେ ଅତୀତରେ । ନୂତନ ଶାଢ଼ୀର ପରଶ, ସବୁ ଅଳଂକାରର ଅସ୍ତିତ୍ୱ, ଫୁଲଗୁନ୍ଥା କବରୀର ଆନ୍ଦୋଳନ ଓ ମହକ । ଆଖିର କଜଳ, ମଥାର ଚନ୍ଦନପାଟୀ ଓ ସିନ୍ଦୂର, ପାଦର ଅଳତା ମନରେ ଆଣିଥିଲା ତ ତାରୁଣ୍ୟର ଉନ୍ମାଦନା । ଭୁଲିଯାଇଥିଲେ, ସେ ଜନନୀ, ଅବହେଳିତା ପତ୍ନୀ; ଭୁଲିଯାଇଥିଲେ, ସେ ପ୍ରୌଢ଼ା ! ସଜାଇ ଦେଇଥିଲେ ତାଙ୍କୁ ନୂଆମା । କାହିଁକିର ପ୍ରଶ୍ନ ଜାଗି ନ ଥିଲା ମନରେ । କପୂର ପରି ଉଡ଼ିଯାଉ, କଣ ପଡ଼ିଛି । ଏବେ ବି ବାସ ମହକୁଛି ।

ସେ ରଣଗଡ଼ର ରାଣୀ !

ଫୁଲ ସାଜରେ ସାଜ ହୋଇ ଦୋଳାରେ ବସି ଝୁଲୁଥିଲେ । ଦାସୀମାନେ ଝୁଲାଉଥିଲେ । କଳକଳ ହସ । ଗୀତ । ଆନନ୍ଦ । ରତ୍ନମାଟିର ଜେମାମଣି ପୁଣି ରଣଗଡ଼ର ପାଟରାଣୀ ।

ଦାଣ୍ଡ ଝଞ୍ଜାଅଢ଼ୁ ଭାସିଆସୁଛି ପଶାଖେଳର କୁହାଟ—କଚେବାର । ଛ ତିନ ନଅ । ତିନ୍ ଦାନା । ରଣସିଂହେ ଗର୍ଜିଉଠୁଛନ୍ତି । ଆଜି ସେ ଆନନ୍ଦରେ ବସ୍ତେବ !

Digitized by PPRACHIN, SOA

ସିଂହଦ୍ୱାରରେ ଗୁଡ଼ୁଛନ୍ତି । ଦାଗୁ ସୂକ୍ତ ସୁକ୍ତ ମନେ ପଡ଼ୁ ନାହାନ୍ତି ! ଭବିଷ୍ୟତ ବସ୍ତୁରବୁ ଅସୁ ନାହିଁ । ପ୍ରସାଦ-ପ୍ରାର୍ଥୀ ବନ୍ଧୁମାନେ ମିଳିଯାଇଛନ୍ତି । କୁଏଡ ଘଙ୍ଗ-ବଣ୍ଟା ପଣା ଆକଣ୍ଠ ପାନ କରୁଛନ୍ତି । ବଳଖା ମଦର ସୁଡ଼ୁକା । ମାଡ ହୋଇଛି — ଖାଇବ, ପିଇବ, ମରିବ ।

କୁମାର ପୂର୍ଣ୍ଣିମା, କରନ୍ତୁ ସେ ଆନନ୍ଦ ।

ଆହା, ଜୀବନଟା ଭୋଗଭାଗ୍ୟରେ କଟିଲା । ଆଉ ବା କେତେ ଦିନ ।

ସେମିତି କଟିଯାଉ । ପୁଅମାନେ ମଣିଷ ହେଲାରୁ ପରିତ୍ୟାଗ କରିଛନ୍ତି । ଗାଆଁରେ ପାଖରେ ଥାଇ ମଧ୍ୟ ସୁରତ ସାତ ସମୁଦ୍ର ସେ ପାରରେ ଅଛି । ଆଉ କାହାର ଜାଗା ଉପରେ କୁଡ଼ିଆ ପରି ଦୁ' ବଖରା ଘର କଲଣି । କାହାଠୁଁ କେତେ ଜମି ନେଇ ହାତରେ କରୁଛି ଚାଷ । ହଳ କରୁଛି । ଉପରେ ପଡ଼ି ଗ୍ରାମବାସୀଙ୍କର ବେଠି ଖଟୁଛି । ଶ୍ରେଷ୍ଠ ଲୋକଙ୍କ ସଙ୍ଗରେ ମିଶି ମାନମର୍ଯ୍ୟାଦା ଦୁ'କଡ଼ା କରିଛି । ସେମାନଙ୍କର ମୁହଁ ବଢ଼ାଇଛି । ସମସ୍ତେ କୁଆଡ଼େ ସୁଖରେ ରହିବେ । ପାଞ୍ଚ ଆଙ୍ଗୁଳି ସମାନ ହେବ । ରଣଗଡ଼ ଉଆସ ଭାଙ୍ଗିବ । ରାଜାନାମ ଲୋପ ହେବ । ଗାଆଁରେ ଥାଇ ବାପା ମାଆଙ୍କ ବିରୁଦ୍ଧରେ ସେ ଠିଆ ହୋଇଛି । ଜାତି ଧର୍ମ ଭୁଲିଗଲଣି । ସେଇଟା କି ପୁଅ ଯେ !

ସାତ ଦିନ ତଳେ ସବୁ ମୂଲିଆଙ୍କ ସଙ୍ଗରେ ଯେତେ ଧାଇଁ ଆସିଥିଲା ହମହମ ହୋଇ । ସମସ୍ତେ ସେମାନେ ହାତଯୋଡ଼ି ଭିକ୍ଷା ମାଗିଥିଲେ — ଆମେ ଭୋକରେ ମରୁଛୁ ସାଆନ୍ତେ, ଦୟା ମିହନ୍ତ କରି ପେଟ ପୋଷିବାକୁ ବି ଭୂମି ଆମର ନାହିଁ । ଉଆସ ତଳ ଅନାବାଦୀ ପଡ଼ିଆ ଜଙ୍ଗଲ ଦୁଇଶ ମାଣ ସେମିତି ପଡ଼ିଛି । ସେଗୁଡ଼ା ତୋଟା ବୋଲି ଜମିତ ଖାତାରେ ନିଜ ନାମରେ ରଖିଛନ୍ତି । ଜମି ସେମିତି ପଡ଼ିଛି । ସାପ, ଗୋଧି, ବିଲୁଆ, ଗଧିଆଙ୍କ ବସା ହେବା ଛଡ଼ା କେଉଁ ଉପକାରକୁ ସେ ଆସୁ ନାହିଁ । ସାଆନ୍ତଙ୍କର ଗୃହଜମି, ଭୋଗବୃତ୍ତ ଜମି ତ କେତେ ଅଛି । ସାଆନ୍ତଙ୍କୁ ଭିକ ମାଗୁଛୁ ଆମେ, ସେଥିରୁ ଦି ଦି ମାଣ ଜମି ଆମକୁ ଦାନ ଦେଉନ୍ତୁ । ଶହେ ଘର ମୂଲିଆ ଅଇଆନ ହେବେ । ଚିରଦିନକୁ ନାମ ରହିବ ।

ରଣସିଂହେ ଗର୍ଜି ଉଠିଲେ । ଆରେ, ଆରେ, ସବୁ ତ ତମେ ନେଲ । ଭବିଷ୍ୟତ ପାଇଁ ଆମର ସେତିକ ସମ୍ବଳ । ତା ଉପରେ ଆଖି ପଡ଼ିଲଣି ? ଏସବୁ ସେଇ କୁଳାଙ୍ଗାର ସୁରତର କୁଶିକ୍ଷା । ସେଇ ତମକୁ ବାଟ ବତାଇ ଆଣିଛି । ତାକୁ ମୁଁ ତ୍ୟାଜ୍ୟପୁତ୍ର କରିଛି । ବଞ୍ଚିଥିବା ଯାଏ ମୋର ସେ ଭୂମିରୁ ବାଡ଼ ଗୋବରେ ଗୋବେ କାହାକୁ ଦେବି ନାହିଁ । ସାପ, ଗୋଧି, ବିଲୁଆ, ଗଧିଆ ତମଠୁଁ ଭଲ ରେ । ତମ ପରିକା ନମକ୍ ହାରାମ୍ ସେମାନେ ନୁହନ୍ତି ।

ସୁରତ କହିଲା, ରଣଗଡ଼ ଜମିଦାର ବଂଶର ପୁଅ ଓ ଉତ୍ତରାଧିକାରୀ ରୂପେ ମୁଁ ଆପଣଙ୍କ ପାଖକୁ ଆସି ନାହିଁ । ଆପଣ ତ୍ୟାଜ୍ୟପୁତ୍ର କରିବା ଆଗରୁ ମୁଁ ନିଜେ

Digitized by PPRACHIN, SOA

ହଆସ ଗ୍ରୁଡ଼ି ଚାଲି ଆସିଛୁ । ମୁଁ ବି ଏ ଦରିଦ୍ର ମୂଲିଆଙ୍କ ସଙ୍ଗେ ସମାନ ହୋଇ ହାତ-ପାତି ଭିକ୍ଷା ମାଗୁଛୁ । ଏ ଦୁଇଣ ମାଣ ଯଦି ଆପଣ ଦାନ କରନ୍ତି, ସେଥିରେ ଯଦି ଏ ମୂଲିଆମାନେ ଫସଲ ଫଳେଇ ପାରନ୍ତି, ଏ ଗାଆଁର ଅଭାବ ରହିବ ନାହିଁ ।

ଚାଲି ଯା ତୁ ମୋ ଆଗରୁ, ଅପଦାର୍ଥ, ମୂର୍ଖ, କୁଳାଙ୍ଗାର । ଚାଲି ଯା କହୁଛି— ।

ନଜେ ହିଁ ସେମାନଙ୍କ ଆଗରୁ ଚାଲି ଆସିଲେ ।

ମମତା ଉପର ଝରକାରେ ଆଉ ଗୋଟିଏ ଘରୁ ଝରକା ବାଟେ ଚାହିଁ ରହିଥିଲେ ପୁତ୍ରକୁ । ସତେ, ସେ ମୂଲିଆ ହୋଇଛି । ଗ୍ରାମ ଲୋକଙ୍କ ସଙ୍ଗେ ମିଶି ରଣଗଡ଼ ହଆସ ବିରୁଦ୍ଧରେ ଅଭିଯାନ ଚଳାଇଛି । ତାଙ୍କର ପେଟର ପିଲା, ଦିଶୁଛି ତ ଅବିକଳ ମୂଲିଆଟେ ପରି । ନଟବର ଶତ୍ରୁଘ୍ନଙ୍କ ପରି ଚୌଦାଢିଆ ଲୋକ । ସେମିତି ବଳିଷ୍ଠ । ସ୍ୱାସ୍ଥ୍ୟଭରା ସୁନ୍ଦର ଗୌରମୂର୍ତ୍ତି । ହେଲେ, ମୁହଁରେ ରୁକ୍ଷ, ଅଲରା ବାଳ । ଲୁଗା ପିନ୍ଧିଛି ଯେ ଆଣ୍ଠୁ ଲୁଚୁ ନାହିଁ । ଖୋଲା ଦେହ । କାନ୍ଧରେ ଦରମଇଳା ଗାମୁଛା । ଅବିକଳ ପାଖରେ ଠିଆ ହୋଇଥିବା ବାରଜାତିର ମୂଲିଆଙ୍କ ପରି ।

ଛି, କଏ ତାକୁ ଏ ବୁଦ୍ଧି ଦେଲା । ରଜାଘର ପୁଅ ଏପରି ହୀନମାନିଆ ଢଙ୍ଗ, ଦୁଇ କୁଳରେ କେବେ ସେ ଦେଖି ନ ଥିଲେ । ସେତେ ବୁଝାଇଲେ ସେଇଟା ଶୁଣିଲା ନାହିଁ । ରାଜରାଣୀର ପେଟରୁ ଜନମି କାହିଁକି ସେ ଏପରି ହେଲା ? ଘର ଓ କୁଟୁମ୍ବକୁ ଛନା କାରଣରେ ପରକରି, ମାନସମ୍ଭ୍ରମ ଓ ଜାତିଗୋତ୍ର ଭୁଲି ବାପ ଆଗରେ ଠିଆହୋଇ ନିଜର ସମ୍ପତ୍ତିକୁ ନିଜେ ସେ ଭିକ ମାଗିବାକୁ ଆସିଛି ।

ଲଜ୍ଜା, ଅଭିମାନ ଓ ରାଗରେ ମମତାଙ୍କର ମୁହଁ ଜଳି ଯାଉଛି । ପାଖରେ ଠିଆ ହୋଇ ଚାହିଁ ରହିଛି ଯାନ ଜା ସରସ୍ୱତୀ । ମନରେ ଦୁଃଖ ନାହିଁ । ମୁହଁ ଦିଶୁଛି ପ୍ରଫୁଲ୍ଲ । ଓଠରେ ହସ । ଆଖିରେ ସତେ ଉପହାସ । କହୁଛି ଯେପରି, କିପରି ପିଲା ପେଟରେ ଧରିଥିଲ ଦେଖ ଗୋ ଅପା !

ମମତାଙ୍କ ଆଖିରେ ଲୁହ । ରଣସିଂହ ଠିକ୍ ଜବାବ ଦେଇଛନ୍ତି । ଏପରି ଜବାବ ରଣଗଡ଼ ରାଜାଙ୍କ ମୁହଁରେ ଶୋଭାପାଏ । ବଂଶମର୍ଯ୍ୟାଦା ଆଗରେ ଗୋଟାଏ ନଷ୍ଟ ସ୍ୱଦ୍ରୋହୀ ପୁତ୍ରକୁ ତୁଳନା କରି ହେବ ନାହିଁ । ସେ ତ୍ୟାଜ୍ୟପୁତ୍ର । ଭଲ ହୋଇଛି, ଜନ୍ମ ନେଇଛନ୍ତି ବୋଲି କର୍ମ ତ ସେ ଦେଇ ନାହାନ୍ତି ।

ରଣରଙ୍ଗା ଫେରିଯାଉଛି ! ପଛରେ ଧାଡ଼ି ଧରି ଚାଲିଯାଉଛନ୍ତି ମୂଲିଆ ଦଳ । ସମସ୍ତେ ନୀରବ । କାହାରି କିଛି କହିବାକୁ ନାହିଁ । ରଣସିଂହଙ୍କର ଜବାବ ଶୁଣି ସମସ୍ତେ

Digitized by PPRACHIN, SOA

ଉଦ୍‌ବନ୍ତ ହୋଇଛନ୍ତି । ପଙ୍ଗପାଳ ଦଳ । ମମତା ସ୍ୱରୂପଙ୍କୁ ଚାହିଁଲେ । ତନ୍ମୟ ହୋଇ ସେ ଅନାଇଁ ରହିଛନ୍ତି ।

ମମତା କହିଲେ, ଦେଖିଲୁ ସୁରଥର ବୁଦ୍ଧି ?

ମୁହଁ ଫେରାଇ ସ୍ୱରୂପ କହିଲେ, ଦେଖିଲି ଅପା । ଦୁଃଖୀ ଦରିଦ୍ରଙ୍କ ପାଇଁ ସୁରଥର ମନ କେମିତି କଳବଳ ହେଉଛି ଦେଖିଲି । ସୁରଥ ଯେଉଁ ବେଶରେ ଆଜି ଭିକ ମାଗିବାକୁ ଆସିଥିଲା, ମୁଁ ତାକୁ ଚିହ୍ନିପାରିଲି ନାହିଁ । ସମସ୍ତେ ସେମାନେ ଏକା ପରି । ଭାବିଲି, ସମସ୍ତେ ସୁରଥର ଅବତାର ! ଅପା ମ, ସୁରଥର ଯେଉଁ ବୁଦ୍ଧି ହେଲା, ସାଆନ୍ତଙ୍କର ଯଦି ସେହି ବୁଦ୍ଧି ହୁଅନ୍ତା, ସମସ୍ତେ ସେମାନେ ସୁଖରେ ରହନ୍ତେ । ଆନନ୍ଦରେ ରହନ୍ତେ ।

ମମତାଙ୍କର ନାକପୁଡ଼ା ଥରି ଉଠିଲା । ତାଙ୍କର ସାନ ଜା ସ୍ୱରୂପ ଏପରି କଥା କହି ପାରିବ, ଏହା ସେ ସ୍ୱପ୍ନରେ ସୁଦ୍ଧା ଚିନ୍ତା କରି ପାରି ନ ଥିଲେ । ସମସ୍ତେ ସେମାନେ ସୁଖ ଆନନ୍ଦରେ ରହିବେ ବୋଲି କପୂର ଯାଇ ଯେଉଁ ଜମାଖଣ୍ଡି ପଡ଼ିଛି ସେଥିରୁ ଅଧେ ଦାନ କରି ଦିଆଯିବ । ତାହାକୁ ପୁଣି ? ସେଇମାନଙ୍କୁ, ଯେଉଁମାନେ ଜମିଦାରୀ ଗଲା ପରେ ଭଲମନ୍ଦରେ ଦାଣ୍ଡରେ ଆସି ଠିଆ ହେବା ତ ଦୂରର କଥା, ଓଲଟି ହାସ ପରିହାସ କରୁଛନ୍ତି, ଜମିଦାର ବିରୁଦ୍ଧରେ ବିଦ୍ରୋହ କରୁଛନ୍ତି, ସୁରଥ ପରି ପିଲାକୁ କୁଶିକ୍ଷା ଦେଇ ଘରୁ କାଢ଼ି ନେଇ ମୂଲିଆ କରେଇଛନ୍ତି ।

ମୁହଁ ଫଣଫଣ କରି ମମତା କହିଲେ, ଆଚ୍ଛା କଲେ, ଭଲ କଲେ । ଫେରାଇ ଦେଇଥାନ୍ତେ ନାହିଁ କଅଣ ଅଭ ନିମନ୍ତ୍ରଣ କରି ଆଣି ଘରେ ବସାନ୍ତେ ? ସର୍ବସ୍ୱ ଦାନ କରି ଟିଲ୍-କୁଣ୍ଡୁ ଧରି ଦାଣ୍ଡରେ ଠିଆ ହୁଅନ୍ତେ ? ତାହିଁକି ନେ, କଅଣ ସେମାନେ କରିଛନ୍ତି କି ଆମର ?

ଅନାବାଦୀ ପଡ଼ିଆଟା ତ ସେମାନେ ଚାଷ କରିବାକୁ ମାଗୁଥିଲେ, ଆଉ ତ କିଛି ମାଗୁ ନ ଥିଲେ ।

ଥରେ ମୁହଁଦେଲେ କାଲି ପୁଣି ଆସି ଆଉ କଅଣ ମାଗିବେ । ସବୁ ନାଟର ଗୋବର୍ଦ୍ଧନ ହେଉ ସୁରଥ । ଜନମ ଦେଇଛି ବୋଲି କ'ଣ ସତ କଥାଟା ଲୁଚେଇବି ? କଅଣ ତାର ମନରେ ଅଛି କେଜାଣି । ମୁଁ ଭାବୁଛି ଘରଟାକୁ ଧ୍ୱଂସ କରିବାକୁ ସେ ମନ କରିଛି । ସେ ଯାହା କରୁଛି, ଅତି ହେଲାରେ ତାକୁ ତୁ ପ୍ରଶଂସା କରି ତାର ମୁହଁ ବଢ଼େଇଲୁ, ତା ମୁଣ୍ଡ ବିଗାଡ଼ିଲୁ ।

ଆଉ, ସୁବ୍ରତ କଅଣ କଲେ କି ଅପା ? ରଣଗଡ଼ର ଯୁବରାଜ ତ ସେ । ଏତେ ପାଠ ପଢ଼ିଛନ୍ତି । ସବୁ କଥା ବୁଝୁଛନ୍ତି, ଜାଣୁଛନ୍ତି । ତାଙ୍କର ମୁହଁ ତ ମୁଁ ବଢ଼ାଇ ନାହିଁ ।

ପାଟି କରି ଉଠିଲେ ମମତା, ସ୍ୱରୂପ— !

Digitized by PPRACHIN, SOA

ଘଡେଣି ଚମକି ଉଠିଲେ । ଲଜ୍ଜାରେ ମୁଣ୍ଡ ନୁଆଁଇଲେ । ସେ ବୁଝିପାରିଲେ ମମତାଙ୍କ କଥାରେ ଜବାବ୍ ଦେବା ତାଙ୍କ ପକ୍ଷରେ ଅନ୍ୟାୟ ହୋଇଛି । ସେ ବଡ଼ ଝିଆ । ଘରର କର୍ତ୍ତ୍ରୀ । ସେ ଯାହା କହିବେ ଶୁଣି ରୁହ ରହିବା ତାଙ୍କର ଧର୍ମ । ବିନା କାରଣରେ ଅପାଙ୍କ ମନକୁ ଦୁଃଖଦେବା ତାଙ୍କର କର୍ତ୍ତବ୍ୟ ନୁହେଁ ।

ଆଖି ଛଳ ଛଳ କରି ସେ କହିଲେ, ମୋର ଦୋଷ ହୋଇଛି ଅପା ।

ମମତା ଶୂନ୍ୟଦୃଷ୍ଟିରେ କେବଳ ଅନେଇ ରହିଲେ । ମନ ଗୋଡ଼ାଇଗଲା ସୁବ୍ରତ ପଛରେ । ସାରା ଦୁନିଆ ଧୁଣ୍ଡି ଆସିଲା । ଆଜି ପରି ଦିନେ କେଉଁଠି ସେ ଅଛି, କିଏ କହି ପାରିବ ?

ଦୁଇ ମାସ ତଳେ ପତ୍ର ସେ ଲେଖିଥିଲା—ମୋ ପାଇଁ ଚିନ୍ତା କରିବୁ ନାହିଁ । ମୋର ଶିକ୍ଷା ମୋତେ ଆରମ୍ଭ ହୋଇଛି । ଦୁନିଆ ଭିତରକୁ ଆସି ଦୁନିଆ ଲୋକଙ୍କ ଭିତରେ ପଶି, ସେମାନଙ୍କ ସୁଖ ଦୁଃଖ ଦେଖି, ଅଭାବ ଅଭିଯୋଗ ଶୁଣି, ସେମାନଙ୍କ ଭିତରୁ ଅତି ନିରାହ, ସରଳ, ଦୁଃଖୀ, ନିଃସହାୟ ଯେଉଁମାନେ ତାଙ୍କ ସଙ୍ଗରେ ନିଜକୁ ଜଣେ ବୋଲି ଗଣି ମୁଁ ଯେଉଁ ଆନନ୍ଦ ଅନୁଭବ କରୁଛି, ସେ ଆନନ୍ଦ ମୁଁ ରଙ୍ଗଗଡ଼ ଉଆସରେ କେବେ ପାଇ ନ ଥିଲି କି ପାଇବି ନାହିଁ ।

ତମମାନଙ୍କର ଖବର ମୁଁ ରଖିଛି । ତୋ ପାଖରୁ ଦୂରରେ ରହିଲେ ବି ପ୍ରତି ମୁହୂର୍ତ୍ତରେ ତୋର ଉପସ୍ଥିତି ମୋ ପାଖେ ପାଖେ ଅନୁଭବ କରୁଛି । ହେଇ, ତୁ ମୋ ଆଗରେ ବସିଛୁ । ମୁଁ ଅଦୃଷ୍ଟ ହୋଇଛି, ତୋର ଅବାଧ ବି ହୋଇଛି । ହଁ ଠିକ୍‌ଏ । ଯେତେବେଳେ ରଙ୍ଗଗଡ଼ ଉଆସରେ ମୋ ପରି ତୋର ଶତ୍ରୁ ପୁଅ ରୁଣ୍ଡ ହୋଇ ପାଟିତୁଣ୍ଡ କରି ତୋ ପାଖେ ଅଳି କରୁଥିବେ, ତୋ ଉପରେ ରାଗ-ରୋଷ ଅଭିମାନ କରୁଥିବେ, ସେତିକିବେଳେ ତୁ ଦେଖିବୁ ତୋର ଶତ୍ରୁ ପୁଅଙ୍କ ମଝିରେ ମୁଁ ଅଛି ।

ମୁଁ ଭଲ ଅଛି, କାମ କାର୍ଯ୍ୟରେ ଅତି ବ୍ୟସ୍ତ ଅଛି । ଦୁନିଆରେ ଏତେ କାମ ଅଛି ମା । ଆମର ଆସ୍ଥିତ୍ୱ ସେ ସବୁ କାମ, ଆମର ହାତରେ ଅଛି ସେ ସବୁ କାମ । ବୁଦ୍ଧି ନ ପାରି ଦେଖି ନ ପାରି କାମ କାମ ହୋଇ ଦୁନିଆ ସାରା ଧୁଣ୍ଡି ହେବା କେଡ଼େ ଅବିବେକପଣ !

ଆଜି ମୋର କାମର ଅଭାବ ନାହିଁ । ଆଗରେ ଆୟୁଧ ରଖା ହୋଇଛି—ଗୋଟାଏ କୋଦାଳ, ଗୋଟାଏ ଗାଣ୍ଡୁଆ— । ମୁଣ୍ଡ ଉପରେ ପତର କୁଡ଼ିଆ । ଘୁଆଡ଼େ ଗୁହିଁଲେ ଖୋଲା ଆକାଶ, ବଣ-ଜଙ୍ଗଲ, ପାହାଡ଼, ଝରଣା, ପାଖେ

Digitized by PPRACHIN, SOA

ପାଖେ ମୋର୍ଚ୍ଚର ପର ମଣିଷ ଦଳ— ଘର ଓ ଭଉଣୀ । ମୋତେ ଖାଲ୍ ତୁ ଆଶୀର୍ବାଦ କର ।

ମୁଁ ବୁଝି ମୂଲ୍ୟଆ ହୋଇଛୁ ।

କାହା ଉପରେ ରାଗ ଓ ଅଭିମାନ କରି ଦୁଇ ଭାଇ ଛଆସ ଗ୍ରୁଡ଼ ଦାଣ୍ଡକୁ ଓହ୍ଲାଇଲେ ? ଧନ-ସମ୍ପତ୍ତି ହାତରେ ଆଦଣ୍ଡ ମୂଲ ଲାଗି ପେଟ ପୋଷିବାକୁ ମନ କଲେ ? କ ହେବ ଏ ଧନ-ଦଉଲତ ? ଯାହା ଖାଇଥିବ ପେଟକୁ, ଯାହା ଘୋଇଥିବ ଖଣ୍ଡକୁ । ଆଜ ଆଖି ବୁଜିଲେ କୁଳାଙ୍ଗାର ପିଲ ଦଇଟା ସବୁ ବରବାଦ୍ କରଦେବେ । ଚଳନ୍ତ ଅଚଳନ୍ତ ସମ୍ପତ୍ତି ସବୁ ନଷ୍ଟ ହୋଇଯିବ । ସେଇ ମୂଲ୍ୟଆଦଳ ହିଁ ଭୋଗ କରିବେ । କାହିଁକ ତେବେ ସଞ୍ଚୟ ?

ସେ ଭଲ କରିଛନ୍ତ । ନିଶା-ପାଣିରେ ଯଦ ଆନନ୍ଦ ମିଳେ ତ ସେ ଅନନ୍ଦ କରନ୍ତୁ । ହେଉ ସବୁ ଧନ କ୍ଷୟ । ଯେଉଁମାନେ ନ ଲେଉଡ଼ନ୍ତ ସେମାନଙ୍କ ପାଇଁ ସାଇତ ରଖିବେ କାହିଁକ ?

ମମତା ଘରୁ ବାହାର ଆସିଲେ ।

ଛଳ ଖମ୍ବାରେ ରଣସିଂହଙ୍କର ପାଟି ଶୁଭୁଛି । ସନ୍ଧ୍ୟା ପାଖେଇ ଆସିଲଣି । କଅଣ ସେ କହୁଛନ୍ତ ? ସେ ରଣସିଂହଙ୍କ ପାଖକୁ ଆସିଲେ । ତାଙ୍କର ହାତ ଧରିଛି ନାଥିଆ ଭଣ୍ଡାରୀ । କ୍ରୋଧରେ ସେ ଉମ୍ପ ସାପ ପର ଶ୍ବାସ ଗ୍ରୁଡ଼ୁଛନ୍ତ । ସାରା ଦେହ ଥରୁଉଠୁଛି । ସତେ କ ସେ ଟଳ ପଡ଼ିବେ !

ମମତାଙ୍କୁ ଦେଖି ରଣସିଂହେ ପଗ୍ଭରିଲେ, ଦେଖିଲ ତ ପୁଅଟକୁ, ଶୁଣିଲ ତାର କଥା ?

ମମତା କହିଲେ, ହଁ ।

ତାକୁ ମୁଁ ତ୍ୟଜ୍ୟପୁତ୍ର କରିଛୁ ।

ନଜେ ତ ସେ ଗ୍ଭଲିଯାଇଛି ।

ଗ୍ଭଲିଯାଉ । ଏ ଘରେ ତାର ସ୍ଥାନ ନାହିଁ । ଏ ଉଆସରେ ସେ ପଶିବ ନାହିଁ ।

ବୁଝିଲ । ଯେଉଁ ପୁଅ ବାପ ବିରୁଦ୍ଧରେ ଲୋକ ମତାଏ ସେ ପୁଅରେ ଗଣା ନୁହେଁ । ସେ ବଦ୍ରୋହୀ ।

ଠିକ୍ କହୁଛ । କୁଳାଙ୍ଗାର ପୁତ୍ର !

ରଣସିଂହଙ୍କର ହାତ ଧରି ମମତା ଉପର ଖମ୍ବାରେ ତାଙ୍କର କୋଠରୀକୁ ନେଲେ । ପଲଙ୍କ ଉପରେ ଶୁଆଇଦେଇ ନାଥିଆକୁ ଜଗିବାକୁ କହି ଫେରି ଆସିଲେ ।

ଆଜ ତ କୁଆଁର ପୁନେଇଁ । ବସ୍ତୁସର ଧାରଣା ମନକୁ ନ ଆସୁ । ପରିସ୍ଥିତର ଛାୟା ଉପରେ ନ ପଡ଼ୁ । ଦେଳ କଟୁ ଆନନ୍ଦରେ । ଫୁର୍ତ୍ତିରେ । କୁଆଁର ପୁନେଇଁ ଜହ୍ନ ହସୁଛି । ଦୁନିଆ ହସୁଛି । ସେ ବ ହସିବେ ।

Digitized by PPRACHIN, SOA

ପୁନେଇଁ ଜହ୍ନ ମଥା ଉପରକୁ ଉଠି ଆସିଲାଣି । ଭାରତୀ ଡାକିଲେ, ଅପା — !

ଆକାଶରୁ ମୁହଁ ଫେରାଇ ମମତା ଭାରତୀକୁ ଚାହିଁଲେ । ସେ ନ ଜାଣିଛି କି ପ୍ରଶ୍ନ ପଚାରିବାକୁ ଚାହେଁ ସେ ଜାଣନ୍ତି । ଉତ୍ତର ଦେବାର ପ୍ରୟୋଜନ ନାହିଁ । ସମସ୍ତେ ସେମାନେ ଦୂରେଇ ଯାଉଛନ୍ତି । ସୁବ୍ରତ, ସୁରତ, ଭାରତୀ । ସନ୍ଧ୍ୟାଟି ବି ନିକଟ ଭବିଷ୍ୟତରେ ଦୂରେଇ ଯିବ । ମହାପାତ୍ରଙ୍କ ଝିଅ ଆରତି—ଯାହାକୁ କୋଳକୁ ଆଣି ବାକି ଜୀବନଟା ସୁଖରେ କାଟିବେ ବୋଲି ଆଶା ବାନ୍ଧିଥିଲେ, ଯାହା'ର ପେଟର ପିଲାଙ୍କୁ ଛାତିରେ ଜାକି ଅପୂର୍ବ ଆନନ୍ଦ ଓ ଅଭିନବ ଉତ୍ତେଜନାରେ ସମସ୍ତଙ୍କୁ ଡେଇଁ ଡେଇଁ ଆଗକୁ ଯିବାର ବାସନା କରିଥିଲେ, ସେ ଆଜି ପର ଘରର ବୋହୂ !

ବାହାରେ ଓ ଭିତରେ ସେ ଆଜି ଏକୁଟିଆ । ମୂଲ୍ୟବାନ୍ ବସନ ଓ ଅଳଙ୍କାର ଜାଠଜାଠକା ଫୁଲର ମାଳ ଓ ଏସେନ୍‌ସର ସୁବାସ, କପାଳର ଚନ୍ଦନ, କୁଙ୍କୁମ, ନେତ୍ରର ଅଞ୍ଜନ, ପାଦର କମକୁଟ ଅଳତା, ଦେହର ସାଥୀ ହୋଇଛନ୍ତି । ଅତି ନିବିଡ଼ ଭାବରେ ସେମାନେ ଆଲିଙ୍ଗନ କରିଛନ୍ତି । ତଥାପି, ସେ ଏକୁଟିଆ । ବାହାରର ନିର୍ମଳ ଆକାଶ, ହସଝର ଚନ୍ଦ୍ରମା, ସୁଲୁସୁଲିଆ ଶୀତଳ ପବନ ମନରେ ପୁଲକ ଜଗାଇ ଏକୁଟିଆର ଧାରଣାକୁ ଆହୁରି ତୀବ୍ର କରୁଛନ୍ତି ।

କାହିଁକି ସେ ଏକୁଟିଆ ରହିବେ ? ଆଉ କେତେ ଦିନ ? ସମସ୍ତଙ୍କ ପାଇଁ ମନର ସବୁ ବ୍ୟାକୁଳତା ଓ ଉଦ୍‌ବିଗ୍ନତାର ବିନିମୟରେ କ'ଣ ସେ ଫେରି ପାଉଛନ୍ତି ? ଆହୁରି ତୀବ୍ର ଓ ଆହୁରି ଭୟଙ୍କର ବ୍ୟାକୁଳତା ଓ ଉଦ୍‌ବିଗ୍ନତା !

ଅଗନାଗ୍ନି ବନସ୍ତ ଭିତରେ ଶୃଙ୍ଖଳ ପେଟ, ଅଶାନ୍ତ ପାଦରେ କାନ୍ଧରେ ଟାଙ୍ଗିଆ ପକାଇ ଚାଲିଛି ସୁବ୍ରତ । ସଞ୍ଜର ଅନ୍ଧାର ଘୋଟି ଆସିଲାଣି । ପଦ ତଳେ ବିଷଧର ନାଗ । ଝଟଗହଳରେ ବାଘ, ଭାଲୁ, ହାତୀ ! ନଦ ଗର୍ଜିଛି । ମନ ବାହୁନି ଉଠୁଛି । ଛଟପଟ ଉନ୍ନିଦ୍ର ରଜନୀ ।

ଫେରି ଆସିଛି କି ସେ ମା କୋଳକୁ ?

ସେମିତି ସେ ସୁରତ । ଫେରି ଆସିନାହିଁ ତ ।

ସେମାନେ ବଡ଼ ହୋଇଛନ୍ତି । ଉଡ଼ି ଜାଣିଛନ୍ତି । ସେମାନଙ୍କର ଗୋଟାଏ ଗୋଟାଏ ମନ ଅଛି । ବୁଦ୍ଧି ଓ ବିବେକ ଅଛି । ଭଲ ମନ୍ଦ ବୁଝି-ବିଚାରି ଆଗକୁ ପାଦ ପକାଇବାର ଶକ୍ତି ହୋଇଛି । ସେମାନେ ଦୂରେଇ ଯାଉଛନ୍ତି । ସେମାନଙ୍କ ପାଇଁ ଛଟପଟ ହୋଇ ଆକୁଳ ବିକଳ ହୋଇ କି ଲାଭ ?

ରଣସିଂହେ ! ସେ କ'ଣ ସତେ ଦୂରେଇ ଯାଉଛନ୍ତି ? ସୁରା ଓ ବ୍ୟଭିଚାର । ନିଜକୁ ସେ ଏକାକୀ ମଣୁଛନ୍ତି । ସେଥିପାଇଁ ଜୀବନର ସାଥୀ ସେ ବାଛି ନେଇଛନ୍ତି ।

Digitized by PPRACHIN, SOA

ମାଳା, କୋଅଳ ଓ ଧର୍ମ ତାଙ୍କୁ ଆନନ୍ଦ ଦେଇପାରେ ନାହିଁ । ମୁକ୍ତି ବା ସ୍ୱର୍ଗ ତାଙ୍କର କାମନା ନାହିଁ । ସେ ସ୍ୱହାନ୍ତ ଭୋଗ, ବାସନାର ପୂଜା ।

ଏକା କାହିଁକି ?

ମମତା ହସି ଉଠିଲେ ।

ଖରତୀ ପଚାରିଲେ, ହସିଲ କାହିଁକି ଅପା ?

ମମତା କହିଲେ, ଦୁନିଆ ପାଗଳ ହୋଇଛି ଲୋ, ସମସ୍ତେ ଖାଉଛନ୍ତି ସେମାନେ ଯାହା କରୁଛନ୍ତି ତାହା ହିଁ ନ୍ୟାଯ୍ୟ, ତାହା ହିଁ ଠିକ୍ ! ଅନ୍ୟମାନେ ଯାହା କରୁଛନ୍ତି ସେ ସବୁ ଭୁଲ୍ । ବନ୍ଧନ ଚନ୍ତା ଓ ପନ୍ଥା ତ ସବୁ ଅଶାନ୍ତ ସବୁ ଅନର୍ଥର ମୂଳ । ମୋର କ'ଣ ହସିବାକୁ ଅଧିକାର ନାହିଁ ଖରତୀ, ଚିରଦିନ ଖାଲି କାନ୍ଦୁଥିବ ? ମୁଁ ବି ଟିକେ ପାଗଳ ହେଲେ କ୍ଷତି କ'ଣ ? କେତେଦିନ ଆମର ସମସ୍ତ ଅଛି, କାହିଁକି ଏ ଏକୁଟିଆ ଜୀବନ ?

ସନ୍ତ୍ର ହୋଇ ଖରତୀ ଧରିଲେ ମମତାଙ୍କର ପାଦ । ଅଶଲ ସ୍ୱରରେ କହିଲେ, କି ଦୋଷ ମୁଁ କଲି କି ଅପା, ମନ ଖୋଲି କଥା କହୁ ନାହଁ । ତମ କଥାର ଅର୍ଥ ମୁଁ ବୁଝିପାରୁ ନାହିଁ ।

ମମତା ଉଠି ଠିଆହେଲେ । କହିଲେ, କାହାରିକୁ କିଛି ବୁଝାଇ କହିବାକୁ ମୋର ଧୈର୍ଯ୍ୟ ନାହିଁ । ନିଆଁ ଜଳୁଛି । ସେଇଥିରେ ଇନ୍ଧନ ହୋଇ ପଡ଼ିବାକୁ ମୋର ମନ ହେଉଛି । ନକେ ଜଳିବ । ନିଆଁ ବି ଅଧିକ ତେଜରେ ଜଳିବ ।

କଥାଟି ଶେଷ କଲେ ନାହିଁ । ହସିହସି ଚାଲି ଗଲାରୁ ବାହାରିଗଲେ ଉପର ଖଞ୍ଜା ଆଡ଼େ । ତଳେ ଲେଟି ଯାଉଥିବା ପାଟ ପଣତରୁ ଏସେନ୍ସ ଗନ୍ଧ ଛୁଟି ଆସୁଛି । ହସି ଉଠୁଛି ପୂନେଇଁ ଜନ୍ମ । କାକୁସ୍ଥ ହୋଇ ପଛରୁ ଗୁହିଁ ରହିଛନ୍ତି ଖରତୀ ।

ରଣସିଂହ ଟଳଟଳ ପଲଙ୍କ ଉପରୁ ଉଠି ଟେବୁଲ ପାଖକୁ ଆସିଲେ । ଟେବୁଲ୍‌ରେ ହାତଭର ଦେଇ ଠିଆହେଲେ । ବିଳାତୀ ରଙ୍ଗୀନ୍ ମଦର ନିଶା ଏବେ ବି ଛୁଟୁ ନାହିଁ । ମୁଣ୍ଡ ଝାଙ୍କି ଦେଉଛି । ତଣ୍ଟି ଶୁଖିଯାଉଛି । ଆଉଥରେ ଟିକେ ମଦ ଖାଇ ଶୋଇ ପଡ଼ିବାକୁ ମନ ହେଉଛି ।

ଦାବନା ପଧାନଟା ଗଲା କୁଆଡ଼େ ? କଟକରୁ ସ୍କଚ୍ ମଦ କିଣି ଆଣିବାକୁ ଏକେଶହ ପାଏ ଟଙ୍କା ନେଇ ରାତି ନ ପାହୁଣୁ ଯାଇଥିଲା । ରାତି ଅଧ ହେଲାଣି । କେଉଁଠି ଧରା ପଡ଼ିଲା କି ? ଲାଞ୍ଚ ଦେଇ ମାଲ ନେଇ ସବୁ ଥର ଫେରେ ଫେରିଲା ନାହିଁ କାହିଁକି ?

Digitized by PPRACHIN, SOA

ବାବନା ଭଲ ପିଲା । ଅତି ଭଲ ପିଲା । ଯାହା କହିଲେ କରେ । ମନା କରେ ନାହିଁ । ଫେରିଲା ନାହିଁ କାହିଁକି ?

କାନ୍ଥ କଡ଼ରେ ଆଲମାରି ଗୁଡ଼ା ଭୂତ ପରି ଠିଆ ହୋଇଛନ୍ତି । କାହିଁରେ ନଥିପତ୍ର, କାହିଁରେ ଦରବାରିଆ ଉଚ୍ଚ ଅମଲାର ପୋଷାକ, କାହିଁରେ ପ୍ରକାର ପ୍ରକାରର ବାସନା ତେଲ, ଅତର, ପାନ ସରଞ୍ଜାମ । ଶେଷ ଦୁଇଟାରେ କାଚ ଗିଲାସ, ବୋତଲ ବୋତଲ ଭର୍ତ୍ତି ଦେଶୀ ବିଲାତି ମଦ । ସେଥିରେ ଥିଲେ ବି ସେ ସବୁ ସମୁଦ୍ରକୁ ଶଙ୍ଖେ । ମଦ ନୁହେଁ ତ, ସାକ୍ଷାତ୍ ସୋମରସ । ସୋମରସ ବ୍ରହ୍ମ. ବ୍ରହ୍ମ ସୋମରସ, ଅଥବା କମ୍ ?

ରଣସିଂହେ ଆଲୁଅ ତେଜିଲେ । ଆଲମାରି ଭିତରେ ବ୍ରହ୍ମରସ, ସୋମରସ ଅବଶ୍ୟ ଥିବ । କେତେ ବଡ଼ ତାଲାଟାଏ ଓହଳୁଛି । ଖୁବ ଚୋଗୁଟା ଗଲା କୁଆଡ଼େ, କେଉଁଠି ରଖିଲା ସେ ନାଥିଆ ? ମଦ ମଦ୍ଦ ଏ ଗିଲାସରେ ଢାଳି ଦେଇ କେତେ ବେଗି ସେ ପଦାକୁ ପଳାଏ । ପୁଣି ଫେରିଆସେ । ତରଙ୍ଗ ତରଙ୍ଗ ହୋଇ ଏଣେତେଣେ ଘୂରି ପୁଣି ପଳାଏ ପଦାକୁ । ପୁଣି ଆସେ । ଉଦ୍‌ବିଗ୍ନ ହୋଇ ଖନଆଁ ପାଟିରେ କହେ, ସ୍ୱାଆନ୍ତାଣୀ ଆସି ପଡ଼ିବେ ଆଜ୍ଞା । ସବୁ ଖବର ସେ ରଖିଛନ୍ତି ।

ଆବେ, ଆସନ୍ତୁ ସେ— ।

ନାହିଁ ଆଜ୍ଞା ।

ଆସିବାକୁ ମନା କରି ଦେ ।

ଘରର ଲକ୍ଷ୍ମୀ ସେ ଆଜ୍ଞା, ଆସିବାକୁ କିଏ ମନା କରିବ ?

ଆସିଲେ ଆସନ୍ତୁ । ଢାଳ, ଦେ — ।

ନାଥିଆ ନର୍ଭସରେ ଢାଳେ । ବନ୍ଧୁ ବଦନର ନମକ୍‌ହଲା ଖୁବର । ସମସ୍ତେ ଗୁଡ଼ ପକେଇଲେଣି, ଏକା ସେଇ ପଡ଼ିରହିଛି । ରଣସିଂହେ ଜାଣନ୍ତି, ବୁଢ଼ା ନାଥିଆକୁ ଅଫିମ ନିଶା ବାନ୍ଧି ରଖିଛି । କୁଆଡ଼େ ଗଲା ସେ ନାଥିଆ ? କେଜାଣି କେଉଁଠି ବ ବସୁ ଘୂମେଇ ପଡ଼ିବଣି ।

ରଣସିଂହେ ପଲଙ୍କ ପାଖକୁ ଫେରି ଆସିଲେ । ଶେଯ ତଳେ ହାତ ଅଣ୍ଡାଳିଲେ । ଖୁବ ପେନ୍ଥାକ ହାବୁଡ଼େ ପଡ଼ିଲା । ସରଗର ଖୁନ୍ଦ ପାଇଲା ପରି ଆନନ୍ଦରେ ସେ ଅଧୀର ହୋଇ ପଡ଼ିଲେ । ମୁଣ୍ଡ ହଲାଇ କହିଲେ ମନକୁ ମନ, ନାଥଟି ଖୁବ ହୁସିଆର । ଫେରିଗଲେ ଆଲମାରି ପାଖକୁ । ତାଲା ଫିଟୁନାହିଁ । ଗୋଟିକ ପରେ ଗୋଟିଏ ସବୁ ଖୁବ ଚେଷ୍ଟା କରି ସାରିଲେଣି ।

ବିରକ୍ତ ଲାଗିଲା । ଇଚ୍ଛା ହେଲା ଦୁଇ ଗୋଇଠା ମାରି ଆଲମାରିର କବାଟ ଭାଙ୍ଗିଦେବେ । କିନ୍ତୁ, ବୋତଲ ସବୁ ଭାଙ୍ଗିଯାଏ ତ ! ବଦ୍‌ମାସ ନାଥିଆଟା ଗଲା କୁଆଡ଼େ ?



Digitized by PPRACHIN, SOA

ହଁ, ଟିକିଟଗଲ୍। ଅନନ୍ତର ପଞ୍ଚାନ୍ତର ନାହିଁ । ଆଲମାରି ଭିତରେ ବୋତଲ-ଗୁଡ଼ା ଜକ୍‌ଜକ୍‌ କରି ଅନେଇଁଲେଣି । ଫମ୍ପା ପେଟ । ହତାଶ ଦୃଷ୍ଟି । ଆଜ ପରି ଦିନେ କଣିକାଏ ଅମୃତ ମିଳିବ ନାହିଁ ? ବର୍ଷକ ରେ ଦିନ ଗୋଟାଏ । ପୁଣ ପାହିଲେ ଆଉ ବରଷେ । ଏଇ କୁମାର ପୁନେଇଁ ଜହ୍ନକୁ ଅପେକ୍ଷା କରି ବସିବେ । ଜୀବନଟା ଦୁର୍ବହ ଲାଗୁଛି । ସୁଖର ଦୁନିଆ ଉଭେଇ ଯାଇଛି । ଆସିଛି ଜଞ୍ଜାଳର ଦୁନିଆ ।

ଚଉକି ଟାଣି ବସିପଡ଼ିଲେ । ବାହାର ପାଖର ଝରକାଗୁଡ଼ାକ ବନ୍ଦ ହୋଇଛି । ଭିତର ଦରଜାର ଦରଆଜିକା ଫାଙ୍କ ବାଟେ ଅଗଣାର ତୁଳସୀ ଚଉରା ଜହ୍ନ ଆଲୁଅରେ ଝକ୍‌ଝକ୍‌ ଦିଶୁଛି । ତଳ ଖଞ୍ଜାର ମଥାନ ଉପରେ ସେଇ ଝକ୍‌ଝକ୍‌ କିରଣର ଝୁପହାସ । ରଣସିଂହେ ଆଖି ବୁଜି ଆଖି ଖୋଲିଲେ । ବାଉନ ବର୍ଷର ସବୁ ଇତିହାସ ଆଖି ଆଗରେ ସବୁ ଜୀବନ୍ତ ହୋଇ ଉଠିଲା । ଏ ଘର ଥିଲା କଅଣ, ଆଜ ହୋଇଛି କଅଣ ? ସମସ୍ତେ ତାଙ୍କୁ ପରିତ୍ୟାଗ କରି ଚାଲିଯାଇଛନ୍ତି । ନଟବର, ସୁବ୍ରତ, ସୁରଭି, ମମତା ପାଖରେ ଥାଇ ମଧ୍ୟ ଦୂରରେ । କାହାନ୍ତି ସେ ପଲ ପଲ ଦାସୀକନ୍ୟା ଉଦ୍ୟାନର ଫୁଟିଲା କୁସୁମ ? କାହାନ୍ତି ସେଇ ଦାସବୃନ୍ଦ ଯେଉଁମାନେ ଆଜ୍ଞାକୁ ଅବଧାନ ହେଉଥିଲେ ?

ଦୁନିଆ ବଦଳିଛି । ବଦଳୁଛି । ତାଙ୍କର ଦୁନିଆରେ ସେ ଆଜ ଏକୁଟିଆ । ତାଙ୍କର ଦୁନିଆ ଆଜ ତାଙ୍କୁ ନଗ୍ନଟିଆ ଲାଗୁଛି । ଯାହାକୁ ପାଖକୁ ଡାକିଲେ ସେ ଲୋଡ଼ୁଛି ଧନ ଅଥବା ଧନ ପରିବର୍ତ୍ତେ କୌଣସି ସୁବିଧା । ନାଥିଆ ଭଣ୍ଡାଙ୍କ କ ବାବନା ପଧାନ ବ ସେଇ ଧନ କ ସୁବିଧା ଲୋଭର କାଙ୍ଗାଳ । ସେମାନେ ଚୋର । ସେମାନେ ଡକାୟତ । ତଥାପି, ତାଙ୍କୁ ଗ୍ରାହ୍ୟ ହେଉ ନାହିଁ । ନାଥିଆ ନ ଥିଲେ ସେ ଚଳିପାରିବେ ନାହିଁ । କୁଟାଖଣ୍ଡିକୁ ଦି ଖଣ୍ଡ କରିବାର ଶକ୍ତି ତାଙ୍କର ନାହିଁ । ସୁରା ଓ ସଖୀ ଆଗରେ ଥୋଇପାରେ ବାବନା ପଧାନ । ସେଥିପାଇଁ ସେ ଗ୍ରାମ ଲୋକଙ୍କଠାରୁ କେତେ ନିର୍ଯାତନା ସହୁଛି । କେବଳ ଲୋଭ ହିଁ ତାକୁ ବାନ୍ଧି ରଖିଛି ।

କାହିଁ ଗଲା ସେ ବାବନା ପଧାନ !

ରଣସିଂହେ ଅସ୍ଥିରତା ଅନୁଭବ କଲେ । ଆତ୍ମା ବିଳପି ଉଠିଲା । ଫେରି ଆସିବ ନାହିଁ ସେ ସୁଖର ସମୟ—ଧନ ଜନ ଗୋପ ଲକ୍ଷ୍ମୀ, ପ୍ରତିପତ୍ତି ? ଲେଉଟି ଆସିବ ନାହିଁ ଅତୀତ, ଯୌବନ ? ଜୀବନଟା କେବଳ ହା-ହୁତାଶମୟ ହୋଇ କଟିବ ? ସେ ଉତ୍ତେଜିତ ହୋଇ ଉଠିଲେ । କାହା ପାଇଁ ରଖିଯିବେ ସେ କ୍ଷତି-ପୂରଣ ଟଙ୍କା, ଏବେ ବି ସଞ୍ଚିତ ଅଛି ପୂର୍ବପୁରୁଷର ଯେଉଁ ସୁନାରୁପା, ଗହଣାଗାଣ୍ଠି, ବାସନକୁସନ, ଆସ୍‌ବାବପତ୍ର, ଜମିବାଡ଼ି, ଘର ? ସୁବ୍ରତ ଅରଣ୍ୟରେ ପଶିଛି । ରାଜାର ପୁଅ ମୂଲିଆ ହୋଇଛି । ଦେଶ ଦଶର ସେବା କରୁଛି । ତା'ର ଏ ସବୁ ଆବଶ୍ୟକ ନାହିଁ । ସୁରଭି ବିଦ୍ରୋହ କରିଛି । ଯେତିକି ଅଛି ସେତିକି ସେ ଉଡ଼ାଇ ଦେବାକୁ ଚାହେଁ । ସମସ୍ତଙ୍କୁ ବାଣ୍ଟି ଦେବା ତା'ର ଉଦ୍ଦେଶ୍ୟ ।

Digitized by PPRACHIN, SOA

ସବୁ କେବଳ ଦାନ ! ସମସ୍ତଙ୍କୁ ବଣ୍ଟନ ! କାହିଁକି ? ସେ କଣ୍ଟ କାହାକୁ ଦାନ କରିପାରିବେ ନାହିଁ । ସେ ଆଖି ବୁଜିଲେ ସବୁ ଯଦ ବରବାଦ ହୋଇଯିବ ତ ସେ ଥାଉଁ ଥାଉଁ ସେତକ କରି ନ ଯିବେ କାହିଁକି ? ଦୁର୍ଲଭ ମନୁଷ୍ୟ ଜୀବନ । ଆଜି ମଲେ, କାଲିକୁ ଦୁଇ ଦିନ । ଋଣଂ କୃତ୍ୱା ଘୃତଂ ପିବେତ୍ । ଆମ୍ବକୁଣଲେ ସ୍ୱର୍ଗସିଦ୍ଧି ।

ରଣସିଂହ ସିଂହାସନରେ ଉଠି ଠିଆହେଲେ । ତଳକୁ ଭରା ଦେଇ ଖୋଲି ଆଲମାରି ଭିତରକୁ ଅନାଇଁଲେ । ବୋତଲଗୁଡ଼ାକ ପୁଣି ଉପହାସ କରୁଛନ୍ତି । ସତେ !

ଅଭିନବ ରଣସିଂହେ ଗୋଟା ଗୋଟା କରି ବୋତଲ ତଳକୁ ପକାଇଲେ । କାହିଁକି ଏଗୁଡ଼ାକ ଖାଇତା ହୋଇ ରହିବ, କି ପ୍ରୟୋଜନ ? ଆରେ, ଏଇଟା କ'ଣ ? ଫମ୍ପା ବୋତଲ ପଛପଟେ ଲୁଚି ରହିଛି । ଜିନ୍ । ଆଉର ଗୋଟାଏ ରମ୍, ଆଉର ଗୋଟାଏ ବ୍ରାଣ୍ଡି, ଆଉର ଅଛି କି ? ଏଇଟା — ? ଦେଶୀ ! ଆଉର – ? ନାଇଁ । ସତେ କି ସବଗର ବୃନ୍ଦ ଋଷିପତ୍ନୀ ହାତରେ । ମନକୁ ମନ ହସି ଉଠିଲେ । ବାବନା ଅଢ଼ ଗୁଲାଖ ପିଲା । ଫମ୍ପା ବୋତଲଗୁଡ଼ିକର ପଛପଟେ ମାଲ୍ ସାଇତ ରଖିଛି । ତାକୁ ବକ୍‌ସିସ୍ ଦେବାକୁ ପଡ଼ିବ ।

ଜାତ ଜାତକା ଗିଲସ ଆଲମାରି ତଳ ଦୁଇ ଥାକରେ ରଖାହୋଇଛି । ସ୍ଥିର ବୋତଲ ! ଆଜି ଭଲ ଦିନ । ଦେଶୀ ମଦ ଭଲ ନୁହେଁ । ବିଲାତ ଭଲ । ରମ୍, ଜିନ୍, ବ୍ରାଣ୍ଡି ।

ଜାଉଁଳି କବାଟ ଧୀରେ ଧୀରେ ଖୋଲିଲା । ଘର ମଳକାଇ ରୂପର ତରଙ୍ଗ ଛୁଟାଇ, ବେଶଭୂଷାର ପରିପାଟୀରେ ଅଖି ଝଲସାଇ, ପ୍ରୌଢ଼ା ହେଲେ ବି ଷୋଡ଼ଶୀର ଯୌବନ ସମ୍ଭାର ଘେନି ଲୀଳାୟିତ ଭଙ୍ଗୀରେ ମମତା ପଶିଲେ ଘରେ । ସ୍ଥିରଚକ୍ଷୁର ମିଳନ । ରଣସିଂହେ ଦୃଷ୍ଟି ନୁଆଁଇଲେ । ଟେବୁଲ୍ ଉପରେ ରଙ୍ଗୀନ ମଦ । ପାଖରେ ଗିଲସ । ସାରା ଦେହ ଶୋଷେଇ ଉଠିଲାଣି । ତଣ୍ଟିହେଲାଣି ଅଠା ଅଠା । ସବୁଯାକ ମଦ ଏକାଥରେ ଶୋଷି ନେବାକୁ ମନ ହେଲାଣି ଛଟପଟ ।

ଏତେବେଳେ ମମତା ଆସି ପହଞ୍ଚିଲେ କାହିଁକି ? ସବୁ ସେ ଜାଣନ୍ତି କିନ୍ତୁ କେବେ ଆଖିରେ ଦେଖିବାର ସୁଯୋଗ ପାଇ ନ ଥିଲେ । ନାଥିଆ ଉଣ୍ଡାଣ୍ଡି ଉପରେ ମନ ତଡ଼ି ଉଠିଲା । ସେ ଅଫିମ ଖାଇ ଘୁମେଇଁ ପଡ଼ିଛି । ମମତା ଆସୁଛନ୍ତି ବୋଲି ଆଗରୁ ଖବର ଦେଇ ପାରିନାହିଁ । ନଜେ ବି ସେ କବାଟଟା କିଳିଦେଇ ପାରିଥାନ୍ତେ । ମନେପଡ଼ିଲା ନାହିଁ । ଦୁର୍ଯୋଗ ।

Digitized by PPRACHIN, SOA

ଆତ୍ମା ଆକୁଳ ଚିତ୍କାର ଛୁଟାଉଛି ଦେହର କେଉଁ ଅଜଣା କନ୍ଦରୁ, ମିନତି କରୁଛି, ଢାଳ, ପିଅ, ମୋର ଜଳନ୍ତା ଉତ୍କଣ୍ଠାକୁ ଶାନ୍ତ କର । ମରଣ ଆସୁ, ଚିନ୍ତା ନାହିଁ । ସୁରାର ସମୁଦ୍ରରେ ବୁଡ଼େଇ ଡୁବେଇ ହୋଇ ମଲେ ଆନନ୍ଦ ଅଛି । ଢାଳ ରଙ୍ଗୀନ ସୁରା, ଆକଣ୍ଠ ପାନ କର ।

କ'ଣ ଭାବୁଛ ? ଗ୍ଲାସ ନାଷ୍ଟାକୁ କରୁଛ ଭୟ ? ପୁରୁଷସିଂହ, କଅଣ କେବେ ପାଇଛ ତା'ଠାରୁ ? ସ୍ନେହ, ପ୍ରେମ, ସହାନୁଭୂତି, ସେବା— ?

ଅନଳ ଶିଖା ପରି ସେ ପ୍ରଜ୍ଜ୍ୱଳିତ ହୋଇ ପାଖକୁ ଆସେ । ନିଜ ଅହମିକାରେ ସେ ଜଳେ, ଜଳାଏ । ଶାସନ କରେ । ତୋଫାନ୍ ପରି ଗର୍ଜି ଉଠେ । ହାତ ବଢ଼ାଇଲେ ବିଦ୍ୟୁତ୍ ପରି ଛୁଟି ପଳାଏ ।

ଗ୍ଲାସ ନା'ଷ୍ଟାଏ ତ; ଅପ୍ରସ୍ତୁତ ହୋଇ ଠିଆହେଲ କାହିଁକି ?

ରଣସିଂହଙ୍କର ହାତଦେହ ଥରି ଉଠିଲା । ସୁରା ବୋତଲର ଠିପି ଖୋଲି ସେ ଗିଲାସରେ ଅଜାଡ଼ିଲେ । ଗିଲାସ ମୁହଁରେ ଲଗାଇ ପାନକଲେ । ଚାହିଁଲେ ଆଗକୁ । ଖୋଲା ଦ୍ୱାରବନ୍ଧ ଏପାଖେ ପଥର ମୂର୍ତ୍ତିପରି ଠିଆହୋଇ ମମତା ଅନାଇଁ ରହିଛନ୍ତି । ତୁଣ୍ଡରୁ ବାକ୍ୟ ସ୍ଫୁରୁ ନାହିଁ ।

ପ୍ଲେଟ ଗିଲାସଟି ମୁହଁ ପାଖରୁ ତଳକୁ ଆଣିଲେ । ଏକା ସୁଡ଼ୁକାରେ ନିଃଶେଷ ହୋଇଛି । ଏତିକରେ ଚଳିବ ନାହିଁ । ତୃଷାର ଅବସାନ ହୋଇନାହିଁ ବରଂ ତୃଷା ବଢ଼ିଛି । ରଣସିଂହ ଆହୁରି ଢାଳିଲେ । ସଶବ୍ଦରେ ଜାଉଁଳ କବାଟ ବନ୍ଦ କରି, କିଳଣୀ ପକାଇ ମମତା ଟେବୁଲ୍ ପାଖକୁ ଆସିଲେ । ପ୍ଲେଟ ଗିଲାସ ପୂର୍ଣ୍ଣ ହୋଇଛି । ଗୋଲାପି ସୁରା ସୁନ୍ଦର ଦିଶୁଛି । ମଧୁର ମହକ ଛୁଟି ଆସୁଛି ।

ପଚାରିଲେ, ଏହାକୁ କହନ୍ତି ତ ସୁରା ?

ରଣସିଂହ ବିରକ୍ତିସୂଚକ ମୁଣ୍ଡହଲାଇ କହିଲେ, ରତ୍ନମାଳିର ରାଜଜେମା କେବେ ସୁରା ଦେଖି ନାହାନ୍ତି ? ଏହାକୁ ହିଁ କହନ୍ତି— ସରାପ, ସୁରା, ମଦ, ସୋମରସ—

ଖାଇଲେ କ'ଣ ହୁଏ ?

ସ୍ୱର୍ଗଲାଭ ।

ସ୍ୱଦେହରେ ?

ହଁ, ସ୍ୱଦେହରେ ।

ମମତା ବଡ଼ ପାଟି କରି ହସିଉଠିଲେ । ସୁରାପାତ୍ର ଟେକୁ ଟେକୁ ରଣସିଂହ ଟେବୁଲ ଉପରେ ରଖିଦେଇ ଚଉକିରୁ ଉଠି ଠିଆହେଲେ । ମମତାଙ୍କ ଉଚ୍ଚ ହାସ୍ୟ ସତେ ଯେପରି ତାଙ୍କର ହୃଦୟର ସ୍ପନ୍ଦନକୁ ଦ୍ରୁତ ବେଗରେ ଦୋହଲାଇ ଦେଲା ।

ମମତା ହସୁଛନ୍ତି । ଚାହିଁ ରହିଛନ୍ତି । ଆଖି ଦୁଇଟା ନକ୍ଷତ୍ର ପରି ଜଳୁଛି । ବୋଧହୁଏ ସେ ମଦ୍ୟପାତ୍ର ତଳକୁ ଫିଙ୍ଗିବେ । ସବୁ ଗୃହଦେବୀ ଦଶ ସାଧ୍ୱୀ ପତ୍ନୀ ପରି

Digitized by PPRACHIN, SOA

ଉପଦେଶ ବାଢ଼ିବେ, ଛି, ଛି, ସେଗୁଡ଼ା ଖାଅ ନା, ଭଲ ଚଜ ନୁହେଁ, ଦେହ ବିଗାଡ଼ିବ । କେଜାଣି ବା ପାଦ ତଳେ ଲୋଟିଯିବେ । ଆଖିରୁ ଲୁହ ଝରାଇ ପାଦ ଧରି ସେ ଅନୁନୟ କରି କହିବେ, ତୁମକୁ ମୋ ରାଣ, ଏଗୁଡ଼ାକ ଅମୃତ ନୁହେଁ, ହଳାହଳ । ଖାଅ ନାହିଁ, ଖାଅ ନାହିଁ ।

ମମତା କହିଲେ, ତମେ ସତ୍ୟ ହିଁ କହୁଛ । ଅତ ପିଲାଦିନେ ମୁଁ ଦେଖିଛି, ମୋର ପିତା ଓ ଭାଇମାନେ ଏହି ଅମୃତ ଖାଉଥିଲେ । ଚେତା ହରାଇ ପଡ଼ୁଥିଲେ । ସଂସାରର ସୁଖଦୁଃଖ, ଭଲମନ୍ଦ ପାସୋରି ଯାଉଥିଲେ । ଠିକ୍ କଥା, ତାହା ହିଁ ବୋଧ ହୁଏ ସ୍ୱଦେହରେ ସ୍ୱର୍ଗଲାଭ ।

ମମତା ମଦ୍ୟପାତ୍ର ହାତରେ ଉଠାଇଲେ । ପୁଣି ହସିବାକୁ ଲାଗିଲେ । କହିଲେ, ନିଷ୍କର୍ମୀ ଜୀବନରେ ଆନନ୍ଦ କ'ଣ ? ଦୁଇ ପୁତ୍ର ଯାହାର ଅବାଧ୍ୟ ଓ ଗୃହତ୍ୟାଗୀ, ତା'ର ଆଉ ଭବିଷ୍ୟତ୍ର ଭାବନା କଅଣ ? ତା'ର ଚିନ୍ତା କେବଳ ବର୍ତ୍ତମାନ । ମୁଁ ବି ପ୍ରସ୍ତୁତ ହୋଇ ଆସିଛି ।

ରଣସିଂହଙ୍କୁ ଆଡ଼ାକ୍ କରି ମମତା ମଦ୍ୟପାତ୍ର ଓଠରେ ଲଗାଇଲେ । ହାତ ଥରି ଉଠୁଛି । ମୁଣ୍ଡ ବୁଲାଇ ଉଠୁଛି । ପାତ୍ରରୁ ଚହଲି ରଙ୍ଗୀନ୍ ମଦ ଶାଢ଼ୀରେ ପଡ଼ୁଛି । ମୁଖ ବିକୃତ କରି ମମତା ଢୋକୁଛନ୍ତି । ତଣ୍ଟି ଜଳିଉଠୁଛି । ପେଟ ଭିତରେ କିଏ ଯେପରି ନିଆଁ ଜାଳିଦେଲାଣି । ଏଥର ସେ ଜଳିଯିବେ । ଆଖି ଆଗରେ ଜଳୁଜୁଳିଆ ପୋକ ଅଗଣନ ମିଟିମିଟି ହେଉଛନ୍ତି । ଅଇ ଉଠୁଛି । ସଳଖ ହୋଇ ଠିଆହେବାକୁ ଦେହରେ ନାହିଁ ଶକ୍ତି ।

ରଣସିଂହ ତଟସ୍ଥ । ନିଶ୍ଚଳ । ନିସ୍ପନ୍ଦ । କଅଣ ସେ ଦେଖୁଛନ୍ତି ବୁଝିପାରୁ ନାହାନ୍ତି । ବିଶ୍ୱାସ ହେଉ ନାହିଁ । ମଦ ନିଶାରେ କ'ଣ ତାଙ୍କର ମତି ବିଚଳିତ ହୋଇଛି ? ସ୍ୱପ୍ନ ସେ ଦେଖୁଛନ୍ତି, ମମତା ମଦ୍ୟପାନ କରୁଛନ୍ତି ? ରଣଗଡ଼ର କୁଳଲକ୍ଷ୍ମୀ ମମତା— । ପୂଜା ନ କରି ତୁଳସୀ ପାଦୁକ ତୁଣ୍ଡରେ ନ ରଖି ଯେ ଜଳପାନ କରନ୍ତି ନାହିଁ, ସେହି ମମତା ମଦ୍ୟପାନ କରୁଛନ୍ତି ?

ସ୍ୱପ୍ନ, ଭାବନା, ପ୍ରହେଳିକା !

ଅଦ୍ଭୁତ ଦୃଶ୍ୟ, ଅଦ୍ଭୁତ ଦୃଶ୍ୟ— ।

ଶୂନ୍ୟ ମଦ୍ୟପାତ୍ର ଆଗକୁ ବଢ଼ାଇ ମମତା ଅଳି କରୁଛନ୍ତି ! ଓଠରେ ଅସ୍ୱାଭାବିକ ସ୍ମିତ । ଆଖି ଦୁଇଟି ଢଳଢଳ । ଟେବୁଲ୍ ଉପରେ ଗୋଟିଏ ହାତ ଭରା ଦେଇ ସେ ଆଗକୁ ଉହୁଙ୍କି ପଡ଼ୁଛନ୍ତି । ମୁଣ୍ଡର ଓଢ଼ଣା ଖସିପଡ଼ୁଛି । କହୁଛନ୍ତି, ଏଇ ଭଲ । ସ୍ୱଦେହରେ ସ୍ୱର୍ଗଲାଭ । ଅଦ୍ଭୁତ ଦୃଶ୍ୟ— ।

Digitized by PPRACHIN, SOA

ଷ୍ଟବନା ନୁହେଁ, ସ୍ୱପ୍ନ ନୁହେଁ, ସତ୍ୟ ! ମମତା ହିଁ ମଦ୍ୟପାନ କରୁଛନ୍ତି । ରଣଗଡ଼ର ରାଜରାଣୀ, କୁଳଲକ୍ଷ୍ମୀ !

ଅଜଣା ଯନ୍ତ୍ରଣାରେ ରଣସିଂହ ଛଟପଟ ହେବାକୁ ଲାଗିଲେ । ଆଖି ବୁଜି, ଆଖି ଖୋଲିଲେ । ମମତାଙ୍କ ହାତରୁ ଶୂନ୍ୟ ମଦ୍ୟପାତ୍ର ଟାଣିନେଇ ତଳେ ପକାଇଲେ । ଆଖି ଟେକ ମମତାଙ୍କୁ ଚାହିଁଲେ । ସେ ଯେପରି ଅଛ କାହା ପର ଦିଶୁଛନ୍ତି । ଉଠି ଠିଆ ହେଲେ । ଟଳି ଟଳି ଟେବୁଲ ସେପାଖକୁ ଗଲେ । ମମତାଙ୍କର ହାତ ଧରି ପଲଙ୍କ ପାଖକୁ ନେଲେ । ପଲଙ୍କ ଉପରେ ବସାଇ ନିଜେ ବସିଲେ ପାଖରେ । ପଚାରିଲେ—

ଏ କ'ଣ କଲ ମମତା ? କୁଳଲକ୍ଷ୍ମୀ ହୋଇ ମଦ ଖାଇଲ, କାୟା ନଷ୍ଟ କଲ ?

ସ୍ୱର୍ଗଲାଭ ହବ ପରା !

ସ୍ୱର୍ଗ ନୁହେଁ ମମତା, ନରକ—ନରକ— ।

ସତେ ନରକ ?

ମମତାଙ୍କର ତଳ ତଳ ଆଖି ଦିଓଟି ସଜଳ ହେଲା । କହିଲେ, ତୁମେ କେବେ ସେଇ ପଥର ପଥିକ ? ତମର ସଙ୍ଗେ ସଙ୍ଗେ ମୁଁ ବି ନରକକୁ ଯିବାକୁ ମନ କରିଛି । କୁଞ୍ଜଆରେ ନିଜକୁ ମୁଁ ଏକୁଟିଆ ମଣୁଥିଲି । ଆଜ ଏଇ କୁମାର ପୁନେଇ ରାତିରେ ! ଦେହର ଆଭରଣ, ଫୁଲ ଓ ଏସେନ୍‌ସର ମହକ । ଦାସୀମାନଙ୍କର ସେବା ଓ ଶୁଶ୍ରୂଷା ମୋର ମନର ଏକୁଟିଆପଣ ଦୂର କରିପାରି ନ ଥିଲା । ଯେଉଁମାନେ ମୋର, ସେମାନେ ମୋତେ ଏକାକୀ ଛାଡ଼ି ଦୂରେଇ ଯାଇଛନ୍ତି । ରାଜରାଣୀ ମୁଁ । ତମର ବଂଶର ମର୍ଯ୍ୟାଦାକୁ କୋଳରେ ଧରି, ତମର ମୁଁହରେ କାଳି ବୋଳି ମୁଁ ତ ଆଉ ସୁବ୍ରତ ସଙ୍ଗେ ଧାଇଁଯାଇଁ ମୂଳ ଲଗନ୍ତି ନାହିଁ କି କେଉଁ ଅରଣ୍ୟରେ ପତ୍ରକୁଡ଼ିଆ ଭିତରେ ରହନ୍ତି ନାହିଁ ? ରାଜରାଣୀ ମୁଁ, ତମର ଟେକ ଲାଗି ମୁଁ କ'ଣ ସୁବ୍ରତ ସଙ୍ଗେ ଯାଇ ଏଇ ଗ୍ରାମ ମଝିରେ ତା'ର କୁଡ଼ିଆରେ ଆଶ୍ରା ନିଅନ୍ତି ଯେଉଁଠି ସବୁ ଜାତିର ସବୁ ଶ୍ରେଣୀର ଲୋକେ ଏକଜୁଟ ହୋଇ ତମ ବିରୁଦ୍ଧରେ ଚକାନ୍ତ କରୁଛନ୍ତି ? ତମ ଛଡ଼ା କିଏ ଅଛି ମୋର ଏ ଦୁନିଆରେ ? ସେଇଥିପାଇଁ ମୁଁ ଧାଇଁଆସିଛି । ତମେ ସ୍ୱର୍ଗକୁ ଯାଅ କି ନରକକୁ ଯାଅ, ମତେ ବି ସଙ୍ଗରେ ନେଇଯାଅ— ।

ମମତାଙ୍କ ଆଖିରୁ ଲୋତକ ଝରିଲା ।

ରଣସିଂହେ ନିର୍ବାକ୍ ହୋଇ ଚାହିଁରହିଲେ । ଆଗରେ ତାଙ୍କର ସହଧର୍ମିଣୀ, କୁଳଲକ୍ଷ୍ମୀ । ହସି ହସି ସିଏ ସୁରାପାନ କରି କାୟା ନଷ୍ଟ କରିଛନ୍ତି, ଅନୁତାପ କରି ସିଏ ନୟନରୁ ଲୋତକ ଗଡ଼ାଉଛନ୍ତି । ପୂର୍ବପୁରୁଷଙ୍କର ଅଶରୀରୀ ଆତ୍ମାଗୁଡ଼ାକ ଯେପରି

Digitized by PPRACHIN, SOA

ସ୍ୱର୍ଗପୁରରୁ ଓହ୍ଲାଇ ଆସିଲେଣି । ସବୁ ଅନ୍ୟାୟ ଅଗୀତ ଅଭିନୀତ ହୋଇଛି ଯେଉଁ ପ୍ରକୋଷ୍ଠରେ ଯାହାର ସ୍ମୃତି ଜୀବନ୍ତ ହୋଇ, ଉଲଗ୍ନ ହୋଇ ପ୍ରକୋଷ୍ଠର ସ୍ୱରଆଡ଼େ ନୃତ୍ୟ କରୁଛନ୍ତି । ଅଟ୍ଟହାସ୍ୟ କରି ଉପହାସ କରୁଛନ୍ତି, ସେଇ ପ୍ରକୋଷ୍ଠ ଭିତରକୁ ନରକ ଭିତରକୁ ପ୍ରବେଶ କରିବାକୁ ସେମାନଙ୍କର ଇଚ୍ଛା ହେଉ ନାହିଁ । କରୁଣ କଣ୍ଠରେ ଚିତ୍କାର କରି ଉଠୁଛନ୍ତି ସେମାନେ—ସରଗ ଆମର ଦୋହଲି ଉଠିଛି, ମନ୍ଦାକିନୀର ଗୋଟିଏ ମାତ୍ର କ୍ଷୀଣ ଧାର ଶୁଖିଯାଇଛି । ରକ୍ଷାକର ରକ୍ଷାକର । କୁଳର ଉଜ୍ଜ୍ୱଳ ପ୍ରଦୀପ ସେ । ଲିଭାଇ ଦିଅ ନାହିଁ । ନିବିଡ଼ ଅନ୍ଧାର ଭିତରେ ସମସ୍ତେ ହେବୁ ବାଟବଣା ।

ରଣସିଂହଦେବ ଉଚ୍ଚ ହାସ୍ୟ କରି ଉଠିଲେ । ଆଖି ଆଗରେ ସବୁ ପଦାର୍ଥ ଯେପରି ଚକା ଚକା ଭଉଁରି ଖେଳୁଛି । ମୁଁଆଡ଼େ ଚାହିଁଲେ ଦିଶୁଛନ୍ତି ମମତା । ହାତରେ ମଦ୍ୟ-ପାତ୍ର । ହସି ହସି ପାନ କରୁଛନ୍ତି । ଆଗରେ କିଏ ବସିଛି, ସଜଳନୟନା ? ମମତା ! ସେ କାହିଁକି ଏଠାରେ ? ତଣ୍ଟି ଅଠା ଅଠା ହେଉଛି । ଆଉ ଟିକିଏ ସୁରା ପାଇଁ ମନ ଉଦ୍ବେଳ ବିକଳ ହେଉଛି, ଅଳି କରୁଛି । ଚିରଦିନ ଯିଏ ଦୂରେଇ ରହୁଥିଲେ, ଜରଛଡ଼ା ଦେଇ ପଳାୟନ କରୁଥିଲେ ସେ କାହିଁକି ଧାଇଁ ଆସିଛନ୍ତି ପାଖକୁ, ଧରା ଦେଇଛନ୍ତି ?

ସୁରାପାତ୍ର ଏଠୁ ।

ଯିବ ନାହିଁ ।

ଏଁ, ଯିବ ନାହିଁ ?

ଟଳି ଟଳି ରଣସିଂହଦେବ ଉଠିଲେ । ମମତାଙ୍କର ହାତ ଧରି ଟାଣିଲେ । ପୁଣି କହିଲେ, ଉଠ । ସୁରାପାତ୍ର କହୁଛି । ସୁରାପାତ୍ର— ।

ଯିବ ନାହିଁ । ମମତା ନିଃସହାୟ ଲୋଚନରେ ଚାହିଁ ରହିଲେ । ବୁଝିଲେ, ରଣସିଂହଦେବ ସୁରାଦେବୀ ପାଖରେ ଆତ୍ମସମର୍ପଣ କରି ସାରିଲେଣି ।

ଉଠି ଠିଆ ହେଲେ ।

ଯିବ ନାହିଁ ?

ରଣସିଂହଦେବ ବଜ୍ରମୁଷ୍ଟି କରି ମମତାଙ୍କ ଚିବୁକରେ ପ୍ରହାର କଲେ । ଚିତ୍କାର କରି ମମତା ପଡ଼ିଲେ ପଲଙ୍କ ଉପରେ । ନାକ ଫାଟି ରକ୍ତର ଧାର ଛୁଟିଛି । ଆଖିକୁ ଦିଶୁଛି ସବୁ ଅନ୍ଧାର । ଦେହରେ ଆହୁରି ଆଘାତ । ମନ କହୁଛି, ଏହା ହିଁ ଉତ୍ତମ । ମରଣ ହିଁ କାମନା ।

ରଣସିଂହଦେବ ଟେବୁଲ୍ ପାଖକୁ ଗଲେ । ମନରେ ନାହିଁ ଅନୁଶୋଚନା । ଠିକ୍ ହୋଇଚି । ଆସିଥିଲେ ମଦ୍ୟପାନ କରିବାକୁ । ଏଥିରେ ଆଉ କାହାର ଲାଗି ନାହିଁ । ସମସ୍ତେ ସେମାନେ ଗୁଣ୍ଡ ପକାଇଛନ୍ତି । ଏକମାତ୍ର ବନ୍ଧୁ ଏଇ ସୁରା । ଏକମାତ୍ର ପ୍ରିୟଜନ ବାବନା ପଧାନ ।

Digitized by PPRACHIN, SOA

ରଣସିଂହ ପାତ୍ରରେ ଢାଳିଲେ ମଦ । ଗୋଲାପି ତା'ର ରଙ୍ଗ । ପାତ୍ର ଟେକିଲେ ଓଠ ପାଖକୁ । କଣେଇଁ ଚାହିଁଲେ । ପଲଙ୍କ ଉପରେ ଅର୍ଦ୍ଧ-ଉଲଗ୍ନ ମମତା ମୁହଁ ମାଡ଼ି ପଡ଼ିଛନ୍ତି । କୋହ ଉଠୁଛି । ସୁରାପାତ୍ର ଥରି ଉଠୁଛି ହାତରେ । ମନ କହୁଛି, ଠିକ୍ ହୋଇଛି ? ସୁରାପାତ୍ର ମୁହଁରେ ଲଗାଇଲେ । ପାନ କଲେ ଆଖି ବୁଜି ଅଧିକ ପଡ଼ିଲେ ଚଉକି ଉପରେ । ଆଖି ଖୋଲିଲେ । ଅନ୍ଧାର, ଅନ୍ଧାର । ଆଖି ବୁଜିଲେ ।

ଆଖି ଖୋଲିଲେ । ଆଗରେ ଠିଆ ହୋଇଛନ୍ତି ମମତା । ନାକପୁଡ଼ାରୁ ଦୁଇ ଧାର ରକ୍ତ ନିଗିଡ଼ି ପଡ଼ୁଛି । ଆଖିର ଲୋତକ ମିଶୁଛି ତହିଁରେ । ପାତ୍ରରେ ଛନ୍ଦା ହୋଇ ରଖାହୋଇଛି ମଦ । କିଛି ସେ ବୁଝିପାରୁ ନାହାନ୍ତି । ଦିଶୁଛି ଦୁଇ ଧାର ରକ୍ତ । ଖଣେଇଁ ଖଣେଇଁ ଡାକିଲେ । ମମତା — ।

ମମତା ଉତ୍ତର ଦେଲେ, କଅଣ ?

ବସ — ।

ମମତା ରଣସିଂହଙ୍କ ପାଖକୁ ଗଲେ । ଅଞ୍ଚଳରେ ମୁହଁ ପୋଛି ପାଖ ଚଉକିରେ ବସିଲେ । ସ୍ୱାମୀଙ୍କର ଅବସ୍ଥା ଦେଖି ନିଜର ସବୁ ଦୁଃଖ, ସବୁ ଯନ୍ତ୍ରଣା ସେ ଭୁଲିଗଲେ । ସତେ, ସେ ନରକ ପଥରେ ହିଁ ଆଗେଇ ଚାଲିଛନ୍ତି । ଏଥିପାଇଁ ଦାୟୀ ଏକା ସେ । ତାଙ୍କର ପାଖେ ପାଖେ ରହି କେବେ ସେ ତାଙ୍କୁ ସେ ଫେରାଇ ଆଣିବାକୁ ଚେଷ୍ଟା କରି ନାହାନ୍ତି । ଫେରିବେ ନାହିଁ ?

ଆଖି ଖୋଲି ରଣସିଂହ ପଚାରିଲେ, କଅଣ ତମର ଲୋଡ଼ା ମମତା ? କଅଣ ତୁମେ ଚାହଁ ?

କେବଳ ତମକୁ ମୁଁ ଚାହେଁ ।

ସତେ ? ନାଇଁ, ନାଇଁ, ତମେ ଚାହଁ —

ରଣସିଂହ ପୁଣି ସୁରାପାତ୍ର ହାତରେ ଟେକିଲେ । ମମତା ମୁହଁ ପାଖରେ ଧରି କହିଲେ, ତମେ ଏହା ହିଁ ତ ଚାହଁ । ପିଅ, ପିଇଦିଅ — ।

ସ୍ୱାମୀ — !

ପିଇବ ନାହିଁ ? ମୁଁ ଏଇଥିରେ ଅଛି ପିଅ —

ସ୍ୱାମୀ — !

ପିଇବ ନାହିଁ ? ତେବେ ମୁଁ ପିଏଁ — ।

ରଣସିଂହେ ହାତ ଫେରାଇଲେ । ମମତା ତାଙ୍କର ହାତ ଧରି କହିଲେ, ନାଇଁ ନାଇଁ, ଆଉ ତମେ ପିଅ ନାହିଁ । ମତେ ହିଁ ଦିଅ । ତମେ ସରଗକୁ ଯାଅ କି ନରକକୁ ଯାଅ, ମତେ ଏକା ଛାଡ଼ି ଯାଅ ନାହିଁ । ମତେ ବି ନିଅ ସଙ୍ଗରେ । ତମରି ହାତରେ ମୁଁ ଏ ବିଷ ପାନ କରିବି । ଦିଅ — ।

ଓଠରେ ଲଗାଇଲେ ।

ଆହୁରି ?

Digitized by PPRACHIN, SOA

ଉଚ୍ଚ—

ଜଅ ମମତା । ଏଇ ବଷ ଦନେ ତମର ଅମୃତ ହେବ, ଜଅ । ଆତୁର ଜଅ ।

ଗାଆଁ ମଝି ରାସ୍ତା କଡ଼ରେ ତ୍ରିପାଠୀଙ୍କର କେଉଁ ପୁରୁଷର ଯେଉଁ ଖାଲୁଆ ସନ୍ତସନ୍ତଆ ଅରମା ଜମି ଖଣ୍ଡି ପଡ଼ିଥିଲା, ସେଇଥିରେ ତୋଳା ହୋଇଛି ସୁରତ ପାଇଁ ଘର । କୁଡ଼ିଆ ତା'ର ନାମ, ହେଲେ ପୋଡ଼ା ଇଟାରେ ଗଢ଼ା ହୋଇଛି । ଚଉ ବଖରା ଚଉଡ଼ା ବାରଣ୍ଡା । କଡ଼କୁ ଷ୍ଟୋର ସେଷଘର । ଭଣ୍ଡାରଘର । ସେ ପାଖକୁ ଠିକ୍ କିଚେନ୍ ! ଆଗରେ ଦକ୍ଷିଣ ପଟେ ପାଚେରୀ । ପାଚେରୀକୁ ଲାଗ ଗୋଟିଏ ଖୋଲା ଘର । କଡ଼ରେ କବାଟ— ରାସ୍ତା ଉପରକୁ । ରାସ୍ତାର ଦକ୍ଷିଣରେ ଗ୍ରାମବାସୀଙ୍କର ଘର ଧାଡ଼ିଏ ।

ଅଧମାସେରୁ ଟିକଏ ବେଶି ହେବ ତ ଅରମା ଭୂଇଁଟା । ଗାଆଁର ରୂପ ବଦଳିବା ସଙ୍ଗେ ସଙ୍ଗେ ସବୁ ଅରମା ଓ ପଡ଼ିତ ପଡ଼ିଆର ରୂପ ବଦଳିଛି । ଏ ଭୂମି ଖଣ୍ଡିକର ରୂପ ନ ବଦଳନ୍ତା କିପରି ? ଗୋଟିଏ କଡ଼ରେ ଗହିରା ପୋଖରୀ—କାଟଲେଣ୍ଡୁ ପର ପାଣି । ନୂଆ ମାଟି ପଡ଼ି ସବୁ ଖାଲ ପୋତା ହୋଇ ସମତୁଲ କରାହୋଇଛି । ବିଭିନ୍ନ ପ୍ରକାରର ଫଳଫୁଲ ଗଛ ଲାଗିଛି । ସେଥିପାଇଁ କେବଳ ସୁରତକୁ ପ୍ରଶଂସା କଲେ ତ ଚଳିବ ନାହିଁ, ଗ୍ରାମ-ସେବକ-ସଂଘର ସମସ୍ତଙ୍କର ବୁଦ୍ଧି ଓ ହାତର କରାମତି ଲାଗିଛି ସେଥିରେ ।

ଗ୍ରାମ-ସେବକ-ସଂଘର ସଭ୍ୟସଂଖ୍ୟା ଦିନକୁ ଦିନ ବଢ଼ିବାକୁ ଲାଗିଛି । ଏଇଥି-ପାଇଁ ସେବକ ଧର୍ମାନନ୍ଦର ବୁଦ୍ଧିକୁ ପ୍ରଶଂସା କରିବାର କଥା । ଧର୍ମ ବେଟିଆ-ସଂଘର ନାମ ବଦଳାଇ ଗ୍ରାମ-ସେବକ ସଂଘ ନାମଦେବାକୁ ପ୍ରଥମେ ସେହି ପ୍ରସ୍ତାବ କରିଥିଲା । ବେଟିଆ ପଦର ପଛଆଡ଼େ କେତେ ଦୁଃଖପ୍ରଦ ସ୍ମୃତି ଲୁଚି ରହିଛି । କେତେ ଭୟ, ନିର୍ଯ୍ୟାତନା, ଅସ୍ଥିରତା, ଅନିଶ୍ଚିତତା, ଆକୁଳତା ଓ ଲୋତକ ଧାର ସେହି ସ୍ମୃତିରେ ବିଜଡ଼ିତ । —ସେସବୁ ଆଜି ଅତୀତର ଦୁଃସ୍ୱପ୍ନ ହେଲେ ବି ଶବ୍ଦଟା ଶ୍ରୁତିରେ ଆସେ ଛନକା । ସେବକ ଶବ୍ଦଟି ଯେପରି ସୁନ୍ଦର, ସେପରି ମଧୁର !

ମନ ଥିଲେ କେଉଁ କାମଟା ବାକି ରହେ ନାହିଁ । ଉଣଗଡ଼ର ଗ୍ରାମଲୋକେ ଏ କଥା ବୁଝି ସାରିଲେଣି । ଯେଉଁମାନେ କାଲି ପଛରେ ଥାଇ ଲକ୍ଷ୍ମୀଛଡ଼ା, ଧର୍ମ-ବେଟିଆ କହି ଗାଆଁ ଟୋକାଗୁଡ଼ାଙ୍କୁ ହସୁଥିଲେ, ସେମାନେ ଜଣ ଜଣ କରି ଆସି ସେବକ-ସଂଘରେ ଯୋଗ ଦେଲେଣି । କୁହୁକ କାଠି ଛୁଇଁ ବାଜିକର ଅସମ୍ଭବକୁ ସମ୍ଭବ କରିବା ସେମାନେ ଦେଖିଛନ୍ତି । ସେମାନେ ଜାଣନ୍ତି, ଏଗୁଡ଼ାକ ଖାଲି ହାତ-ସଫେଇ କାମ । କୁହୁକକାଠି କୁଆଁଖିହାଡ଼ଟା ଗୋଟାଏ ପଡ଼ଆରୀ । ଲୋକଙ୍କର ଧ୍ୟାନକୁ ଅଟକାଇ ରଖିବାର ଫନ୍ଦୀ ।

Digitized by PPRACHIN, SOA

ସବୁଠୁଁ ବଡ଼, ସବୁଠୁ ଶକ୍ତିଶାଳୀ କୁହୁକକାଠି ହେଉଛି ମଣିଷର ମନ । ସବୁ ମନ ଏକାଠି ହୋଇ ଯାହା କରିବାକୁ ବସିବ, ସେ କାମ ନିଶ୍ଚୟ ହେବ । ହୋଇଛି ତ ଏଇ ଋଷିଗଡ଼ରେ । କରିଛନ୍ତି ଏଇ ଟୋକାଏ ।

ସବୁ କ୍ଷେତ୍ରରେ ଋଷିଗଡ଼ ଆଗେଇ ଚାଲିଛି ଉନ୍ନତି ପଥରେ । ଯେଉଁ ପ୍ରବୀଣ ଲୋକମାନେ ଗ୍ରାମ ପଞ୍ଚାୟତର ସଭ୍ୟ, ଯେଉଁମାନେ ଗ୍ରାମର ସମୃଦ୍ଧ କଲ୍ୟାଣ ପାଇଁ ଚିନ୍ତା କରୁଛନ୍ତି ଓ ଉପାୟ ଉଦ୍‌ଭାବନ କରୁଛନ୍ତି ସେମାନେ ଗ୍ରାମସେବକ-ସଙ୍ଘକୁ ସବୁ ବିଷୟରେ ପରାମର୍ଶ କରନ୍ତି । ସେମାନେ ଜାଣନ୍ତି, କର୍ମର ଯୋଜନା ଗ୍ରାମର ମଙ୍ଗଳ-ପାଇଁ । ଯୋଜନାକୁ କାର୍ଯ୍ୟରେ ପରିଣତ କରିବାର ଉତ୍ସାହ ଓ ଶକ୍ତିର ଅଧିକାରୀ ଗ୍ରାମବାସୀମାନେ, ବିଶେଷତଃ ଯୁବକମାନେ । ଯୋଜନା କେବଳ ସେହିମାନଙ୍କ ପାଇଁ ।

ବର୍ଷ ଦୁଇ ତିନି ଭିତରେ କେତେ କାମ ହୋଇ ସାରିଲାଣି । ସନ୍ତସନ୍ତିଆ ଆବର୍ଜନାପୂର୍ଣ୍ଣ ଗଳି ରାସ୍ତା ଆଉ କାହିଁ ? ସବୁ ହୋଇଛି ଚଉଡ଼ା ଉଚା ! ଏ ଗ୍ରାମରୁ ସେ ଗ୍ରାମକୁ ରାସ୍ତା ଓ ବଡ଼ ରାସ୍ତାରେ ମିଶିବାକୁ ରାସ୍ତା ହୋଇ ସାରିଛି । ସରକାରୀ ସାହାଯ୍ୟ ଆସିଛି, ପୁଣି ଓଭରସିଅର୍ ଆସି କାମ ବତେଇ ଦେଇ ଯାଇଛନ୍ତି । ଗ୍ରାମ-ପୋଖରୀଗୁଡ଼ିକର ଉନ୍ନତିକରଣ । ମାଛ-ଜାଆଁଳ ଛଡ଼ା ହୋଇଛନ୍ତି । ମାଛଚାଷ କରିବାକୁ ଲୋକଙ୍କର ଆଗ୍ରହ ବଢ଼ୁଛି । ମନରେ ଆସୁଛି ବାଦବୃଦ୍ଧିଆ ଭାବ । ଲୋକଙ୍କର ଆଖି ଫିଟିଲାଣି । ଭାଗ୍ୟରେ ଯାହା ଥିବ ତ ଫଳିବ । ଭଗବାନଙ୍କର ଇଚ୍ଛା ଅବଶ୍ୟ ପୂରଣ ହେବ, ଏ ସବୁ ଅଳସ କଥାରେ ସେମାନଙ୍କର ଆଉ ବିଶ୍ୱାସ ନାହିଁ । ସେମାନେ ହାତର କରାମତି ଓ ସହଯୋଗର ଶକ୍ତି ବୁଝି ସାରିଲେଣି । ପାଖେ ପାଖେ ତ ଗ୍ରାମସେବକ ଭଗବାନ ଭାଇ ଅଛି ।

ଚାଷକାମର ଉନ୍ନତି କପରି ହେବ, ଅଳପ ଜମିରେ ଅଧିକ ଫସଲ ଫଳିବ, ଭିନ୍ନ ଭିନ୍ନ ଜାତିର ଫସଲ ଏଇ ଗାଁ ଭୂମିରୁ ବାହାରିବ, ବିନା କାରଣରେ ଚାଷଖଣ୍ଡେ ହେଲେ ଭୂମି ଅକାମୀ ହୋଇ ନ ପଡ଼ିବ, ଏ ସବୁ ବିଷୟରେ ଶିକ୍ଷାଦେବାକୁ ସୋମ-ଗଡ଼ରୁ ବିଶେଷଜ୍ଞମାନେ ଆସି ଶିଖାଇ ଦେଇ ଯାଉଛନ୍ତି । ଖାଲି ଶୁଣିଲେ ଉପକାର ହେବ ନାହିଁ । ଏ ବୈଜ୍ଞାନିକ ଯୁଗରେ, ସବୁ କାମରେ ଲଗାଇବାକୁ ହେବ । କାମ କରିବ କିଏ ? ଏଇ ଗ୍ରାମ ଲୋକେ । ତାଙ୍କୁ ଅନୁପ୍ରାଣିତ କରିବାକୁ ପଛରେ ଠିଆ ହୋଇଛି ସୁରତ ରଣବଙ୍କା, ତା ପଛକୁ ଧର୍ମାନନ୍ଦ । ସେମାନଙ୍କ ସଙ୍ଗେ ଅଣ୍ଟା ଭିଡ଼ିବାକୁ ସେବକ-ସଙ୍ଘର ସଭ୍ୟମାନେ ।

ନୂଆ ଯୁଗର ଆବାହାନ ସମସ୍ତଙ୍କ କାନରେ ପଡ଼ୁଛି । କାବା ହୋଇ ସେମାନେ ଅଗ ଅନେଇ ରହୁଥିଲେ । କାନରେ ଯାହା ପଡ଼ୁଥିଲା, ମନ ନାହିଁ ନାହିଁ କରି ଉଠୁଥିଲା ।

Digitized by PPRACHIN, SOA

ନିଜ ଭିତରେ ଘୂମର ଉଠୁଥିଲା ପ୍ରଶ୍ନ — ଏଗୁଡ଼ାକ କଅଣ ସତ ? କେବେ କେହି ଶୁଣି ନାହିଁ, ସେଗୁଡ଼ାକ କୁଆଡ଼େ ହେବ ! ନ ଦେଖିଲା ଓଡ଼ ଛପଡ଼ା !

ଶୁଣି ଶୁଣି, ଆଗ୍ରହ ନ ଥିଲେ ବି କୁତୂହଳରେ ଯେଉଁ କେତେଜଣ ନୂଆ ନୂଆ ଯୋଜନାର ମଜା ଦେଖିବାକୁ, ଖଟା ମିଠା ଚାଖିବାକୁ ଆଗେଇ ଆସିଲେ, ନିଜର କରାମତ ଦେଖି ଆଶ୍ଚର୍ଯ୍ୟ ହେଲେ । ବୁଝିଲେ, ଅଜ୍ଞତା ଦୋଷରୁ ସେମାନେ ହଇରାଣ ହେଉଥିଲେ । ତାଲିମପ୍ରାପ୍ତ, ଶିକ୍ଷିତ କର୍ମଚାରୀମାନେ ଭଲ କଥା ହିଁ କହୁଛନ୍ତି ! ସେମାନଙ୍କର କଥା ଶୁଣିଲେ ଓ ଉପଦେଶ ମାନି କାମ କଲେ ସୁଫଳ ଫଳୁଛି ।

ନୂଆ ପ୍ରଣାଳୀରେ ଫସଲ ଲଗାଇ ଭଲ ସାର ଭୂମିରେ ଦେଲେ ଦୁଇ ଗୁଣ ଫସଲ ଫଳୁଛି । ଇନ୍ଦ୍ରଦେବଙ୍କ ଉପରେ ଖାଲି ନିର୍ଭର କଲେ ଚଳିବ ନାହିଁ । ଜନମ ମରଣ ବରଷା, ଜାଣି ନ ପାରେ ପୁରୁଷା । ଧରଣୀମାତାର ପେଟ ଭିତରେ ଯାହାକୁ ଯେତେ ଲୋଡ଼ା ଜଳ ଅଛି । କୂଅ ଖୋଳି ମେସିନ୍-ପମ୍ପ ଲଗାଇ ପାଣି ଉଠାଇ ଭୂମିରେ ମଡ଼ାଇଲେ ମରୁଡ଼ିର ଡର ନ ଥାଏ । ଦେଖ ଏଇ ରଣଗଡ଼ରେ । ଗଆଁର ବିଲରେ ଦଶଟା ପମ୍ପ ବସି ସାରିଲାଣି । ଆଉ ବସେଇବାକୁ ଲୋକେ ବ୍ୟାକୁଳ ହେଲେଣି । ଯେଉଁ ଭୂମିରେ ଦୁବ କଅଁଳୁ ନ ଥିଲା, ସେଠି ହେଉଛି ବିଭିନ୍ନ ଫସଲ — । ଆଖୁ, ବିଲାତିଆଳୁ, କେତେପ୍ରକାର ଶାଗ-ସବଜି । ଖରଚ ଚଳୁଛି । ବିକ୍ରୀ ହୋଇ ନଗଦ-ନାରାୟଣ ଘରକୁ ଆସୁଛି । ବାରମାସୀ ଫସଲ । ଅଳସୁଆ ହୋଇ ଘରେ ବସିବାକୁ ବେଳ ନାହିଁ ।

ବାଦବୁଦିଆ ମୁକ୍ତ !

ଟଙ୍କା ପାଇଁ କେଉଁ କାମଟା କେଉଁଠି କେବେ ଅଟକି ରହିଲାଣି କି ? ମନ ଥିଲେ ହେଲା । କହନ୍ତି ପରା, ଦଶ ପାଞ୍ଚ ଆଦ୍‌ମୀକା ଲଠି, ଏକ ଆଦ୍‌ମୀକା ବୋଝା । ଯେଉଁମାନେ ଉପକାର ପାଇବେ ସେମାନେ ଏକଜୁଟ ହେଲେ, ଏକମନ ହେଲେ ହେଲା । ଏକମନ ହୋଇ ସମବାୟ ସମିତି ଗଢ଼ିଛନ୍ତି ରଣଗଡ଼ରେ । ଋଣ ଆଣି ପମ୍ପ ବସାଇଛନ୍ତି । ଶୁଝା ହେଉଛି ଲାଭରୁ । ସହଜ ଓ ସୁବିଧା ।

ଖାଲି ଚାଷବାସରେ ନୁହେଁ, ସବୁ ବିଷୟରେ ରଣଗଡ଼ ଆଗେଇ ଚାଲିଛି । ରଣଗଡ଼ର ଆଖି ଫିଟିଛି । ସେତିକି କରିପାରିଛନ୍ତି ଏଇ ସେବକ-ସଙ୍ଘର ସଦସ୍ୟ-ମାନେ । ଯାହା ଭଲ, ଯାହା ଲାଭପ୍ରଦ — ଧନ, ସ୍ୱାସ୍ଥ୍ୟ, ଶିକ୍ଷା, ସୁବିଧା ଅରେ ବୁଝିଲେ, ରଣଗଡ଼ିଆ ଲାଗି ଯାଉଛନ୍ତି, ଏକମନ ଏକପ୍ରାଣ ହୋଇ । ଆଖପାଖର ଗ୍ରାମଲୋକେ ପ୍ରଶଂସା କରୁଛନ୍ତି । ନିଜ ଗ୍ରାମକୁ ସେପରି ଗଢ଼ିବାକୁ ଶପଥ କଲେଣି ।

ଦେଖ ତ ରଣଗଡ଼ର ଉନ୍ନତି । ଗାଁ ଦାଣ୍ଡ, ଅନ୍ଧ-କନ୍ଦି, ଘର ଅଗଣା ସମସ୍ତଙ୍କର ସଫାସୁତୁରା । ଅଳିଆ ମଇଳା, ଯେତେ ଯାହା ଫୋପଡ଼ା ହେବା ଚିଜ, ସେ ସବୁ ଆଉ ଏଠିସେଠି ଗାଆଁ ଦାଣ୍ଡରେ ପଡ଼ୁ ନାହିଁ । ସବୁ ପଡ଼ୁଛି ଘର ପଛଆଡ଼ ଖତ ଗାତରେ । କେହି କେବେ ଅଳସପଣିଆଁ କରି ବେଳେ ବେଳେ ଏଠି ସେଠି ଗଦେଇଦେଲେ,

Digitized by PPRACHIN, SOA

ସେବକ ଗୁଡ଼୍ ନାଚୁଛନ୍ତି। ସଙ୍ଗେ ସଙ୍ଗେ ସଫାସୁତୁରା କରୁଛନ୍ତି। ଭଗବାନ ଭାଇ, ଧର୍ମାନନ୍ଦ, ରଣେରଙ୍କ ଭଳି ଜାଣିବା ଶୁଣିବା ଆଉ କେତେ ଲୋକ ବଡ଼ ପାଟି କରି ହାତ ଯୋଡ଼ି ବୁଝେଇ ଦେଉଛନ୍ତି, ମାଆମାନେ, ଏ ତ ଅଳିଆ ନୁହେଁ, ଏ ସାକ୍ଷାତ୍ ଯମ। ଏଇଥିରୁ ବାହାରିବ ହଇଜା, ବସନ୍ତ, ଯକ୍ଷ୍ମାକାଶ, କେତେ ଜାତି ମାରାତ୍ମକ ରୋଗର ଜୀବାଣୁ। ଗାଆଁ ସାରା ପଦା କରିଦେବ। ପାଣି, ପଣା, ମନ୍ତ୍ର, ବାଜଣା ହରିନାମ କିଛି ରକ୍ଷା କରିପାରିବ ନାହିଁ। ଏଇ 'ଅଳିଆ ମଇଳା ଯମର ଦୂତକୁ ନେଇ ପୋତ। ଖତ ହେବ। ଭଲ ଫସଲ ଫଳିବ।

ଅଭ୍ୟାସ ବଦଳୁଛି।

ବଦଳିବ ତ। ଦେଖ୍ ନା, ରଣେଗଡ଼ର ବୁଢ଼ା, ଦନ୍ତବୁଢ଼ା, ଅପାଠୁଆ ଦଳଙ୍କୁ। ଷାଠିଏ ସାତ ବର୍ଷର ବୁଢ଼ା ମଧୁସୀ ଜେନା। ଭଲ ଗୃହସ୍ଥ ଘରର ପୁଅ। ଚଟି ଖଣ୍ଡେ ପଢ଼େଇବାକୁ ଏ ଘର ସେ ଘର ହେଉଥିଲେ। ଶୁଣି ଲୋକ ମଧ୍ୟ ସତ କି ମିଛ ପରଖେ ହେଉ ନ ଥିଲା। ଲେଖା କାଗଜରେ ଟିପଚିହ୍ନ ନୋହିଲେ ସନ୍ତକ ଦେଉଥିଲେ। କଅଣ ଲେଖା ହେଲା ପୁଣି କଅଣ ପଢ଼ି ଶୁଣେଇଲା। କାଳେ ଭବିଷ୍ୟତ୍‌କୁ ସେଇ କାଗଜରୁ କଅଣ ମେଞ୍ଚଡ଼ ବାହାରି ସର୍ବନାଶ କରିବ ବୋଲି ରାତି ସାରା ଅନିଦ୍ରା ହୋଇ ଦୁଶ୍ଚିନ୍ତାରେ ଛଟପଟ ହେଉଥିଲେ।

ଲୋକଙ୍କର ଟାହି ଟାପରା—ଦେଖ ହେ, ମଧୁସୀ ବୁଢ଼ାଦିନେ ପାଠପଢ଼ିଲେ। ଗୀତ ବୋଲିଲେ, ହିସାବ ଶିଖିଲେ।

ଅନ୍ୟମାନେ ପଛେଇ ରହିଯିବେ କାହିଁକି? ବେଢ଼ିଗଲେ ସୁରେଶକୁ। ଅଳି କଲେ, ଆମେ ପଢ଼ିବୁ। ଅନ୍ଧ ହୋଇ ରହିବୁ ନାହିଁ।

ଆରମ୍ଭ ହେଲା ବୁଢ଼ଆ-ସ୍କୁଲ। ବୁଢ଼ା ଶୁଆ କଠର କଠର ବୋଲି ମାଇପେ ମୁହଁରେ ଲୁଗାଦେଇ କୁହାକୁହି ହେଲେ ବି ସେମାନେ ପଢ଼ିଲେ ତ! କେଇଟା ମାସ ଭିତରେ ମଜଲିସ ଘରେ ବସି ସେମାନେ ଏବେ ଖବର କାଗଜ ପଢ଼ିଲେଣି, ବୁଝିଲେଣି। ରେଡ଼ିଓ ଯନ୍ତ୍ରରୁ ବାହାରୁଥିବା ଓଡ଼ିଆ ଖବର, ଗୀତ, ପାଲା, ଗଳ୍ପ ଶୁଣି ବୁଝିଲେଣି। କେତେ ଅନନ୍ଦ, କେତେ ହସ।

ବୁଢ଼ଆ-ସ୍କୁଲ ଚାଲିଛି। ସୁରେଶ କରିଥିବା ଯୋଜନା ପ୍ରକାରେ ସେବକମାନେ ପାଠ ପଢ଼ାଉଛନ୍ତି। ପୁରୁଷମାନଙ୍କ ପାଇଁ ହେଲା ସିନା, ରଣଗଡ଼ର ମାଇପିମାନଙ୍କ ପାଇଁ ହେଉ ନାହିଁ। ଯେତେ ବୁଝେଇଲେ, ଯେତେ ଶିଖେଇଲେ ଖାଲି ବେଖାତିରିଆ

Digitized by PPRACHIN, SOA

ହସ, ଓଠ ନେଫଡ଼ା । ବୟସ ଟିକେ ବେଶି ହୋଇଥିବା ଘରଣୀମାନେ ଖାଲି ଡାଗ ବାରୁଛନ୍ତି — । ପୁଣି କହୁଛନ୍ତି, ଯେତେ ଯାହା ପଢ଼ିଲେ ମାଇପି ଜନମ ଚୁଲି ମୁଣ୍ଡକୁ ।

ରାମ କୃଷ୍ଣ ପରି ଦି ଭାଇ ସୁରତ ଆଉ ଧରମୁଁ ମାଆମାନଙ୍କୁ ହାତଯୋଡ଼ି ଜଣାଣ କଲେ, ହଉ, ପାଠ ପଛେ ଏବେ ନ ପଢ଼, ସାନ ସାନ କଥା ଗୁରପଦ ମାନ ଆମର ।

ଜଣେ ରଜାଘର ପୁଅ । ଆଉ ଜଣଙ୍କ ପୁରୋହିତ ଘର ପୁଅ — ଛତିଶି ପାଟକର ରଜା । ଜେମି କୁମ୍ଭାରୁଣୀ ଷାଠିଏ ବରଷର ବୁଢ଼ୀ — ସମସ୍ତେ ତା'ଙ୍କୁ ଆଈ ବୋଲି ଡାକନ୍ତି । ଆଈ ଡାକ ଶୁଣିବାକୁ ତାଙ୍କୁ ଭାରି ଖୁସି ଲାଗେ । ସେ କହୁଲେ, ଆରେ ନାତିଏ, ଭଲ ପାଠ ପଢ଼େଇଲ ରେ ତମ ଝିତନ (ରତନ) ଅଜାଙ୍କୁ ସତୁରି ବରଷର ବୁଢ଼ା, ଡାଆଣୀ ଭୁଟ୍ ଭୁଟ୍ ହେଲାଭଲି ଚକ ଚଳେଇ ହାଣ୍ଡି ଗଢ଼ିଲାବେଳେ ବ ଗୀତ ବୋଲୁଛନ୍ତି । ଝିଅ ବୋହୂ ଘର । କ ଜଲଠା କଥା !

କ ଗୀତ ବୋଲୁଛନ୍ତି ଆଈ, ସୁରତ ପଚାରିଲା ।

କେଜାଣିବା, ଖାଲି ତ ବଡ଼ ପାଟି କରି ବୋଲନ୍ତି — କହଇ ମନ ଆରେ ମୋ ବୋଲ କର । ଆଉ ବାକି ଯାକ ଗୁଣ୍ଡୁ ଗୁଣ୍ଡୁ ଭୁଟ୍ ଭୁଟ୍ । ସେଇ ବୋଲନ୍ତି ସେଇ ଶୁଣନ୍ତି ମ !

ସୁରତ ଧରମୁଁ ହସି ଉଠିଲେ ।

ପଚାରିଲ ନାହିଁ ?

ହଁ, ପଚାରିବି ! ଆମର ଲାଗିଛି ଝଟାପଟା କଜିଆ । କଥାକୁହା ବନ୍ଦ ।

କାହିଁକି ?

ମତେ ସେ ଡାକିଲେ, ହଇ ହେ, ପିଙ୍କାଠା ଲଗେଇବ, ନିଆଁ ଟିକେ ଆଣିଲ । ମୁଁ ଜବାବ ଦେଲି, ମୁଁ ତୁମର ବୋଲ ନ କରେଁ । ସବୁବେଳେ ତ ଖାଲି କହଇ ମନ ଆରେ ମୋ ବୋଲ କର ହଉଚ, ତମର ସେଇ ମନୁକୁ କହ ।

ବୁଢ଼ା ତହୁଁ ବଲି । ଡାକ ଗୁଡ଼ିଲା, ହେ ମନୁଆଁ, ରେ ମନୁଆଁ — ସେ ଆମ ସାନ ନାତି ଟୋକା ମନୁଆଁ ଆର ଘରୁ ଡାକ ପକେଇଲା, ମୁଁ ନ ଯାଏ । ମନୁଆଁ କଥଣ, ଡାକ ମନୁଆଁ ଭାଇ । ଆମ ଶିକ୍ଷକ କହୁଛନ୍ତି ଆମେ ସବୁ ଦେଶରକ୍ଷୀ ଦଳର ପିଲା । ସମସ୍ତଙ୍କୁ ଭାଇ ବୋଲି ଡାକିବା ।

ବୁଢ଼ା ଅଡ଼କାରେ ପଡ଼ିଥିଲେ । ଚକ ବୁଲୁଚ । ହାତ କାଦୁଅ ହେଇଚ । ଉଠି କରି ଆସିପାରୁ ନାହାନ୍ତି । ଡାକ ପକେଇଲେ, ହେ ମନୁଆଁ ଭାଇ, ନିଆଁ ଟିକେ ଅଣ ।

ଛୁଟିଲା ମନୁଆ । ରୋଷେଇଶାଳକୁ । ଜଳିଲା କାଠଟା ଧରି ଧପ୍ ଧପ୍ କରି ପାଦ ପକେଇ ଗଳଟ୍ ଗଳଟ୍ କହୁ ବୁଢ଼ାଙ୍କ ପାଖେ ପହଞ୍ଚିଲା । କହୁଛି, ନିଅ ବୁଢ଼ାଭାଇ ନିଆଁ । ବୁଢ଼ା ପିକା ଲଗେଇ ଖୁସ୍ । ପୁଣି ସେଇ ପଦକ ବୋଲୁଛନ୍ତି, କହଇ ମନ ଆରେ ମୋ ବୋଲ କର । ଧର୍ମାନନ୍ଦ ପଚାରିଲା, କଜିଆ ହେଲା କାହିଁକି ?

Digitized by PPRACHIN, SOA

ତୁଚ୍ଛାଟାରେ । ମନୁଆଁ, ଅଜା ବୋଲି ନ ଡାକି କହିଲା, ଝଉନା ଭାଇ, ରୁ ରାଇଟ୍ ଲେଫଟ୍ କରୁ ଚକ ବୁଲାଉନ୍ତୁ, ଜଲ୍‌ଦି ଚକ୍ ବୁଲିବ, ଜଲ୍‌ଦି ଜଲ୍‌ଦି ହାଣ୍ଡି ଓହ୍ଲେଇବୁ । ମୁଁ ଏଣେ ଖଇରୁ ଧାନ ବାଛୁଥିଲି । ହସ ମାଡ଼ୁଥାଏ । ନ ହସିଲେ ପେଟ ଫାଟିଯିବ । ହସିଦେଲେ ବୁଢ଼ା ରାଗିବେ । କଅଣ କି ମୋ ହସଟା ତାଙ୍କୁ ଖର କାଟେ । ମନୁଆଁ ଉପରେ ବୁଢ଼ା ରାଗି ଉଠିଲେ । କହିଲେ, ଆରେ, ଝଉନା ଭାଇ କିଏ ?

ମନୁଆଁ କହିଲା, ଶିକ୍ଷକ କହୁଛନ୍ତି, କାହାର ମନରେ କଷ୍ଟ ଦେବ ନାହିଁ । ସମସ୍ତଙ୍କୁ ଭାଇ ବୋଲି ଡାକିବ । ତୁଆଁ ତୁଇ ମାନିବ ନାହିଁ । ତମକୁ ଏଥର ଭାଇ ବୋଲି ଡାକିବି । ତମେ ତ ଆମର ସାଙ୍ଗରେ ପାଠ ପଢ଼ି ଗୋପୀ-ଭାଷା ବୋଲୁଛ । ଜୟହିନ୍ଦ୍ ଝଉନାଭାଇ !

ବୁଢ଼ା ହସିଲେ । କହିଲେ, ଡାକ୍ ଝଉନାଭାଇ ବୋଲି, ଆଉ, ଯେତେ କୁକୁର, ଛେଳି, ଗଧ, ଗୋରୁ ଏ ଗାଆଁରେ ଅଛନ୍ତି, ସମସ୍ତଙ୍କୁ ଭାଇ ବୋଲି ଡାକ । ତମ ଶିକ୍ଷକଙ୍କୁ ବି ଭାଇ ବୋଲି ଡାକ । ଯା, ପଳା ।

ମୁଁ ଡାକିଲି ମନୁଆଁକୁ । କହିଲି, ହଁ ରେ, ସେଇଆ କର – ଆମ ଖାଲୁଆ କୁକୁରକୁ ଏଥର ଖାଲୁଆଭାଇ ବୋଲି ଡାକ, ଆଉ ତମ ଅଜାଙ୍କୁ ଝଉନାଭାଇ ବୋଲି ଡାକ । ଉହୁ, ଏଥର ତମ ଝଉନ ଭାଇଙ୍କୁ ଯଦି ଏକା କଂସାରେ ଖାଇବାକୁ ନ ଦେଇଛୁ ତ ମୋ ନା' ଜେମି ନୁହେ । ଏଥକରେ କଥାଁ ଖୁଣ୍ଟାଟା ହାତରେ ଧରି ବୁଢ଼ା ଚହଟିଙ୍କି ଆସିଲେ ମୋ' ଉପରକୁ, କ'ଣ କହିଲୁ କଅଣ କହିଲୁ, ଝଉନ ଭାଇ ଆମେ ? ମତେ କୁକୁର ସଙ୍ଗେ ସମାନ କଲୁ ?

ଆରେ ନାତିଏ, ଖଇକୁଳା ଗ୍ରୁଡ଼ି ମୁଁ ବି ଉଠିଲି । ହାତରେ ଯେଉଁ ଅଧସେର ଓଜନଆ କଣ୍ଟାଳିଆ ଝଡ଼ୁ ଦେଖୁଛୁ ସେଇଟା ଦେଖେଇ କହିଲି, ତମେ ତମକୁ କୁକୁର ସଙ୍ଗେ ସମାନ କଲ ନା ମୁଁ କଲି ? ଚହିଁକ ଆସୁଛ କଅଣ ? ସୁଦର୍ଶନ ଚକ ଦେଖିଚଟି ? ବୁଢ଼ା କଥାଁ ଖୁଣ୍ଟା ଫୋପାଡ଼ି ଦେଲେ । ମନେ ପଡ଼ିଗଲା । କେତେ ଥର ଭୀମର ଗଦା ମାଡ଼ ପରି ତାଙ୍କର ବାଧା ଗୋଇଠା ମାଡ଼ ସହିଛୁ । ସେ ବି ଏଇ ଅଧ-ସେରିଆ ସୁଦର୍ଶନ ଚକର କରାମତି ଦେଖିଛନ୍ତି !

ସୁବନ୍ତ ପଚାରିଲା, କେବେ ଆଈ ?

ତେର ବରଷର ନାତୁଣୀବୋହୂ ହେଇ ଯେଉଁଦିନ ତା'ଙ୍କ ଘରେ ଗୋଡ଼ ଦେଲି ସେଦିନୁଁ । ବାଧା ଗୋଇଠା ଚଟକଣି । ସେଇଠୁ ରାଗ ଅଧିକୁ ଜଡ଼ା ତେଲ ମାଲିସି କରି ସାକୁଲେଇ ହେବା । ମୁଁ ବି କେତେଥର କନା ପୋଡ଼ି ତାଙ୍କ କପାଳରେ ଲଗେଇଛୁ । ଦୁଃଖରେ କାନ୍ଦିଛୁ । ସେମିତି ଆମର ବେଳ କଟିଯାଇଛୁ ।

ଅଜା, ଆଈ ହେଲୁଣି । ଆଉ କେତେ ଦିନ ? ସେ ଆଗ ଆଖି ବୁଜିଲେ ଏ ସୁଦର୍ଶନ ଚକ ହଲିବ ବୋହିବ ନାହିଁ କି ମୁଁ ଆଖି ବୁଜିଲେ ବି ବହିବ ନାହିଁ । ଏ

Digitized by PPRACHIN, SOA

କଥା ନ ବୁଝି ତମେ ନାହିଁ ଚୋବାଏ କହୁଛ—ଓଳନାଅ ଅଳତାଦାଗିଆଁ ଗହଣା ହଜତର ଢଅ।

ଧର୍ମାନନ୍ଦ କହିଲା, ଆଇ ମ, ପାଠ ନ ପଢ଼ି, ଆମର ପୁରାଣ ଶାସ୍ତ୍ର ନ ଦେଖି ତମେ ଅଜାଆଇଗୁଡ଼ାକ କୁକୁରଙ୍କ ପରି କାମୁଡ଼ା କାମୁଡ଼ି ହେଉଥିଲ। ଦେଖୁଛ ତ ଆମ ଅମଳର ପିଲାଙ୍କୁ ? ଗେରସ୍ତ ଖାଲି ମୁହଁ ଶୁଖେଇଲେ ଘରଣୀର ଆଖିରୁ ଠକ୍ ଠକ୍ ଲୁହ ଗଡ଼ିପଡ଼ୁଛି। ଘରଣୀର ଶୁଖିଲା ମୁହଁ ଦେଖିଲେ ଗେରସ୍ତର କେତେ ଦୁଃଖ ହେଉଛି। ଆମ ସୀତା ଠାକୁରାଣୀ, ପାର୍ବତୀ, ସାବିତ୍ରୀ, ରାମ, ଶିବ, ସତ୍ୟବାନ, ନଳ, ଦମୟନ୍ତୀ, ଆହୁରି କେତେ ରଜା, ରାଣୀ, ସାଧାରଣ ସ୍ତ୍ରୀ-ପୁରୁଷ ସେମାନଙ୍କ କଥା ସବୁ ଜାଣନ୍ତି।

ହଁ ରେ, ମୁଁ ଜାଣିଛି। ଏବ କାଳକା ଟୋକାଗୁଡ଼ା ତମେ ମାଇପିବୋଲା, ମାଇଚିଆ। ଟୋକାଗୁଡ଼ାକ ତ ହେବରେଥି, ଅଣ୍ଡିରାଚଣ୍ଡୀ ହେଲେଣି। ମୁଣ୍ଡରେ ଓଢ଼ଣା ନାହିଁ କି ହାତରେ ଦେଖିଲା ଭଲ ଗହଣା ନାହିଁ। ପାଠ ପଢ଼ି ଖାଲି ହିଁ ହିଁ ହସ।

ସେଦିନ ସେ ଯେଉଁ ଛଇଳଛଟକୀ ଟୋକୀ ଖଣ୍ଡି ଆଇଥିଲା କହିଲ, ମୁ ମେମେ ଫାସ କରିଛି। ଗାଆଁ ର ଝିଅ ବୋହୂଙ୍କୁ ଶିଖେଇବାକୁ ଆଇଚ। ଗୋଡ଼ରେ ଯୋତା, ଗୋଟାଏ ହାତରେ ସୁନା କାଚ, ଆର ହାତରେ ଘଣ୍ଟା ବନ୍ଧା। ଅଣ୍ଟାରେ ପୃଷ୍ଟାଏ ରୁମାଲ ଖୋସିଛି। କି ଧପଧପ ଚାଲି, ତରଙ୍ଗ ତରଙ୍ଗ ଚାହାଣି, ଖିଲ୍ ଖିଲ୍ ହସ, କଥା କହୁଚ ପାଟିରେ ବାଟୁଳି ବାଜୁ ନାହିଁ। ଆମ ଅମଳରେ ଗୋଡ଼ରେ ଅଳତା ବୋଳୁଥିଲେ। ସେ ଝିଅଟା ଓଠରେ ଅଳତା ଲଗେଇଛି ! ନାକଟିର ଜନା ଖଣ୍ଡେ ଘଷୁଛି ସବୁବେଳେ। ଆମ ଗାଆଁ ମାଇପେ, ଆମ ଘରଦ୍ୱାର ତା'କୁ ଗନ୍ଧଉଛି। କୋଉଠି ଟିକେ ବସି ପଡ଼ିଲେ ଉଠିଲାବେଳକୁ ଆଗ ପିନ୍ଧିଲା ଶାଢ଼ୀଟା ଝାଡ଼ି ଥର ଝାଡ଼ୁଛି। କାହା ଧଡ଼ିରେ ହାତ ଟିକେ ଚୁଇଁଦେଲେ, ଆଣ ପାଣି, ଆଣ ସାବୁନ—; ହଇ ରେ, ସେଇଟା କଅଣ ଆମକୁ ଶିଖେଇବ ?

ତମେ ଭୁଲ୍ ବୁଝୁଛ। ଘରି ଭଲ ଝିଅ ସେ। ସୁବ୍ରତ ବନତ ହୋଇ କହିଲା। ସଫାସୁତୁରା ରହିବା ଖରାପ କି ? ଜାମା ଯୋତା ପିନ୍ଧିବା ତ ମନ୍ଦ ନୁହେଁ। ସ୍ତ୍ରୀ ପିଲା ହାତଗୋଡ଼ କି ଦେହ ଫୁଲିଲା କରିବାଟା ଲାଜ ସିନା, ମୁହଁ ନ ଘୋଡ଼େଇବା ଲାଜ ନୁହେଁ। ସେ ଝିଅଟି ଆମ ନୂଆନାଆ ମଁ, ଗାଁ ଗାଁ ବୁଲି ସ୍ତ୍ରୀମାନଙ୍କୁ ନୂଆ କାମ ଶିଖଉଛନ୍ତି। କେତେ କଥା ସେ ଜାଣନ୍ତି, ଶିଖାନ୍ତି। ମନରେ ଘୃଣାଭାବ ନାହିଁ। ରୋଗୀ ପାଖରେ ବସି ସେବା କରନ୍ତି। ଅସନା ପିଲାଙ୍କୁ ସଫାସୁତୁରା କରନ୍ତି। ନିଜ ହାତରେ ଘଷି ମାଜି ଦିଅନ୍ତି। ଆଲୁରାମୁଣ୍ଡୀ, ଉକୁଣୀ ଭରଭର, ନିଜ ହାତରେ ସେ ମୁଣ୍ଡ କୁଣ୍ଡେଇ ବାନ୍ଧନ୍ତି। ଆମ ଟମା ନାନୀ ସେ, ନିଜେ ନ ଖାଇ ପରକୁ ଦିଅନ୍ତି। ତାଙ୍କର ନିନ୍ଦା କର ନା, ଆଉ କେବେ ଆସିଲେ ତମ ଘରକୁ ନେଇଯିବି। ଦେଖିବ, ସେ କେମିତିକା ଝିଅ।

Digitized by PPRACHIN, SOA

ସତେ କରେ ଧର୍ମ ?

ହଁ, ଯେଉଁଥି ପାଇଁ ଆସିଥିଲୁଁ, ସେ କଥା ତମକୁ ଏତେବେଳ ଯାଏ କୁହା ହେଇ ନାହିଁ ।

କହୁନ ।

ଲାଜ କଥାଟା ।

ମଲାମର, ଢେମିଆଭ୍ର ପାଖରେ ଲାଜ କଥା ଅଛପା କଥା ଗୋଟାଏ କ'ଣ ? କହ ।

କାନଟା ମୋ ତୁଣ୍ଡ ପାଖକୁ ଆଣିଲ ?

ଧର୍ମାନନ୍ଦ ନଇଁ ପଡ଼ି ଢେମିଆଭ୍ର କାନରେ ସବୁ କହିଲା । ମୁହଁ ସିଧା କରି କହିଲା, ସେଇ ପୋଖରୀ ହୁଡ଼ା ବାଟେ ଗାଁର ଲୋକ ଯା'ଆସ କରୁଛନ୍ତି । ଗ୍ରାମ ନିନ୍ଦା ହେଉଛି । ଯେଉଁ ନୂଆ କାଇଦାର ପାଇଖାନା ଆମେ ଅଣେଇଛୁ, ଖାତ ଖୋଳି ସେଇଆକୁ ନିଜ ନିଜ ବାଡ଼ିରେ ବସେଇଲେ ଭଲ ହୁଅନ୍ତା । ସଞ୍ଜେ, ସକାଳେ ପୋଖରୀ ହୁଡ଼ାକୁ ଯିବାକୁ ପଡ଼ନ୍ତା ନାହିଁ । କେଡ଼େ ମଇଳା ହେଉଛି । ଛେ ! ଗୁଇ ମନାକଲେ, ଜଣ ଜଣ କରି ସେମାନଙ୍କୁ ବୁଝେଇ ଦେବୁ ।

ହଉ ରେ ସମସ୍ତେ ତ ମୁଣ୍ଡରେ ଓଢ଼ଣା ଦେଇ ବସନ୍ତି । କାହା ମୁହଁ କିଏ ଦେଖିବ କେମିତି ଯେ କିଏ କାହାକୁ ଚିହ୍ନିବ, ପୁଣି ନିନ୍ଦା କରିବ ? ତମେ ଗୁଡ଼ାକ ଅଲାଜୁକ ।

ସୁରତ କହିଲା, କେହି କାହାର ମୁହଁ ଦେଖୁନାହାନ୍ତି ବୋଲି ଯାହାର ଇଚ୍ଛା ହେଲା ପର ଝିଅ ବୋହୂ ନାମରେ ଅଭଦ୍ର କଥା ଦ'ପଦ କହନ୍ତି । କିଏ ମନା କରିବ ? ପର ଗାଁର ବାଟୋଇ କାହାରି ମୁହଁ ନ ଦେଖିଲେ ବି ଜାଣୁଛନ୍ତି ତ ଏଇଟା ରଣଗଡ଼ ।

ଢେମିଆଭ୍ରର ମନକୁ କଥାଟା ଯାଇଲା । ସେ କହିଲା, ଭଲ କଥା ତମେ କହୁଛ ଯେ ମୁଁ ପଦେ ଆକଟି କହିଲେ, ଶାଗୁଣା ବେଢ଼ିଲା ପରି ସେମାନେ ମତେ ବେଢ଼ିଯିବେ । କେଣ୍ଟା କେଣ୍ଟା କରି ଖାଇଯିବେ । ପାଟିରୁ ଜଭ ଓଟାରି ନେବେ । ମରମ କହିଲେ ଧରମ ଗୁଡ଼େ ପଶ୍ୱ ! ସବୁଠୁ ଭଲ – ଆଲେ ସଖି, ଆପଣା ମହତ ଆପେ ରଖି । ତେବେ, ମୋ' ବାଡ଼ି କଡ଼ରେ ମୁଁ ଗୋଟାଏ ସେଇ ପାଇଖାନାରୁ ପୋତିବି । ତ୍ରିପାଠୀ ଘର, ପଟ୍ଟନାୟକ ଘର, ଜେନା ଘର ଯେମିତି ପୋତିଛନ୍ତି ତ ?

ହଁ, ହଁ, ସେମିତି ।

ହେଲା । ପୋଖରୀ ହୁଡ଼ାକୁ ଯିବାକୁ ମୋ ବୋହୂ ଓ ନାତୁଣୀଙ୍କୁ ମନା କରିଦେବି ।

ଜଣ ଜଣ କରି ସେମାନଙ୍କୁ ବୁଝେଇ ଦେବ, ଧର୍ମାନନ୍ଦ କହିଲା, ନୋହିଲେ ଫଳ କିଛି ହେବ ନାହିଁ ।

Digitized by PPRACHIN, SOA

ହସ୍ଥ ।

ସୁରତ କହିଲା, ତମେ ବ ଆଜଠୁଁ ଆମ ଗ୍ରାମସେବକ ସଙ୍ଘର ସଭ୍ୟ ହେଲ ଅଛ । ଏଣିକ ତୁମକୁ ଆଇ ବୋଲି ନ ଡାକ "ଖାଇ" ବୋଲି ଡାକବୁଁ ।

ସୁରତ ଠୋ ଠୋ ହସିବାକୁ ଲାଗିଲା । କେମିଆଇ ହସିହସିକା କହିଲା, ସଭ୍ୟ କର କ ଅସଭ୍ୟ କର, ଖାଇ ଡାକ କ ଆଇ ଡାକ, ମୁଁ ତ ସେଇ କେମିଆଇ, ବୁଢ଼ୀ ଧୋକଡ଼ୀ ସବୁ ନାତଙ୍କ ଘରେ ଘରଣୀଙ୍କ ସହଚରୁଣୀ – ।

ଧର୍ମାନନ୍ଦ କହିଲା, ପାଠ ଗୁଣ ଅକ୍ଷର ସବୁ ପଢ଼ନ୍ତୁ ।

ମୋ ଭୁଇ କଥାଁ ଉପରକୁ ଗୋଟାଏ ସିଲଟ ଆଉ ଖଣ୍ଡେ ପେନ୍‌ସିଲ୍ ପକେଇ ଦେବ ଯେ ସେଇଠି ବସି ପଢ଼ୁଥିବ, ଗୃହ ଅଧରେ ଶୋଧି ବୋଲିବ । ତମେ ସବୁ ଏକା ଉଣବ ନାହିଁ । ହସ୍ଥ ଯାଅ—

ଆଇ କଥା ମାନନ୍ତୁ । ଏତକ ସେମାନଙ୍କ ମନରେ ଆନନ୍ଦ ଆଣିଛୁ । ସେମାନେ ଜାଣନ୍ତୁ, କେମିଆଇ ଅରେ ସବୁ ବୁଝିଲା ତ, ଜାଣ କାମ ଅଧା ହୋଇଗଲା ।

ବନ୍ଧୁ ହସ୍ଥେଁ ଫେରିଲେ ।

ଦୁଇ ଘଣ୍ଟା ଅନ୍ଧାର ପରେ ଖଣ୍ଡିଆ ଜହ୍ନ କେତେବେଳୁ ଆକାଶ କୋଣରେ ଉଇଁ ସାରିଥିଲା । ଗଛ ଗହଳ ଓ ଘର ମଥାନ ଅତିକ୍ରମ କରି ସେ ମଝି ଆକାଶ ଅଡ଼କୁ ଉଠି ଆସିଲାଣି । ତଥାପି, ସୁରତର ନୂଆ ଘରେ ଗ୍ରାମସେବକ-ସଙ୍ଘର ସଭ୍ୟମାନେ ତୁଣ୍ଡ ହୋଇ ପାଟିତୁଣ୍ଡ କରୁଛନ୍ତି । ସେମାନଙ୍କ ମଧ୍ୟରେ ସବୁ ଜାତ ଓ ସବୁ ଶ୍ରେଣୀର ବୃଦ୍ଧ, ପ୍ରୌଢ଼ ଓ ଯୁବକ ଅଛନ୍ତି । କେହି ଆଜ ମଜଲିସ୍ ଘରକୁ ଖେଳିବାକୁ କ ରେଡ଼ିଓ ସଙ୍ଗୀତ ବା ସମ୍ବାଦ ଶୁଣିବାକୁ ଯାଇ ନାହାନ୍ତି । ସମସ୍ତେ ମନ ଦୁଃଖରେ ସଭା କରଛନ୍ତି । ସର ସୋଇଁର ସ୍ତ୍ରୀ ଶ୍ରୀକୁମାର ମରଣ କଥା ହିଁ ବଡ଼ୁର ପଡ଼ୁଛୁ ।

ସର ସୋଇଁ ସେବକ-ସଙ୍ଘର ଜଣେ ସଦସ୍ୟ । ମୂଲିଆମୁଣ୍ଡ ହେଲେ ବ ସେବକ-ସଙ୍ଘର ପ୍ରସ୍ତାବକୁ କେବେ ସେ ଏଡ଼ି ଦେଇ ନାହିଁ । ଗ୍ରାମର ସର୍ବସାଧାରଣ ଉନ୍ନତକର ଯୋଜନାମାନଙ୍କରେ କାମ କରିବାକୁ ଆଗ ସେ ଅଣ୍ଟା ଭିଡ଼ ବାହାରେ ।

ପରଘରେ ମୂଲ ନ ଲାଗିଲେ, ବୁଢ଼ୀମା, ସ୍ତ୍ରୀ, ତନୋଟି ଗ୍ରେଟ ଗ୍ରେଟ ପୁଅଙ୍କର ପେଟକୁ ଦାନା ନ ମିଳେ । ସେ ନଡ-ମୂଲିଆ । କେଉଁ କାମ ବା ତାକୁ ଅଜଣା – ଘାସ ଛେଲାଠୁଁ ଘରତୋଳା ଯାଏ । କାମରେ ମନପ୍ରାଣ ଦେଇ ଲାଗିଯାଏ । ଠାପୁଆଗିରି ଜଣା ନାହିଁ । ମୂଲିଆ ଜୀବନର ହାଡ଼ଭଙ୍ଗା ପରଶ୍ରମ ସତ୍ତ୍ୱେ, ସେ ବେଳ କରି ସର୍ବସାଧାରଣଙ୍କର ହିତକର କାର୍ଯ୍ୟରେ ଅନ୍ୟମାନଙ୍କ ସହ ଶ୍ରମଦାନ କରେ ।

Digitized by PPRACHIN, SOA

ରଣଗଢ଼ ପାହାଡ଼ ତଳ ଜଳସେଚନ ଯୋଜନା । ନାଳକୁ ବନ୍ଧେଇ ପାଣି ଅଟକେଇ ବଡ଼ ବନ୍ଧ କରାଯାଇଛି । ଦୁଇଶ ମାଣ ଭୂମିରେ କୁଳୁ କୁଳୁ ହୋଇ ହସି ହସି ନାଚ ନାଚ ପାଣି ମାଡ଼ୁଛି । ଯେଉଁଠି ଦିନେ ପାହା କହୁଥିଲେ, ଦୁବ କଅଁଳୁ ନ ଥିଲା, ସେଇଠି ହେଉଛି ବାରମାସୀ କେତେ ଜାତିର ଫସଲ । କୃଷିବିଭାଗ ଯେଉଁ ଉନ୍ନତ ଧରଣର ଆଖୁ ମଞ୍ଜି ଯୋଗାଇ ଦେଇଥିଲେ, ସେଇ ଆଖୁ ପଚାଶ ମାଣ ଜମିରେ ଲଗିଛି ଯେ, ଅନେଇଁ ଦେଲେ ମନ ଉଲୁସି ଉଠୁଛି ।

ଦୁଇଶ ମାଣ ଜମି ମୋଟେ ହୋଇଚ ପାଞ୍ଚ ସାତ ଖଣ୍ଡି ଜଆର । ସ୍ଥାନୀୟ ଜଣ ଲୋକଙ୍କର ଚିକିଟିକି ଏଠିସେଠି ବାଣ୍ଟ ହୋଇ ଥିବା ବିଭିନ୍ନ ଆକାର ପ୍ରକାରର ଯେଉଁ ଉଚ୍ଚନୀଚ ପାହାଡ଼ିଆ ଜମି ଥିଲା, ସେ ସବୁ ମିଶାଇ ସମତୁଲ କରି ଖଣ୍ଡେ ଜମି କରାଗଲା । ସେଇଠୁ ବିଭିନ୍ନ ଫସଲ କରିବା ପାଇଁ ଟ୍ରେକ୍ଟର ଦ୍ୱାରା ଛ ସାତ ଖଣ୍ଡି କ୍ଷେତ କରାଗଲା । ସବୁ ଜମିର ମାଲିକ ଏକମତ ହୋଇ ଜୟଲକ୍ଷ୍ମୀ କୃଷି ସହଯୋଗ ସମିତି ଗଢ଼ିଲେ । ଜମିର ମୂଲ୍ୟ ସ୍ଥିର ହୋଇ ବିଭିନ୍ନ ମାଲିକଙ୍କୁ ଶହେ ଟଙ୍କିଆ ଅଂଶ ଦିଆଗଲା । କମ୍ମାର, କୁମ୍ଭାର, ଗୁଡ଼ିଆ ଓ ଅନ୍ୟ କେତେଘର ବ୍ୟବସାୟୀ ଯେଉଁମାନଙ୍କର ଭୂମି ନ ଥିଲା, ଅଥଚ ଅଂଶ କିଣିବାକୁ ଟଙ୍କା ଥିଲା—, କେହି କେହି ବି ଋଣଦିଆ ସମବାୟ ସମିତିରୁ ଟଙ୍କା ଋଣନେଇ, କୃଷି-ସହଯୋଗ ସମିତିର ଅଂଶ କିଣିଲେ । ଯେଉଁମାନେ ଦୋ ଦୋ ପାଞ୍ଚ ହେଉଥିଲେ, ସେମାନେ ଏବେ ଓଠ ଘୁଞ୍ଚୁଛନ୍ତି । ଶହେ ଟଙ୍କିଆ ଅଂଶକୁ ଅଢ଼େଇଶ ଟଙ୍କା ମୂଲ୍ୟଦେଇ କିଣିବାକୁ ଧାଁ-ଧାପଡ଼ କଲେଣି । କିଏ ବିକୁଛି ନିଜର ଅଂଶ ?

ସର ପର ଗାଆଁର ଆଉ କେତେ ଜଣ ମୂଲିଆ-ମୁଣ୍ଡ, ଯେଉଁମାନେ ହାଡ଼ଭଙ୍ଗା ପରିଶ୍ରମ କରି ନାଳକୁ ବାନ୍ଧିଥିଲେ, ସେମାନେ ଯେଉଁ ମୂଲିଆକୁ ସେଇ ମୂଲିଆ ରହିଲେ । ବେଲ ପାଚିଲେ କୁଆର କ ଯାଏ ? ତା କପାଳକୁ ସେଇ ବସ୍ତା, ସେଇ ସଢ଼ାପଚା ମାଲ । ହଁ, ଦୟା ପାଇ ସେବକ ସଙ୍ଘର କଥା ମାନି କେହି କେହି ଏଠି ସେଠି ମାଣେ ଦୁ' ମାଣ ଜମି ଯା'କୁ ତା'କୁ ମନଇଚ୍ଛା ଦାନ କଲେ, କିନ୍ତୁ ସେ ସବୁ ତ ସାଉଁଟିଲା କାଣ୍ଡ, ଅବସ୍ଥା ସଙ୍ଗେ ଯୁଝିବାକୁ ସେ କ କାମରେ ଲାଗନ୍ତା ?

ସର ମାଣେ ଜମି ପାଇଥିଲା । ସେତକ ବାଲିଆ । ପାଣି ମାଡ଼ିବାର ସୁବିଧା ନାହିଁ । ଭଙ୍ଗାଘର ଖଣ୍ଡି ସେବକ-ସଙ୍ଘର ସଭ୍ୟମାନେ ଦୟା ମିହନ୍ତ କରି ନୂଆ କରି ଗଢ଼ିଦେଲେ । ମୂଲ ପଇସାରେ ପେଟପାଟଣା ଚଳିବ କପରି ? ବୁଢ଼ୀମା'ର ନିଜ ରକ୍ଷଣ ଅସମ୍ଭବ । ତଥାପି, ସେ ଘରପଛ ଟ୍ରେକ୍ଟର ବାଡ଼ିରେ ଶାଗଟାଏ, ମୂଳାଟାଏ ପୋତନ୍ତି । ପିଲା ଉଜନଟାକୁ ଖେଳାନ୍ତି, ଜଗନ୍ତି । ଶୁକୁମା ପର ଦରେ ଧାନ କୁଟିବାକୁ ଯାଏ । ମାଣେ, ପୋଷେ, ଗୁଣ୍ଡିକ, ଖୁଦ ଆଣେ । ସବୁ ଦିନେ ବି ସେତକ ଭାଗ୍ୟରେ ଜୁଟେ ନାହିଁ । ଯାହା ଗୁଣ୍ଡେ ଆଗ ଶାଶୁଙ୍କୁ ଦିଏ । ସେଇଠୁ ସ୍ୱାମୀ ଓ ପିଲାମାନେ । ପେଜ ପାଣି କରି ମନ୍ଦିଏ ପିଇ ଦିନ କଟାଏ । ସେଇଥିରେ ହସ, ଖୁସି ।

Digitized by PPRACHIN, SOA

ଆହା, ଦିନ ଦିନଟା ଜରରେ ପଡ଼ିଲା ଶୁକୁମା । ଶାଶୁ କ ଗେରସ୍ତ ବ୍ୟସ୍ତ ହେବେ ବୋଲି କାହାକୁ କିଛି କହିଲା ନାହିଁ । ସ୍ୱାମୀଙ୍କୁ ବି ସବୁଦିନେ ମୂଲ ମିଳୁ ନାହିଁ । ଗ୍ରେଟ ବାଗ ଓ ବାଲିଆ ଜମିରେ କ କାମ କରିବେ, କେତେ କାମବା କରିବେ ? ତଥାପି ତ ଲାଗିଥାଆନ୍ତି । ଘରେ ଖରଚ କିଛି ନାହିଁ । ପିଲା ଦୁଇଟି ପୁଣି ସ୍କୁଲରେ ପଢ଼ୁଛନ୍ତି । ଜରୁଆ ଦେହରେ ପରଘରେ କାମକରିବାକୁ ଗଲା ଶୁକୁମା । ଝିଙ୍କିମୁଣ୍ଡାରେ ଗୋଡ଼ ଦେଇ ପାହାର ପଡ଼ିଗଲା । ଘଣ୍ଟାଏ ଗଲା । ଦୁ'ଘଣ୍ଟା ଗଲା । ଆଉ ପାରିଲା ନାହିଁ । ଟଳି ଟଳି ଫେରି ଆସିଲା ଘରକୁ ।

ସର ସୋଇଁ ଛେଳି ଦୁଇଟି ବିକିଲା, ଦରପାକଳ ବନ୍ଧା କଦଳୀ କାନ୍ଦିକ ବିକିଲା । ଶେଷକୁ ଖଣ୍ଡିଏ ଥାଳି ଓ ଖଣ୍ଡିଏ ନୋଟା ବନ୍ଧା ଦେଇ ଦୁ'ଟଙ୍କା ଆଣିଲା । ଶୁକୁମାର ଔଷଧ, ଇଞ୍ଜେକ୍‌ସନ୍ ଓ ପଥ୍ୟରେ ଖରଚ କଲା । ଡାକ୍ତର ଆସିଲେ । ଉପଦେଶ ଦେଲେ । ଔଷଧ ଲେଖିଦେଲେ । ଟଙ୍କା କେହି ଦେଲେ ନାହିଁ । ଶୁକୁମା ଆଗ ବଞ୍ଚୁ, ତେଣିକି ଆଉ କଥା ।

ଶୁକୁମା ବଞ୍ଚିଲା ନାହିଁ । ଧୈର୍ଯ୍ୟବାନ୍ ସର ସୋଇଁର ଧୈର୍ଯ୍ୟ ଭାଙ୍ଗିଛି । ଆଖିରୁ ଲୁହ ଆଉ ଗଡ଼ୁନାହିଁ । ଯେଉଁଠି ବସୁଛି, ବକାଙ୍କ ପରି ବସିରହୁଛି । ପିଲାଗୁଡ଼ିକ ଆଉଳି କାନ୍ଦିଲି ହେଉଛନ୍ତି । ବୁଢ଼ୀ ମା ଶୁକୁମାର ଗୁଣ ଗୁଣି ଖାଲି ବାହୁନୁଛନ୍ତି ।

କେବଳ ସର ସୋଇଁ ନୁହେଁ ତ, ଆଉ ଯେତକ ତା ପରିକା ଜଡ଼ମୁଲିଆ ଅଛନ୍ତି, ଯେଉଁମାନଙ୍କର ଉଚ୍ଛାଶା କହିଲେ ବୁଝୁଛି, ଢୋକେ ପିଇ ଦଣ୍ଡେ ଜୀଇଁବା, ସେମାନଙ୍କ ପାଇଁ କଅଣ କରାଯିବ, ସେହି ବିଷୟ ନେଇ ଦୁଇ ତିନି ଦିନ ହେଲା ସେବକ-ସଙ୍ଘରେ ଘୋର ଚିନ୍ତା, ଉଦ୍‌ବେଗ ଓ ବାଦାନୁବାଦ ଚାଲିଛି ।

ଅନାବାଦୀ ଜମି ପଡ଼ିଛି ରଣସିଂହଙ୍କର । ଗୋଚରକୁ ସେ ଯୋଗ୍ୟ ନୁହେଁ । ତେବେ, ପରିଶ୍ରମ କଲେ ସେସବୁ ଭଲ ଜମି କରାଯାଇ ପାରିବ । ନାଳଟାକୁ ଲମ୍ବେଇ ଆଣିଲେ ଜଳଭଣ୍ଡାରରୁ ପାଣି ଆଣି ସେହି ଭୂମିରେ ମଡ଼ାଯାଇ ପାରିବ ।

ରଣସିଂହେ ମନା କରିଦେଲେ । ଦରିଦ୍ର ମୂଲିଆଗୁଡ଼ିକ ହତାଶ ହୋଇ ଫେରିଲେ । ଗ୍ରାମବାସୀଙ୍କୁ ଯେତେ ବୁଝାଇଲେ ସେମାନେ ବୁଝୁ ନାହାନ୍ତି । ଗ୍ରାମର ସବୁଲୋକ ଗୋଟେ କୁଟୁମ୍ବର ପିଲା; ଆକାଶ, ଆଲୋକ, ବାୟୁ ଓ ଜଳ ଯେପରି ସମସ୍ତଙ୍କର, ଭୂମି ମଧ୍ୟ ସମସ୍ତଙ୍କର, ସବୁ ସେଇ ପରମପିତାଙ୍କର ମଣିଷ ସମାଜକୁ ଦାନ, ଏ କଥା ବିନୋବା ବାରମ୍ବାର ବୁଝାଉଥିଲେ ବି ଲୋକେ ତ ବୁଝୁନାହାନ୍ତି । କିଏ କାହାର ସ୍ୱାର୍ଥ ଛାଡ଼ୁଛି ?

ସର ସୋଇଁର ସଂସାର ଉଚ୍ଛନ୍ନ ହୋଇଚି । ତା'ର ପତ୍ନୀବିୟୋଗ ହୋଇଛି । ସେଇ ପୁଣ୍ୟମୟୀ ଦୁଃଖିନୀ ସତୀର ପଛେ ପଛେ ସର, ଗୃହର ଲକ୍ଷ୍ମୀ ଉଭେଇ ଯାଇଛନ୍ତି, ଉପାସ ଭୋକରେ ତାର ଓ ତାର ବୁଢ଼ୀମା ଏବଂ ପିଲା ଦୁଇଟିଙ୍କର ବେଳ

Digitized by PPRACHIN, SOA

କଟୁଛି । ପ୍ରିୟତମା ପତ୍ନୀ ପାଇଁ ଆଖିରୁ ଦ' ବୁନ୍ଦା ଲୁହ ଗଡ଼େଇ ଦୁଃଖ କରିବାକୁ ତା'ର ଅବସର ନାହିଁ ।

ସେ ପୁଣି କାଲି କୋଉ କାଙ୍କ ଧରି ମୂଲ ପାଇଁ ପର ଦୁଆରେ ଗୋଡ଼ ଭାଙ୍ଗି ଟିଆ ହେବ । ମିନତି କରିବ, କାମ ଦିଅ, ମୋତେ ଓ ମୋ'ର ପିଲାଟିମାନଙ୍କୁ ବଞ୍ଚିବାର ସୁଯୋଗ ଦିଅ ।

ହୃଦୟର ପରିବର୍ତ୍ତନ ହେବ ! ସବୁ ଜମି ହେବ ସମସ୍ତଙ୍କର । ସମସ୍ତେ ନେବେ ବଣ୍ଟନ କରି । କେବେ, କେବେ ହେବ ସେ ହୃଦୟର ପରିବର୍ତ୍ତନ ?

ବାଦାନୁବାଦର ପ୍ରବୃତ୍ତା କମିଲା । ଉତ୍ତେଜନା ମଧ୍ୟ ନୋଇଁଲା । ଭଙ୍ଗଣ କରିବାକୁ ହେବ ସେ ବିଷୟରେ ସମସ୍ତେ ଏକମତ ହୋଇ ପାରିଲେ ନାହିଁ । ଦନେଇଁ ଗୁଡ଼ିଆ ନଣ ହସିଲେଇ କହିଲେ, ଶୁଣ ଭାଇମାନେ, ଅଜି ସବୁ ଯୋଇଁର ଯାହା ହୋଇଛି, କାଲି ମୋ'ର ହେବ, ପହରଦିନ ତମର ହେବ । ଅନେଇଁ କହିଲେ ଭେଲା ବୁଡ଼ିବ ।

ନଣ-ସମ୍ବଳ ଦନେଇଁ ସାହୁ ଝୁଣ୍ଣି ହୋଇ କଥା କୁହନ୍ତି । ପଇଁସ୍ତାଳିଶି ବର୍ଷର ପ୍ରୌଢ଼, ଦେହରେ ଶିଗ-ଦଉଡ଼ ବଳ ହେଉଛି । ଦହ-ମିହନ୍ତିଆ କାମକୁ ସେ ଅପାରଗ । ମୁଣ୍ଡଟି ଚନ୍ଦା । ଖଣ୍ଡ ଠାଇଁ ଠାଇଁ ମାରେ । ତାଙ୍କ ସଙ୍ଗାତ ଗୁଲେଇ ସେଠୀ ପରିହାସ କରି କହନ୍ତି, ଦେଢ଼ ହାତିଆ ନଣରୁ ପୁଲାଏ ଓପାଡ଼ି ମଧ୍ୟ ଉପରେ ଥୋଇ ଦିଅ ଯାଙ୍ଗେ, ମୁଣ୍ଡ ଅଣ୍ଡା ରହିବ ।

ଦନେଇଁ ଗୁଲେଇ ସେଠୀଙ୍କ କଥାକୁ ଅବଗୁଣ ପାଆନ୍ତି ନାହିଁ । ଏକା ଘଡ଼ି ଏକା ମୁହୂର୍ତ୍ତରେ ଦୁହିଁଙ୍କର ଜନମ । ଏକ ଅବଧାନ ଦୁହିଁଙ୍କର ଜାତକ କରିଥିଲେ । ଦୁହିଁଙ୍କର ରାଶି-ନକ୍ଷତ୍ର ଏକା ହେଲେ ବି ଭାଗ୍ୟଫଳ ଓଲଟା । ରୂପ ଓଲଟା, ପୁଣି ପ୍ରକୃତି ବିପରୀତ । ଗୁଲେଇ ସେଠୀଙ୍କ ମୁଣ୍ଡରେ ଜଡ଼ା । ନଣ ଦାଢ଼ି ନାହିଁ । ଉଠେ ନାହିଁ । ବାଙ୍ଗର ମଣିଷ । ବଳିଲା ଦେହ । ସେ ମନ୍ଦୋଦରୀ, ଦନେଇଁ ଅଙ୍ଗଦ ହେଉଥିଲେ । ଏ କେଇ ବର୍ଷ ହେଲା ସୁଗ୍ରୀବ ହେଉଛନ୍ତି ।

ଗୁଡ଼ିଆଘର ପିଲା ଦନେଇଁ କୁଳବେଉସା ଗୁଡ଼ ଆଜ ମୂଲ ଲାଗୁଛନ୍ତି । ଗୁଲିଖଟିର ମରାମତି ଏ । ଗୁଡ଼ୁ ଗୁଡ଼ୁ ସୁନ୍ଦର ଅନନ୍ଦ ପାଇଁ ଜମିବାଡ଼ି, ବାସନକୁସନ, ଫିଲ୍ଦଓଟି ସମସ୍ତେ ଝସି ପଡ଼ିଲେ । ଶେଷକୁ ଘରଣୀ ମଧ୍ୟ ବାପଘରକୁ ଯାଇ ଗ୍ରହପତ୍ର ଦେଇ ଅନ୍ୟ ସଂସାର କଲେ ।

ନଦ ଭାଙ୍ଗିଲା । ଚୁଲିଖଟି ପୋଡ଼ା ହେଲା । ଉପାସ ଭୋକ ରହି ସାହୁଏ ଦବ୍ୟଙ୍କନ ଫେରିପାଇଲେ । କୁଳ ବେଉସା ଛାଡ଼ି ଧରିଲେ କୋଡ଼ି । ପୁଣି ସେ ସଂସାର ପାତିଲେ । ଦୁଇ ପିଲାର ବାପ ! ଯାହା ହରାଇଛନ୍ତି ସେତକ ଦହମିହନ୍ତି କରି ଫେରି ପାଇବାର ଆଶା ନାହିଁ ।

Digitized by PPRACHIN, SOA

ଗୁଲେଇଙ୍କର ଉପାସୂଟା ସିଧା ସଳଖ । ଯେଉଁଠି ସାବୁନ୍ ତିଆରି ହେଲେ କି ଘରେ ଘରେ ଇସ୍ତ୍ରି ରହିଲେ ବି ମଇଳା ଲୁଗା ମିଳୁଛି । ସକାଳୁ ସଞ୍ଜ ଯାଏ ହୁସ୍ ହୁସ୍ ହୋଇ ବଉଁଶଟା ଯାକ କାଚିଲେ ବି ଜବାବ୍ ରଖି ହେଉ ନାହିଁ । ଗାଁଗୁଳାକ ଧୋବା ଜୀବନର ମୂଳି ଉଖୁଡ଼ା । ସେତକ ଠୋକିଦେଲେ ହେଲା । ଗୁଲେଇ ଗୁଜୁରାଣ ମେଣ୍ଟାଉଛନ୍ତି । ଜମି ଦ'ମାଣ ନିଲେଣି । କେବେ କେମିତି ମୂଲକୁ ବାହାରି ପଡ଼ନ୍ତି ।

ସେ କହିଲେ, ସାଙ୍ଗେ, ଅନେଇଁ ରହିଲେ ଭେଳା ବୁଡ଼ିବ ତ, ଆଖି ବୁଜି ଚୁଙ୍କେଇଲେ କ'ଣ ଭେଳା ଭାସିବ କି ? ତମ କଥାରେ ପଡ଼ି ଜମିଦାରଙ୍କ ଅନାବାଦୀକୁ ବଳାତ୍କାରରେ ଚଷିଲେ, ମାମୁଁ ଘରକୁ ସିଧା-ସଳଖ ଟିକଟ୍ କାଟିବାକୁ ହେବ । ଜମିଦାର ଫେରାଇ ଦେଲେ ତ ଭଲ କଲେ । ସେଇ ଜମି ପୁଣି ଆମର ପାଖକୁ ଫେରି ଆସିବ ଯେ । ସବୁର୍ କର । ବାଇଗଣ ଦରରେ ଜମିଦାର ଜମି ବିକିବେ, ଦେଖିବ ରହ । ଉଚ୍ଛନ୍ନ ହୁଅ ନା । କିଛି କିଛି ଟଙ୍କା ଯୋଗାଡ଼ କର !

ସୁକୁ ମାଲି ପଚାରିଲେ, ଏପରି ଧାରଣା ତମର କାହିଁକି ହେଲା ? ହଁ, ଜମିଦାର୍ ସବୁବେଳେ ମଦରେ ବୁଡ଼ି ରହୁଛନ୍ତି ସତ ଯେ, ସେଥିପାଇଁ ତ ସରକାର ଘରୁ ଟଙ୍କା ମିଳୁଛି । ଆଜି ବାଦନା ପଧାନ, ତିନି ଦିନରେ ଥରେ କଟକ ଯାଇ କେଉଁଠୁ କେତେ ମଦ ଯୋଗାଡ଼ କରି ଆଣୁଛି । ଜମିଦାରଙ୍କୁ ଠକିଠାକି ଅଧିକ ଟଙ୍କା ସେ ନେଇ ଘରେ ପୂରଉଛି ।

ଛକଡ଼ି ବାଉରି କହିଲେ, ଆରେ କଥା ପାଇଁ ସେଠି ରହିଲାଣି, ମୁଁ କେମିତି ବୁଝିବି ? ହରି ପଟ୍ଟନାୟକେ ଝିଅ ବାହାଘର କରିବେ ବୋଲି ତାଙ୍କର ପାଞ୍ଚ ମାଣ ଜମିରୁ ଦ'ମାଣ ବିକିଲେ । ସେ ଯେଉଁ ଅଢ଼ଲ ନମ୍ବର ଜମି ନା, ଅଜିମ୍ ମିଆଁ ମାଣ ବାରଶ ପଚାଶ ଟଙ୍କା ଦେବେ ବୋଲି କଥା କରିଥିଲେ । ବାଦନା ପଧାନଙ୍କ ବାପା ପବନା ପଧାନ ବୁଢ଼ା ମାଣ ପନ୍ଦରଶ ଦେଇ କବଲା କଲେ ।

ରଥିଆ ଦଳେଇ କହିଲେ, କଥା ପଦେ କହିବାକୁ ଡ଼ର ମାଡ଼ୁଛି ଭାଇମାନେ । ଭୁମିବୋଇ ଆଜି ସକାଳେ ଗୋଟାଏ ବଡ଼ ଖଇରୁଡ଼ି ମାଛ ନେଇ ଉଆସ ଭିତରକୁ ଯାଇଥିଲେ । ମାଛ ଫେରେଇ ଆଣିଲେ । ଏ ତ ଆଶ୍ଚର୍ଯ୍ୟ କଥା । ରାଣୀ ମା'ଙ୍କର ମାଛରେ ଯେପରି ରୁଚି ସମସ୍ତେ ତ ଜାଣ । ସାନ ରାଣୀମା ମନା କରିଦେଲେ । ଯା ଯା, ବୋଲି କହି ଉଆସ ଭିତରୁ ତଡ଼ି ପକାଇଲେ ।

ଗୁଲେଇ ପଚାରିଲେ କାହିଁକି ରେ ରଥ ?

ଦଳେଇ କହିଲେ, ସେଇ କଥା ପଚାରି ଦେଲାକୁ ତ ଭୁମି ବୋଇଙ୍କର ଆଖିରୁ କେରି କେରି ଲୁହ ଝରି ପଡ଼ିଲା । କହିଲେ, ନୂଆ ଲେଉଟି ପଡ଼ିବ । ଉଆସ ପଛରେ ମାଲତୀ କହିଲା, ଏ ଘରୁ ଏଥର ଲକ୍ଷ୍ମୀ ଛାଡ଼ି ପଳେଇବେ ଲୋ ଖୁଡ଼ୀ, ଶୁଣିଲେ କାନରେ

Digitized by PPRACHIN, SOA

ହାତ ଦେବୁ । ଉଆସ ଭିତରେ ନ ଦେଖିଲା କଥା ଦେଖାଯାଇଥିଲା, ହେଲେ, କୁଳଲକ୍ଷ୍ମୀ ମଦ ଖାଇ ଅଚେତ ହେବା ଦେଖା ନ ଥିଲା ।

ଧର୍ମାନନ୍ଦ ଗର୍ଜି ଉଠିଲା, ଗୁଲେଇ ଘର — !

କଥା ତ ଲୁଚ ରହୁ ନାହିଁ, ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼ଉଛୁ । ରାଣୀ ମା' ନଜ ହାତରେ ମଦ ଢାଳି ଜମିଦାରଙ୍କୁ ବଢ଼େଇ ଦେଉଛନ୍ତି । କହୁଛନ୍ତି, ପିଅ, ମନ ଇଚ୍ଛା ପିଅ । ଜମିଦାର ସେମିତି ମଦ ଢାଳି ରାଣୀ ମା'ଙ୍କୁ ଦେଉଛନ୍ତି ।

ଗୁଲେଇ କହିଲେ, ଇସ୍, ଇସ୍ କର ସକାଳୁ ସଞ୍ଜ ଯାଏ ମଇଳା ଲୁଗା କାଚ ଦେହର ମଇଳା ଛଡ଼େଇବାକୁ ମନ୍ଦୁରୁ ଚମାର ଘରେ ଖଜୁରି ରସଟିକେ ନୋହିଲେ ତାଳରସ ଟିକେ ପିଉଥିଲି ବୋଲି କେତେ କଥାକ ତମେ ଗାଁ ଲୋକେ ନ କରଥିଲ ! ନଶା ଜୋର୍‌ରେ, କେବେ କେମିତି ଆମ ବାପାଙ୍କ ବୋଉଙ୍କୁ ବଧାଟାଏ ଗୋଇଠାଟାଏ ଦେଇଥିଲି । ମୋ'ର ତ ଘର ଘର ନ ଥାଏ । ସେଇଟା ମଦର କରାମତି ! ତମେ ସମସ୍ତେ ଘର ଆଗରେ ଉଆସ ଭୋକରେ ବସିଲ । ଗ୍ରାମ୍ୟଦେଲ ତ ଅଭ୍ୟାସଟା ! ଚାଲ, ଆମେ ସମସ୍ତେ ଯାଇଁ ଜମିଦାରଙ୍କ ଘର ଆଗରେ ସତ୍ୟାଗ୍ରହ କରିବା । ବାବନା ପଧାନକୁ ଉଆସ ମଡ଼େଇ ଦେବା ନାହିଁ ।

ଧର୍ମାନନ୍ଦ ବଣିଆଙ୍କ ମୁହଁକୁ କଟମଟ ଚାହିଁଲା । ପିତାମାତାଙ୍କର ଦଶା ଶୁଣି ସୁରଜର ମନରେ ଅବଶ୍ୟ ଦୁଃଖ ହେଉଥିବ । କାହାର ପାଟିରେ କଏ ହାତ ଦେଇ ପାରିବ ? ସୁରଜ ହସୁଛୁ ଗମ୍ଭୀର ଓ ଚିନ୍ତାମଗ୍ନ ।

ବୃଦ୍ଧ ମଦର ମଲିକ କହିଲେ, ଖଜୁରିଗଛ ଓ ତାଳଗଛରୁ ରସ କାଢ଼ି ବିକିକରି କୁଟୁମ୍ବ ପୋଷିବା ଥିଲା ଅମର କୁଳବେଉସା । ଲୋକେ ଆସନ୍ତି, ପିଅନ୍ତି, ଚାରି ପଇସା ପକେଇ ଦେଇ ଯାଆନ୍ତି । ଖଜୁରି ଗଛ ହେଲା ଆମର କ୍ଷେତ । ସମସ୍ତେ ତମେ ବାବୁ, ଭଦ୍ର-ଝିଆ ଲୋକଙ୍କୁ ଆମ ଦୁଆରୁ ଫେରେଇଲ । ଆମ ତଣ୍ଟିରେ ବସିଲା କ୍ଷୁର । ଖଜୁରି ଓ ତାଳଗଛ ସମିତି ବସିଲା । ରସ କାଢ଼ି ସେଇଠି ଦେଉଛୁଁ ସତ, କଏ ଖାଉଚ ହୋ ସେ ସବୁ ? ଯେଉଁ ପଇସା ସେଥିରୁ ମିଳୁଛି, ସେଥିରେ କ କୁଟୁମ୍ବ ପୋଷି ହୁଏ ? ଠେକ ଗୁଡ଼, ଗାଣ୍ଡୁଆ ଧରିଲୁଁ, ତେବେ ବ ନ ଚଳେ । ମାଣେ ଅଧେ ଜମି ବ କେହୁ ଦେଲେ ନାହିଁ । ନାରୁଣୀଟା ଜରରେ ପଡ଼ିଛ । ବାଲି ଟିକେ ପେଇବାକୁ ଘରେ ପଇସା ନାହିଁ । ବୁଢ଼ୀଟା ତ ମଲେଣି, ଏଇଟାର କ'ଣ ହେବ କଏ କହବ ?

ସୁରଜ ମୁହଁ ଖୋଲିଲା, ମଦର ମଲିକ ଯାହା କହିଲେ ସେଇ କଥା ମୁଁ ଭାବୁଥିଲି । ସବୁ ସ୍ୱାର୍ଥିଙ୍କର ସ୍ୱାମୀ ମଲେ । ଆହା, ସେଇ ମୋ'ର ଶୁକୁମା ଅପାର କଥା ମନେ ପଡ଼ୁ ଯାଉଛୁ । ତମର ସବୁ ବ ମନେଥିବ । ତା'ଙ୍କ ଘର ତୋଳିଲାବେଳେ, ଆଖି ଛଳ ଛଳ କରି ନିଜ କାନିରେ ଆମର ମୁହଁରୁ ଝାଳ ପୋଛୁ ଦେଉଥିଲେ । ସେ ଦିନ ସମସ୍ତଙ୍କୁ ପଖାଳ ଆଉ କଅଁଳ ନେଡ଼ିଆ ଶାଗ ଭଜା ଦୂଅଇଲେ । କେମିତି

Digitized by PPRACHIN, SOA

ହସ ଆମ ଶୁକୁମା ଅପାର, ସତେ କି ମୁକ୍ତା ଝରି ପଡ଼ୁଛି । ମାଗି ଦେଲି ଆଉ ଗଣ୍ଡିଏ ପଖାଳ । ଧାଇଁଗଲେ ଶେଷ ଘରକୁ । ଫେରିଲେ ନାହିଁ । କଥାଟା ବୁଝି ନିଜେ ମୁଁ ଲଜ୍ଜିତ ହେଲି । ତୁନି ତୁନି ଉଠି ହାତ ଧୋଇଲି । ଶେଷ ଘରକୁ ଅନେଇ ଦେଲି, ଅପା କବାଟ ପାଖରେ ଠିଆ ହୋଇଛି । ଦୁ' ଆଖିରେ ଦୁ' ଧାର ଲୁହ । ମତେ ଦେଖି ଲଜ୍ଜିତ ହୋଇ କହିଲା, ମତେ ଯାହା ମରଣ ନ ହେଲା—

ପଚାରିଲି, ତୁ କଅଣ ଖାଇବୁ ?

ମୁଁ ଟା । ଡାଆଣୀ ମୁଁ, ତମେ ଯେତେବେଳେ ତୋରାଣି ପିଉଥିଲ ତେ ଖାଇ, ନିଜେ ପରଷି ନିଜେ ମୁଁ ତମ ପେଟରେ ପଶିଥିଲି । ମୋ ପେଟ ତ ପୂରିଗଲା । ତମ ପେଟ ଅଧା ରହିଲା ।

ଆମର ସେଇ ଶୁକୁମା ଅପା, ଔଷଧ ପାଣି ନ ପାଇ, ମନକଥା ମନରେ ଛପେଇ ଚାଲିଗଲା । ମନ୍ଦର ମଲ୍ଲିକଙ୍କ ନାତିଟି, ଦଶ ବରଷର ପିଲା । କି ଶୋଭା ରୂପ, ବିଚକ୍ଷଣ ବୁଦ୍ଧି । ମନେପଡ଼ୁଛି —

ମଲ୍ଲିକେ କହିଲେ, ତୁନି ହୁଅ ସୁବ୍ରତ ବାବୁ, ତା' କଥା ଆଉ ମନେ ପକେଇ ଦିଅ ନା । ଯିଏ ଯାଇଛି ତ ଯାଇଛି, ଯେଉଁ ଦୁଃଖୀ ରଙ୍କୀମାନେ ଅଛନ୍ତି ସେମାନେ କେମିତି ଥଇଥାନ ହେବେ, ସେ କଥା ବିଚାର କର । ଜମିଦାରୀ ଗଲା; କେତେ ବଡ଼-ବଡ଼ଆଙ୍କର ପରାକ୍ରମ ଗଲା । ଜଢ଼ମୁଣ୍ଡିଆଙ୍କର ପେଟ ପୂରିଲା ନାହିଁ କି ଦେହ ଲୁଚିଲା ନାହିଁ । ଭାଗଚାଷୀ ଆଇନ ହେଲା, ଯେଉଁମାନେ ଭାଗ କରୁଥିଲେ, ସେମାନେ କିଛି କିଛି ଜମି ପାଇଲେ । ଆମର କ' ଗଲା ? ଛୁଆଁ ଅଛୁଆଁ ଉଠେଇ ଦେଲି । କୂଅ ପୋଖରୀରୁ ପାଣି ଖାଇଲୁଁ । ଠାକୁର ମନ୍ଦିରରେ ପଶି ଦର୍ଶନ କଲୁଁ । ଲୋକଙ୍କ ମନରୁ ଆମ ପ୍ରତି ଘୃଣାଭାବ କମିଲା । ସବୁ ହେଲା ଯେ, ଅଭାବ ଅସୁବିଧା ତ ଆଁ କରି ଘୁରଖଡ଼ୁ ଗୋଡ଼ାଇ ଆଉଛି । କଅଣ ଆମେ କରିବୁଁ, କେମିତି ବଞ୍ଚିବୁ ?

ଧର୍ମାନନ୍ଦ କହିଲା, ଏଥିପାଇଁ ଗ୍ରାମସଭା ଡକାଯାଉ । ସମସ୍ତେ ଆମେ ଗ୍ରାମବାସୀଙ୍କୁ ପ୍ରାର୍ଥନା କରିବା, ଯୁଗର ଡାକ ପୁଣି ଥରେ ତା'ଙ୍କ କାନରେ ପକାଇବା; ଯେଉଁମାନଙ୍କର ମୋଟେ ଭୂମି ନାହିଁ, ସେମାନଙ୍କୁ କିଛି କିଛି ଭୂମି ଦେବାକୁ ଅନୁରୋଧ କରିବା । ଏ ଗାଆଁରେ ଜଣେ କ୍ଷୀର ପୁରି ଖାଇ ହାକୁଟି ମାରିବ, ଆଉ ଜଣେ ଖାଲି ପେଟରେ ଆଲୁଜା ଦେଇ ହାଇ ମାରି ବେଳ କଟେଇବ, ଏ କଥା ମୋଟେ ସୁନ୍ଦର ନୁହେଁ । ଗାଁ-ପଞ୍ଚ ଏ କଥା ବିଚାର କରନ୍ତୁ ।

କଅଣ ସେମାନେ ବିଚାର କରିବେ ହୋ, ହରି ତନ୍ତ୍ରୀ ଟାଣି କରି କହିଲେ । ଏ ଗାଆଁରେ କାହାର ସେମିତି ଅଧିକା ଜମି ଅଛି କି ? ଯାହାର ଯାହା ଅଛି, ସେତିକି ନିଜ ପିଲାଙ୍କ ପାଇଁ ନିଅଣ୍ଟ । ଯାହାର ବା ଟିକିଏ ଅଧିକା ଅଛି, ସେତିକି ସେମାନେ ଦେବେ ନାହିଁ । ଆକାଶକୁ ଦେଖେଇ କହିବେ, ଏଇଆ ଚଷ । କାହିଁକି, ଜମିଦାରଙ୍କର ଏତେ ଭୂମି ଅନାବାଦୀ ହୋଇ ପଡ଼ିଛି । ଦେବାକୁ ସେ ମନାକରି ଦେଲେ । ମନ୍ଦ

Digitized by PPRACHIN, SOA

ଖୋଇ ପବନା ପୁଅ ବାବନା କାହିଁକି ସବୁ ଚଟାକାଟି ନେବ, ଆମେ କାହିଁକି ଜବରନ୍ ସେ ଜମି ଚାଷ ନ କରିବା ? ଜେଲ୍ ଦେବେ ତ ଦେଉନ୍ତୁ, ଉପାସରେ ଛଟପଟ ହୋଇ ମରିବା କାହିଁକି ?

ହରି ଭକ୍ତୀଙ୍କ କଥା ଶୁଣି ସମସ୍ତେ ନିର୍ବାକ୍ ହୋଇ ରହିଲେ । ନିଶା ଗର୍ଜ୍ଜୁଛି, ରାତି ଅଧ ହେଲାଣି । ତଥାପି, ସେମାନେ ଘରକୁ ଫେରି ନାହାନ୍ତି । ମୂଲିଆ ଦଳର ଜୀବନ-ମରଣ ସମସ୍ୟା । ସେବକ-ସଙ୍ଘ କି ସମାଧାନ କରିବ ସେଇକଥା ଜାଣିବାକୁ ସମସ୍ତେ ବ୍ୟଗ୍ର । ଏହିପରି କେତେ ରାତି ତ କଟିଛି । କେବଳ ବାଦାନୁବାଦ ଓ ବିସ୍ତର । କେବେ କିଛି ସମାଧାନ ହୋଇ ପାରି ନାହିଁ । ଆଜି ବା କଅଣ ହୋଇ ପାରିବ ?

ସୁରତ ଉଠି ଠିଆ ହେଲା । ହାତଯୋଡ଼ି କହିଲା, ଆମ ମନରୁ ଆମେ ହିଂସାଭାବ ଦୂର କରିବା ଭାଇମାନେ, କାହାରି ଉପରେ ଜୋର ଜବରଦସ୍ତି କରିବା ନାହିଁ । ଜମିଦାର ମନା କରି ଦେଇଛନ୍ତି । ଆମର ଯଦି ନୈତିକ ଶକ୍ତି ଥାଏ ତ ସେ ନିଜେ ତାକ ଭୂମିହୀନଙ୍କୁ ଭୂମି ବାଣ୍ଟିଦେବେ ।

କେବେ ? ହରି ପଚାରିଲେ ।

ଯେଉଁଦିନ ସେ ଗ୍ରାମ ସେବକ ସମାଜର ସଭ୍ୟ ହେବେ । ବେଶି ଡେରି ହେବ ନାହିଁ । ତା ଆଗରୁ ବାବନା ପଧାନଙ୍କୁ ଏ ସମାଜର ସଭ୍ୟ ହେବାକୁ ପଡ଼ିବ । ବୃଦ୍ଧ ପବନା ପଧାନ ମଧ୍ୟ ସଭ୍ୟ ହେବେ ।

ମଙ୍ଗିବେ ? ଛକଡ଼ି ବାଉରି ପଚାରିଲେ ।

ସେ ଦାୟିତ୍ୱ ମୋର । ଶ୍ରମଦାନ ଦେବାକୁ ସମସ୍ତେ ପ୍ରସ୍ତୁତ ତ ?

କହି ଉଠିଲେ ସମସ୍ତେ — ହଁ, ପ୍ରସ୍ତୁତ ।

କାମ, କାମ, ଚଉଆଡ଼େ ଚାହିଁଲେ ଆଖି ଆଗରେ କେବଳ କାମ ହିଁ ଦେଖାଯାଉଛି । ସବୁ ସୁଖ, ସବୁ ଆନନ୍ଦ ସୃଷ୍ଟିକର୍ତ୍ତା ଆମର ଅତି ପ୍ରିୟ ଧରଣୀ ମାତାର ପ୍ରତି ଅଣୁପରମାଣୁରେ କେଡ଼େ ଯତ୍ନ, କେତେ କୌଶଳରେ ସଞ୍ଚି ରଖିଛନ୍ତି । ଲୁଚେଇ ରଖିଛନ୍ତି । ଆଲୁଅ ସାଥିରେ ଅନ୍ଧାର ପରି, ଘାତ ସଙ୍ଗେ ସଙ୍ଗେ ପ୍ରତିଘାତ ପରି, ସୁଖର ସେପାଖେ ଦୁଃଖ, ଆନନ୍ଦ ସାଥିରେ ନିରାନନ୍ଦ ମଧ୍ୟ ଅଛି । ଅନ୍ଧାରକୁ ଦୂର କରିବାକୁ, ଆଲୋକକୁ ବ୍ୟବହାର କରିବାର ବୁଦ୍ଧି ଓ ପ୍ରତିଘାତକୁ ମଣିଷର କଲ୍ୟାଣକର କାମରେ ନିୟୋଜିତ କରିବାର କୌଶଳ ମଣିଷ ମନରେ ସେ ନିହିତ କରିଛନ୍ତି । ସବୁ ଏଇ ଦୁନିଆରେ ଅଛି । ପାଇବାକୁ ଯିଏ ଆଗ୍ରହ ନ କରେ, ଆଗ୍ରହ କରି ଯେ ଉଦ୍ୟମ ନ କରେ, ଉଦ୍ୟମ ଯଦି ଉପଯୁକ୍ତ ମାର୍ଗରେ ନିୟନ୍ତ୍ରିତ ନ କରେ, ମଣିଷ ପାଇବ କିପରି ?

Digitized by PPRACHIN, SOA

ଅଭାବ ଅସୁବିଧା କଅଣ ଏ ବିଷୟ ମଣିଷ ଅଟେ ନଭାବିଲେ ମଧ୍ୟ ସବୁ ଅଭାବ ଅସୁବିଧା ଦେଖି ମଧ୍ୟ ଦେଖିପାରେ ନାହିଁ । ସେ ସବୁ ଚିରନ୍ତନ ହୋଇ ଆସିଛି । ସହବାସ, ସମ୍ପାଳବାର ଅଭ୍ୟାସ ହୋଇଛି ଯୁଗଯୁଗରୁ । ପ୍ରତିକାରର ଧାରଣା ମନକୁ ଆସୁନାହିଁ । ପାଇବା କ ପ୍ରତିକାରର ଆଗ୍ରହ ମନକୁ ଆସିବ କପରି ? ଅଭାବ ଓ ଅସୁବିଧାର ଧାରଣା ପ୍ରଥମେ ମଣିଷର ମନରେ ଜାଗରିତ କରିବାକୁ ହେବ । ଏ ଅତି ସହଜ କଥା ନୁହେ । ଚଳି ଯ ଛି ଓ ଯାହା ଭାଗ୍ୟରେ ଅଛି ହେଉଛି । ଏହି ଦୁର୍ଭେଦି ଅଳସ ସନ୍ତୋଷ ଭାବକୁ ହଲାଇ ଦୋହଲାଇ ଦେଇପାରିଲେ ଅଭାବ ଓ ଅସୁବିଧାର ଧାରଣା ମନରେ ରୋପଣ କରାଯାଇ ପାରେ । ତା'ପରେ ଯାଇ ଆଗ୍ରହ, ଉଦ୍ୟମ ଓ ନିୟନ୍ତ୍ରଣ ।

ଉନ୍ନତିର ତ୍ରିଗୁଣ ଚକ୍ର !

କୁଡ଼ିଆ ଉପର ଖ୍ରଖିଲ୍ ପଥରେ ଟିପିଟିପି ବର୍ଷାର ଧାର । ଶବ୍ଦ ହେଉଛି । ସାଇଁ ସାଇଁ ପବନ ବହୁଛି । ଟାଙ୍ଗିମାଟି ଦେହରେ ମୁଠାଏ ଲମ୍ବ ଓ ଚଉଖଣ୍ଡେ ଓସାରର ଝରକା ଦୁଇଟି । ସେଇ ବାଟେ ବାହାରର ପାଣିଛିଟା ଓ ପବନ ଘର ଭିତରେ ପଶି ବାହାରି ଯାଉଛି । ଗୋଟିଏ ପାଖେ ପଡ଼ିଛି ଦଉଡ଼ିଆ ଖଟିଆ ଖଣ୍ଡିଏ । ତା' ଉପରେ ପଡ଼ି ହୋଇଛି କମ୍ବଳ । କମ୍ବଳ ଉପରେ ସଫେଦ୍ ବିଛଣାଚଦର । ଖଣ୍ଡିଏ ତକିଆ । ଖଟିଆ କଡ଼କୁ ଅଳ୍ପ ଉଚା ଗ୍ରେଟ ଟେବୁଲ୍ ! ଗୋଟିଏ କଡ଼ରେ ଟ୍ରଙ୍କ ରଖା ହୋଇଛି । ଆର କଡ଼ରେ ହରିକାନ୍ ଲଣ୍ଠଣ । ଆଲୁଅ ଜଳୁଛି ।

ବଜ୍ରବାହୁ ଖଟିଆରେ ବସି ବହି ଖଣ୍ଡିଏ ପଢ଼ୁଛି । ପାଖରେ ଘଣ୍ଟା ନ ଥିଲେ ବି ସେ ଅନୁମାନ କରୁଛି, ରାତି ଅଧିକ ହୋଇ ନାହିଁ । ବେଳବୁଡ଼ିବା ଆଗରୁ ଟିପିଟିପି ବର୍ଷା ଆରମ୍ଭ ହୋଇଥିଲା । ମୂଲିଆମାନେ ନାଳ ଖୋଳା କାମ ବନ୍ଦ କରି ନିଜ ନିଜର ମୁକାମକୁ ଫେରି ଆସିଥିଲେ । ବଜ୍ରବାହୁ ମଧ୍ୟ ଫେରିଥିଲା । ଯେଉଁ ହୋଟେଲଟି ସେ ବସାଇଛି ସେଇଠି ଦିନ ଥାଉଁ ଥାଉଁ ଭୋଜନ କରି ନିଜର କୁଡ଼ିଆକୁ ଆସିଲା । କହିଖଣ୍ଡି ଅଧିକ ଦୂର ତ ଆଗେଇ ନାହିଁ ! ପହରିକିଆ ବାଲୁଆ ନାଳ ସେପାଖେ ପର୍ବତ ଗଡ଼ାଣି ଘଞ୍ଚ ଅରଣ୍ୟ ଭିତରେ ବୋବାଳି ଗ୍ରୁଡ଼ି କେତେବେଳୁ ମିଉ ହେଲଣି ।

ସୂତ୍ରବନ୍ଧ ବହି ବନ୍ଦକରି ତକିଆ ପାଖରେ ରଖିଲା । କଅଣ ସେ ପଢ଼ୁଥିଲା, କଅଣ ସେ ପଢ଼ିଛି ତା'ର ମନେ ନାହିଁ । ଅକ୍ଷର, ଶବ୍ଦ, ବାକ୍ୟ ଓ ପୃଷ୍ଠାଗୁଡ଼ିକ ଉପରେ ଦୃଷ୍ଟି ମାଡ଼ି ଯାଇଛି । ସେ ସବୁ ଭିତରେ କଅଣ ଅଛି ସେ ଦେଖିପାରି ନାହିଁ । ମନ ଅନ୍ୟ ଚିନ୍ତାରେ ପୂର୍ଣ୍ଣ । ଗୋଟାଏ ହତାଶ ଭାବ ସବୁ ଉତ୍ସାହକୁ ଆଚ୍ଛାଦନ କରିଛି । କିଏ ଯେପରି କହି ଉଠୁଛି – ସବୁ ଉଦ୍ୟମ, ସବୁ କର୍ମ ତୋର ବ୍ୟର୍ଥ ହୋଇଛି ବଜ୍ରବାହୁ, ତିନୋଟି ବର୍ଷ କଟିଛି କେବଳ ଚଳନ୍ତି ପବନକୁ ଫାଶ ପାତି ଧରିବାରେ । ଆଉ କାହିଁକି ଚେଷ୍ଟା ? ଫେରି ଯା ପୁଣି ଆପଣଙ୍କକୁ, ମଣିଷ ସମାଜ ମଝିକି ।

Digitized by PPRACHIN, SOA

ସେଇଠି ତୋ'ର ଉଦ୍ୟମ ଫଳବାନ୍ ହେବ । ଆତ୍ମତ୍ୟାଗ ପାଇଁ ପ୍ରଶଂସା ମିଳିବ । ସଫଳତା ମନରେ ଆଣିବ ନୂତନ ଉତ୍ସାହ, ନୂତନ ଯୋଜନା, ନୂତନ କର୍ମର ପ୍ରେରଣା ।

ଧର୍ମାନନ୍ଦ ନିମନ୍ତ୍ରଣ କରନ୍ତି, ।

—ଦେଖିବ ଆସ ବଜ୍ରବାହୁ, ରଣଗଡ଼ର ରୂପ କିପରି ବଦଳି ଆସୁଛି । କେବଳ ରୂପ ନୁହେଁ, ମନ ଓ ପ୍ରକୃତି । ନିଜକୁ ନୂଆ ଛାଞ୍ଚରେ ଗଢ଼ି ଯୁଗୋପଯୋଗୀ କରିବାକୁ ସେ ଅଣ୍ଟା ଭିଡ଼ି ଠିଆ ହୋଇଛି । ଯୁଆଡ଼େ ଚାହିଁଲେ ଆଖିରେ ଦିଶୁଛି କେବଳ କର୍ମ ! ମଣିଷ ହୋଇ ଠିଆହେବାକୁ ସମସ୍ତେ ଆଜି ଉଚ୍ଛନ୍ନ ।

ରଣଗଡ଼ ସମସ୍ତଙ୍କୁ ଅଟକାଇ ରଖିଛି । ସୂର୍ଯ୍ୟ ଉଦୟ ହୋଇ ଅସ୍ତ ହେଲେ ରାତି ହୁଏ ପରା ପୁଣି ଉଦୟ ହେଲେ ହୁଏ ନୂଆ ଦିନ ? ରଣଗଡ଼ରେ ସୂର୍ଯ୍ୟ କେବଳ ଉଦୟ ହୋଇଛନ୍ତି । ଅସ୍ତ ହେବାର କେହି କେବେ ଦେଖୁନାହାନ୍ତି । ସମସ୍ତେ ଆମେ ସମସ୍ତଙ୍କର ସେବକ । ସେବକ ସମାଜର କର୍ମ ରାତିକୁ କରିଛି ଦିନ ।

—ଫେରିଆସ ବଜ୍ରବାହୁ, ରଣଗଡ଼ ତୁମକୁ ପାଛୋଟି ନେବ । ରଣଗଡ଼ର ଯୁବରାଜ ତୁମେ, ମୁଁ ତୁମର ପୁରୋହିତ ! ତୁମକୁ ମୁଁ ଅଭିଷିକ୍ତ କରିବି । ସ୍ୱର୍ଣ୍ଣସିଂହାସନ ଲୋଡ଼ା ହେବ ନାହିଁ, ବସାଇବି ଇଟା ମାଟିର ଆସନରେ । ରତ୍ନଖଚିତ ମୁକୁଟ ମୁଣ୍ଡରେ ବାନ୍ଧିବି ନାହିଁ, ବାନ୍ଧିବି ଧାନ-ଗହମର କେଣ୍ଡା । କପାଳରେ ସିନ୍ଦୂର ଚନ୍ଦନର ଟୋପା ଲଗାଇବି ନାହିଁ, ଲଗାଇବି କର୍ମ-ଭଗୀରଥର ସ୍ୱେଦ-ଜାହ୍ନବୀ ସିକ୍ତ ମୃତ୍ତିକାର ଟିକା । ହାତରେ ସ୍ୱର୍ଣ୍ଣଦଣ୍ଡ କି ତରବାରି ଦେବି ନାହିଁ, ଦେବି ଦାଆ କି ଶାବଳ । ପୁରୋହିତ ମୁଁ, ମନ୍ତ୍ର ଉଚ୍ଚାରଣ କରିବି—

ଶରୀରଂ ବା ପାତୟେତ୍
କର୍ମଂ ବା ସାଧୟେତ୍—

ସୁବ୍ରତ ଶିହରି ଉଠିଲା । ହଁ, ଏଇ ସିଂହାସନ ମୋ'ର ଲୋଡ଼ା । ଏଇ ମନ୍ତ୍ର ମୋ'ର ଲୋଡ଼ା । କ୍ଷୁଦ୍ର ରଣଗଡ଼କୁ ମୁଁ ଫେରିଯିବି ନାହିଁ । ମୋ'ର ରାଜ୍ୟ ମୋର ଭିତରେ ଅଛି । ଜନତାର ସେବା ହିଁ ମୋ'ର ରାଜ୍ୟ—ଯାହାର ଆୟତନ ନାହିଁ, ସୀମା ନାହିଁ । ସେ ରାଜ୍ୟ ବିଶ୍ୱବ୍ୟାପି ଅଥଚ ମଣିଷର ସଙ୍କଳ୍ପରେ ଆବଦ୍ଧ ।

ସୁବ୍ରତ ଉଠି ବସିଲା । ଚାହିଁଲା ଚାରିଆଡ଼କୁ । ପର୍ଣ୍ଣକୁଡ଼ିଆର ଦ୍ୱାର ଖୋଲିଯାଇଛି । ବାହାରୁ ପାଣି ପବନ ପଶି ଆସୁଛି । ପାତଳ ପଟାର କବାଟ । ଭିତରେ ଓ ବାହାରେ ଲୁହାର କଞ୍ଜିର ଲାଗିଛି । ଦ୍ୱାର କଳାଳ । ବାହାରଟା କେଡ଼େ ଭୟଙ୍କର ଦିଶୁଛି । ପର୍ବତ ଧାଡ଼ି ଅନ୍ଧାର ଭିତରେ ଛପି ଯାଇଛି । ଗଛ ଗହଳି ସତ୍ତା ହଜାଇଛି । ଶବଦ

Digitized by PPRACHIN, SOA

ଶୁଭୁଛି—ପବନର ସାଇଁ ସାଇଁ, ବରଷାର ଟପର ଟପର, ଗଡ଼ି ଆସୁଥିବା ଜଳଧାର-ସ୍ରୋତର କଳ କଳ ନାଦ । ଶୁଭୁଛି—ଝିଙ୍କାରିର ଝିଁ ଝିଁ ଓ ଭେକପଲର ମକ ମକ ରବ ।

ମଣିଷର ସ୍ୱରଶବ୍ଦ ନାହିଁ । ଅରଣ୍ୟର ଗଛ ଗହଳ ଭିତରେ ଛୋଟ ଛୋଟ କୁଡ଼ିଆ ଧାଡ଼ି ଧାଡ଼ି ହୋଇ ତୋଳା ହୋଇଛି । ଗୁଡ଼ି ଗୁଡ଼ି, ପଡ଼ାକୁ ପଡ଼ା । ଦୁଇ ହଜାରରୁ ଅଧିକ ମୂଲିଆ କାମ କରୁଛନ୍ତି । କିଏ କେତେ ଦୂରରୁ ପିଲା-କୁଟୁମ୍ବ ଧରି ପେଟ ପାଇଁ କାମ କରିବାକୁ ଧାଇଁ ଆସିଛନ୍ତି । ପାହାଡ଼ିଆ ନଈ ବନ୍ଧା ହେଉଛି । ଅରଣା ନଈ । ଦୁଇ ଧାଡ଼ି ପାହାଡ଼ର ମଝିରେ ବଙ୍କେଇ ବଙ୍କେଇ ପଥରରୁ ପଥର ଡେଇଁ ଡେଇଁକା ଗଡ଼ି ଆସୁଛି ।

ନଈ ବନ୍ଧା ହେବ । ପାଣି ଆସିବ ନାଳରେ । ଜଙ୍ଗଲ ମଝିରେ, କେଉଁଠି ପାହାଡ଼ମାଳର ତଳେ ତଳେ ସାପେଇ ସାପେଇ, କେଉଁଠି ଖୋଲା ଜାଗାରେ ସିଧା-ସଳଖ ନାଳ ଖୋଳା ଚାଲିଛି । ଛୋଟ ଛୋଟ ଝରଣା, ଖାଲୁଆ ଭୂଇଁ ପୋତା ହେଉଛି । ଉଚ ଭୂଇଁ କଟା ହେଉଛି । ପୋଲ ଗଢ଼ା ହେଉଛି । ଦଶ ମାଇଲ ବଡ଼ କେନାଲ । ସତର ମାଇଲ ଛୋଟ କେନାଲ । କେତେ କରନାଳୀ । ଛଅ ହଜାର ଏକର ପୁରୁଣା ଅନୁର୍ବର ଜମିରେ ପାଣି ମାଡ଼ିବ । ଦଶ ହଜାର ଏକର ନୂଆ ଜମି ବାହାରିବ । ପାଣି ମାଡ଼ିବ । ସୁନା ଫଳିବ ।

କାମ ଚାଲିଛି ଜୋରସୋର୍‌ରେ । କେତେ କାଣ୍ଟ୍ରାକ୍ଟର ନିଯୁକ୍ତ ହୋଇଛନ୍ତି । କାମ କରାଉଛନ୍ତି । ପରିଦର୍ଶନ କରି ଉପଦେଶ ଦେବାକୁ ଓ କାମ ଜନଖି କରି ବତେଇ ଦେବାକୁ ଇଞ୍ଜିନିୟର ଓ ଓଭରସିଅରମାନେ ଆସୁଛନ୍ତି ଯାଉଛନ୍ତି । ଆହୁରି କେତେ ହାକିମ ମଧ୍ୟ ଯା'ଆସ କରୁଛନ୍ତି । ହେଲେ, କାମ ଉଠାଉଛନ୍ତି ଏହି ମଳାମୁଣ୍ଡିଆ ମୂଲିଆଗିଲା । ଦେହରୁ ପୋଷ ପୋଷ ଝାଳ ନିଗାଡ଼ି ମାଟି ପଥର ଭାଙ୍ଗି ନୂଆ ଦୁନିଆ ଗଢ଼ୁଛନ୍ତି ସେମାନେ । ପେଜ ପାଣି ମନ୍ଦେ ପିଇ ବଞ୍ଚି ରହୁଛନ୍ତି କାଲିକି ପାଇଁ । କାଲି ପୁଣି ପାହାଡ଼ ପଥର ସଙ୍ଗେ ଲଢ଼ିବାକୁ, ମୂଲ ନେଇ ପେଜ ପାଣି ପିଇବାକୁ ।

କିଏ ସେମାନେ ?

ମୂଲିଆ ଦଳ । କିଏ କେଉଁଠୁ ଆସି ଏକାଠି ଜୁଟିଛନ୍ତି—ମୁଣ୍ଡା, କୋନ୍ଧ, ଖଡ଼ିଆ, ଭୂୟାଁ—ସେମାନେ ଆଦିବାସୀ । ବାଉରି, ଖଦାଳ, ଡମ, ପାଣ—ସେମାନେ ଅନୁନ୍ନତ ଶ୍ରେଣୀର ଲୋକ । ଦକ୍ଷିଣରୁ ଆସିଛନ୍ତି ତେଲେଙ୍ଗା, ପଶ୍ଚିମରୁ ଛତିଶଗଡ଼ିଆ । ବିଭିନ୍ନ ଭାଷାବୁହା ଲୋକ, ବିଭିନ୍ନ ଜାତିର ଲୋକ । କାହାରି କଥା ସହଜରେ କେହି ବୁଝି ପାରନ୍ତି ନାହିଁ । ସମସ୍ତେ କରନ୍ତି ପରିଶ୍ରମ । ମୁଣ୍ଡରୁ ନିଗିଡ଼େ ଝାଳ । ଭୋକରେ ଜଳେ ପେଟ । ଦେହର ଭାଷା ପେଟର ଡାକ ସମସ୍ତେ ଶୁଣନ୍ତି ସମସ୍ତଙ୍କର । ସମସ୍ତେ ବୁଝନ୍ତି ।

Digitized by PPRACHIN, SOA

ସେବା କରିବାକୁ, ନୂଆ ଦୁନିଆ ଗଢ଼ିବାକୁ ସାଥି ଯେପରି ସେ ଜନମ ଲଭିଛନ୍ତି । କାମ ସରିବ । ସେମାନେ ପୁଣି କିଏ କୁଆଡ଼େ ଯିବେ ! ନୂଆ କର୍ମର ଅନ୍ବେଷଣ । ପାହାଡ଼ ଫଟାଇ ରାସ୍ତା ପଡ଼ିବ, ଅରଣ୍ୟ ହାଣି ରେଳପଥ ଗଢ଼ା ହେବ, ମାଟି ତାଡ଼ି କୋଇଲା, ଲୁହା, ଲାଇମ୍‌ଷ୍ଟୋନ, ମାଙ୍ଗାନିଜ କଢ଼ା ହେବ — ଏମିତି କେତେ କେଉଁଠି କାମ ।

ସେଠି ପ୍ରଦେଶ-ଭେଦ କି ଭାଷା-ଭେଦର ପ୍ରଶ୍ନ ଉଠେ ନାହିଁ । ଦୂରତା ଆଖିକୁ ଦିଶେ ନାହିଁ । ପେଟ କଢ଼ାଏ ବାଟ ।

ସଭ୍ୟତାର ଅଗ୍ରଦୂତ ।

ଦୁଇ ହଜାର ମଜୁରିଆ — ପିଲାକୁଟୁମ୍ବ ଧରି କିଏ କେଉଁ କୁଡ଼ିଆରେ ଆଶ୍ରା ନେଇଛନ୍ତି କେଜାଣି । ଦୁର୍ଗମ ରାତି । କାହାର ସ୍ୱର ଶବ୍ଦ ତ ଶୁଭୁ ନାହିଁ । ହୁଏ ତ ନିଘୋଡ଼ ନିଦରେ ଅଚେତ । କଅଣ ସେମାନଙ୍କର ଉଚାଶା ? ଆହାର, ନିଦ୍ରା ଓ ଜନନ । ମାଟି ତାଙ୍କୁ ଅଟକାଇ ରଖିପାରି ନାହିଁ । ଦୁନିଆ ଉପରେ ତାଙ୍କର ଅଧିକାର ଥିଲେ ବି ଦାବୀ ଥିଲେ ବି ମାଟି ଉପରେ ନାହିଁ ।

ଅପନ୍ନା ଜଣ ମୋଡ଼ି ଛାତି ଫୁଲାଇ କହେ — ଜନମ ମୋର ସାଲେମ ଜିଲାରେ । ବାପା ମା କେତେ ଭାଇ ଭଉଣୀ । ବାପା ମା ମଲେଣି । ଭାଇଭଉଣୀମାନେ ବାବନା-ଭୂତ ପରି କିଏ କୁଆଡ଼େ ପିଲାକୁଟୁମ୍ବ ଧରି ବୁଲୁଛନ୍ତି । କେତେ ରାଜ୍ୟ କେତେ ବର୍ଷ ଘୂରିଛି । ସମୁଦ୍ର, କାନ୍ତାର, ନଦୀ, ଗ୍ରାମ, ସହର ପାଖରେ କୁଡ଼ିଆ ପକେଇଛି । କାମ କରିଛି । ବିବିଧ କାମ । ଭାଷା ବୁଝି ନାହିଁ । ବୁଝିବା ଦରକାର ନାହିଁ । ପରିଶ୍ରମ ମୋର ଭାଷା । ସେକଥା ସବୁ ମଣିଷ ବୁଝନ୍ତି । କେତେ ପିଲା ଜନମ ଲଭିଛନ୍ତି, କେତେ କେଉଁଠି ମରିଛନ୍ତି । ଦୁଇଟା ପୁଅ, ସ୍ତ୍ରୀ କିଏ କୁଆଡ଼େ ଗଲେ । ଝିଅଟା ବି ଚାଲିଗଲା କେଣେ । ଆହୁରି ଡଜନଟା ପାଖରେ ଅଛନ୍ତି । ବୁଢ଼ା ହେଲିଣି । ଜୋର ପାଉ ନାହିଁ । ସେଇଥିପାଇଁ ମଦ ଟିକିଏ ଖାଏ । ଛାଡ଼ି ଦେବାକୁ କହୁଛ ? ଛାଡ଼ି ଦେଲେ ମରିଯିବ ।

ବ୍ରହ୍ମପୁର ଜିଲାର କେଉଁ ଦୂର ଗାଆଁରେ ନଦୀକୂଳରେ ଜନମ ରାମଧନ୍‌ର । ନଦୀ ଉପରେ ପୋଲ ତିଆରି ହେଉଛି । ପାହାଡ଼ କାଟି ପଥର ବୁହା ଚାଲିଛି । ମୁଣ୍ଡରେ ମାଟିବୋଝ ଧରି ମାଉସୀମାନଙ୍କ ସଙ୍ଗରେ ନଦୀ ଭିତରକୁ ଗଡ଼ୁଛି ତା'ର ଗର୍ଭଧାରିଣୀ । ରାମଧନ୍ ସଂସାରକୁ ଆସିଲା ।

କେତେ ତାର ଅଭିଜ୍ଞତା । ଭିକ୍ଷା, ଚୋରି, ଖୁଣୀ, ଜେଲ୍ । ବାନ୍ଧହେଲା ସେ ମାସ୍ତାନମାର ଜାଲରେ । ବିଦର୍ଭ ଦେଶରେ । ସେଇ ଅଞ୍ଜ ତାର ପତ୍ନୀ । ଦୁହେଁ ସେ

Digitized by PPRACHIN, SOA

ମୂଲିଆ । ସ୍ୱଦେଶି ସନ୍ତାନ । ଘର କରି ଦୁନିଆର କେଉଁ କୋଣରେ ଆଶ୍ରା ନେବାକୁ ପ୍ରାଣ ଡାକୁଛି । ପେଟ ପୋଷିବାକୁ, ଦେହ ଘୋଡ଼ାଇବାକୁ ଦେହର ଝାଳ ଯଥେଷ୍ଟ ନୁହେଁ । ଘର କରି ରହିବାକୁ ସମ୍ବଳ କାହିଁ ? ଏ କାମ ସରିଲେ, ଆଉ କେଉଁଠି ମିଳିଯିବ ଯେ ! ମୂଲିଆ ନେବାକୁ କାଣ୍ଟ୍ରାକ୍ଟରମାନେ ଧାଁଧପଡ଼ କଲେଣି । ଚିନ୍ତା କ'ଣ ?

ଢାଣ୍ଡି ଓସମ ସଂଚ ଜିଲ୍ଲାରୁ ଆସିଛି । ଭଗତ ସେଇ କଟକର ଧୋଇଆ ଅଞ୍ଚଳରୁ । ସେମାନଙ୍କର ବି ଏମିତିକା ଇତିହାସ । ଗୁସ୍ତାବ ମୁଣ୍ଡା ଆସିଛି କେନ୍ଦୁଝରରୁ । ଟେଟେ ଖଡ଼ିଆ ସୁନ୍ଦରଗଡ଼ରୁ, ସେମାନେ ବି ଏମିତି କେତେ କଥା କହନ୍ତି ।

ପରିସ୍ଥିତିକୁ ସେମାନେ ଆପଣାର କରି ନେଇଛନ୍ତି । ପ୍ରତିବାଦ କରିବାକୁ ସାହସ ନାହିଁ । କି ପ୍ରତିବାଦ ବା କରିବେ ସେମାନେ; କାହା ପାଖରେ ? ଆହାର, ନିଦ୍ରା ଓ ଜନନ । ମୁଣ୍ଡର ଝାଳ ତୁଣ୍ଡରେ ମାରିଲେ ଏସବୁ ମିଳେ । ଜିଭର ଅଭ୍ୟାସ ଖଟା, ମିଠା, ପିତା ବାରେ ନାହିଁ । ତାତିଲା ପେଟ ସବୁ ଆହାରକୁ ତଳକୁ ଓଟାରେ, ଜିଭକୁ ଲାଗେ ସ୍ୱାଦ ।

ଦୁଇ ହଜାର ଶ୍ରମିକ କାମରେ ଲାଗିଛନ୍ତି । ସମସ୍ତେ ଗୋଟିଏ ଜାତିର ଲୋକ—ମୂଲିଆ । ସଭିଙ୍କର ଗୋଟିଏ ଉଦ୍ଦେଶ୍ୟ—ଢୋକେ ପିଇ ଦଣ୍ଡେ ଜୀଇଁ । ନୂଆ ଦୁନିଆ ସେମାନେ ଗଢ଼ୁଛନ୍ତି. ଏକଥା ସେମାନେ ଗଢ଼ୁଛନ୍ତି, ଏକଥା ସେମାନେ ଜାଣନ୍ତି ନାହିଁ । କେହି କେହି ଜାଣିଥିଲେ ବି ଉପଲବ୍ଧି କରିପାରୁ ନାହାନ୍ତି । ବୁଢ଼ା ବୁଢ଼ାମାନେ କହନ୍ତି, କାଳ କି ମହଙ୍ଗା ହେଲା; ମୂଲିଆଙ୍କ ମୂଲ ତାଙ୍କ ପିଲାଦିନେ ଦି ଅଣା ଦଶ ପଇସା ଥିଲା, ଏବେ ହେଲା ଟଙ୍କାଏ ଦେଢ଼ଟଙ୍କା । ବୁଢ଼ା ବୁଢ଼ା ମୂଲିଆମାନେ ସେଇ କଥା କହନ୍ତି, ପଇସା ପୁଞ୍ଜାଏ ପକେଇ ଦେଲେ ପାଞ୍ଚ ପା ଚାଉଳ ମିଳୁଥିଲା । କେତେ ଖାଉଛ ଖା । କି କାଳ ହେଲା ଯେ ଚାଉଳ ହେଲା ଦଶଣା ସେର ! ନୂଆ ଦୁନିଆରୁ ତାଙ୍କୁ ମିଳିବ କ'ଣ ? ତାଙ୍କର ଦୁନିଆ ଅତି ପୁରୁଣା — ସେଇ ପେଟ ବିଖଣ୍ଡିକ । ଦେହ ଘୋଡ଼ାଇବା, ମୁଣ୍ଡ ଗୁଞ୍ଜିବାକୁ ମଥାନ ଖୋଜିବା ତ ଅଧିକରୁ ଅଧିକ କଥା !

ଦେଶ ଆଗେଇ ଚାଲିଛି । ଶ୍ରେଷ୍ଠ ବଡ଼ କେତେ ନଈ ନାଳ କୁମାରିକାରୁ ହିମାଚଳଯାଏ ବନ୍ଧା ହେଲାଣି । ଆହୁରି ଚାଲିଛି । କେତେ ଅନୁର୍ବର ଅନାବାଦୀ ଜମିରେ ସୁନା ଫଳିଲାଣି । ତାଙ୍କର କି ଯାଏ ? ଜଳବିଦ୍ୟୁତ୍‌ରେ ସହର ପରେ ସହର, ଗ୍ରାମ ପରେ ଗ୍ରାମ ଆଲୋକିତ ହେଉଛି । ପାଣି ଉଠା ହୋଇ ବିଲରେ ମାଡ଼ୁଛି । ଯନ୍ତ୍ର ପରେ ଯନ୍ତ୍ର ବସୁଛି । ଧାନକୁଟା, ଅଟା ପେଷା, ତେଲ କଢ଼ା, ଲୁଗାବୁଣାରୁ ବିଲ ଚଷ ଯାଏ । ମୂଲିଆଙ୍କ ସଂଖ୍ୟା ବଢ଼ୁଛି । ଗରିବର କୁଡ଼ିଆ ଭାଙ୍ଗୁଛି । ସେ ହେଉଛି ଅଦକ୍ଷ, ପଦଯାତ୍ରୀ-ଯାଯାବର ।

Digitized by PPRACHIN, SOA

ହସ୍ତାକୁ ହସ୍ତା ମଜୁରୀ ମିଳୁଛି । ସେ ମଜୁରୀରୁ ଅର୍ଦ୍ଧାଧିକ ଯାଉଛି ମଦ ଦୋକାନରେ । ମଦର ଅପକାରିତା ବୁଝାଇଲେ ବି ଶୁଣି ନାହାନ୍ତି ସେମାନେ । କୁଳର ପ୍ରଥା, ପୂଜା-ପର୍ବ, ଦେବୀମାନଙ୍କର ପୂଜା ସଙ୍ଗେ ମଦର ଅଛିଣ୍ଡା ସମ୍ପର୍କ । ସୁଯୋଗ ନେବାକୁ ରକ୍ତଶୋଷୀମାନେ ଅଛନ୍ତି । ଅନ୍ଧବିଶ୍ୱାସ ଟାଣି ନେଉଛି ସେମାନଙ୍କୁ ଧ୍ୱଂସମୁଖକୁ ।

ଲୋକଙ୍କର ପ୍ରକୃତି ନ ବଦଳିଲେ କିଛି କରି ହେଉନାହିଁ । ବାରମ୍ବାର ଶିକ୍ଷା ନ ଦେଲେ ପ୍ରକୃତି ବି ବଦଳିବ ନାହିଁ । ଶିକ୍ଷା ଦେବାକୁ କାହାନ୍ତି ନିଃସ୍ୱାର୍ଥପର କର୍ମୀ ? କେତେ ଦିନ ଅପେକ୍ଷା କରିବାକୁ ହେବ ? ନିଜକୁ ଯିଏ ସ୍ୱାର୍ଥତ୍ୟାଗୀ କର୍ମୀ ବୋଲି ଅଭିନୟ କରୁଛି, ସେ ପୁଣି କାଲି ତିଆରି କରୁଛି ନିଜର ଅଟ୍ଟାଳିକା ! କେଉଁଠି ରହିଛି ପ୍ରମାଦ, ଏହାର ପ୍ରତିକାର କଅଣ ? ମନୋଭାବର ଶିକ୍ଷା, ହୃଦୟର ପରିବର୍ତ୍ତନ ? କେବେ ହେବ ସେ ପରିବର୍ତ୍ତନ ?

ବନ୍ଧୁବାନ୍ଧୁ ଖଟିଆ ଉପରେ ପଡ଼ି ଛଟପଟ ହେବାକୁ ଲାଗିଲା । ପଥକ୍ଲାନ୍ତିଆର ମଥାନକୁ ଚାହିଁ ଜାଗ୍ରତ ସ୍ୱପ୍ନ ଦେଖିଲା—ପରିବର୍ତ୍ତନ ହୋଇଛି । ଜନନୀ ଭାରତବର୍ଷ ସୁନାର ଦେଶ ହୋଇଛି । କେହି କାହାର ପରିଶ୍ରମ ଶୋଷଣ କରି ନେଉନାହିଁ । ଶୋଷଣ କରିବାର ମନୋବୃତ୍ତି ନାହିଁ । ନିଜେ ନିଜର ପରିଶ୍ରମର ଉପଯୁକ୍ତ ମୂଲ୍ୟ ପାଉଛି—ହେଉ ସେ ଦୈହିକ ଅଥବା ମାନସିକ । ସମସ୍ତେ ଅଛନ୍ତି ସୁଖରେ, ଆନନ୍ଦରେ, ନିଶ୍ଚିନ୍ତରେ ।

କିପରି ଏହା ସମ୍ଭବ ହେବ ?

ଧିକ୍ ସେ ସଂସାର, ସବଳର ଯହିଁ ସବୁ କଥାରେ ସୁଯୋଗ ଆଉ ଦୁର୍ବଳର ଯହିଁ ଲାଞ୍ଛନା ଗଞ୍ଜଣା ନୀରବେ ଲୁହଭିଜା ଭୋଗ ! ନିର୍ଯାତ ସତ ହେଲେ ବି କେବଳ ସଂସାରକୁ ଧିକ୍କାର ଦେଇ ବସିଲେ ହେବ ନାହିଁ ତ ! ଲାଞ୍ଛନା-ଗଞ୍ଜଣା କେହି ନୀରବରେ ଲୁହଭିଜା ଭୋଗ କରି ରହିବା ମରଣ ସଙ୍ଗେ ସମାନ ।

ଇତିହାସ ଏହାର ଏକ ମୂକ ସାକ୍ଷୀ ! ମୂକ ହେଲେ ବି ସେ ଜୀବନ୍ତ । ସେ ହସିପାରେ । ସେ ହସୁଛି । ତାଆର ହସ ଅନ୍ଧାରକୁ ଆଲୋକିତ କରେ । ଦୁର୍ବଳର ଦେହରେ ସଞ୍ଚାର କରେ ଭୀମ ବିକ୍ରମ । ଜଳେ ବିଦ୍ରୋହର ନିଆଁ । ହଁ, ଜଳେ, ପୋଡ଼େ, ଭସ୍ମ କରେ । ବର୍ତ୍ତିମାନକୁ କରେ ଅତୀତର ପାଉଁଶ । ସେଇ ପାଉଁଶଗଦା ଉପରେ ଗଢ଼େ ନୂତନ ଭବିଷ୍ୟତ, ଭୁଲି ଅତୀତ, ଉଜ୍ଜ୍ୱଳ ଅତୀତର ଗ୍ରନ୍ଥରେ ।

ଇତିହାସ ଓଲଟେ । ବ୍ୟକ୍ତି ବଦଳେ, କୁଟୁମ୍ବ ବଦଳେ । ସମାଜ ଓ ଦେଶ ବଦଳେ ।

କଅଣ ଯେ ଚିନ୍ତା କରୁଛି ବନ୍ଧୁବାନ୍ଧୁ ? ଅବାନ୍ତର ? କୁଆଡ଼େ ଭାସି ଯାଉଛି ତା'ର ଭାବନା ? କେବଳ ଆଶା-ଅଳସ ଚିନ୍ତା ? ଦୁର୍ବଳ ନିଷ୍କ୍ରିୟତାର ଅଳସ-ଆନନ୍ଦ । —ମୋ'ର ସର୍ବନାଶ କରି ସେ ଗଢ଼ିଛି କୋଠା ।

Digitized by PPRACHIN, SOA

ଉଣଶି ମାଣ ଜମିର ମାଲିକ ହୋଇଛି । କେତେ ଲୋକଙ୍କର ସର୍ବନାଶ କରିଛି । ଅଭିଶାପ ଓ ନିଶ୍ୱାସର ଫଳ ଦିନେ ଫଳିବ । ଦେଖିବ ରହ, ଭୂମିକମ୍ପ ହେବ। କୋଠା ଅଜାଡ଼ି ହୋଇ ପଡ଼ିବ । ସମସ୍ତେ ଲୋପ ପାଇଯିବେ ।

ଭୂମିକମ୍ପ ହୋଇ ନାହିଁ । ଦୁଇ ମାହାଲ କୋଠା ପାଖରେ ତିନି ମାହାଲ କୋଠା ତାଙ୍କର ଠିଆ ହେଲାଣି । ଯେଉଁମାନେ ଦୀର୍ଘଶ୍ୱାସ ଛାଡ଼ୁଥିଲେ, ଅଭିଶାପ ଦେଉଥିଲେ, ସେମାନେ କୁଆଡ଼େ ଛପି ଗଲେଣି ! ଆଖିଲୁହ, ଦୀର୍ଘଶ୍ୱାସ, ଅଭିଶାପ, ହାତଯୋଡ଼ାର ମୂଲ୍ୟ ନାହିଁ ଏ ଦୁନିଆରେ । ଦୁର୍ବଳର ସବୁ ତର୍କ, ସବୁ ଅକାଟ୍ୟ ତଥ୍ୟ ସବଳର ହାସ୍ୟର ଉପାଦାନ ହୋଇଛି । ଦୁର୍ବଳ ହୋଇଛି ସହାନୁଭୂତିର ଜୀବ !— ଆହା, ବଞ୍ଚିଥାଉ ତ, ଚିଡ଼ିଆଖାନାର ଗୋଟିଏ ଜାତିର ଜୀବ । ଢୋକେ ପିଇ ଦଣ୍ଡେ ଜୀଉଁ, ଆହୁରି ଢୋକେ, ଅହୁରି ଦଣ୍ଡେ —

ଏମିତି ଏମାନେ ବଞ୍ଚିବେ, ମୂଲିଆ ଦଳ ? ସେମାନେ ସବଳ ହେବେ ନାହିଁ ? ଶିକ୍ଷା, ଆତ୍ମବିଶ୍ୱାସ କିପରି ସେମାନଙ୍କ ମନରେ ଜାଗରିତ କରାଯାଇ ପାରିବ ? କୁଅଭ୍ୟାସଗୁଡ଼ିକ ପାଖରୁ କିପରି ତାଙ୍କୁ ଦୂରେଇ ଆଣି ହେବ ? ଅନ୍ଧବିଶ୍ୱାସ ଓ କୁସଂସ୍କାର ବନ୍ଧନରୁ ମୁକ୍ତ କରିହେବ କିପରି ?

ସୁଚିତ୍ରିତ ବିଛଣା ଉପରେ ଛଟପଟ ହେବାକୁ ଲାଗିଲା । ଆଖି ମାଡ଼ି ପଡ଼ୁଛି । ଆଲୁଅ ଆଉ ଭଲ ଲାଗୁ ନାହିଁ । ସେ ହାତ ବଢ଼ାଇ ଆଲୁଅ ନିଭାଇଲା ।

କୋଳାହଳ ଶୁଣି ନିଦ ଭାଙ୍ଗିଲା । ବଜ୍ରବାହୁ ଆଖି ଖୋଲିଲା । ଦିନ ହେଲାଣି । କେତେ ବେଳୁ ସୂର୍ଯ୍ୟ ଉଇଁଲେଣି । ପୂର୍ବ ପଟର ଝରକା ବାଟେ କଅଁଳ ଖରା ଟେବୁଲ୍ ଉପରେ ପଡ଼ୁଛି । ଗତ ରାତିର ବର୍ଷା ଓ ତୋଫାନ ଆଉ ନାହିଁ । କିନ୍ତୁ କାହିଁକି ଏ କୋଳାହଳ । କୋଳାହଳ ସାଥିରେ କ୍ରନ୍ଦନର ରୋଳ !

ବଜ୍ରବାହୁ ଉଠି ବସିଲା । କେତେ ଭାବନା ଖେଳିଗଲା ମନରେ । ଦୁଇ ହଜାର ମଜୁରିଆଙ୍କର ଆଶ୍ରୟସ୍ଥଳୀ ଏ ଅରଣ୍ୟଭୂମି । କେତେ ଜାତିର, କେତେ ଆଡ଼ର ଲୋକଙ୍କର ମିଳନ ସ୍ଥାନ । ସମସ୍ତେ ମଜୁରିଆ ହେଲେ ବି ସମସ୍ତଙ୍କର ଚରିତ୍ର ସ୍ୱଭାବ ସମାନ ନୁହେଁ । ଅବସ୍ଥା ମଧ୍ୟ ସମାନ ନୁହେ । ଭଲ ମଣିଷର ପାଖେ ପାଖେ ଚୋର ତସ୍କର, ଧପ୍ପାବାଜ, ମଦ୍ୟପ ଓ ଲମ୍ପଟଙ୍କର ଅଭାବ ନାହିଁ । କିଏ ଭଲ କିଏ ମନ୍ଦ ସହଜରେ ବାରି ହୁଏ ନାହିଁ । ଟିକିଏ ସୁବିଧା ପାଇଲେ ଅଜଣା ତସ୍କର କାହାର ସର୍ବସ୍ୱ ଅପହରଣ କରି ନେଲାଣି । ପଡ଼େ କାନ୍ଦ ବୋବାଳି ।

ଛୋଟ ଛୋଟ ଚୋର ସବୁଦିନେ ଲାଗି ରହିଥିଲା । ପୋଲିସ ଥାନା ସାତ ମାଇଲ ଦୂରରେ, ଇତ୍ତଲା ଦେବାକୁ ଗଲେ ଦୁଇ ଦିନ ନଷ୍ଟ । ବୋଟ୍ ଉପରେ

Digitized by PPRACHIN, SOA

ନଳିତା ବଢ଼ା ପରି, ବ୍ରାହ୍ମଣ ଭୋଜନ ସଙ୍ଗେ ଦଢାକ ପରି, ରୋଗ ସଙ୍ଗକୁ ମଜୁରି ନଷ୍ଟ ! କେତେ ଲେଖାପଢ଼ି କରି, ହାକିମମାନଙ୍କ ପାଖକୁ ଧାଁଧପଡ଼ କରି, ଅସ୍ଥାୟୀ ଫାଣ୍ଡିଟିଏ ସେ ଖୋଲାଇ ପାରିଛୁ । ରୋଗର ମାତ୍ରା କମିଛୁ ସତ, ହେଲେ, ତା କୁଡ଼ଆରୁ ଢେର ଥର ରୋଗ ହେଲାଣି । କାହାର ସର୍ବସ୍ୱ ଯାଇଛୁ କି' କଣ—ସେଇଥି ପାଇଁ କାନ୍ଦବୋ ାଳି ପାଟିତୁଣ୍ଡ ।

କେଜାଣିବା, ମଡ଼ର ଫେଶ୍ ହୋଇଛୁ । ମଦର ଦଶାରେ କଏ ନେଇଛୁ କାହାର ପ୍ରାଣ ।

ଅପମୃତ୍ୟୁ ନୁହେଁ ତ ? ହଇଜା, ବସନ୍ତ, ସାପକାମୁଡ଼ା, ବାଘଖିଆ ! ଏସବୁ ବି ବେଳେ ବେଳେ ଘଟେ । ହାକିମମାନେ, ପୁଣି କାନ୍ତ୍ରାକ୍ଟିମାନେ, ଅଇଦରକୁ ବାଇଗଣ ପକାଇଲା ପରି, କେବେ କେମିତି ଔଷଧ ବାଣ୍ଟନ୍ତି ରୋଗ ନ ହେବାକୁ । ସମସ୍ତଙ୍କ ସଙ୍ଗେ ଯୁଝିକରି ଶେଷକୁ ବଜ୍ରବାହୁ ଅସ୍ଥାୟୀ ଡାକ୍ତରଖାନାଟିଏ ଖୋଲାଇବାରେ ସଫଳ ହେଲା । ମଲା କି କଏ ହଇଜାରେ ?

ଯେତେ ଚେଷ୍ଟା କଲେ ମଧ୍ୟ ଏମାନଙ୍କର ଅବସ୍ଥା ସୁଧାରି ହେଉନାହିଁ । ସବୁବେଳେ ଅଭାବ । ଅଭାବ ପାଇଁ ସ୍ୱଭାବ ନଷ୍ଟ । ସମସ୍ତେ ପ୍ରାୟ ମୂର୍ଖ, ଅପାଠୁଆ । କାମ କରି ମଧ୍ୟ କାମର ପରିମାଣ ପାଇଁ ମୂଲ ପାଉ ନାହାନ୍ତି । ଯେଉଁମାନେ କେବଳ ମୂଲ ଲାଗି ମଜୁରି ନେଉଛନ୍ତି, ସେମାନଙ୍କ କଥା ସ୍ୱତନ୍ତ୍ର; ଯେଉଁମାନେ ଏକାଠି ହୋଇ ଦଳ ବାନ୍ଧି ପରିଶ୍ରମ କରି ମାଟିକାମ କରି ମାପ ଅନୁସାରେ ପଇସା ନେଉଛନ୍ତି, ସେମାନେ ମାପଚୁପର ହିସାବ ଭିତରେ ପଶିପାରୁ ନାହାନ୍ତି ।

ମୂଲିଆମାନଙ୍କୁ ଏକାଠି ଭେଟାଇ ସେ ଗୋଟିଏ ଶ୍ରମିକ-ସମିତି ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲା । ସମବାୟ ବିଭାଗର କର୍ମଚାରୀ ଆସି ମନପ୍ରାଣ ଦେଇ ଲାଗି ପଡ଼ିଥିଲେ । ଉଦ୍ଦେଶ୍ୟ ହେଲା ଯେ କେତେଗୁଡ଼ିଏ ଗ୍ରୁପ ଗ୍ରୁପ ସମିତି କରି ସମିତି ନାମରେ କର୍ମର ଦାୟିତ୍ୱ ନେବେ; ତା' ହେଲେ ନିଜ ପରିଶ୍ରମ ପାଇଁ ଉପଯୁକ୍ତ ମଜୁରି ପାଇ ପାରିବେ ! ମଝିରେ ଥିବା ଫାଇମରା ଠିକାଦାରଙ୍କ କବଳରୁ ରକ୍ଷା ମିଳିବ । ସମସ୍ତଙ୍କର ସହାନୁଭୂତି ଥିଲେ ମଧ୍ୟ ଉଦ୍ଦେଶ୍ୟ ସଫଳ ହୋଇ ପାରିଲା ନାହିଁ ।

କାମ ଚଳାଇବାକୁ ସଚ୍ଚୋଟ ଓ ଶିକ୍ଷିତ କର୍ମକର୍ତ୍ତାମାନଙ୍କର ଅଭାବ ହେଲା । ପ୍ରଥମେ କାମ କରାଇ ମୂଲଦେବାକୁ ଧନର ପ୍ରଶ୍ନ ପାହାଡ଼ ପରି ଆଗରେ ଠିଆ ହେଲା । ଯେଉଁ କେତେଜଣ ଉତ୍ସାହୀ ମୂଲିଆ ଆଗେଇ ଆସିଥିଲେ, ସେମାନଙ୍କ ଭିତରୁ ଅନେକଙ୍କୁ କାନ୍ତ୍ରାକ୍ଟିମାନେ ଅଧିକ ମୂଲଦେଇ ହାତ କରିନେଲେ । ବାକି କେତେକଙ୍କୁ ଏଣ୍ଡୁ ତେଣ୍ଡୁ ଦୋଷ ଦେଖାଇ କାମରୁ ବାହାର କରି ଦେଉଥିଲେ । ବଜ୍ରବାହୁର ଧମକରେ ସେ ସାହସ ସେମାନେ କରିପାରିଲେ ନାହିଁ ସିନା, ସମିତି

Digitized by PPRACHIN, SOA

ପ୍ରତିଷ୍ଠିତ ହୋଇ ପାରନ୍ତି ନାହିଁ। ଫଳତଃ ବଡ଼ କାଣ୍ଟ୍ରାକ୍ଟରମାନଙ୍କ ତଳେ ପେଟି-କାଣ୍ଟ୍ରାକ୍ଟ ଓ ପେଟିଙ୍କ ତଳେ ମୂଲିଆ କାମ କରି ମଜୁରି ନେଲେ ।

କେତେ ଲଢ଼ାଲଢ଼ି ପରେ ପେଟି-କାଣ୍ଟ୍ରାକ୍ଟିଙ୍କ ପରିବର୍ତ୍ତରେ କାଣ୍ଟ୍ରାକ୍ଟିଙ୍କ ତଳେ ଦଳଦଳ ହୋଇ ମୂଲିଆ ଗ୍ରେଡ଼ ଗ୍ରେଡ଼ କାମ ଆଦରି ନେଉଛନ୍ତି । ମାପ କରେଇ କାଣ୍ଟ୍ରାକ୍ଟିମାନଙ୍କଠାରୁ ଏକାଠି ପଇସା ଆଣି ନିଜ ନିଜ ମଧ୍ୟରେ ବାଣ୍ଟି ନେଉଛନ୍ତି । ଅବଶ୍ୟ ନିତ ମଜୁରିଠୁଁ ଅଧିକ ମିଳୁଛି, ତେବେ ସେ କାହିଁକୁ ପାଏ । ପେଟପାଟଣା ଚଳେଇ ଘରି ପଇସା କେହି ଭବିଷ୍ୟତ ପାଇଁ ସଞ୍ଚୟ ପାରୁ ନାହିଁ ।

ମାପ ନେଇଙ୍ଗା ପରେ କାମ ସରିବ । ସେଇଠୁ ମୂଲିଆ ଦଳ ଗ୍ଲିବେ ଅନ୍ୟ କାମର ଅନ୍ୱେଷଣରେ । ରୋଗ, ଉପାସ, ଶୋଗ, ନର୍ଯ୍ୟାତନା, ମରଣ । କୁଟୁମ୍ବ ଭାଙ୍ଗିବ । କିଏ କୁଆଡ଼େ ଯିବେ । କାହାରି ଖବର କେହି ରଖିବେ ନାହିଁ । ଅସ୍ଥାୟୀ ପୋଷ୍ଟ-ଅଫିସ୍ ମଧ୍ୟ ଉଠିଯିବ ଏଠୁଁ । ଏ ସ୍ଥାନରେ ଧନ-ଧାନ୍ୟ ଭରପୁର ହେବ ସତ; ଯେଉଁମାନେ ଲହୁ ଲୁହ ଓ ସ୍ୱେଦବାଷ୍ପ ତା'ର ଅନ୍ତୁର ଅପନ୍ତ୍ରା ଜମିକୁ ସୁନା ଫଳିବାର ଉପଯୁକ୍ତ କରିବେ, ସେମାନେ ଯାଇ କିଏ କେଉଁଠି ଥିବେ ।

ଦୁଇ ଦିନର ସଂସାର ହେଉ ପଛେ ଏ ଅରଣ୍ୟସ୍ଥଳୀ, ମଣିଷକୁ ମଣିଷ ପରି ଚଳିବାକୁ ସେ ପ୍ରେରଣା ଦେବାକୁ ଚେଷ୍ଟା କରିଛି । ପ୍ରତି ପଡ଼ାରେ ପଡ଼ାରକ୍ଷୀ ଦଳ । ଆପଦ-ବିପଦ ଓ ରୋଗ-ବୈରାଗରେ ସାହାଯ୍ୟ କରିବାକୁ ସେବକ ସଙ୍ଘ । କାଣ୍ଟ୍ରାକ୍ଟି ଓ ହାକିମମାନଙ୍କ ଜୁଲମ୍‌ର ପ୍ରତିବାଦ ଓ ପ୍ରତିରୋଧ କରିବାକୁ ମୁଖିଆ-ସମିତି । ହାଡ଼ଭଙ୍ଗା ପରିଶ୍ରମ ପରେ ଆମୋଦ-ପ୍ରମୋଦ ପାଇଁ ପ୍ରତି ପଡ଼ାରେ ସଞ୍ଜ ପରେ ଗୀତ, ନାଚ, ବାଦ୍ୟ । ଯାହାକୁ ଯାହା ଆସେ । ଭୂୟାଁ ପଡ଼ାରେ ଧାଙ୍ଗଡ଼ୀ ନାଚ, ଖଡ଼ିଆ ପଡ଼ାରେ ତାଲ-ଖାଇ, ଓଡ଼-ପଡ଼ାରେ ସୁଆଙ୍ଗ, ଆଉ କେଉଁ ପଡ଼ାରେ ଖଞ୍ଜଣିମାଡ଼, କିନାଥ ମେଳା, ଭାଗବତ ବୋଲି !

ସମସ୍ତଙ୍କ ସଙ୍ଗେ ସେ ମିଶେ । ସବୁ ଦଳ, ସଙ୍ଘ, ସମିତି ଓ ମେଳାରେ ଯୋଗଦିଏ । ଭଲମନ୍ଦ ବିଚାର କରେ । ଭଲ କଥା ଶିଖାଏ । ସବୁ ପ୍ରକାର ଆନନ୍ଦରେ ଭାଗ ନିଏ । ସ୍ତ୍ରୀଲୋକମାନେ ସମସ୍ତେ ତା'ର ମା, ମାଉସୀ, ଭଉଣୀ । ସ୍ନେହ କରେ, ସ୍ନେହ ପାଏ । ସେବା କରେ, ସେବା ପାଏ । ସମସ୍ତଙ୍କର ଓଜର ଆପତ୍ତି ତାଆରି ପାଖରେ । ସେମାନେ ଜାଣନ୍ତି, ବଜ୍ରବାହୁକୁ କଥା କହିଲେ ସେ ତଳେ ପକାଏ ନାହିଁ । ସେ ମନ କଲେ ସବୁ କରେଇଦେଇ ପାରେ । ଗୁମାସ୍ତା, କାଣ୍ଟ୍ରାକ୍ଟି କି ହାକିମମାନେ ତା' କଥା ଭାଙ୍ଗିବାକୁ ସାହସ କରନ୍ତି ନାହିଁ ।

Digitized by PPRACHIN, SOA

ବଜ୍ରବାହୁ ବି ମୂଲିଆ । ତା'ର ଦଳଟି ଧରି ସେ ସକାଳ ସାତଟାରୁ ବାରଟା ପୁଣି ତିନଟାରୁ ସନ୍ଧ୍ୟା ଛଅଟା ଯାଏ କାମ କରେ । କାମ କରାଏ । ଆଳସ୍ୟରେ କ୍ଷଣେ ସମୟ କଟାଏ ନାହିଁ । ତା'ଦଳର କାହାରିକୁ ବୃଥାରେ ସମୟ ନଷ୍ଟ କରିବାକୁ ଛାଡ଼ିଦିଏ ନାହିଁ । କାମର ପରିମାଣ ଅଧିକ ହୁଏ । ମୂଲର ହାର୍ ନିତି-ମୂଲିଆର ମଜୁରିର ଦୁଇ ଗୁଣ ହୁଏ । ମାପ୍ ଚୂପ୍‌ରେ କି ହିସାବରେ କେହି ଠକି ଦେବାକୁ ସାହସ କରନ୍ତି ନାହିଁ ।

ମୂଲିଆଙ୍କ ପାଇଁ ନିର୍ଭୟରେ କହିବାକୁ ସେ ଆଗ । କାନ୍ତ୍ରାକ୍ଟରମାନେ ଓ ସେମାନଙ୍କର ଗୁମାସ୍ତାମାନେ ତା'କୁ ଘୃଣା କରନ୍ତି । କାର୍ଯ୍ୟରୁ ଅନ୍ତର କରି ପାରନ୍ତି ନାହିଁ । ମନରେ ଭୟ । ସେ କହିଲେ ସବୁ ମୂଲିଆ କାମ ଛାଡ଼ି ବସିବେ ।

ହାକିମମାନେ ପ୍ରଥମେ ବଜ୍ରବାହୁକୁ ଉଚ୍ଛା ମୂଲିଆଟାଏ ବୋଲି ଦୂରେଇ ଦେଉଥିଲେ । ତା'ର ତୀକ୍ଷ୍ଣ ବୁଦ୍ଧି, କଥା କହିବାରେ ଭଦ୍ରତା, ଚତୁରତା ଓ ନମ୍ରତା ଦେଖି ସେ କିଏ ବୋଲି ସନ୍ଦେହରେ ପଡ଼ିଥିଲେ । ଅନୁସନ୍ଧାନ କରି ଜାଣିଲେ—ବଜ୍ରବାହୁ ରଣଗଡ଼ର ଜମିଦାରପୁତ୍ର, ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଉପାଧିଧାରୀ ।

ବଜ୍ରବାହୁ ନିଜକୁ ଲୁଚାଇ ରଖି ନାହିଁ । ନିଜର ବଂଶମର୍ଯ୍ୟାଦା କି ବିଦ୍ୟାବୁଦ୍ଧିର ଅହମିକା ତା'ର ନାହିଁ । ଯିଏ ଆଗ୍ରହୀ ହୋଇ ପଚାରୁଛି, ସେ ଉତ୍ତର ଦେଉଛି । କାହିଁକି ସେ ମୂଲିଆ ହୋଇଛି, ଏ ପ୍ରଶ୍ନର ଉତ୍ତର ସେ କାହାକୁ ଦେଇ ନାହିଁ ।

ରଣଗଡ଼ର ଜମିଦାର ପୁତ୍ର ମୂଲିଆ ହୋଇଛି କାହିଁକି ? ଅଗ୍ରହୀ କର୍ମଗୃଧ୍ରମାନେ ଅନୁସନ୍ଧାନ କରିଛନ୍ତି । ପୋଲିସ୍ ମଧ୍ୟ ଗୁପ୍ତ ତଦନ୍ତ କରିବାକୁ ପଛେଇ ନାହିଁ । ସେ ଖୁଣୀ, ଚୋର ଦଗାବାଜ୍ କି ବିଫଳ ପ୍ରେମିକ ନୁହେଁ । ସେ କାହାର ଗୁପ୍ତଚର ନୁହେ କି କୌଣସି କାରଣରୁ ତ୍ୟଜ୍ୟପୁତ୍ର ନୁହେ । ସେ କର୍ମୀ ! ସେମାନେ ଏତିକି ଜାଣି ପାରିଛନ୍ତି । ଯାହା ପାଖକୁ ଗଲେ ସେ ଚଉକି ବଢ଼ାଇଦିଏ । ସମ୍ମାନ ଦେଖାଏ । ବଜ୍ରବାହୁ ହିତାଣ କରେ ନାହିଁ । ଯେତିକି ଲୋଡ଼ା ସେତିକି ସେ କଥାଭାଷା କରେ । ଫେରିଆସେ ସେ ମୂଲିଆ ଦଳ ଭିତରକୁ । ଆୟୁଧ ଧରି ମାଟି ପଥର ସଙ୍ଗେ ଲଢ଼ିବାକୁ ।

ସେମାନେ ଜାଣନ୍ତି, ବଜ୍ରବାହୁ କାହାର ଅନିଷ୍ଟ କରିବାକୁ ଚେଷ୍ଟା କରେ ନାହିଁ । କାହାର ବିରୁଦ୍ଧରେ ସ୍ୱନାମୀ ମିଛ-ନାମୀ ପତ୍ର ଲେଖେ ନାହିଁ । ମୂଲିଆଙ୍କ ପ୍ରତି ଅନ୍ୟାୟ ହେଲେ ସେ କହିବୋଲି ଅଭିଯୋଗ କରେ । କାର୍ଯ୍ୟ ହାସଲ କରେ ।

ସେ ଗୋଟାଏ ଭୟ । ତା'ର ଦୁଇଟି ଆଖି ନୁହେ, ସତେ ହଜାର ଆଖି । ସେଇ ଆଖିରେ ସେ ସବୁ ଦେଖୁଛି । ସମସ୍ତଙ୍କର ଭଲ ମନ୍ଦ ନୀତି ଅନୀତି ସବୁ ଜାଣୁଛି । ବେଳେବେଳେ ସତର୍କ କରୁଛି । ଆବଶ୍ୟକ ପଡ଼ିଲେ ଧମକ୍ ଦେଉଛି ।

ଦିନ ଅବ ଶ୍ରେଷ୍ଠ ହେଲେ ମଧ୍ୟ ସେ ବିରକ୍ତ ହୋଇ ସ୍ଥାନ ଛାଡ଼ି ଚାଲି ଯାଉ ନାହିଁ । ତା'ର ଯିବା ହିଁ ମଙ୍ଗଳ । ତା'ର ଦୁର୍ବଳତା ଖୋଜିବାକୁ ସ୍ୱାର୍ଥାନ୍ୱେଷୀ କେତେ ଚେଷ୍ଟା କରି ବିଫଳ ହୋଇଛନ୍ତି । କୌଣସି ପ୍ରକାର ମକଦ୍ଦମାରେ ସଂପୃକ୍ତ କରିବାର

Digitized by PPRACHIN, SOA

ଉପାୟ ମଧ୍ୟ ଖୋଜୁଛନ୍ତି । ସେଥିପାଇଁ ପ୍ରଚୁର ଧନ ବ୍ୟୟ କରୁଛନ୍ତି । ସବୁ ହୋଇଛି ବିଫଳ । ସେଇମାନେ ପୁଣି ଧରାପଡ଼ୁଛନ୍ତି । ଜଳେ ଜେଲ୍‌ର ଘାଣିଟାଣୁଛନ୍ତି ।

ବଜ୍ରବାହୁ ସେମାନଙ୍କୁ ଭୟ କରେ ନାହିଁ ।

ଭୟ କରେ ଫୁଲଦାନୀକୁ !

ଫୁଲଦାନୀ ଘାତକ କବାଟରେ ଇଞ୍ଜିର ବାଡ଼େଇ ଡକା ଗ୍ରୁଡ଼ୁଛି—ଖୋଲ୍ ଖୋଲ୍, କବାଟ ଖୋଲ୍ ବାବୁ, କବାଟ ଖୋଲ୍ । କେତେ ଖରା ହେଲାଣି । ଶୋଇଥିବ କି ?

ଫୁଲଦାନୀ ଡାକୁଛି !

ବଜ୍ରବାହୁର ମୁହଁ ବିକୃତ ହେଲା । ଘୃଣାରେ ନାକ ପୁଡ଼ା ଫୁଲି ଫୁଲି ଉଠିଲା । ଫୁଲଦାନୀ ଆସିଛି, ଯିଏ ନିନ୍ଦା ଅପମାନ ଓ କଳଙ୍କର ବୋଝ ମୁଣ୍ଡରେ ବୋହି, ମୁହଁ ସଳଖ କରି ହସି ହସି ଦୁନିଆର ଦାଣ୍ଡରେ ବାଟ ଚାଲୁଛି । ଯାହାର ପ୍ରେମର ପାରାବାରରେ ସନ୍ତରଣ କରିବାକୁ ହାକିମହୁକୁମା, କାନ୍ତ୍ରାଟି ଓ ମୁଲିଆ ସମସ୍ତେ ଆଗେଇ ଆସନ୍ତି । ସ୍ଥିର ସୁନୀଳ ସାଗରକୁ ମୁଗ୍ଧ, ଆଶାରଞ୍ଜିତ, ସବୁ-ସମର୍ପିଲା ଆଖିରେ ଅନାଇଁ ରହନ୍ତି । ଆଗେଇ ପାରନ୍ତି ନାହିଁ । ହାତ ଗୋଟାଇଲେ ତାର ସ୍ଥିରତା ଭାଙ୍ଗେ । ସେ ଗର୍ଜି ଉଠେ । ତୋଫାନରେ ଲହଡ଼ୀ ଉଠିଲା ପରି ତାର ପ୍ରେମର ପାରାବାରରେ ଲହଡ଼ୀ ଉଠେ । ସେ ଭୟଙ୍କର ହୁଏ । ମୁଗ୍ଧ ପ୍ରେମିକ କାହିଁ କେତେ ଦୂରରେ କଚ୍ଛଡ଼ା ହୋଇ ପଡ଼େ ।

ଫୁଲଦାନୀ ସୁନ୍ଦର, ସବଳ ଓ କର୍ମିଷ୍ଠ । ଅଳସରେ ସେ ବେଳ କଟାଏ ନାହିଁ । ରୂପ ବା ଦେହର ଶକ୍ତିର ଗର୍ବ ସେ କରେ ନାହିଁ । ସମସ୍ତେ ଜାଣନ୍ତି, ତା'ର ବୟସ ଅଛି, ଦେହରେ ଦୁଇଟା ପୁରୁଷର ଶକ୍ତି ଅଛି । ଆଉ ସେଇ ଦେହଟାର ରଙ୍ଗ ଦୁଧରେ ହଳଦୀ ମିଶାଇଲା ପରି । ଅଳ୍ପ ଲମ୍ବ ମୁହଁଟିରେ ଢଳ ଢଳ ମନଓଟରା ଆଖି ଦୁଇଟା । ସରୁ ସରୁ ବାଙ୍କୁଲି ଜହ୍ନ ପରି ଭ୍ରୂଲତା । ଆଖି ଲାଖେ ସେଇଠି ।

ଫୁଲଦାନୀର ଜୀବନ-ଇତିହାସ କାହାରିକୁ ଅଛପା ନାହିଁ । କି ସ୍ତ୍ରୀ, ପୁରୁଷ ତା'ର ଇତିହାସ ମୁହଁରୁ ମୁହଁ ଡେଇଁ ଚାଲିଛି । ଅତି ଦରିଦ୍ର ରାଜପୁତ ଘରର ଝିଅ ସେ । ହେଉ ପାଇଲା ଦିନୁଁ ରାଜନବରରେ ବଢ଼ି ଆସିଥିଲା । ଦରିଦ୍ର ପିତାମାତା ରାଜାଙ୍କର ଦାସଦାସୀ ରୂପେ କାର୍ଯ୍ୟ କରୁଥିଲେ । ଆଜୀବନ କର୍ମ କରି ମଧ୍ୟ ସେମାନଙ୍କର ଦରଭଙ୍ଗା ଘର କେବେ ସଜଡ଼ା ହୋଇ ପାରି ନ ଥିଲା । ଆବଶ୍ୟକ ମଧ୍ୟ ନ ଥିଲା । ରାଜନବରରେ ବେଳ କଟେ । ଚିରଦିନ ବେଳ ସେମିତି କଟିବ ବୋଲି ସେମାନେ ଆଶା କରିଥିଲେ । ଅଭାବ କ'ଣ ଜାଣି ନ ଥିଲେ । ବାହାର ଲୋକେ ପିଲାଟି ଦିନରୁ ଫୁଲଦାନୀକୁ ଜେମା ବୋଲି ଡକାଉଥିଲେ ।

Digitized by PPRACHIN, SOA

ଦଶ ପୂରି ଏଗାର ଚାଲିଲା ବେଳକୁ ମଫସଲରେ ଥିଲାବେଳେ ସୁନ୍ଦର ସବଳ ପାଠୁଆ ପିଲାଟି ସଙ୍ଗରେ ତା'ର ବାହାଘର ହେଲା । ସବୁ ଖରଚ ରଜାଘର ବହନ କଲେ । ଫୁଲଦାନୀ ଅଖିଦୁରୁଶିଆ ହେଲା । ନିଜେ ସେ ଭଲମନ୍ଦ ଜାଣିବା ପୂର୍ବରୁ ତା'ର ସୁନ୍ଦର ରୂପ, ସବଳ ଦେହ, ହସକୌତୁକ, ଝିଣାଝିଣା କଣ୍ଠକୁ ସମସ୍ତେ ଆଦର କଲେ । ଫୁଲଦାନୀ ହେଲା ସମସ୍ତଙ୍କର ସ୍ନେହର ପାତ୍ର । ଯୌବନ କେବେ ଆସିଲା, ସେ ଜାଣେ ନାହିଁ । ଶଶୁର ଘର ତା'କୁ ନେବାକୁ ଆସିଲାରୁ ସେ ଅଡ଼ି ବସିଲା — ଯିବ ନାହିଁ । ମଫସଲ ଗ୍ରାମରେ ଦୁଃଖ କଷ୍ଟରେ ଅଧପାଠୁଆ ମୂଲିଆଟା ସଙ୍ଗରେ ଚଳିପାରିବ ନାହିଁ । ବାପ ମା ବାଧ କଲେ ନାହିଁ । ବୟସ ଆଉ ଟିକେ ଅଧିକ ହେଲେ ବଳେ ସେ ମଙ୍ଗିବ, ଏ ବିଶ୍ୱାସ ତାଙ୍କର ଥିଲା ।

ରାଜ୍ୟ ହରାଇ ରାଜପରିବାର ଚାଲିଗଲେ କଲିକତା । ସ୍ୱର୍ଣ୍ଣ ଯୁଗର ସମୃଦ୍ଧ ଛାଡ଼ି ରାଜ୍ୟ ଓ ଲୋକଙ୍କ ପାଖରୁ ଦୂରେଇ ଗଲେ । ରାଜନବରରୁ ସତେ କି ଜୀବନ ଚାଲିଗଲା, ଲକ୍ଷ୍ମୀ ଛାଡ଼ିଗଲେ । କଣ୍ଢେଇ ଖୋଳ ପରି ରାଜପ୍ରାସାଦଟା ପଡ଼ିରହିଲା । ରାଜାଙ୍କର ବା ଅଭାବ କ'ଣ ? ବିନା ପରିଶ୍ରମ, ବିନା ଦାୟିତ୍ୱ ଓ ବିନା ଖର୍ଚ୍ଚରେ ପ୍ରିଭିପର୍ସ ପାଉଛନ୍ତି । ରାଜ୍ୟ ଭିତରେ ଆଉ କାହିଁକି ନିଜ ଘରେ ଓ ଧନେ ଯେଉଁମାନେ ଆଜ୍ଞା, ମଣିମା ବୋଲି କରପତ୍ର ଯୋଡ଼ୁଥିଲେ, ସେମାନଙ୍କ ମଧ୍ୟରେ କୁଣିଆ କି ଅପରିଚିତ ଆଗନ୍ତୁକ ହୋଇ ରହିବେ ? ଦୂରକୁ, ଦୂରକୁ ଚାଲିଯିବା ହିଁ ସମ୍ମାନପ୍ରଦ — କଲିକତା, ଦିଲ୍ଲୀ, ମାନ୍ଦ୍ରାଜ, ବିଶାଖାପାଟଣା !

ଯେଉଁମାନେ ଆଶ୍ରିତ ହୋଇ ରହିଥିଲେ, ସେମାନେ ଦେଖିଲେ ଛନ୍ଦଭଙ୍ଗ । ରାଜନବର ଆଡ଼କୁ ଅନାଇଁଲେ ଆଖିରୁ ଲୋତକ ଝରେ । ଦୀର୍ଘଶ୍ୱାସ ଛୁଟେ । ମହୁଫେଣାଟା ସେମିତି ରହିଛି, ଜଳ ଜଳ କରି ଚାହିଁଛି । ମହୁ ନାହିଁ !

ରୂପ ଓ ଯୌବନର ପୂର୍ଣ୍ଣସମ୍ଭାର ନେଇ ପୁଉଳି ଜେମା ଫୁଲଦାନୀ ବାପର ଦରଭଙ୍ଗା ଘରେ ବସି ଦୀର୍ଘଶ୍ୱାସ ଛାଡ଼େ, ଭୂମିବାଡ଼ ନାହିଁ । ନିଜର ସଚଳ କିଛି ନାହିଁ । ବାପ ମା, ସାନ ସାନ ଭାଇ ବଢ଼ୁଛନ୍ତି, ସେ ନିଜେ ! ଚଳିବେ କିପରି ? ପଦାକୁ ଗୋଡ଼ କାଢ଼ିଲେ ଦୁନିଆ ଟାହିଟାପରି କରୁଛି — କି ଗୋ ଜେମା ଫୁଲଦାନୀ, କଲିକତା ଗଲ ନାହିଁ କି ? ଗୀତଟିଏ ବୋଲ ତ ଶୁଣିମା । ଗୋଡ଼ରେ ନୂପୁର ନାହିଁ, ତ'ମାନେ ଘୁଙ୍ଗୁର ବାନ୍ଧନ୍ତୁ !

ହେତୁ ପାଇଲା ଦିନୁ ଏ ସବୁ ସେ କରିଥିଲା । ତାଆରି ପରି ଆଉ କେତେ ସମବୟସୀ ଝିଅଙ୍କୁ ରାଜଦୁଆରରେ ଗୀତ, ନାଚ ଶିକ୍ଷା ଦିଆ ହୋଇଥିଲା । ସବୁଠୁ ସୁନ୍ଦର, ସବୁଠୁ ସରସ ହୁଏ ଫୁଲଦାନୀର ନାଚ । ସବୁଠୁ କଅଁଳ କୋକିଳଜଣା କଣ୍ଠ ଫୁଲଦାନୀର । ଜେମାଙ୍କର ସେ ସାଙ୍ଗ । ରାଜପୁତ୍ରଙ୍କର ଟଙ୍ଗ-ନାରୀ ଟିକି ପରିଚାରିକା । ବଡ଼ରାଣୀ ଓ ଆଉ ରାଣୀମାନଙ୍କର ସ୍ନେହର ପାତ୍ରୀ । ପ୍ରୌଢ଼ ରାଜା ମଧ୍ୟ ହସିଲା

Digitized by PPRACHIN, SOA

ଆଖିରେ ଅନାନ୍ତି । ତା'ର ରୂପ, ସ୍ୱାସ୍ଥ୍ୟ, ବେଶ ଓ ଗୁଣକୁ ପ୍ରଶଂସା କରି ମୁଣ୍ଡ ଥାପଡ଼ନ୍ତି, ପିଠି ଥାପଡ଼ନ୍ତି । ସମସ୍ତେ ତ ସେମିତି ଆହ୍ଲାଦ କରନ୍ତି ।

ବୟସ, ରୂପ ଓ ସ୍ୱାସ୍ଥ୍ୟ ବଢ଼ିବା ସଙ୍ଗେ ସଙ୍ଗେ ଆହ୍ଲାଦର ମାତ୍ରା ଧୀରେ ଧୀରେ ବଢ଼ିଥିଲା । ହାତର ଆହ୍ଲାଦ ମୁଣ୍ଡ ଓ ପିଠିର କଅଁଳ ସ୍ପର୍ଶରେ ଆବଦ୍ଧ ରହୁ ନ ଥିଲା । ବ୍ୟବଧାନ କମି କମି ଶୂନ୍ୟ ହୋଇଥିଲା । ସ୍ନେହ, ଅନୁମୋଦନ, ପ୍ରଶଂସା, ଉପହାର, ସମ୍ମାନ ବଢ଼ି ବଢ଼ି ଚାଲିଥିଲା । ଜ'ଣ ଜଣ କରି ସମସ୍ତଙ୍କ ପାଖରୁ ଏ ସବୁ ସେ ପାଏ । ସୁଖ, ଆନନ୍ଦ ଓ ବଡ଼ପଣରେ ନିଜ ଭିତରେ ନିଜେ ସେ ଫୁଲି ଫୁଲି ଉଠେ । ଦିନରାତି ମୁହୂର୍ତ୍ତିକ ପରି, କେଜାଣି ବା ଗୋଟାଏ ସୁନେଲି ସପନ ପରି କଟିଯାଏ ।

ସପନ ପରି ହିଁ କଟିଯାଇଛି ସମସ୍ତ । ପେଟର ଜ୍ୱାଳାରେ ସବୁ ସ୍ନେହ, ସବୁ ଆଦର ଓ ପ୍ରଶଂସାର ମୂଲ୍ୟ—ଗହଣା କେଇଖଣ୍ଡି ବିକା ସରିଛି । ଝଲଝଲକା ଶାଢ଼ୀ, ସେମିଜ୍, ବ୍ଲାଉଜ—ମଲ୍ଲମଣିଷର ଗୁଣ୍ଡଗଲା ପଦାର୍ଥ ପରି ସ୍ପୃଷ୍ଟ ଲଗାଏ ସିନା, ବ୍ୟବହାର କରିବାକୁ ସଙ୍କୋଚ ଲାଗେ । ଅସନା ଲାଗେ, ଭୟ ବି ଲାଗେ । ସେତକରୁ କେତେ ନାଚ-ଆଖଡ଼ାକୁ ବିକି ହେଲା । କେତେ ଉଇ ଖାଇଲା । ଅତି ସ୍ନେହରେ ଉପହାର ପାଇଥିଲା ଯେଉଁ କେଇଖଣ୍ଡି, ସାଇତି ରଖିବାକୁ ଯାହାକୁ ମନ ଡାକିଲା, ଅକାଳେ ସକାଳେ ଦେହରେ ଦେଲେ, ସତେ କି ଝଲବଲିଆ ଲାଗେ । ହଜି ଯାଇଥିବା ଆଗ୍ରହୀ ହାତଗୁଡ଼ାକ ଦେହର ମସୃଣତା ଅଣ୍ଟାଳି ପକାନ୍ତି ।

ରଜନବର ଭିତରେ ଯେଉଁ ଫୁଲଦାନୀର ବାସ ମହକୁ ଥିଲା, ସ୍ଥାନକାଳ-ପାତ୍ରର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସେ ଚହଟା ବାସ ଗଲା କୁଆଡ଼େ ? ଦୁନିଆଁ ଲୋକେ ଫୁଲଦାନୀକୁ ପିକଦାନୀ ସଙ୍ଗେ ସମାନ କଲେ । ଯେଉଁମାନେ ପ୍ରଶଂସା ଗାଉଥିଲେ, ସେମାନେ କଲେ ନିନ୍ଦା— । ହତାଶ ପ୍ରେମିକ । ଶାଶୁଶ୍ୱଶୁର ମଲେଣି । ସ୍ୱାମୀ ଅନ୍ୟ ବିବାହ କଲେଣି । ଘରକୁ ନେବାକୁ ମନା କରିଦେଲେ । କହିଲେ, କଣ୍ଟକଟା ପଠେଇ ଦିଅ । ଚାଷୀ-ମୂଲିଆ ସଂସାରରେ ରୂପ, ଗୀତ, ନାଚ, ମୁକ୍ତପ୍ରେମ ଲୋଡ଼ା ହୁଏ ନାହିଁ । ଲୋଡ଼ା କେବଳ କର୍ମ, ଆନୁଗତ୍ୟ, ମମତା ଓ ସର୍ବଂସହଣୀ ପଣ । ନାମ ନୁହେଁ, ମାନ । ପ୍ରେମ ଲୋଡ଼ା ହୁଏ ଜୀବନ ପାଇଁ ।

ଫୁଲଦାନୀ କାନ୍ଦିଥିଲା, ଅଭିମାନ କରିଥିଲା । ହେଲେ ଅଭିମାନର ଫଳ ହେଲା ଅବମାନନା—ଯିବ ନାହିଁ ତା' ଘରକୁ, ଯିବ ନାହିଁ; ବାପଭାଇ ମୂଲ ଲାଗୁଛନ୍ତି । ବୁଢ଼ୀମା ମୂଲ ଲାଗିବାକୁ ଯାଉଛନ୍ତି । ନ ଥିଲା ଘରର କେତେ ଝିଅ ବୋହୂ ତ ମୂଲ ଲାଗୁଛନ୍ତି । ସେ ବି ମୂଲ ଲାଗିବ । ଏବେ ବି ଯେଉଁମାନେ ଆଖିଠାର ମାରୁଛନ୍ତି, ଖଣ୍ଡିକାଣ ଶୁଣାଉଛନ୍ତି, ହାତୀ ଘୋଡ଼ା ଯାଚୁଛନ୍ତି, ସେମାନଙ୍କ ଆଖି ଆଗରେ ଦମଦମ ହୋଇ ସେ ଚାଲିଯିବ । ସେମାନେ ମଦଭରା ମଦଘଡ଼ାର ସେବକ । କୁକୁର ଦଳ । ପଛରେ ଧାଇଁବା ତାଙ୍କର ପ୍ରକୃତି । ଧାଇଁଥିବେ, ଭୁକୁଥିବେ, ଓଠ ଚାଟୁଥିବେ ।

Digitized by PPRACHIN, SOA

ଫୁଲଦାମୀ ସ୍କୁଲ ଲାଗିଛୁ । ବାପ ସଙ୍ଗେ ସଙ୍ଗେ ସବା ସାନ ଭାଇଟି ତା'ର ଟଳି ପଡ଼ୁଛୁ ! ବୁଢ଼ୀମା ଅପାରଗ ହେଲାଣି । କାମ କରିପାରୁ ନାହିଁ । ଯାହାକୁ ଦେଖିଲେ, ପାଖରେ ପାଇଲେ ଗୋଡ଼ହାତ ଧରି ବସାଏ । ରାଜନବରର, ସୁଖଦୁଃଖର କେତେ କଥା ଗପେ । ହସେ, କାନ୍ଦେ । ଅଗ୍ରାତକୁ ଝୁରିଝୁରି ସେ ବେଳ କଟାଏ । ସାନ ପୁଅ ବଳିଆ ବି ଅପା ଫୁଲଦାମୀ ସଙ୍ଗେ ସ୍କୁଲକୁ ଯାଏ । ସୁଖେ ଦୁଃଖେ ବେଳ କଟିଯାଏ ।

ସେମାନେ ବି କାମକରିବାକୁ ନାଳଖୋଳା ସ୍ଥାନକୁ ଆସିଥିଲେ । ଗ୍ରେଟ କୁଡ଼ିଆଟିରେ ମା, ଝିଅ ଓ ପୁଅ, ତିନୋଟି ମଣିଷଙ୍କର ରହଣି । କେତେ କୁଡ଼ିଆରେ କେତେ ଲୋକ ତ ରହୁଛନ୍ତି, କିନ୍ତୁ ଫୁଲଦାମୀର କୁଡ଼ିଆ ଉପରେ ସଭିଙ୍କର ଆଖି । ବାବୁଭାୟାଙ୍କଠାରୁ ଆରମ୍ଭ କରି କାନ୍ତରାଟି, ପେଟି-କାନ୍ତରାଟି ଓ ସହକର୍ମୀ ମୂଲିଆମାନେ ସମସ୍ତେ ଯେପରି ଏଇ ଗ୍ରେଟ କୁଟୀରର ଭଲମନ୍ଦ ଖବର ବୁଝିବାକୁ ବ୍ୟାକୁଳ ।

ସେମାନେ ଜାଣନ୍ତି, ଫୁଲଦାମୀ ନିଜକୁ ସୀତା, ସତୀ, ସାବିତ୍ରୀ ବୋଲି ପରିଚୟ ଦେବାକୁ ସୁଖ ପାଏ ନାହିଁ । ସେ ଯାହା, ସେ କାହାକୁ କହେ ନାହିଁ ଉପରେ ପଡ଼ି । ରୂପଲୋଭରେ ଯିଏ ବୁଲେଇ ଚାହେ କେବଳ ହାନ୍ତସନ୍ତ ହୁଏ ଓ ଓଠ ଘୁଟେ ସେ ତାକୁ ଦେଖି ହସେ । ମୁହଁ ଫେରାଏ । ଯିଏ ଅଗେଇ ଆସେ, ଉପରେ ପଡ଼ି ସ୍ନେହସମ୍ଭାଷଣ କରେ, ସେଇଠି ଫୁଲଦାମୀର ହସ ଲିଭେ, ଧୈର୍ଯ୍ୟ ଭାଙ୍ଗେ । ସେ ମୁହଁ ଖୋଲି ଦିଏ । ସ୍ଥାନ କାଳ କି ପାତ୍ର ସେ ଗଣେ ନାହିଁ । ସମସ୍ତଙ୍କୁ ଶୁଣାଇଁ ସେ ଆଖି ଟେକି କହେ, ଜାଣେ ରେ ଜାଣେ ତୋର ସ୍ନେହଦାନ । କେତେ ସ୍ନେହ କଥା ଶୁଣିଛୁ ରେ, କେତେ କେତେ ସ୍ନେହ ଅଙ୍ଗେ ନିଭେଇଛୁ । ସେତିକ ଥାଉ । ବୁଲେଇ ରହ ।

କାଲିଠୁ କେହି କେହି ଧନଦଉଲତ ଗୋଡ଼ ତଳେ ଅଜାଡ଼ି ଦେବାକୁ ବସନ୍ତି । ଫୁଲଦାମୀ ମୁହଁ ନେଫେଡ଼େ । କହେ, ମନ କେହି ଧନଦେଇ କିଣିପାରେ ନାହିଁ । ମନର ମୂଲ ମନ ଦେଇ ମନ କିଣିବାକୁ ବସିଲେ ବି ସେ ମନ ମୋ'ଠି ନାହିଁ ତ ! ପୋଡ଼ିଜଳି ଅଙ୍ଗାର ହୋଇଛି । ଆଉ କେଉଁଠି ଖୋଜ ।

ଦେହଟା ?

ସବଳ ସୁସ୍ଥ ରଖିଛି ପେଟ ପୋଷିବାକୁ । ବଂଚ ରହିବାକୁ । ପିଲଟିଦିନୁ ଏଇ ଦେହଟାକୁ କେତେ ଲୋକ ଆଦର କରିଛନ୍ତି । ବୁଢ଼ାରୁ ପିଲାଯାଏ, ରାଜାରୁ ଲମ୍ବଦାଢ଼ିଆ ବିଭୂତି ମଖା ଫକୀର ଯାଏ । ଶେଷକୁ ସମସ୍ତେ ମାରିଛନ୍ତି ନାତ । ଏ ଦେହଟା କାହାର ହୋଇନାହିଁ, କାହାର ହେବ ନାହିଁ । ମୋ'ଓରି ହୋଇ ଥାଉ ।

ବଳ ଦେଖାଉଛ ? ହାତ ଧରି ଟାଣୁଛ ?

ଏ ହାତଟା କାଠ ପଥର ଭାଙ୍ଗି ଶିଖିଛି । ମାଟି ତାଡ଼ୁଛି । ମଣିଷର ତଣ୍ଟି ବି ଚିପି ପାରୁଛି । ଦେଖିବ କରାମତ ?

Digitized by PPRACHIN, SOA

ଦେଖିଛନ୍ତି କେତେ କେତେ । ଫୁଲଦାନୀର ଦେହରେ ଦୁଇଟା ମଣିଷର ଶବ୍ଦ । ବାଳ କଢ଼ିବାକୁ ଆଗେଇ ଆସିଛନ୍ତି କ୍ରୁଆନ୍ । ଯେଉଁ ପଥରକୁ ସେମାନେ ଟଙ୍କେଇ ପାରନ୍ତି ନାହିଁ, ଫୁଲଦାନୀ ଅକ୍ଲେଶରେ ଟେକିପାରେ । ସ୍ଥାନଖର ବଲ୍ଲଅଷ୍ଟ ବ ସେ ସେମିତି ଛେନ୍ଧୁପିଃ। ମଣିଷର ଗଢ଼ିଛି । ତାହିଁ ତାହିଁଙ୍କ ପ୍ରାଣରୁ ବଳ ଭଲ ପାଆନ୍ତି । ବୁଢ଼ୀ ମା'ର ଦୁଇ ଆଖି ସେ ତାହିଁ ।

ବଜ୍ରବାହୁ ପାଖରେ ନଇଁପଡ଼େ ତା'ର ମନ । କାଏ କଅଣ ଖବର କହୁବ, ସେଥିନ ସେ ଚିନ୍ତା କରେ ନାହିଁ । ସମସ୍ତ ଅସମସ୍ତ ମାନେ ନାହିଁ । ଯେତେବେଳେ ତା'ର ଆଗ୍ରହ, ସେ ସୁବ୍ରତ ପାଖକୁ ଧାଇଁ ଆସେ । ବାଧା ଦେଲେ, ନ ମାନ ସେ ସ୍ୱର-ପାଇଟି କରିଦେଇ ଯାଏ । ଯେଉଁଠି ଯାହା ଦେଖିଥାଏ ବା ଶୁଣିଥାଏ ସବୁ ଗପେ । କହେ ପୁଣି ଲୋକନିନ୍ଦାକୁ ଡରୁଛ କି ?

ଲୋକ ନିନ୍ଦା ?

ମୋ' ପଛରେ ଗୋଡ଼େଇଥାଏ ବାବୁ, ସବୁ ନିନ୍ଦା, ସବୁ ଅପମାନ ମୁଁ ହଜମ କରିଛି । ସବୁ ଛସି ପାଇଛି ମୋ' ଭିତରେ । ମୁଁ ଉଆଁସ ରାତି ସଙ୍ଗେ ସଙ୍ଗାତ ବସିଛି ।

ତୋ' କଥା ମୁଁ ବୁଝିପାରୁ ନାହିଁ ଫୁଲଦାନୀ —

ଉଆଁସ ରାତିକୁ ସମସ୍ତେ ସେମାନେ ଘୃଣା କରନ୍ତି । ସମସ୍ତେ ସେଥିରେ ଛପିଯିବାକୁ ଚାହାନ୍ତି । ନିଜକୁ ବି ନିଜ ଆଖିରେ ଦେଖିବାକୁ ସେମାନଙ୍କୁ ଲାଜ ମାଡ଼େ ବାବୁ, ନ ଜାଣିଲା ପରି ସବୁ ଜାଣି ଆଖିବୁଜା ଆନନ୍ଦ ଅନୁଭବ କରିବାକୁ ସେମାନେ ଚାହାନ୍ତି । ଯାହା ଖୋଜନ୍ତି ନ ପାଇଲେ, ଉଆଁସ ରାତିରେ ଭୂତ, ପ୍ରେତ, ଡାହାଣୀ, ଚିରଗୁଣୀ, ବାଘ, ଭାଲୁ ଦେଖିଲେ ବୋଲି ରଟା'ନ୍ତି । ମୁଁ ଉଆଁସ ରାତି ।

ମୋ' ନାମରେ ସେମାନେ ଅପବାଦ ରଟାଉଛନ୍ତି ।

ମୁଁ ଜାଣେ ବାବୁ, କିନ୍ତୁ ଚନ୍ଦ୍ରମାରେ କଳଙ୍କ ଲଗାଇ ପାରିବ କିଏ ? ତମର ଟିକିଏ ଯତ୍ନ ନେବାକୁ ମୁଁ ଆସେ, ମୋତେ ମନା କର ନାହିଁ ।

ମୁଁ ଚନ୍ଦ୍ରମା ନୁହେଁ ଫୁଲଦାନୀ । ମୋ'ର ଦୁର୍ବଳତା ଥିଲା । ମୋର ଦୁର୍ବଳତା ଅଛି । ମୁଁ ରାଜବଂଶରେ ଜନ୍ମ ଲଭିଥିଲି । ଅପବାଦକୁ ମୋ'ର ଡର । ଯତ୍ନ ନେବାକୁ, ସେବା କରିବାକୁ ଏଠି ନିଃସହାୟଙ୍କର ଅଭାବ ନାହିଁ । ପାରିବୁ ସେମାନଙ୍କର ସେବା କରି ?

ପାରିବ, ଯାହା କହିବ କରିବ । ଗୋଟିଏ ମୋ'ର ସର୍ତ୍ତ ଅଛି ।

କି ସର୍ତ୍ତ ?

Digitized by PPRACHIN, SOA

ତମ ପାଖକୁ ଆସିବାକୁ ମତେ ମନ କରୁନାହିଁ । ତମର ଦୁର୍ବଳତା ମୁଁ ଢାକି ପାରିବ, ସେ ସାହସ ମୋ'ର ଅଛି । କିନ୍ତୁ ଲୋକନିନ୍ଦା ଓ ଅପବାଦକୁ ଅଟକାଇ ରଖିବାର ଶକ୍ତି ମୋ'ର ନାହିଁ । ମୋ' ପାଇଁ ଏତକ ଦୁଃଖ ସହିପାରିବ ବାବୁ ?

କାହିଁକି ମୁଁ ସହିବ ?

ଦୁଃଖୀ ଦରିଦ୍ରଙ୍କର ସେବା କରିବାକୁ, ଦୁଃଖ ଦୂର କରିବାକୁ ରାଜପୁତ୍ର ତମେ, ମୂଲିଆ ହୋଇଛ । ମୁଁ ଅତି ଦୁଃଖୀ । ମୁଁ କେବେ କାହାକୁ ସ୍ନେହ କରି ନ ଥିଲି—

ଫୁଲଦାମିର ଆଖିରେ ଲୁହ । ସୁବ୍ରତ ବିଚଳିତ ହୋଇଥିଲା ।

ଆଗରେ ଫୁଲଦାମି ।

ସୂର୍ଯ୍ୟର ଅସ୍ତଗାମୀ ଲୋହିତ କିରଣରେ ତା'ର ସୁନ୍ଦର ମୁହଁ ଝଲସି ଉଠୁଛି । ଗୋଡ଼ ତଳେ ଝଟଝଟ ହୋଇ ବହିଯାଉଛି ସର୍ପିଳ ଗତିରେ ଗିରିଝରଣା । ପଛରେ ସୁନୀଳ ପର୍ବତମାଳା, କଡ଼ରେ ଧୂସର ବନ୍ଧ । କେତେ ମୂଲିଆ ମାଟି ବୋଝ ମୁଣ୍ଡରେ ଧରି ବନ୍ଧ ଉପରକୁ ଚଢ଼ୁଛନ୍ତି । କେତେ ପୁଣି ଖୋଲା ଗାଣ୍ଡୁଆ ଧରି ଧୀରେ ଧୀରେ ଓହ୍ଲାଇ ଆସୁଛନ୍ତି । ସମସ୍ତେ କାର୍ଯ୍ୟବ୍ୟସ୍ତ ।

ଫୁଲଦାମିର ମୁଣ୍ଡରେ ମୁଚୁଳା ତଳେ ଚୂର୍ଣ୍ଣକୁନ୍ତଳ କପାଳ ଉପରକୁ ଓହ୍ଲାଇ ପଡ଼ୁଛି, ଦୋହଲି ଉଠୁଛି ଧୀର ପବନରେ । କପାଳରେ ସ୍ୱେଦବିନ୍ଦୁ । ହାତରେ ଖୋଲା ଗାଣ୍ଡୁଆ । ତଳ ଗାଣ୍ଡୁଆରେ ବଜ୍ରବାହୁ କଟା ମାଟି ପୂର୍ଣ୍ଣ କରିଛି । ହାତରେ କାଙ୍କ ଅଲଗା ରଖିଛି । ମାଟି ବୋଝ ଫୁଲଦାମିର ମୁଣ୍ଡ ଉପରକୁ ଟେକିଦେବାକୁ ସେ ପ୍ରସ୍ତୁତ ହୋଇଛି ।

ମୁହୂର୍ତ୍ତେ ସେ ଅନ୍ୟମନସ୍କ ହୋଇ ଠିଆ ହେଲା । ଫୁଲଦାମିର ମୂର୍ତ୍ତି ଉଭେଇ ଯାଇଛି । ଠିଆ ହୋଇଛି ଆହ୍ଲାଦ । କହି ଉଠୁଛି, ନଳଗଜ, ବିଚ୍ଛେଦ ହିଁ ଚରନ୍ତନ, ମିଳନ ନୁହେଁ । କହି ଉଠୁଛି, ଅପବାଦ ହିଁ ଅମର; ପ୍ରଶଂସା ନୁହେଁ । ରାଧାର ସମ୍ବଳ କେବଳ ଅପବାଦ !

ଆହ୍ଲାଦ ଅନ୍ତର୍ହିତ । ଆଗରେ ଠିଆ ହୋଇଛି ସୁନନ୍ଦା । ତା' ନ ଗୁଞ୍ଜୁଛି ଭାଇ, ଭାଇ, ଗଧ ଗଧ— !

ସମସ୍ତେ ସେମାନେ ଲୁଚି ଯାଇଛନ୍ତି । ପୁଣି ଆସି ଠିଆହେଲାଣି ଫୁଲଦାମି । ସେ ତ ଗୋଟିଏ ସୁନନ୍ଦା ! କହିଲା, ମୋତେ ଭାଇ ବୋଲି ଡାକିପାରିବୁ ଫୁଲଦାମି ?

ମୁଣ୍ଡ ହଲେଇ ଫୁଲଦାମି ନାହିଁ କଲା । ହସି ହସି କହିଲା, ମୋ'ର ଭାଇ ଅଛି । ମୋର ବାପ ଥିଲେ, ସେ ମରିଛନ୍ତି । ସ୍ୱାମୀ ଅଛନ୍ତି, ସେ ମୋତେ ପରିତ୍ୟାଗ କରିଛନ୍ତି । ବନ୍ଧୁବାନ୍ଧବ ଅନେକ ଥିଲେ ଓ ଅଛନ୍ତି । ଶତ୍ରୁ ତ ପଲ ପଲ । କେହି କେବେ ମୋ'ର ଅପବାଦରୁ ଭାଗ ନେବାକୁ ଚାହିଁ ନାହାନ୍ତି ! ସେତିକ ମୋ'ର ସମ୍ବଳ । ଯାହାକୁ ସ୍ନେହ କରେ, ତା'ର ସ୍ନେହ ପାଇବାକୁ ମୁଁ ଦାବି କରିବ

Digitized by PPRACHIN, SOA

ନାହିଁ । ଘୃଣାକଲେ ବି ମୋର ମନରେ ଦୁଃଖ ହେବ ନାହିଁ । କେବଳ ଏତିକି ମୁଁ ଲୋଡ଼େ—ମୋ'ର ଅପବାଦରୁ ସେ ଖସିଯିବେ, ଦୁଃଖ କରିବ ନାହିଁ, ଶୋଚନା କରିବ ନାହିଁ । ପାରିବ ବାବୁ ?

ବିଚାର ଏ ଝିଅଟି ! ରାଜନଅରରେ ବଢ଼ିଛୁ । ସବୁ ବିଦ୍ୟା ଶିଖିଛୁ । ପାଠ ପଢ଼ିଛୁ । ଶାସ୍ତ୍ର ପୁରାଣ, କାବ୍ୟ-କବିତା, ଗଳ୍ପ-ଉପନ୍ୟାସ କେତେ ପଢ଼ିଛୁ । କବିତା ଲେଖି ଜାଣେ; ମାଟି ବୋହିପାରେ, ପ୍ରାଣ ବୁଝି । ତାକୁ କାର୍ଯ୍ୟରେ ଲଗାଇ ପାରିଲେ ଲୋକଙ୍କର ଉପକାର କରିଯାଇ ପାରିବ । ଅପବାଦକୁ ଆପଣାର କଲେ କ୍ଷତି ନାହିଁ । ନିନ୍ଦା ବା ପ୍ରଶଂସାକୁ ଡର ନାହିଁ ।

ଫୁଲଦାନି, ତୋ'ର ସର୍ତ୍ତରେ ମୁଁ ରାଜି ହୋଇଛୁ ।

ସତେ, ସତେ ବାବୁ !

ଫୁଲଦାନୀର ଆଖିରୁ ଲୁହ ଦୁଇ ଧାର ଝରି ପଡ଼ିଲା । ହସରେ ପୁରି ଉଠିଲା ସୁନ୍ଦର ମୁହଁ । କହିଲା, ତମେ ଉଜ୍ଜ୍ୱଳ ଚନ୍ଦ୍ରମା ବାବୁ, ମୁଁ ଉଆଁସ ରାତି । ତମର ଦେହରେ ଯେଉଁ କଳଙ୍କ ଥାଏ ତ ସେ କଳଙ୍କ ବି ସୁନ୍ଦର । ଉଆଁସ ରାତି ଚନ୍ଦ୍ରମାକୁ ମଳିନ କରେ ନାହିଁ । ଉଜ୍ଜ୍ୱଳ କରେ । ଶୋଭାକାର କରେ । ନଜେ ସେ ହଜିଯାଏ ।

ମୁଁ ବି ଦୁର୍ବଳ ମଣିଷଟିଏ ଫୁଲଦାନି—

ଟେକିଦିଅ ମୋ' ମୁଣ୍ଡ ଉପରକୁ ସେ ମାଟି ବୋଝକୁ, ଅଛୁରି ମାଟି ସେଥିରେ ଭରି । ଦେଖିବ ବାବୁ ତମେ ଦୁର୍ବଳ କି ସବଳ । ସେମାନେ ମୋ'ର ଗୋଡ଼ ତଳେ ସୁନାରୂପାର ବୋଝ ଅଜାଡ଼ି ଦେବାକୁ ଲୁଚି ଲୁଚି ଆସନ୍ତି, ମୋ'ର ଦେହଟାକୁ କିଣିବାକୁ, ମୋତେ ଜନନୀ କରି ମନ ଭିତରେ ଆତ୍ମପ୍ରସାଦ ଲାଭ କରିବାକୁ । ପତ୍ନୀର ସମ୍ମାନ ଦେବାକୁ କି ଅପବାଦର ଭାଗୀ ହେବାକୁ ସେମାନେ ଡରନ୍ତି । ସେମାନଙ୍କର ସୁନାରୂପାକୁ ଗୋଡ଼ରେ ଠେଲି ଦେଇଛୁ । କାନ ଧରି ଶାସନ କରି ଦୁରେଇ ଦେଇଛୁ । ଟେକିଦିଅ ସେ ମାଟି ବୋଝକୁ, ଅପବାଦର ବୋଝ ମୁଁ ମୁଣ୍ଡରେ ବୋହି ବାଟ ଚାଲୁଥିଲି, ତା'ର ଭାଗ ତମେ ନିଅ, ତମେ ନିଅ । ମୋ'ର ସବୁ ସ୍ନେହ, ସବୁ ଆନୁଗତ୍ୟ ତମର ଗୋଡ଼ ତଳେ ଅଜାଡ଼ି ଦେବି । ତମର ସ୍ନେହ ମୋ'ର ଲୋଡ଼ା ନାହିଁ । ତମର ଆଦେଶ ମୋ'ର ଲୋଡ଼ା । କହ, ମୁଁ କ'ଣ କରିବି ।

ପାଗଳ ହେଲୁ କି ଫୁଲଦାନି ?

ନାହିଁ ବାବୁ, ଅକୂଳ ସମୁଦ୍ରରେ କୂଳ ପାଇଲି ।

ସ୍ୱ ବୃତ୍ତ ଫୁଲଦାନୀର ମୁଣ୍ଡ ଉପରକୁ ମାଟି ବୋଝ ଟେକି ଦେଇଥିଲା । ଆଖି ବୁଲାଇ ଚାହିଁଥିଲା—ମୂଲିଆ ଦଳ ସେମାନଙ୍କ ଆଡ଼କୁ କୌତୂହଳପୂର୍ଣ୍ଣ ଲୋଚନରେ ଅନାଇ ରହିଛନ୍ତି । ମୂଲିଆଣୀମାନେ ପରସ୍ପରର ଝରଣା ସେପାରି ଅକର୍ମ-ଶିଳା ଉପରେ ଠିଆ ହୋଇ ମୁହଁକୁ ଚାହିଁ ହସୁଛନ୍ତି । କାଳୁସିଂହ ସନ୍ଧ୍ୟାପାଳ ସିଂ—ମୁଣ୍ଡର ଠେକା କାଢ଼ି ହାଣ୍ଡିକୁଛୁ । ଆଖିରେ ଜଳୁଛନ୍ତି ଈର୍ଷାନଳ ।

Digitized by PPRACHIN, SOA

ତାଙ୍କ ଟେକ ମାଟି ହାଣିଲା ବେଳକୁ ସ୍ୱ ବ୍ରତର ହାତ ଅଶ ଉଠୁଛି । ଆନନ୍ଦର ଡାକ କାନରେ ବାଜୁଛି । କେଜାଣି କେତେ ଦୂରରୁ, ନଳସ୍ୱଚ୍ଛା ବଚ୍ଛେଦ ହିଁ ମନୋରମ, ଜୀବନ୍ତ, ଚିରନ୍ତନ ।

ଫୁଲଦାମା ଡାକଗ୍ରଡ଼ିଛି କୁଡ଼ିଆର ବାହାର ପାଖ, ବାବୁ, କବାଟ ଖୋଲ, ଖରା ପଡ଼ିଲାଣି, କେତେବେଳ ଯାଏ ଶୋଇବ । ଉଠ, କେଡ଼େ ଅଳସୁଆ ମ — ।

ସୁସନ୍ଧ୍ୟାର ପାଟି ସର ଶୁଭୁଯାଉଛି । ସୁସନ୍ଧ୍ୟା ଆଜି ମନେ ପଡ଼ୁଛି । ଫୁଲଦାମା ସୁସନ୍ଧ୍ୟା ନୁହେ । ସେ ଅତି ଅନୁଗତ । ଦଶଟି ବର୍ଷ ଭିତରେ ନିଜକୁ ସେ ନୂଆ କରି ଗଢ଼ିସାରିଛି । ବଜ୍ରବାହୁର ଶିକ୍ଷାରେ ସେ ହୋଇଛି ଗ୍ରାମସେବିକା । ଅସ୍ଥାୟୀ ପର୍ଣ୍ଣକୁଟୀରଗୁଡ଼ିକ ଅରଣ୍ୟ ଭିତରେ, ମେଞ୍ଚା ମେଞ୍ଚା ହୋଇ, ପଡ଼ା ପଡ଼ାରେ ବିଭକ୍ତ । ସେଗୁଡ଼ିକୁ ଗୋଟିଏ ଗୋଟିଏ ଶ୍ରେଷ୍ଠ ଗ୍ରାମ କୁହାଯାଇପାରେ । ପ୍ରତି ପଡ଼ାରେ ଗଢ଼ାହୋଇଛି ସେବିକାଦଳ । ଫୁଲଦାମା ସବୁ ସେବିକାଦଳର ସଭ୍ୟା । ସେଇ ବଜ୍ରବାହୁର ସହକର୍ମୀ ।

ଅଶିକ୍ଷିତ ବୋନ୍ଦ-ଝିଅଙ୍କୁ ସେ ପରିଷ୍କାର ପରିଚ୍ଛନ୍ନ ହେବାକୁ ଶିକ୍ଷାଦିଏ । ନିଜେ ସେ ଝାଡ଼ୁ ଧରେ । ଅନ୍ୟମାନଙ୍କୁ ଧରାଏ । ସମସ୍ତେ କେବଳ ନିଜ ନିଜର ଘରଦ୍ୱାର ସଫାକରି ସନ୍ତୁଷ୍ଟ ରହନ୍ତି ନାହିଁ । ପଡ଼ାର ରାସ୍ତା ଗଳି ସବୁ ସଫା କରନ୍ତି ! ସେଇ ବଜ୍ରବାହୁ ଓ ସେବକ ଦଳ ଏକାଠି ହୋଇ ମଇଳା ସବୁ ଦୂରକୁ ବୋହି ନିଅନ୍ତି ।

ବଜ୍ରବାହୁ ଗେହ୍ଲେଇ କହେ, ଦେଖିଲୁ, ଫୁଲଦାମା, ସେ କଣ ପିଲାଟିକୁ । ନାକରେ କେତେ ସିଙ୍ଘାଣି, ଦେଖିଲୁ ସେ ଖଡ଼ିଆ ଘରର ଝିଅକୁ । ମୁଣ୍ଡରେ ଭରଭର ଉକୁଣୀ, ଗୋଡ଼ରେ ଘା' ହୋଇଛି ।

ଫୁଲଦାମା ଆପତ୍ତି କରି ନାହିଁ । ମନରୁ ଘୃଣାଭାବ ଦୂର କରିଛି । ଜାତି ଅଜାତି ମାନ ନାହିଁ । ପର ପିଲାକୁ ଆପଣାର ଭାଇଭଉଣୀ ପରି ମଣିଛି । ହାତରେ ସଫାସୁତୁରା କରିଛି । କୋଳରେ ଧରିଛି । ପିଠିରେ ନାହି କରିଛି । କାନ୍ଧରେ ମୁଣ୍ଡରେ ବସାଇ ଖୁସି ହୋଇଛି । ଆଉମାନେ ଦିନେ କାବା କାବା ହୋଇ ରହୁଁଥିଲେ । ଫୁଲଦାମୀକୁ ପାଗଳ କି ଫୁଲେଇ ବୋଲି ମଣୁଥିଲେ । ସାଙ୍ଗ ଝିଅ ବୋନ୍ଦୁଙ୍କର ଉକୁଣୀ ଭୁର୍ ଭୁର୍ ମୁଣ୍ଡ ସେ ଯତ୍ନକରି କୁଣ୍ଡାଇ ଦିଏ । ତେଲ ମାରି ବାନ୍ଧିଦିଏ । ଦେହ ହାତ ସଫାସୁତୁରା କରେ । ମୁଣ୍ଡରେ ଖୋସିଦିଏ ଫୁଲ ।

ଆସ ମ ଆଜି ଗୀତ ବୋଲିବା —

Digitized by PPRACHIN, SOA

ସେ ବି ଅରଣ୍ୟ ଦେଶର ଝିଅଟିଏ । ସମସ୍ତଙ୍କର ଭାଷା ଅଳ୍ପ ବହୁତେ ଜାଣେ । ଗୀତ ଶିଖେ । ଖଡ଼ିଆ-ଝିଅ, ଓରାଣ-ଝିଅ, ଭୂୟାଁ-ଝିଅ, କନ୍ଧ, କୋହ୍ଲ ଝିଅଙ୍କ ସଙ୍ଗେ ସ୍ୱର ମିଳାଇ ଗୀତ ବୋଲେ । ଗୀତ ଶିଖାଏ । ନଚ୍ଚଏ । ନାଚେ । ଲୋକେ ଦେଖି ଖୁସି ହୁଅନ୍ତି । ପ୍ରଶଂସା କରନ୍ତି । ବଜ୍ରବାହୁ ମୁଗ୍‌ଧ ଚକ୍ଷୁରେ ଅନେଇ ରହେ ।

ଆକାଶରେ ହସି ଉଠୁଛି ଉଜ୍ଜ୍ୱଳ, ହସିଲା ଜହ୍ନ । ବଣମଲ୍ଲୀର ବାସ ଚହଟୁଛି । ଝରଣା, ପବନ, ଝିଙ୍କାରି ସମସ୍ତେ ସେମାନେ ଗୀତ ବୋଲୁଛନ୍ତି ।

ବଜ୍ରବାହୁର ମନ ଉଲୁସି ଉଠୁଛି । ଚାହିଁରହୁଛି ସେ ଏକ ଆଖିରେ ଫୁଲଦାନୀର ମୁହଁକୁ, ଭଙ୍ଗୀକୁ । ଚାହିଁ ରହୁଛନ୍ତି ସମସ୍ତେ । ଅନେଇ ରହୁଛି ସତ୍ୟପାଳ ସିଂ । ଦାଢ଼ି ଆଉଁଷୁଛି । ଇଞ୍ଜିନିୟର ଗୋଲାପ ଫୁଲଟିଏ ଶୁଙ୍ଘୁଛନ୍ତି । ତହସିଲ୍‌ଦାର ଅତର-ଭିଜା ରୁମାଲରେ ମୁହଁ ପୋଛୁଛନ୍ତି । ପୋଷ୍ଟମାଷ୍ଟର ଡାକ୍ତରବାବୁଙ୍କ ହାତରେ କେଞ୍ଚୁଛନ୍ତି ଆଉ ବଡ଼ ବଡ଼ ଦାନ୍ତ ଦେଖାଇ ହସିହସି ଗଡ଼ି ଯାଉଛନ୍ତି । ଡାକ୍ତର ମୌନ ! ସମସ୍ତେ ସେମାନେ ନାଚ ଦେଖିବାକୁ ଆସିଥିଲେ ।

ଝିଅମାନେ ମାଗୁଣି କଲେ । ସମସ୍ତଙ୍କ ଆଗରେ ଫୁଲଦାନୀ । ଦୁଇ ହାତ ଆଞ୍ଜୁଳା କରିଛି । ମନ ଆନନ୍ଦରେ ମାଗୁଣି କରୁଛି । ଆଉ କେତେ ଝିଅ—ସବୁ ବୟସର, ଜାତିର—ଫୁଲଦାନୀର ସଙ୍ଗେ ସଙ୍ଗେ ବୁଲୁଛନ୍ତି ହାତ ଆଞ୍ଜୁଳା କରି ।

ଫୁଲଦାନୀ ମାଗୁଣି କରୁଛି, ଦିଅ ବାବୁ ଯାହାର ଯାହା ମନ । କପଟ କର ନାହିଁ, କୁଣ୍ଠା କର ନାହିଁ । ଆମେ ତମର ଝିଅ-ଭଉଣୀ । ଦିଅ ବାବୁ, ଗୀତ ଶୁଣେଇଲୁ, ନାଚ ଦେଖେଇଲୁ, ସେଥିପାଇଁ ମୂଲ ମାଗୁ ନାହୁଁ, ମାଗୁଛୁ ତମର ସ୍ନେହ । ଅଳପ ବହୁତ ଲେଖା କରୁ ନାହୁଁ । ଦିଅ— ।

ସମସ୍ତେ ଦେଲେ, ଯାହାର ଯାହା ମନ । ଗରିବ ମୂଲିଆରୁ ଆରମ୍ଭ କରି, ବାବୁଭାୟା ଯାଏ ।

ଫୁଲଦାନୀ ସତ୍ୟପାଳ ଆଗରେ ହାତ ପାତିଲା । ସେ ଜଣେ ବଡ଼ ଧାନ୍ତ୍ରସ୍ଟି । ପଶ୍ଚିମ-ପଞ୍ଜାବର ବାସଚ୍ୟୁତ । ପ୍ରାଣଭୟରେ ଚାଲି ଆସିଥିଲେ । ନିଜ ଶିଙ୍ଗରେ ମାଟି ଖୋଳି ମଣିଷ ହେଲେଣି । ମଟର ଡ୍ରାଇଭର, ହୋଟେଲ-କିପର୍, ଗ୍ରେଟବଡ଼ ବ୍ୟବସାୟ, କଣ୍ଟ୍ରାକ୍ଟରୀ— । ପାଖରେ ଧନ ହେଲାଣି । ଏ ଦେଶରେ ଘର କଲେଣି । ସୁନ୍ଦର ଘୋଡ଼ ହୋଇ କଥା କହିଲେ ସେ ଅଣଓଡ଼ିଆ ବୋଲି କେହି ଭୁଲ୍‌ରେ ମଧ୍ୟ କହିପାରିବେ ନାହିଁ ।

ସତ୍ୟପାଳ ପଚାରିଲେ ହସି ହସି, କ'ଣ କରିବାରେ ଏ ମାଗୁଣି ଧନ

ଫୁଲଦାନୀ—

ଯାହା ଆମର ମନ ।

କଅଣ ତମର ମନ ? ଫିଷ୍ଟ୍ କରିବ ?

Digitized by PPRACHIN, SOA

ଫୁଲଦାନୀ ବିଚଳିତ ହେଲା । ସତ୍ୟପାଳ ସିଂ ତା'ର ଧଳାଧଳା ଦାନ୍ତ ଦ'ଧାଡ଼ି ଦେଖାଇ ହସୁଛି । ଫିଷ୍ଟ୍ କରିବା ପାଇଁ କେତେ ଅନ୍ନ କେତେ ଟଙ୍କା ସେ ପଡ଼ାର ଲୋକଙ୍କୁ ଯାଚକରି ଦେଇଛି, ନାମ ବି ଆଦାୟ କରିଛି ।

ଆଉ ଝିଅମାନେ ପାଟିକରି ଉଠିଲେ, ହଁ ହଁ, ଫିଷ୍ଟ୍ କରିବୁ କାନ୍ତରାତ୍ ବାବୁ, ଦିଅ ଆମକୁ ଅଞ୍ଜୁଳାଏ ଟଙ୍କା । ତମର ନାମ କରିବୁ ।

ଫୁଲଦାନୀ ପାଟି କରି ଉଠିଲା, ଯାହା ଆମେ କରୁ, ସେଥିରେ ତମର କି ଯାଏ ? ତମେ କାହିଁକି ସେକଥା ଶୁଣିବ କାନ୍ତରାତ୍ ବାବୁ ? ଆମେ ଫିଷ୍ଟ୍ କରିବୁ ନାହିଁ । ଦିନକଥା ଫିଷ୍ଟରୁ ଆମକୁ କ'ଣ ମିଳିବ ? ଅଡ଼ଦିନ ତ ଆମେ ଉପାସୀ, ନୋହିଲେ ଅଧାଉପାସୀ । ଦୁଇବେଳା ମୁଠିଏ ମୁଠିଏ ଖାଇ ଓ ଦେହ ଘୋଡ଼ାଇବାକୁ ଖଣ୍ଡେ ଖଣ୍ଡେ ଲୁଗାର ବ୍ୟବସ୍ଥା କିପରି ହେବ, ସେଇକଥା ଆମେ ବିଚାରିବୁ । ତମେ ଦେଲେ ଦିଅ, ନୋହିଲେ ନାହିଁ । ଆସ ଲୋ ଭଉଣୀମାନେ —

ଫୁଲଦାନୀ ଚାଲି ପାଉଲା । ଝିଅମାନେ, ଯିଏ ଯାହା ଆଞ୍ଜୁଳାରେ ଧରିଥିଲେ ଫୁଲଦାନୀର କାନରେ ଅଜାଡ଼ିଦେଲେ । ଫୁଲଦାନୀ ଆଗେଇ ଚାଲିଲା ।

ସତ୍ୟପାଳ ସିଂ ଦ'ଖେପାରେ ତା ଆଗକୁ ଆସି କହିଲେ, ରହ ଫୁଲଦାନୀ, ତୁ ଭଲ କଥା କହିଛୁ । ମୋ'ର ବି କିଛି ଦେବାର ଅଛି ।

ସିଂହେ ପକେଟରୁ ଥଳି କାଢ଼ିଲେ । ଫୁଲଦାନୀ କାନି ଦେଖାଇଲା । ସିଂହେ ଥଳି ଖୋଲି କାନି ଭିତରେ ଭରି ଅଜାଡ଼ି ଦେଇ କହିଲେ, ତମରି ଧନ ତ ନେ, ତମରି ପାଇଁ ଅଣା ହୋଇଥିଲା, ତମେ ସବୁ ନିଅ । ଯାହା ତମର ମନ କର । ହେଲେ ଝିଅମାନେ, ଆମର କରନାଳୀର ଦକ୍ଷିଣ ପାଖରେ ବନ୍ଧକାମ ଆହୁରି ଜୋରସୋରରେ ଅଗେଇବା ଦରକାର । ଇଞ୍ଜିନିୟର ସାହେବ ଖୁସିହେବେ । କେନ୍ଦୁଝର ଜିଲାରେ ଆହୁରି ଗୋଟାଏ ବଡ଼ କାମ ଯୋଗାଡ଼ କଲିଣି । ସେ ବି ତ ତମରି କାମ । ଭାତ ଓ ଲୁଗା ଅଭାବ ହେବ ନାହିଁ ।

ବାବୁଭାୟାମାନେ ଚିତ୍କାର କରି ଉଠିଲେ, ସାବାସ୍ ସତପାଳ ସିଂ ! ଆଉମାନେ ତାଳି ମାରିଲେ । ଝିଅବୋହୂମାନେ ହସିହସି ହସର ଢେଉରେ ଆକାଶ ଛାତରେ ବାଦଲ ତଳେ ଲୁଚି ଯାଉଥିବା ଜହ୍ନର ଓଢ଼ଣୀ ଖସାଇଦେଲେ, ଭସାଇ-ଦେଲେ ବୈତରଣୀର ନେଳିଆ ପାଣିରେ ।

ଫୁଲଦାନୀର ଫୁଲମୁହଁରେ ହସନାହିଁ । କଣେଇ ଚାହିଁଲା । ମୁହୂର୍ତ୍ତକେ ଚଞ୍ଚଳ ପରି ଭ୍ରମିଗଲା ଆଖିର ଡୋଳା । ସେ ଯେପରି କାହାକୁ ଖୋଜୁଛି । ବାଉଁଶ ଦେହରେ ବନ୍ଧା ହୋଇଥିବା ଡେ-ଲାଇଟ୍ ତଳେ ଭୂମି ଉପରେ ଅନ୍ୟ ମୂଲିଆଙ୍କ ଭିତରେ ବସିଛି ସେ—ବଜ୍ରବାହୁ । ଅନାଇଁ ରହିଛି । ଆଖି ଦିଓଟି ଝଲସି ଉଠୁଛି । ମୁହଁରେ ଅନୁମୋଦନର ସ୍ମିତ । ଫୁଲଦାନୀର ମୁହଁରେ ହସ ଚହଟିଲା । ସେ ଆଗେଇଗଲା ।

Digitized by PPRACHIN, SOA

ସଂଗୃହୀତ ସବୁ ଧନ ସେମାନେ ବଜ୍ରବାହୁ ଆଗରେ ଥୁଆଇ ଦେଇଥିଲେ । ଫୁଲଦାନୀ କହିଲା, କ'ଣ ହେବ ଏ, ନଷ୍ଟ କରିବା କି ? ବଜ୍ରବାହୁ ହସିହସିକା ମୁଣ୍ଡ ହଲାଇ କହିଲା, ନଷ୍ଟ କରି ଅଠରେ ଖାଇ ମୁହଁ ପୋଛିଦେଲେ ସବୁ ସରି ଯିବ । କାଲିକି ଆଉ ନ ଥିବ । ପୁଣି ସେଇଁ ଉପାସକୁ ସେଇ ଉପାସ । ସତ୍ୟପାଳକୁ ଯାହା ମୁଁ କହିଥିଲି ସେଇ କଥା ବିଚାରିବା । କଅଣ ତମର ମନ ରେ ଭଉଣୀମାନେ ?

ସମସ୍ତେ କହିଲେ, ଯାହା ତମର ମନ ।

ଚରଖା କଣା ହୋଇଛି । ବେଳ ପାଇଲେ ଝିଅ ବୋହୂମାନେ ସୂତା କାଟୁଛନ୍ତି । କେତେ ଥର ନାଚ ଗୀତ ହୋଇ ଧନସଂଗ୍ରହ କରାହେଲା । ମିନାବଜାର । ଅଣାଏ ଦୁ' ଅଣା କରି ଗୁନ୍ଦା ଉଠାଇ ଧନସଂଗ୍ରହ । ଘରେ ଘରେ ଗ୍ରେଟ ଗ୍ରେଟ କୁଟୀରଶିଳ୍ପର ସୂତ୍ରପାତ । ଝୋଟକେଇ ବାଉଁଶ ବୁଣା, ଖଜୁରିପତ୍ର-ଚଟକାମ ସିଲେଇ, ବଡ଼ି ପାମ୍ପଡ଼, ସିଲେଇକାମ, ପଟି ହେଁସ ସପ ବୁଣା, ଗ୍ରନ୍ଥି ଣି ତିଆରି—ଏମିତି କେତେ କାମ ସେମାନେ ଶିଖିଲେଣି । କଲେଣି । ଯାହା ଯିଏ କରୁଛି, ଦେଇ ଆସୁଛି ନୂଆ ସୋସାଇଟିରେ । ପଇସା ଗଣି ଆଣୁଛି । ସେଇ ପଇସାରେ ସେଇ ସୋସାଇଟିରୁ ଦରକାରି ଚଳ ଆଣୁଛି । ଝିଅ ବୋହୂଙ୍କର ମନ ଲାଗିଛି । ହାଡ଼ଭଙ୍ଗା ପରିଶ୍ରମ । ଶେଷରେ ଖେଳାଳି ପରି ମନଖୁସିରେ କାମ କରି ଅଧିକା ଚାରି ପଇସା ରୋଜଗାର କରି ପାରୁଛନ୍ତି ।

ସବୁ ମୂଳରେ ଏଇ ଫୁଲଦାନୀ । ଅପବାଦର ବୋଝକୁ ମୁଣ୍ଡରୁ ଝାଡ଼ି ପିଠିକୁ ପକାଇଛି କେଉଁଠାର ମାଛ ଖାଳେଇ ପରି । ପ୍ରଶଂସା ଓ ଧନ୍ୟଧନ୍ୟର ବୋଝ ମୁଣ୍ଡରେ ବୋହିଲାଣି । ମୁହଁ ଶୁଖେଇ କେତେଥର ସେ ପଚାରିଲାଣି, କାମ ସରିବ; କୁଡ଼ିଆ-ଗାଁ ଭାଙ୍ଗିବ, କେତେ କୁଆଡ଼େ ଗଲେଣି, କେତେ କୁଆଡ଼େ ଯିବେ, ସବୁ ପରିଶ୍ରମ ଆମର ବୃଥା ହେବ ।

ବୃଥା ହେବ ନାହିଁ । ତୋ'ର ଭଉଣୀମାନେ ଯାହାକୁ ତୁ ସଫାସୁତୁରା କରିଛୁ, ସଫା ରହିବାକୁ ଶିଖେଇଛୁ, ଯାହାଙ୍କୁ ତୁ ଲୁଗାଜାମା ପିନ୍ଧେଇ ଶିଖେଇଛୁ, ଶାଗଟିକେ କପରି ଯତ୍ନ କରି ରାନ୍ଧିବାକୁ ହୁଏ, ବତେଇ ଦେଇଛୁ, ସେମାନେ ସେଇ ସ୍ୱଭାବ, ପ୍ରକୃତ ଓ ଶିକ୍ଷା ନେଇ ଚାଲିଯିବେ । ପୁଣି, ଯେଉଁମାନେ ଯେଉଁ କାମ ଶିଖିଛନ୍ତି, ସେଇ କାମର ଦକ୍ଷତା ନେଇ ଯିବେ । ଉପାସ ରହିବେ ନାହିଁ । ଠକରେ ପଡ଼ିବେ ନାହିଁ, ଏତିକି ତ ଆମ ଉଦ୍ୟମର ସଫଳ ସ୍ୱପ୍ନ । ବୃଥା ନୁହେ— ।

ତମେ ଚାଲିଯିବ ତ ବାବୁ— ।

ଚାଲିଯିବ ।

Digitized by PPRACHIN, SOA

ଆଉ ମୁଁ ?

ଗୁ ବ — ।

କୁଆଡ଼େ ଯିବ ବନ୍ତେଇ ଦେଇ ପାରିବ ?

କୁଡ଼ଆ ବାହାରେ ଘନ ଅନ୍ଧାର ସାରା ପ୍ରକୃତିକୁ ଘୋଡ଼ାଇ ରଖିଛି । ବଣ, ପର୍ବତ, ଝରଣା, ବସତି ସବୁ ସେହି ବିଶ୍ୱବ୍ୟାପୀ ଅନ୍ଧାର ଭିତରେ ଆତ୍ମଗୋପନ କରିଛନ୍ତି । କେତେବେଳୁ ପଶ୍ଚିମ ପାହାଡ଼ମାଳର ଆର ପାଖେ ସୂର୍ଯ୍ୟ ଅସ୍ତ ହୋଇଥିଲେ ମନେ ପଡ଼ୁନାହିଁ । ଜୀବନର ସୂଚନା ଦେଇ ଦୂର ଝରଣା କଳକଳ ରବ କରି ଅନବରତ ବହି ଗ୍ଲଲିଛି । ତାଆରି ଝଙ୍କାର ବାଜୁଛି କାନରେ । ଦୂର ବସତି ଆଡ଼ୁ ଭାସି ଆସୁଛି ମିଶାମିଶି ନାଗରିକଙ୍କର ସଙ୍ଗୀତ । ଆକାଶରେ ଅଗଣିତ ନକ୍ଷତ୍ରର ମିଟିମିଟି ଗ୍ଲହାଣୀ । ସମସ୍ତେ ସେମାନେ ଅସରନ୍ତି ଜୀବନଧାରାର ଅସ୍ତିତ୍ୱ ଚେତାଇ ଦେଉଛନ୍ତି ।

ଟେବୁଲ ଉପରେ ଉଜ୍ଜ୍ୱଳ ହୋଇ ଜଳୁଛି ହରିକ୍ୟାନ । ଆଗରେ ଖୋଲା ହୋଇଛି ଧନଞ୍ଜୟର "ଦାଗୀ" ପତ୍ରିକା । "ଦାଗ ତିନ ପ୍ରକାର — ଦେହ, ମନ ଓ ନାମ ।"

"ଦେହର ଦାଗ ସମସ୍ତେ ଦେଖନ୍ତି । ପ୍ରତି ଦାଗର ସ୍ୱତନ୍ତ୍ର ଇତିହାସ । ନିଜ ଛଡ଼ା ଅନ୍ୟମାନେ ସେ ଇତିହାସ ହୁଏତ ଜାଣନ୍ତି ନାହିଁ । ପ୍ରତି ଦାଗ ପ୍ରତି ମୁହୂର୍ତ୍ତରେ କଥା କହେ । ନିଜ ବ୍ୟକ୍ତି ଆଉ କାହାକୁ ସେ କଥା ଶୁଭେ ନାହିଁ । ନିଜେ ମଧ୍ୟ ଶୁଣି, ଶୁଣିପାରେ ନାହିଁ ।

ନାମର ଦାଗ ଅତି ମୁଖର । ଦୁନିଆରେ ସମସ୍ତେ ଶୁଣନ୍ତି । ନିଜେ ବି ଶୁଣେ । ଦୁନିଆ ସେ ଦାଗ ଦେଖେ ନାହିଁ, ଦେଖିପାରେ ନାହିଁ । କେବଳ ଶୁଣେ । ଅନୁମାନ କରେ । ରଙ୍ଗ ଦେଇ ଚିତ୍ର ଆଙ୍କେ । ନିଜ ରୁଚିର କଳ୍ପନା ଦେଖି ସୁଖୀ ହୁଏ, ଆତ୍ମପ୍ରସାଦ ଲାଭ କରେ ।

ମନର ଦାଗ କେହି ଦେଖିପାରେ ନାହିଁ । ତା'ର ଇତିହାସ କାହାରି କାନରେ ପଡ଼େ ନାହିଁ । ନିଜେ ସେ ଦେଖେ, ନିଜେ ସେ ଶୁଣେ ।

ତ୍ରିବିଧ ଦାଗରେ ପରସ୍ପର ଭିତରେ ହୁଏତ ସମ୍ବନ୍ଧ ଥାଏ, ଅଥବା ନ ଥାଏ । ତ୍ରିବିଧ ଦାଗରେ ନିଜକୁ ମୁଁ ପରଖି ଦେଖିଛି — ମୁଁ ଜଣେ ଦାଗୀ ! ଦେହର କି ନାମର ଦାଗ ପୋଛି ନିର୍ମୂଳ କରିବାର ଉପାୟ ମତେ ଜଣା ନାହିଁ । ନ ଦିଶୁଥିବା ନ ଶୁଭୁଥିବା ମନର ଦାଗକୁ ନିର୍ମୂଳ କରିବାର ଉପାୟ ମତେ ବତାଇ ପାରିବ କି ନଳରାଜ ? — "

ଦମୟନ୍ତୀର ନିଦ୍ରାଭଙ୍ଗ !

ଆଗରେ ବସିଛି ଫୁଲଦାନୀ, ଦମୟନ୍ତୀ ନୁହେଁ, ଆହୁତ ନୁହେଁ । ସଯତ୍ନ-ବନ୍ଧା କେଶ ଉପର କୁସୁମଗୁଚ୍ଛରୁ ବାସ ଚହଟି ଅସୁଛି । ସତେ ଫୁଲର ଦାନୀ ! ଯୌବନ ଭରପୂର । ଢଳ ଢଳ ସୁନ୍ଦର ମୁହଁଟି ସତେ କି ଗୋଟିଏ ସଦ୍ୟଫୁଟା ମଲ୍ଲୀଫୁଲ ।

Digitized by PPRACHIN, SOA

କଜଳ-ମଖା ଆଖି ଦର୍ପଣ ଛଳଛଳ । ସବୁ ଦିନ ପରି ସେ ଧାଇଁ ଆସୁଛୁ । ପଶୁଥିବ, ଶୁଣିବ, ଖୁସି ହୋଇ ହସି ହସି ଗ୍ଲାସିବ । କଏ କେଉଁଠି ଅନ୍ଧାର ଭିତରେ ଲୁଚ ଛପି ତା'ର ରୂପ-ବେଶକୁ ଆକୁଳ ନୟନରେ ଗ୍ଲହିଁ ରହିଥିବେ । ପାଖକୁ ଆସିବାର ସାହସ ନାହିଁ । ଫୁଲଦାଗ୍ନି ଅଣ୍ଟାରେ ଶାଣିତ ଛୁରିକା ଖୋସିଥାଏ । ସତ୍ୟପାଳ ସିଂଙ୍କ ଛୁରିକା ପରି ।

ଗୁନ ବଦ୍ଧଲ କାହିଁକି ବାବୁ ? କହୁଥିଅ; ଭାମ ସବଲେ ଆମର ଏ ଦୁନଆର ସମସ୍ତେ କଏ କୁଆଡ଼େ ଗ୍ଲସିବେ । ଡମେ ବ ଯିବ । ଖାଇ ପାଖରେ ଚରଦନ ବାନ୍ଧ ହୋଇ ରହିବାକୁ ମନ ହେଉନାହିଁ । ସ୍ୱାମୀଙ୍କ ଦ୍ୱାର ମୋ' ପାଇଁ ବନ୍ଦ । ସତ୍ୟପାଳ କାହିଁକି, କେତେ ଯେମିତ ମୋ' ପାଇଁ ଦୁଇ ଦିନ ଲାଗି କବାଟ ଖୋଲି, ଗ୍ଲହିଁ ରହିଛନ୍ତି । ପୁଣି ସେ ପାପପଥକୁ ଗୋଡ଼ ବଢ଼ାଇବାକୁ ମନ ମୋ'ର ମନା କରୁଛି । ସେମାନଙ୍କ ପାଇଁ ପୁଣି ମୋ'ର ନଜର ଦୁର୍ବଳତା ପାଇଁ ଅଣ୍ଟାରେ ଖୋସିଛି ଦାଢ଼ୁଆ ଛୁରି । କହୁଥିଅ କୁଆଡ଼େ ମୁଁ ଯିବ ।

ଫୁଲଦାଗ୍ନିର ଆଖିରେ ଲୁହ । ଫୁଲଦାଗ୍ନି ଚମ୍ପା, ମାଳତୀ କି ଯମୁନା ନୁହେଁ । ତଥାପି ସୁବ୍ରତର ମନ ଭିତରେ ଅଜନା ବାସନା ଛଟପଟ କଲବଲ ହେବାକୁ ଲାଗିଲା । ଆଜ ନୂଆ ନୁହେଁ । ଅପବାଦର ଖାଗ ସେ ନେଇଛି କନ୍ତୁ ଏଇ ସୁନ୍ଦର ଦେହଟାର ପରଶ କେବେ ପାଇ ନାହିଁ । ଅସାବଧାନ ହୋଇ କେବେ କେମିତ ହାତ ବଢ଼ାଇ ବହ୍ଲଲ ଆଖିରେ ଅନାଇଁଛି । ଦେଖିଛି, ଫୁଲଦାଗ୍ନୀର ସତର୍କ ହାତ ଛୁରିକାର ବେଣ୍ଟରେ । ମୁହଁରେ ହସ ।

ପ୍ରଶ୍ନର ଉତ୍ତର ସୁବ୍ରତର ଗୁଡ଼-ଥର ସାଘଣ୍ଟାସ । ସେ ଆଖି ଫେରାଇଥିଲା ।

କେହି ମତେ ବାଟ ଦେଖାଇ ପାରବେ ନାହିଁ ବାବୁ, ମୁଁ ଜାଣେ । ସମୟ ଆସିଲେ ଯାହା ମତେ ଭଲ ଦିଶିବ, ମୁଁ କରବ ।

ହସିଥିଲା । ହସି ହସି ଉଠି ଗ୍ଲଲଯାଇଥିଲା । ଫେର ଆସିବାକୁ ସୁବ୍ରତର ମନ ଡକା ଗ୍ଲଡ଼ିଥିଲା । ଦେହ ଚଂକ ନ ଥିଲା । ଗୁଣ୍ଡ ଖୋଲ ନ ଥିଲା ।

ଫୁଲଦାଗ୍ନିର ପ୍ରସ୍ଥାନ ପରେ ସେ ତା'ର କଳିତ ଉପସ୍ଥିତ ଉପଲବ୍ଧି କରଥିଲା । ମନ ଉତ୍ତର ଦେଇଥିଲା । ତୋତେ ମୁଁ ଭଲପାଏଁ, ତୋତେ ମୁଁ ବିବାହ କରବାକୁ ଗ୍ଲହେଁ ।

ସୁବ୍ରତ ଉଠିଲା । ଗ୍ରେଟ କୋଠରୀ ଭିତରେ ଫୁଲଦାଗ୍ନି ନାହିଁ । ତା'ର ଆବିର୍ଭାବର ସ୍ମୃତି ଜୀବନ୍ତ ରହିଛି ।

ସୁବ୍ରତ ପଦାକୁ ଆସିଲା । ଅନ୍ଧାରର ପାରବାର ! ସେ ଛପି ଗଲଣି, ହଜଗଲଣି, ଫେରବ ନାହିଁ । ନଜ ପ୍ରତଜ୍ଞାର ମହତ୍ତ୍ୱ ସେ ରଖିଛି ।

ଆକାଶକୁ ଗ୍ଲହିଁ ସୁବ୍ରତ ଭାବିବାକୁ ଲାଗିଲା, କଅଣ ସେ ଭଲ ପାଇଛି ? ଫୁଲଦାଗ୍ନୀର ରୂପ ? ଅରତ କ'ଣ ସୁନ୍ଦର ନୁହେ, ଆହୁତ ? ସୁନ୍ଦର ପଣକୁ ଉହ୍ଲଳର

Digitized by PPRACHIN, SOA

ସେ ଭଲ ପାଉଛୁ ? ବଦ୍ୟା, ବୁଦ୍ଧି, ଗୁଣ, କୃଷ୍ଟି କାହିଁରେ ଫୁଲଦାମିନୀ ଟପି ପାରବ ସେମାନଙ୍କୁ ? ସୁବ୍ରତ କ'ଣ ଭଲପାଉଛୁ ତା'ର ନବୀନତାକୁ, ଦେହର ଶକ୍ତିକୁ, ବନା ଆପତ୍ତିରେ ସବୁ କର୍ମରେ ନଜକୁ ନିଯୁକ୍ତ କରବାର ଆବେଗ ଓ ଆଗ୍ରହକୁ ?

ନର୍ମଳ ଆତ୍ମା ଉତ୍ତର ଦେଲ—ଏସବୁ ତ ତାରୁଣ୍ୟର ଉତ୍ତେଜନା ଓ ଦୁର୍ବଳତାର କୈଫିୟତ । ସେ ଭଲପାଉଛୁ ତା'ର ନର୍ବିଘ୍ନ ସାଧନାକୁ, ତା'ର ଅସ୍ଥିର ନଗଶ୍ରସ୍ତ ସ୍ୱଭାବକୁ ।

ସେ ସୁବ୍ରତ । ସେ ବଜ୍ରବାହୁ । ସେ ଗ୍ରୁପ—ରଣଗଡ଼ର ସେବକସମାଜର ସଭ୍ୟ ହେବାକୁ ନଜକୁ ସେ ଉପଯୁକ୍ତ କର ଗଢ଼ିଛୁ । ସୁବ୍ରତ ହସୁଛୁ । କହୁଛୁ, ଧର୍ମ-ବେଟିଆ ଦଳର ସଭ୍ୟ ହେବାକୁ ତମର ଉପଯୁକ୍ତତା କାହିଁ ? ଧର୍ମାନନ୍ଦ ଡାକ ଗ୍ରୁଡ଼ୁଛୁ । ଆଜ, ରାଜପୁଅ, ଅଭିଷେକର ସବୁ ଆୟୋଜନ କରାହୋଇଛୁ । ମନ୍ତ୍ରପାଠ କରବ - ଶରୀରଂ ବା ପାତୟନ୍ତେ— । ଆହୁତ ପ୍ରଶ୍ନ ପଗ୍ଚରୁଛୁ, ମନର ଦାଗକୁ ନର୍ମୂଳ କରବାକୁ ଉପାୟ !

ବଜ୍ରବାହୁ ଘର ଭିତରକୁ ଆସିଲ । କବାଟ କଲନ । ନଜର ଆଦର୍ଶକୁ ମୂର୍ତ୍ତିମନ୍ତ କର ସ୍ୱପ୍ନିଳ ଆଖିରେ ଗ୍ୱହିଁ ରହଲ ଜ୍ୱଳନ୍ତ ଆଲୋକ ଶିଖାକୁ ।

ଯେତେଥର ସେ ପାଖକୁ ଆସିଛୁ, ବଜ୍ରବାହୁର ତାରୁଣ୍ୟ ଦୋହଲି ଉଠିଛୁ । ବଦ୍ରୁତ ସ୍ୱଭାବକୁ ସୁ ବ୍ରତ କରଛୁ ଦୂରରୁ. ଅତ ଦୂରରୁ ଗ୍ୱସି ଆସୁଥିବା ପଦଟିଏ ଡାକ—ନଳରାଜ ! ସେଇ ପଦଟିଏ ଡାକ ସାଥିରେ ହସହସ ସୁନ୍ଦର ମୁହଁଟିଏ—ଆହୁତ !

ଫୁଲଦାମିକୁ ସେ ଭୟ କରେ । ଫୁଲଦାମିନୀର, ତା'ର ତାରୁଣ୍ୟକୁ ଦୋହଲାଏ, ତାରୁଣ୍ୟର ଉଚ୍ଛୃଙ୍ଖଳତାକୁ ହସିହସି ଦୂରେଇ ରଖେ ।

ଫୁଲଦାମି ଡାକୁଛୁ—ଖୋଲ ବାବୁ, କବାଟ ଖୋଲ ।

ବଜ୍ରବାହୁ କବାଟ ଖୋଲବାକୁ ଉଠିଲ ।

ଟୁନୀନାନୀ ଅସିଛନ୍ତ । ଗାଁରେ ହୁର ପଡ଼ଲଣି । ପିଲାଙ୍କର ସେ ଟୁନୀନାନୀ । ସମବୟସିଆଙ୍କର ସେ ଟୁନୀ ନ ଟୁନା । ବେଶି-ବୟସିଆଙ୍କର ସେ, ଆଲୋ ମା, ଅଲୋ ଝିଅ ! ଏମିତକା ଗେଲବସରଆ ଡାକ ତାକୁ ଭାର ଭଲ ଲାଗେ । ସତେ କ ସେ ଏଇ ଗାଁର ସବୁ ଘରର ଝିଅ । କେଜାଣି କେଉଁ ବଦେଶରୁ କ ଶାଶୁଘରୁ ବାର ବରଷ ବନବାସ ସାର ସେ ଫେର ଆସିଛୁ । ଦନ କେଇଟି ରହ ସମସ୍ତଙ୍କୁ କନ୍ଦାଇ ପୁଣି ଗ୍ୱଲିସିବ ।

ସରକାଗ୍ଭ ଗ୍ୱକଗ୍ଭ କରଛନ୍ତ । ଶହେ କ ଦେଢ଼ଶ ଦରମା ପାଆନ୍ତ । ତାଙ୍କର କାମ ଗାଁ ଗାଁ ବୁଲିବେ, ସବୁ ଘରକୁ ଯିବେ, ଝିଅବୋହୂ, ଘରର ଘରଣୀ ମା

Digitized by PPRACHIN, SOA

ଝିଅଣୀଙ୍କୁ ଭଲ କଥା ଶିଖେଇବେ, ଭଲ କାମ ବତେଇବେ । ପାଠ ପଢ଼ିବାକୁ କହିବେ । ସଫାସୁତୁରା ହେବାକୁ ଅଳି କରିବେ । ଟୁନାନାନୀ ଏସବୁ କରନ୍ତି । ସେ କେବଳ ଶିଖାନ୍ତି ନାହିଁ ତ, ନିଜେ ବି ଭଲ କାମ ଶିଖନ୍ତି ।

ଗରିବଗୁରୁବା କି ରୋଗଣା ଲୋକ ଦେଖିଲେ ତାଙ୍କ ଆଖିରୁ ଲୋତକ ଝରେ । ନିଜ ପାଖରେ ଥିଲେ ଯାହା ଲୋଡ଼ା ଦିଅନ୍ତି । ପାଖରେ ନ ଥିଲେ ଥିଲା-ଘରର ଝିଅବୋହୂଙ୍କ ପାଖରୁ ମାଗୁଣି କରି ଆଣି ଦିଅନ୍ତି । କେହି ତାଙ୍କୁ ମନା କରିପାରନ୍ତି ନାହିଁ । ଟୁନାଅପାଙ୍କ କଥା ତଳେ ପଡ଼େ ନାହିଁ । ରୂପଟି ଯେମିତି ସୁନ୍ଦର, ସତେ କି ମୁନାଖଡ଼ିକା । ଢଙ୍ଗ ତହୁଁ ବଳି । କଥାରୁ ଝରେ ଅମୃତ । ଢଳଢଳ ଆଖି ଯୋଡ଼ିକ ସମସ୍ତଙ୍କ ମନକୁ ଟାଣିନିଏ । ପାଠ ସେ କେତେ ପଢ଼ିଛନ୍ତି କେଜାଣି, ଦେଖିଲେ ନ ହେଲେ ବି ସମସ୍ତେ ଜାଣନ୍ତି, ସବୁ ଭାଷାରେ, ସବୁ ବିଦ୍ୟାରେ ସେ ପଣ୍ଡିତ ।

ରୂପ କଥା, ବ୍ୟବହାର, ବିଦ୍ୟା ସବୁକୁ ବଳି ତାଙ୍କର କଣ୍ଠସ୍ୱର । କଳ-ବାଜା ବେତାରଯନ୍ତ୍ରର ଗୀତ ସମସର ହେବ ନାହିଁ । ଟୁନାନାନୀ ଗୀତ ବୋଲିଲେ ସବୁ କାମ ପଛରେ ପକେଇ ମାଇପେ ଧାଇଁ ଆସି ବସନ୍ତି । ଶୁଣନ୍ତି । ଆଉ ଗୋଟିଏ ଗାଅ ମ ଝିଅ, ବୋଲି ଅନୁରୋଧ କରନ୍ତି । ଟୁନାନାନୀ ମନା କରନ୍ତି ନାହିଁ ।

ଝିଅବୋହୂଙ୍କୁ ଶିଖେଇ ଦିଅନ୍ତି । କହନ୍ତି, ଲାଜ କଅଣ ମ ଝିଅଣୀ, ଭଲ ତିଅଣ ରାନ୍ଧିଲେ ଯିଏ ଖାଏ, ତା ଜିଭକୁ ସୁଆଦ ଲାଗେ । କିଏ ରାନ୍ଧିଛି ବୋଲି ପଚାରନ୍ତି. ପ୍ରଶଂସା କରନ୍ତି । ତିଅଣ ଚାଖନ୍ତି ନିଜ କୁଟୁମ୍ବର ଲୋକ । ସଫାସୁତୁରା ଶାଢ଼ୀ ପିନ୍ଧିଲେ, ଯତ୍ନକରି ମୁଣ୍ଡବାନ୍ଧି, ଆଖିରେ କଜଳ, ଗୋଡ଼ରେ ଅଳତା ଲଗାଇଲେ ସାହି ଲୋକଙ୍କ ଆଖିକୁ ସୁଆଦ ଲାଗେ । ସେମାନେ କରନ୍ତି ପ୍ରଶଂସା । ଭଲ ଗୀତଟିଏ ବୋଲିଲେ, ଯାହାର କାନରେ ପଡ଼େ, ସେ ଖୁସି ହୁଏ । କାନକୁ ଲାଗେ ସୁଆଦ, ପ୍ରଶଂସା କରେ । ଅସନା କାମ, ମନ୍ଦ କାମ କଲେ ସିନା ନିନ୍ଦା, ଗୀତ ବୋଲିଲେ ନିଜେ ଖୁସି ହେଇ ପରକୁ ଖୁସି କଲେ ଲାଜ କରିବା ଭଲ ନୁହେଁ — ।

ଟୁନାନାନୀ କେତେ ଔଷଧ ଜାଣନ୍ତି । ପିଲାଙ୍କୁ ଦିଅନ୍ତି, ମାଆମାନଙ୍କୁ ଦିଅନ୍ତି । ରୋଗ ଭଲ କରନ୍ତି । ରୋଗୀ ପାଖରେ ରାତି ରାତି ଅନିଦ୍ରା ହୋଇ ଜଗିବସନ୍ତି । ଯାହା ଦେହରେ ସେ ହାତ ଦିଅନ୍ତି, ସେ ଭଲ ହୁଏ । ତାଙ୍କ ଔଷଧର ନାମ କି ଗୁଣ ସେ ଅନ୍ୟ ଡାକ୍ତର, କବିରାଜ କି ବଇଦଙ୍କ ପରି ଲୁଚାନ୍ତି ନାହିଁ । ସମସ୍ତଙ୍କୁ ବତେଇ ଦିଅନ୍ତି । ବଣୁ ଆଣି, ଔଷଧ ବାଟି ଆଣି ଦିଅନ୍ତି । କେଉଁ ରୋଗକୁ କି ଔଷଧ, କେତେ ଦେବାକୁ ହେବ, କିପରି ଓ କେତେବେଳେ, ସବୁ କଥା ଶିଖେଇ ଦିଅନ୍ତି । ଅମୃତହସ୍ତା ସେ ।

ବଣଗଡ଼ରେ ନାରୀକଲ୍ୟାଣ ସମିତି ଗଢ଼େଇଛନ୍ତି ଆମର ଟୁନାନାନୀ । ଏ ସମିତିର ମେମ୍ବର ହେବାକୁ ଧନ ଲୋଡ଼ା ପଡ଼େ ନାହିଁ, ମନ ଥିଲେ ହେଲା । ଖାଲି ନାମ ଲେଖାଇବାକୁ ନାମଟି କହିଲେ ହେଲା ।

Digitized by PPRACHIN, SOA

ଯେଉଁଦିନ ଆଗ ଝୁମାନାମୀ ରାଜପୁରୋହିତ ତ୍ରିପାଠୀଙ୍କ ପିଣ୍ଡାରେ ଗୋଡ଼ ଦେଲେ, ଧର୍ମୁମାଙ୍କୁ ମୁଣ୍ଡ ନୁଆଁଇ ଦଣ୍ଡବତ କଲେ। ବୁଢ଼ୀ ସନ୍ଦେହ ଓ ବିସ୍ମୟରେ ଆଁ କରି ଅନେଇ ରହିଲେ। ମନ ପଚାରିଲା ମନକୁ—କିଏ ମ ଏ୍ଏ, କାହା ଘର ଝିଅ, କାହା ଘର ବୋହୂ। ଝକଝକ ସଫେଦ ମଲ୍ଲୀଫୁଲ ପରି ସୁନ୍ଦର। ଆଖିର ଶୋଷ, ନାଲିଆ ଓଠର ହସ ହସ ଆଭା ମନ କିଣି ନେଉଛି। ହାତରେ ଧରିଛି ବ୍ୟାଗ୍; ଡାକ୍ତରାଣୀ କି ମାଷ୍ଟରାଣୀ? ତୁଣ୍ଡ ଖୋଲିଲେ।

କିଏ ମା ତମେ?

ହସି ହସି କହିଲେ ଝୁମାନାମୀ, ଚିହ୍ନିଲ ଦେଖେଁ।

ଧର୍ମୁମା'ଙ୍କର କାନ୍ଧ ଝାଙ୍କୁଥିଲା ସଚ୍ଚିଦାନନ୍ଦ—ତିନି ବରଷର ନାତି। କି ସୁନ୍ଦର ପିଲା। ହେଲେ, ମୁହଁଟା ସେଥି ଦିଶୁଛି। ଗ୍ରୁଡର ହାଡ଼ ଝିଦା କାଠି ପରି ଗଣି ହେଉଛି। ପେଟଟି ଝୁମୁକା ହୋଇ ବାହାରିଛି। ଡରିଲା ଆଖିରେ ଝୁମାନାମୀକୁ ଚାହିଁ, କାନ୍ଦି ଉଠିଲା। ଧର୍ମୁମା ପିଲାଟିକୁ କାଖ କଲେ। ପିଠି ଆପଡ଼ି କହିଲେ, ଆରେ କାନ୍ଦୁଛୁ କାହିଁକି; ସକାଳୁ ତିନି ଥର ଖାଇ ସାରିଲୁଣି। ରହ, ଖରା ଟାଣ ହେଉ, ଗାଈ ଦୁହାଁ ହେଲେ କ୍ଷୀର ପିଇବୁ। ତୁନି ହ।

ତମକୁ ମୁଁ ଚିହ୍ନି ପାରୁ ନାହିଁ ମା।

ମୁଁ ତମର ଟିଆଣି। ମୋ ନା' ଝୁନା। ତମେ ମୋ'ର ମାଉସୀ। ପିଲାଟି ତ ଏମିତି ଦୁର୍ବଳ ହୋଇଛି କାହିଁକି?

ଜନ୍ମରୁ ସେ କର୍ଣ୍ଣବା। ଯେତେ ଖୁଆଇଲେ ଦେହରେ ଲାଗୁ ନାହିଁ। ସବୁ ବେଳେ ଖାଲି ଖାଇବ ଖାଇବ ହେଉଛି। ଖୋଇ ଦେଲେ ଦ'ଗୁଣ୍ଡାରେ ସଇଲା। ସେତକ ବି ପେଟରେ ରହୁ ନାହିଁ। ବାର ଦିନେ ତେର ରୋଗ। ଯେତେ ଔଷଧ ଦେଲେ ଧରୁ ନାହିଁ। ମା'ଆଟି ତା'ର କାନ୍ଦି କାନ୍ଦି ରହିଲଣି। ବାପ କୁଳାଙ୍ଗାର, କେମିତି ସେଇଟା ମୋ' ପେଟରୁ ଜନମିଲାଟି, ଘରୁ ଖାଇ ଘୋଡ଼ା ଆଗରେ ଡେଉଁଛି। ଗାଁ ଗାଁ ହୋଇ ବାଇଆ। ବାଉଳ କଣ୍ଡରାଙ୍କ ଘରେ ପଶୁଛି। ତା'ଙ୍କ ଘରେ ଖିଆପିଆ କରୁଛି। ତାଙ୍କ ପିଲାଙ୍କୁ ପଛେ କାଖ କରିବ, ନିଜ ପିଲାଙ୍କୁ ଛୁଇଁବ ନାହିଁ। ପିଣ୍ଡାରେ ଗୋଡ଼ ଦେଲେ, ଯେତେ ରାତି ହେଉ ପଛେ, ମୁଣ୍ଡରେ ହାତଗାଏ ପାଣି ଅଜାଡ଼ିଇବ, ତା'କୁ ପଞ୍ଚାମୃତ ଖୋଇବ, ପଇତା ବଦଳେଇବ, ଗାୟତ୍ରୀ ଜପେଇବ, ତେବେ ଯାଇଁ ଘରେ ପୂରେଇବ, ବାସନରେ ଖାଇବାକୁ ଦେବ। କୁଳାଙ୍ଗାର ହେଲା ସେଇ ଗୋଟିଏ ବୋଲି ପୁଅ ଧର୍ମାନନ୍ଦ। ତା'ଙ୍କ ବାପେ ତ ସ୍ୱର୍ଗ-ବଟା ଟେକାଏ ପକେଇ ଜମିଦାରଙ୍କ ଘରେ ପଶାଖେଳରେ ମତ୍ତ। ମୁଁ ମାଇପିଟା କୁଆଡ଼େ ହେବି? ମଲାମର, ଚୁଲିରେ ପଶୁ ମୋ'ର ବୁଦ୍ଧି। ଯେତେ କାନ ମୋଡ଼ ହେଉଛି, ଘର କଥା ପର ଆଗରେ କହିବ ନାହିଁ; ନିଆଁ ଲଗା ମନ ମୋ'ର ପାସୋର ଯାଉଛି।

Digitized by PPRACHIN, SOA

ମୁଁ ତମର ଘର ନୁହେଁ ମାଉସୀ, ମୁଁ ତମର ନନ୍ଦ—ଏ ପିଲାକୁ ମୁଁ ଭଲ କରିବାକୁ ଆସିଛି । କେତେ ପିଲାଙ୍କୁ ମୁଁ ଭଲ କଲିଣି ।

ଔଷଧ ଦେବ ?

ଦେବି ।

ତା' ଅଜା ଆସିଲେ ପଇସା ଦେବ ସିନା ।

ମୁଁ ପଇସା ନିଏ ନାହିଁ । ଔଷଧ ଦେଇ ଭଲ କରେ । ମୋ' ମା, ମାଉସୀଙ୍କ ସ୍ନେହରୁ ଟିକିଏ ନିଏ । ମୁଁ ଡାକ୍ତର କି ବଇଦ ନୁହେ । ମୁଁ ଘର ସମସ୍ତଙ୍କର ଝିଅ-ଝିଆରୀ ।

କ' ଘର ଝିଅ ତମେ ?

ଯାହା ଘରେ ମୁଁ ପଶେ, ସେଇ ଘର ଝିଅ । ମୋତେ ଅବିଶ୍ୱାସ କର ନା ମାଉସୀ, ପିଲାକୁ ମୋ' କୋଳକୁ ଦିଅ, ଆଉ ମୋ' ଭାଉଜଙ୍କୁ ଡାକିଦିଅ ।

ମୁଣ୍ଡରେ ଓଢ଼ଣା ଦେଇ ଆସି ଦେଖା ଦେଲ ବଙ୍କେଇ ଘର ଭିତରୁ ଗୁହିଁଥିଲେ ।

ଝୁନାନାମାଙ୍କର ଦୃଷ୍ଟିରେ ପଡ଼ିଲା । କୁଲୁକୁଲିଆ ଗୋଲଗାଲିଆ ଛନଛନିଆଁ ସାଦନା ମୁହିଁଟିଏ । ଝୁମାନାମା ହସିଦେଇ କହିଲେ, ହେଇ ତ ମୋ'ର ଭାଉଜ, ମୁଁ କାହିଁକି ଦାଣ୍ଡରେ ଠିଆ ହେବି ?

ଧର୍ମୁମାଙ୍କର ମନ ହାଁ ହୁଁ କରୁକରୁ ସେ ଯାଇଁ ଆସି ଦେଖାଙ୍କର ହାତ ଧରିଲେଣି । ବୁଢ଼ୀ କାବାହୋଇ ଗୁହିଁ ଛନ୍ତି । ଭାବୁଛନ୍ତି, କି ଘର ଝିଅଟା, ହାଡ଼ି, ପାଣ, ପଠାଣ କି ଖିରସ୍ତାନ, ଘରେ ପଶି ବୋହୂଟାକୁ ଛୁଇଁଲାଣି । କାଲେ ଠାକୁରଘର କି ରୋଷଘରେ ପଶିଯିବ । ମନାକରି ହେଉନାହିଁ ତ । ତା' ରୂପ, ଢଙ୍ଗ, ହସ, କଥା ମୁହିଁରେ ଗୁଣ୍ଡି ବାନ୍ଧୁଛି ।

ରସେଇ ଗାଆଁରେ କେହି ତାକୁ ଘରେ ପଶିବାକୁ ମନା କରିପାରି ନାହାନ୍ତି । ସବୁଘରେ ସେ ଝିଅଟିଏ ଆସି । ଯିଏ ଡାକିଲେ, ଯାହା ଦେଲେ ସେ ଆନନ୍ଦରେ ଖାଏ । ମାଛ ମାଉଁସ ଖାଏ ନାହିଁ ସିନା, ଘୃଣା କରେ ନାହିଁ । ତା'ର ସଫା-ସୁତୁରାପଣ, ଠାକୁର ପୂଜା, ପ୍ରାର୍ଥନା ଦେଖିଲେ କିଏ କହିବ ସେ ବ୍ରାହ୍ମଣ ଘରର ଝିଅ ନୁହେଁ ? ପର ଘରେ ମେଳ ଅବକାଶରେ ଯେଉଁଠି ସେ ଥାଇ, ଯେତେବେଳେ ସେ ଅମାର ଚାଳ ଓଲେଇ ମଳ ମୁଷା, ବିଲେଇ ଦୂଅ କାଢ଼େ, ରୋଗଣା ପିଲାକୁ କୋଡ଼ରେ ଧରୁଣ୍ଡ ବାନ୍ତିଉଚ୍ଛୁଳରେ ଲୁଗାକାମା ଅସନା କରେ, ଯିଏ ହେଲେ ମନେ କରିବ ବାଉରି ଘରେ

Digitized by PPRACHIN, SOA

ଏମିତ ସୁବର୍ଣ୍ଣ ପ୍ରତିମା ଝିଅ କ ବୋହୂ ଜନମିଛୁ । ସାତଟାର ମା-ପୋଷଣ୍ଣା ଘରର ପୋକ ଯେଉଁମାନେ, ସେମାନେ କହୁବେ ଝୁନାନାମୀ ଅଧିକ ଜାଣନ୍ତି । ହୁସେଇ ଖେଳେଇ ମନରେ ସାହସ ଦେଇ ପୋଷଣ୍ଣାକୁ ସେ ଉଦ୍ଧାର କରନ୍ତି ।

କେତେ ଘରଇର କେତେ କାଳର କେତେ କଥା ସେ ଜାଣନ୍ତି, ଗପପେଡ଼ି । କଥାକଥାକରେ ମନେ ପକେଇ ଦଅନ୍ତି—ଅନ୍ଧାର ଘରରେ ଯେମିତ କହୁ ଦଶେନାହିଁ ବୋଲି ମୁଷା ମାଟି ଗାଲଲେ ଭୂତ ପ୍ରେତ ଡାହାଣୀ ଚରୁଗୁଣୀ ଆଇଲ ବୋଲି ଡରମାଡ଼େ, ସେମିତ ପାଠ ନ ପଢ଼ିଲେ ଜ୍ଞାନ ଅର୍ଜନ ନ କଲ ମନ ଭିତରେ ଆଲୁଅ ନ ଜାଳଲେ ଯାହା ଗୋଟାଏ ନୂଆ ଦେଖିଲେ କ ନୂଆ ଶୁଣିଲେ କାବାକାବା ଲାଗେ, ଡରମାଡ଼େ । ଖାଲି ଜାଣିଲେ ବ ହେବ ନାହିଁ । ବାରମ୍ବାର ଅଭ୍ୟାସ କଲେ ଯାଇଁ ଦକ୍ଷତା ଅସେ ।

ଯେଉଁ ଝିଅବୋହୂମାନେ ହଲ୍ କାମ, ସୂଚା କାମ ଜାଣି ନ ଥିଲେ, ଗୁର ସ୍ୱେଟରଟାଏ ଦେଖିଲେ ଭାବୁଥିଲେ, ଆରେ, କେଡ଼େ କୌଶଳରେ କଏ ବୁଣିଛୁ ସ, ସେମାନେ ଏବେ କେଡ଼େ ସୁନ୍ଦର, କେତେ ପ୍ରକାର ଜାମା ବୁଣିଲେଣି ! କାଇଁଷରେ କେତେ ଜାତର ଚଜ କରୁଛନ୍ତି । ସିଲେଇ କଳ କଣି ସ୍ୱାମୀ, ଦଅର, ପୁଅଝିଅ, ଆଉ ନଜ ପାଇଁ ଜାମା କରୁଛନ୍ତି । ଦରଜି ମୁହଁକୁ କ ଟେକ ସହରକୁ ଅନେଇଁ ବସିବେ କାହିଁକ ?

ସେଇ ଲୁଗା ଶାଢ଼ୀ ତ ପିନ୍ଧୁଛୁ ଆମେ । ଲାଜରୁ ରକ୍ଷା ପାଇବାକୁ ଟିକଏ ବାଟେଇ ପିନ୍ଧିଲେ ଦେହର ଲଙ୍ଗଳା ରୂପ ଆଉମାନେ ଦେଖିବେ ନାହିଁ । ଖାଲି ଆଖି ବୁଜିଲେ ମୁଣ୍ଡରେ ହାତେ ଓଢ଼ଣା ଦେଲେ, ନଜେ ସିନା ନଜର ଦରନଙ୍ଗଳା ରୂପ ଦେଖିବ ନାହିଁ, ଦୁନଆ ଦେଖିବ, ଛୁ ଗ୍ଛକର କରିବ । ଲୁଗା ଏମିତ ପିନ୍ଧ । ଆଖି ବୁଜିବା କ ହାତେ ଓଢ଼ଣା ଦେବା ଲୋଡ଼ା ହେବ ନାହିଁ । ଯିବା ଆସିବା, କାମଦାମ କରିବାରେ ଅସୁବିଧା ହେବ ନାହିଁ । କନା ଗଜେ ହେଲେ ଜାମା ସିଆଁ ହେବ । ହାତରେ ହିଁଁବା ମ ।

ଏମିତ କେତେ କଥା ସେ ଶିଖାନ୍ତି । ନଜେ କରି ଦେଖାନ୍ତି ।

ଅବେ ଏ ଗାଆଁକୁ ଅସିଲେ ସାତ ଆଠ ଦନରୁ ଅଧିକ ସେ ରହନ୍ତି ନାହିଁ । ଯେତକ ଦନ ସେ ରହନ୍ତି, ଗାଆଁର ସବୁ ଘରେ ପଶନ୍ତି, ଦନ ସାରା ଖାଲି କାମରେ ଲାଗି ଥାଆନ୍ତି ।

ତନ ବର୍ଷ ତଳେ ପ୍ରଥମେ ସେ ଏ ଗାଆଁରେ ପାଦ ଦେଇଥିଲେ । ବର୍ଷେ କାଳ ଗାଁ ମାଇପେ ତାଙ୍କ କଥା ଶୁଣି, ଆଗରେ ନ ହେଲେ ପଛରେ ମୁହଁ ମୋଡ଼ୁଥିଲେ ।

ସମସ୍ତଙ୍କୁ ସେ କିଣି ସାରିଛୁ । ବନ୍ଧନସୂତ୍ରରେ ନଜକୁ ସେ ସମର୍ପି ଦେଇଛୁ ।

Digitized by PPRACHIN, SOA

ଝୁମା ଆସିଛି । ଜଣେ ପଚାରୁଛି ଆଉ ଜଣକୁ, କୁଆଡ଼େ ଗଲା ସେ ବନ୍ଲଲତା ?

ସୁସନ୍ଧ୍ୟା ଅନେଇ ରହିଛି । ଦୁଇ ଘଣ୍ଟା ହେଲା ଚମ୍ପା ଯାଇଛି ଝୁମାଅପାକୁ ଡାକିବାକୁ । ସଞ୍ଜ ବୁଡ଼ିଲାଣି । ତଥାପି ସେ ଫେରିଲା ନାହିଁ ।

ଆଜି ବହୁଳ ଅମାବାସ୍ୟା । ନୂଆ ମା ଓ ଖୁଡ଼ୀଙ୍କ ସଙ୍ଗେ ମିଶି କେତେ ଜାତିର ପିଠାପଣା ସେ କରି ରଖିଛି । ଝୁମାଅପାକୁ ଖାଇବାକୁ ଦେବ । ତାଙ୍କ ସଙ୍ଗରେ ଆଉ ଯେତେ ଝିଅବୋହୂ ଆସିବେ, ସମସ୍ତଙ୍କୁ ସେ ନିଜ ହାତରେ ଖୋଇବ ।

ଦୁଇ ମାସ ତଳେ ଝୁମାନାନୀ ଆସିଥିଲେ । ତା'ର ସ୍ୱେଟର୍ ବୁଣା କାମ ଓ କ୍ରସ୍ କଣ୍ଟାରେ ସରୁ ସୂତାରେ ଯେଉଁ ଟେବୁଲ-କ୍ଲଥ ସେ ବୁଣିଛି, ତା'କୁ ଦେଖି ଖୁସି ହୋଇଥିଲେ । ସେଇ ତ ବୁଣା ଶିଖେଇଛନ୍ତି । ଆଜି ସେ ନୂଆ କାମ ଶିଖେଇବେ ।

ସେ ଦିନ ମା' ତାଙ୍କୁ ଟାଣ କଥା କହିଲେ ବୋଲି ସେ ମନକଷ୍ଟ କରି ଆସୁନାହାନ୍ତି କି ? ସନ୍ଧ୍ୟାର ଆଖିରେ ଲୋତକ ଛଳଛଳ ହେଲା । ସେଦିନ ତା ମାଆଙ୍କର ସ୍ମୃତି ନ ଥିଲା, ମଦ ଖାଇ ମତିଭ୍ରମ ହୋଇଥିଲା ।

ବାପ ମା' ଦୁହେଁ ହେଲେଣି ସମାନ । ବାପ ଢାଳିଦେଲେ, ଗିଲାସ ପୂର୍ଣ୍ଣ କଲେ ଢକ ଢକ କରି ମା' ପିଅନ୍ତି । ସେ ଢାଳି ଦିଅନ୍ତି ବାପାଙ୍କ ପାଖରେ ।

ମା' ବୁଲିଗଲେଣି ଉପର ଖଞ୍ଜାକୁ । କେବଳ ନାଥିଆ ଭଣ୍ଡାରୀ, ବାବନା ପ୍ରଧାନ, ପୁରୋହିତେ ଓ ଯମୁନା ବ୍ୟତୀତ ଅନ୍ୟମାନଙ୍କୁ ସେଠାକୁ ଯିବାକୁ ମନା । ସମସ୍ତେ ଜାଣିଲେଣି; ରାଜା-ରାଣୀ ଦୁହେଁ କେଉଁଠୁ ବିଲେଇ ମଦ ଯୋଗାଡ଼ କରି ଦିନରାତି ସବୁବେଳେ ପିଉଛନ୍ତି । ସୁସନ୍ଧ୍ୟା ପାଖକୁ ଗଲେ, ଦୁଇ ଜଣ ଚହଙ୍କି ଉଠନ୍ତି ।

କେବେ କେମିତି ମା' ତଳ ଖଞ୍ଜାକୁ ଆସନ୍ତି କେବଳ ଚାକରାଣୀମାନଙ୍କ ସଙ୍ଗେ କଳି କରିବାକୁ । ବେଳେ ବେଳେ ପ୍ରହାର କରନ୍ତି । ଦିନେ ସେ ଖୁଡ଼ୀଙ୍କୁ ମାରିବାକୁ ଚହଙ୍କି ଆସିଥିଲେ । ପାଟି କଲେ, ତୁଇ ଅଲକ୍ଷଣୀ ଶିଖେଇଲୁ ବୋଲି ସୁରତ ଗାଆଁ ଲୋକଙ୍କୁ ମାତେଇ ଅନାବାଦୀ ଭୂମି କାଟି ହଳ କଲେ । ଜଙ୍ଗଲ ପୁରେଇଲେ । ଖଣ୍ଡଖଣ୍ଡ କରି ଜମି ମୂଲିଆମାନେ ବାଣ୍ଟି ଚାଷ କଲେ । ପୁଲିସ ଆସିଲା, କାହାକୁ ବାନ୍ଧିବ ? ତୋର ଶିକ୍ଷାରେ ସମସ୍ତଙ୍କ ଆଗକୁ ଯାଇ କୁନାଙ୍ଗାର ଟୋକାଟା କହିଲା, ମୋ ଜମି ମୁଁ ଚାଷ କରୁଛି । ପୁଲିସ ଫେରିଲା । ତୁଇ ନିଆଁ ଲାଗୀ, ଏ ସବୁର ମୂଳରେ ତୁ – ।

Digitized by PPRACHIN, SOA

ସୁସନ୍ଧ୍ୟା କୁଣ୍ଢାଇ ଧରିଲା । ମମତା ତା'ଙ୍କୁ ଛୁଞ୍ଚାଇ ଦେଲେ । ଧାଇଁଗଲେ ଭାରତୀଙ୍କ ପାଖକୁ । ଭାରତୀ ତା'ଙ୍କୁ କୁଣ୍ଢାଇ ଧରି କହିଲେ, ମତେ ମାରିପକା ଅପା, ତମର ଏ ରୂପ, ଏ ଢଙ୍ଗ ଦେଖିବାଠୁ ମରିଯିବା ଭଲ । ରକ୍ତମାଟିର ରାଜଜେମା ତମେ, ରଣଗଡ଼ର ରାଜରାଣୀ, କି ରୂପ ହେଲଣି ? କିଏ ତୁମକୁ ଏ ବୁଦ୍ଧି ଦେଲା, କୁଳର ଲକ୍ଷ୍ମୀ ତୁମେ, ମଦ ଖାଇଲ ? ଗୋଟି ଗୋଟି କରି ଦେହରୁ ଗହଣା ଯାଉଛି । ଏ ବୁଦ୍ଧି ଛାଡ଼, ଅପା, ମତେ ମାରି ପକା, ମୋ'ର ମରଣ ହେଉ ।

ହସିହସି ନଯ୍ଯାନ୍ତ ହେଲେ ମମତା । ଭାରତୀଙ୍କୁ ଛାଡ଼ି ଟଳି ଟଳି ଫେରିଗଲା-ବେଳକୁ ଦୃଷ୍ଟି ପଡ଼ିଲା ଟୁନାନାଙ୍କ ଉପରେ । ଟୁନାନା ନମସ୍କାର କଲେ । ଅନ୍ଧକା ହୋଇ ଅନାଇଁ ରହିଲେ !

ମମତା ପଚାରିଲେ, କିଏ ତୋ ତୁ ?

ହସହସ ହୋଇ ଟୁନାନା ଉତ୍ତର ଦେଲେ, ମୁଁ ଆହୁତ, ମା' ମୋତେ ଟୁନା ବୋଲି ଡାକେ । ମୁଁ ଘରଘର ବୁଲି ମା' ଖତ୍ରୀ, ଖତ୍ରିକ, ଭଉଣୀଙ୍କର ସେବା କରେ । ଯେଉଁ କାମ ମୋତେ ନ ଆସେ, ମୁଁ ତାଙ୍କଠୁଁ ଶିଖେ । ଯେଉଁ ନୂଆ କାମ ମତେ ଜଣା ମୁଁ ସେମାନଙ୍କୁ ଶିଖାଏଁ ।

ମମତା ଆଖିମଳି କଟମଟ କରି ଚାହିଁଲେ । କହିଲେ, ମିଛ କଥା । ତୁ ତ ଆହୁତ ନହୁଁ । ସେ ମୋ'ର— । ନା, ସେ ମୋ'ର ବୋହୂ ନୁହେ । ସେ ମୋ'ର କିଛି ନୁହେ । ସୁବ୍ରତ ତା'କୁ ବାହା ହେବାକୁ ମନା କଲା । ସୁବ୍ରତ ଘରଛାଡ଼ି ଚାଲିଗଲା । ଆହୁତ ହେଲାଣି ପରଘରର ବୋହୂ । ସେ ହେଲାଣି ପୁଅର ମା । ସୁବ୍ରତ ଫେରିବ ନାହିଁ । ଆହୁତ ଫେରିବ ନାହିଁ । ତୁ ଅହୁତ ନୁହଁ— । କିଏ ତୁ ତୋ— ?

ଆହୁତ ଆଖିରେ ଲୁହ ଛଳଛଳ । ଓଠ ତ ଫାଳ ଥରି ଉଠିଲା । ମୁହଁ ଖୋଲିଲା, ମୁଁ ଅହୁତ ନୁହେଁ ମା', ମୋ ନାମ ଆହୁତ । ମା' ଭଉଣୀଙ୍କର ସେବା କରିବା ମୋ'ର କାମ ।

ସେବା, ଆମ୍ଭେ ସେବା ? ଏ ଘରେ କେହି ରୋଗୀ ନାହାନ୍ତି । କାମ କରିବାକୁ ଆମର କେତେ ଚାକର ଚାକରାଣୀ ଅଛନ୍ତି । ରଜାଘର ଉଆସରେ ଆମର କୌଣସି ଅଭାବ ନାହିଁ । ଚାଲି ଯା ଏ ଘରୁ, ଚାଲି ଯା । ତୋ କଥା ମୁଁ ଶୁଣିଛି । ଗାଁ ଗାଁ ଘର ଘର ବୁଲି ତୁ ଧର୍ମଛଡ଼ା କଥା ଶିଖଉଛୁ ।

ନାଇଁ ମା' ଭଲ କଥା ମୁଁ ଶିଖାଉଛି ।

ଭଲ କଥା ? ହଇ ଲୋ ବାରବୁଅଣୀ ଛତରଖାଇ, କେଉଁଟା ଭଲ କଥା ? ଘରର ଝିଅବୋହୂ, ଦେଢ଼ଣାଛାଡ଼ି ପଦାକୁ ଆସିବେ, ଜାମାଯୋଡ଼ା ପିନ୍ଧିବେ, ଲାଜ ସରମ ଛାଡ଼ି ପାଠ ପଢ଼ିବେ, ହାତ୍ତୁଙ୍କୁ ଯାଚି ଛୁଏଁଇ ଗୀତ ବୋଲିବେ,

Digitized by PPRACHIN, SOA

ସମ୍ପର୍ଶିତ ଗଡ଼ିବେ ଛତ୍ରୀଘର ମା'ଇପଙ୍କ ପର ଅରଟ ଧର ସୂତା କାଟିବେ, ହଳଦୀ ତେଲ ଦେହରେ ନ ବୋଳି ସାବୁନ୍ ବୋଳିବେ, ଧୋବଣୀଙ୍କ ପର ନିଜ ହାତରେ ଲୁଗା କାଚିବେ, ହାଡ଼ି ହାଡ଼ିଆଣୀ ହୋଇ ଘର ଗୁହ୍ମପାଖ ମଇଳା ସଫା କରିବେ, ଛୁଆଁ ଛୁତ ମାନିବେ ନାହିଁ, ଜା'ତ ଅଜାତ ଘେନିବେ ନାହିଁ, କଥା କହିଲେ ଉତ୍ତର ଦେବେ । ଏ ଗୁଡ଼ା ଭଲ କଥା, ହଇ ଲୋ ସାହାବାଣୀ ?

ଏ ସବୁ ତ ଆମର କାମ ମା' !

ମରଣ ନାହିଁ ଲୋ ତତେ ! ଏ ବୁଦ୍ଧି କେଉଁଠୁ ଘେନି ତୁ ଅଇଚୁ ? ପୁଣି ଉପଦେଶ ଦେଉଚୁ, ବେଶି ପିଲା ଛୁଆ ଜନମ କର ନା ? କେଉଁଠା ପିଲାର ମାଆ ମ ତୁ, ପିଲା ଛୁଆ ହେବା କ'ଣ ମଣିଷ ହାତର କଥା ?

ମଣିଷହାତର କଥା ମା' ।

କର୍ମନ ! ରାଜପୁରୋହିତଙ୍କର ବୋହୂ ଆଉ, ତା'କୁ କ ଉପଦେଶ ଦେଲୁ ଯେ ନିଜ ସରମ ଗୁପ୍ତ ଘରୁ ବାହାର ପରଘରେ ଯାଇ ଔଷଧ ବାଣ୍ଟିଲାଣି । ପୁରୋହିତେ ଆଉ ଘରେ ପଶୁ ନାହାନ୍ତି । ବୈଷ୍ଣବପଦର ପୋଥିରେ ଡୋର ବାନ୍ଧିଲେଣି ।

ଧର୍ମୁଘରଙ୍କର ସ୍ତ୍ରୀ ଅମୃତହସ୍ତା । ମା' ଭଉଣୀମାନଙ୍କର କେତେ ଉପକାର ସେ କରୁଛନ୍ତି । ଧର୍ମୁଘର ଯେମିତ—

ସେଉଁଠା ଧର୍ମଛଡ଼ା ଲକ୍ଷ୍ମୀଛଡ଼ା, କୁଳାଙ୍ଗାର,ବ୍ରାହ୍ମଣ ନୁହେଁ ହାଡ଼ି । ରାଜ-ପୁରୋହିତର ପୁଅ ହୋଇ ବାହ୍ମଣରେ ତୋରଣି ପିଉଛି । କଣ୍ଠୀଘର ମଡ଼କୁ କାନ୍ଧରେ ବୋହି ମଶାଣିକି ନେଉଛି, ଖିରୋଦନର ହାତରେ ରାଧାମାଧବଙ୍କ ପ୍ରସାଦ ଖାଇଛି । ସେଇ ଧର୍ମଛଡ଼ା ତ ମୋ ପୁଅ ପୂତକୁ ବାଲୁଙ୍ଗା କଲା, ଘରୁ କାଢ଼ିଲା, ତ୍ୟଜ୍ୟପୁତ୍ର କରେଇଲା । ଦୁଇ ଛତରା ମିଶି ଗାଆଁକୁ ପାଗଳ କଲେଣି । ତୁ ଅଲକ୍ଷଣୀ ବ ଆସି ଜୁଟିଲୁଣି । ଗୁଲ୍ ଯା ମୋ ଘରୁ, ଗୁଲ ଯା— । ତା' କଥା ଶୁଣିବୁ ନାହିଁ ସନ୍ଧ୍ୟା, ତା କଥାରେ ପଡ଼ିବୁ ନାହିଁ । ପିଟିପିଟି ପିଠିରୁ ଚମ ଛଡ଼େଇବି ।

କହୁକହୁ ମମତା ଦାସୀ ମାଳତୀର ହାତ ଧରି ଉପର ଫଟାରେ ସଜା ହୋଇଥିବା ନିଜ କୋଠରୀକୁ ଗୁଲିଗଲେ । ସମସ୍ତେ ଅଳକ୍ଷା ହୋଇ ପଛରୁ ଗୁହିଁ ରହିଲେ ।

ଆଜୁଟର ହାତ ଧରିଲା ସନ୍ଧ୍ୟା । କ୍ୟଥାଭରା ଭାଷାରେ ଗଳା ଅଗାଇ କହିଲା, ଝୁମାଅପା, ମା'ଙ୍କର ଦେହ ଭଲ ନାହିଁ । କଅଣ ସେ କହୁଛନ୍ତି ନିଜେ ଜାଣନ୍ତି ନାହିଁ ।

Digitized by PPRACHIN, SOA

ଅନୁଭବ ହନ୍ଧ୍ୟାର ଆଖିରୁ ଲୁହ ପୋଛି କହୁଥିଲା, ସେ କଥା ମୁଁ ଜାଣେ। ଔଷଧ ଦେଲେ ତାଙ୍କର ରୋଗ ଭଲ ହୋଇଯିବ। ମତେ ସେ ଔଷଧ ଜଣାଅଛି। କେତେ ମା' ଝିଅଙ୍କ କଥା ଅକଥାରେ ବେଳେ ବେଳେ ଏପରି ବିରକ୍ତ ହୁଅନ୍ତି। ସେ ସବୁ ମୁଁ ମନରେ ଧରେ ନାହିଁ। ଚାଲ, ତମକୁ ଆଜି ମୁଁ ନୂଆ ପ୍ରକାରର ଖୁଣା ଶିଖେଇଦେବି।

ଆନୁଭବର ହାତ ଧରି ସନ୍ଧ୍ୟା ଦୋତାଲା ଉପରକୁ ନେଇ ଯାଇଥିଲା। ଭଲ ନାମ ଶିଖିଥିଲା। ଉପରେ ହଲ ବୋଲି ଯେଉଁ କୋଠରୀରେ ସନ୍ଧ୍ୟା ପଢ଼ାପଢ଼ି କରେ, ସେଥିରେ ଓ ସୁବ୍ରତର ବହିପତ୍ର, ଫଟୋ, ଖୁଣ୍ଡି ଯାଇଥିବା ପୋଷାକପତ୍ରର ଯତ୍ନ ନିଏ। ମା' ତଳ ଖଞ୍ଜା ଖୁଣ୍ଟି ଉପର ଫଟୋଗ୍ରାଫ୍ ଗଳ ବଲି ସେ ଶୁଏ ଖଟ୍ଟି ଓ ନୂଆ ମା'ଙ୍କ ପାଖରେ। ଦୋତାଲାର କୋଠରୀରେ ତାଲା ପଡ଼େ।

ଝୁମାଅପା ଫଟୋଗୁଡ଼ିକୁ ଆଗ୍ରହରେ ଦେଖନ୍ତି। ଅତି ଆଗ୍ରହରେ ସୁବ୍ରତର ଫଟୋଗୁଡ଼ିକୁ ହାତରେ ଧରି ନିରୀକ୍ଷଣ କରନ୍ତି। ସୁବ୍ରତ ଗୁରୁଣ୍ଡୁଛି, ଘୋଡ଼ା ଚଢ଼ୁଛି, ହକି ଖେଳୁଛି। ଗ୍ରୁପ୍ ଫଟୋରେ ନଳରାଜ ସୁବ୍ରତ ପାଖରେ ଦମୟନ୍ତୀ, ଆଉର କେତେ ଗ୍ରୁପ-ଗ୍ରୁପ୍। ସମସ୍ତେ ବେଶ୍ ପିନ୍ଧିଛନ୍ତି। ଆନୁଭବ ଏଇ ଫଟୋଟିକୁ ସ୍ନେହ କରେ। ତନ୍ମୟ ହୋଇ ଚାହିଁ ରହେ। ହସ ହସ ହୁଏ। ପଚାରେ, ଏ ସବୁ କିଏ କି ସନ୍ଧ୍ୟା ?

ସୁସନ୍ଧ୍ୟା କହେ, ଏଇ ସବୁ ଭାଇ। ଚିହ୍ନି ହେଉ ନାହିଁ। କଲେଜରେ ଡ୍ରାମା କରିଥିଲେ ଯେ ସେ ନଳ ହୋଇଛନ୍ତି —।

ଏ ଝିଅଟି କିଏ ?

ଦମୟନ୍ତୀ ସିଏ! କେଡ଼େ ସୁନ୍ଦର ସେ ଝିଅଟି। ଜୁହେଁ କି ଝୁମାଅପା ? ଏଇ ଫଟୋଟିକୁ ଭାଇ ଅତି ଭଲ ପାଆନ୍ତି। କାନ୍ଥରୁ ଓହ୍ଲାଇ ଧୂଳି ଝାଡ଼ି ପାଖରେ ରଖନ୍ତି। ପୁଣି ଯତ୍ନ କରି ଟାଙ୍ଗନ୍ତି।

ତମେ ଝିଅମାନେ ମିଶି ଗୋଟାଏ ଡ୍ରାମା କରିବ କି ସନ୍ଧ୍ୟା ?

ଘରୁ ବାହାରିବାକୁ ମା' ମନା କରୁଛନ୍ତି। ଡ୍ରାମାରେ ଯୋଗ ଦେବା ପାଇଁ କିଏ ତା'ଙ୍କୁ ପଚାରିବ ?

ଆନୁଭବ ଚୁପ ରହିଛି।

ସନ୍ଧ୍ୟା ଆଜି କଥା ମାନୁ ନାହିଁ। ଝରକା ବାଟେ ପଦାକୁ ଚାହିଁଛି। ଝୁମା ଅପାଙ୍କୁ ସଙ୍ଗରେ ନେଇ ଚମ୍ପା ଅବଶ୍ୟ ଫେରିଆସିବ। ମା ପେଟବଥା ରୋଗରେ ଛଟପଟ ହେଉଛନ୍ତି। ବାବନା ପଧାନ ଆଉ ଘରେ ପଶୁନାହିଁ। ନାଥିଆ ଲୁଚେଇ କରି ଖଇଗି ମଦ ଆଣି ଦେଉଛି। ମା' ସେଇଥିରୁ ଗ୍ଲାସେ ଖାଇ ବାନ୍ତି ଉଛୁଳା କଲେ। ହେଇଟି ମଦଖିଆ ବନ୍ଦ। ପେଟମରା ରୋଗରେ ପଲଙ୍କ ଉପରେ ଗଡ଼ୁଛନ୍ତି କଷ୍ଟରେ।

Digitized by PPRACHIN, SOA

ଝୁମ୍ପିଅପା ଆସିଲେ ଆଜି ଔଷଧ ଦେବେ । ତା'ପରେ ପିଠାପଣା ଖିଆ – । କେତେ-ବେଳ ସେ ଅସିବେ ?

ସୁସନ୍ଧ୍ୟା ଖଚୁଛି ।

ନୂଆ ଜମିରେ ପାଣି ମାଡ଼ୁଛି । ବଡ଼ ନାଳରୁ ଯେଉଁ ଟୁଗ୍ରଙ୍କ ନାଳଟି ରଣଗଡ଼ ଗାଁରକୁ ଦୁ'ଭାଗ କରି ଆର ଗାଁର ମହାଦେବ କୁଦ ପାଖରେ 'ଛୁଡ଼ୁଛି, ତାହାର ଦେହରୁ ଖୋଳା ହୋଇ ଆସିଛି କରନାଳ । ବଡ଼ ନାଳର ନାମ ଦିଆହୋଇଛି ଜାହ୍ନବୀ ଆଉ ସାନ ନାଳର ନାମ ଲକ୍ଷ୍ମୀ । ସେଇ ସାନ ନାଳରୁ ବାହାରିଥିବା କରନାଳୀର ନାମ ଦେଇଛନ୍ତି "ରଣସିଙ୍ଗି" ।

ରଣସିଙ୍ଗି ନାଳ ରଣସିଙ୍ଗ ଗଡ଼ର ମଝିରେ ସିଧାସଳଖ ଗଡ଼ର ଶେଷଯାଏ ଲମ୍ବିଛି । ଏ ଗଡ଼ର ବନେ ଅରମା, ଅନୁର୍ବର ବଣ ହୋଇ ପଡ଼ିଥିଲା । ଏହାର ପାଇଁ ଦିନେ ଗ୍ରାମର ମୂଲିଆମାନେ ସୁବ୍ରତ ପଛରେ ଆଶା-ମୁଖରେ ରଣସିଂହଙ୍କ ପାଖକୁ ଧାଇଁ ଯାଇଥିଲେ । ହତାଶ ହୋଇ ଫେରି ଆସିଥିଲେ ।

ଅନୁର୍ବର ଅରମା ଆଜି ସ୍ୱର୍ଣ୍ଣପ୍ରସୂ କୃଷିଜମିରେ ପରିଣତ ହୋଇଛି । ଆଖୁ, ଗହମ, ଆଳୁ, ବାଇଗଣ, କୋବି, ମଟର ଇତ୍ୟାଦି ପତ୍ରପରିବାରେ ପୂର୍ଣ୍ଣ ହୋଇ ଶହେ ଖଣ୍ଡି ଗ୍ରାମର ଲୋକଙ୍କର ଆନନ୍ଦ, ବିସ୍ମୟ, ଆଶା, ଉତ୍ସାହର କ୍ଷେତ୍ର ହୋଇଛି ।

କାହା ପାଇଁ ଆଜି ଭୂମିହୀନ ମୂଲିଆ ଦଳର ମୁହଁରେ ହସ । ହାତିରେ ଖତ ?

ସୁବ୍ରତ ରଣରଙ୍କା ।

ହାତରେ ଟାଙ୍ଗିଆ ଧରି ପ୍ରଥମେ ସେ ଅରମା ଗଛର ମୂଳରେ ଚୋଟ ମାରିଥିଲା । ହାତ ଯୋଡ଼ି ପଛକୁ ଅନାଇଁ ପାଟିକରି ଡାକ ଛାଡ଼ିଥିଲା, ଏ ଜମି ରଣଗଡ଼ର ଜମିଦାର ଅଭିନବ ରଣସିଂହଙ୍କର । ମୁଁ ତାଙ୍କର ପୁଅ । ଏ ଜମି ମୋ'ର, ଏ ଜମି ମୋ'ର ବଡ଼ ଭାଇ ସୁବ୍ରତ ବଜ୍ରବାହୁଙ୍କର । ସେମାନଙ୍କ ତରଫରୁ ଓ ମୋ'ର ନିଜ ତରଫରୁ ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି, ମୋତେ ସାହାଯ୍ୟ କରନ୍ତୁ । ଏଇ ଅପନ୍ତରା, ଅରମା ଭୂମିକୁ ମୁଁ କୃଷିଜମି କରିବି ।

ସେବକ ସମାଜର ସବୁ ସଭ୍ୟ ସୁବ୍ରତ ରଣରଙ୍କାର ପଛେ ପଛେ ଅରମା ଭିତରେ ପଶିଥିଲେ । କାହା ହାତରେ ଟାଙ୍ଗିଆ, କାହା ହାତରେ କଟୁରି କୋଡ଼ି, ଶାବଳ ।

Digitized by PPRACHIN, SOA

କୋର୍ଟରେ—

ଏ ଭୂମି କାହାର ?

ରଣସିଂହଙ୍କର ।

ତମେ ସବୁ କଏ ?

ତାଙ୍କର ପ୍ରଜା-ପୁଅ ।

କାହାର ଆଦେଶରେ ପରର ଭୂମିରେ ଅନଧିକାର ପ୍ରବେଶ କଲ ? ପରର ଭୂମିକୁ ଆବାଦ କଲ ?

ତାଙ୍କର ପୁତ୍ର ସୁବ୍ରତ ରଣରଙ୍କା । ସାହାଯ୍ୟ କରିବାକୁ ଆମକୁ ନିମନ୍ତ୍ରଣ କରିଥିଲେ ।

ଏ କଥା କ'ଣ ସତ୍ୟ ?

ସତ୍ୟ ।

ତୁମକୁ ରଣସିଂହେ ତ୍ୟାଜ୍ୟପୁତ୍ର କରିଛନ୍ତି ?

ମୁଁ ସୁବ୍ରତ ରଣରଙ୍କା ଜମିଦାର ଶ୍ରୀ ଅଭିନବ ରଣସିଂହଙ୍କର ପୁତ୍ର । ଜମିଦାରଙ୍କର ଉତ୍ତରାଧିକାରୀ ଶ୍ରୀ ସୁବ୍ରତ ବଜ୍ରବାହୁଙ୍କର ମୁଁ ଅନୁଜ । ଜାଣେ ନା, ପିତା ମୋତେ ତ୍ୟାଜ୍ୟପୁତ୍ର କରିଛନ୍ତି କି ନାହିଁ । ଏତିକି ଜାଣେ, ମୋ'ର ବଡ଼ ଭାଇ ମୋତେ ତାଙ୍କର ଉତ୍ତରାଧିକାରୀତ୍ୱର ଦାୟିତ୍ୱ ଦାନ କରିଛନ୍ତି । ମୋ'ର ନିଜର ଖୋରାକ୍ ପୋଷାକର ଅଧିକାର ଅଛି । ମୋ'ର ଦାୟିତ୍ୱ ମୁଁ ତୁଲାଇଛି । ଅନୁର୍ବର ଅପନ୍ତରାକୁ ଉର୍ବର କୃଷିଜମି କରୁଛି । ମୋ'ର କାର୍ଯ୍ୟ ପାଇଁ ମୁଁ ଦାୟୀ । ଏମାନେ ନୁହନ୍ତି । ଏଇ ମୋର ଭାଇଙ୍କର ପତ୍ର— ।

ସିଭିଲ୍ ଡିସ୍‌ମିଉଟ୍ ।

ସୁବ୍ରତ ପତ୍ର ଲେଖିଛି— × ×

ବଡ଼ ପୁଅ ବୋଲି ମୋର ଯଦି କିଛି ସ୍ୱତନ୍ତ୍ର ଅଧିକାର ଥାଏ, ସେତକ ଓ ମୋ'ର ମନର ସବୁ ପ୍ରେମ ମୁଁ ମୋର ସାନ ଭାଇ ସୁବ୍ରତ ରଣରଙ୍କା ହାତରେ ଅର୍ପଣ କରିଛି । ତୁମେ ଆମର କୁଳପୁରୋହିତ ଧର୍ମାନନ୍ଦ, ତୁମର ଶୁଭ ଇଚ୍ଛା, ମନ୍ତ୍ରଣା ଓ ମହାଯଜ୍ଞର ପ୍ରଭାବରେ ରଣଗଡ଼ରେ ନୂତନ ରାଜ୍ୟ ପ୍ରତିଷ୍ଠିତ ହେଉଛି – ଧର୍ମରାଜ୍ୟ, ବିବେକ ପରିଚାଳିତ ସଦ୍‌ବୁଦ୍ଧିର ଈର୍ଷାହୀନ ପ୍ରେମରାଜ୍ୟ । ସେ ରାଜ୍ୟରେ ଅଭିଷିକ୍ତ ହେବାର ଯୋଗ୍ୟତା ଅଛି ମୋର ଭାଇ ରଣରଙ୍କାର ।

ମୋର ସେ ଉପଯୁକ୍ତତା କାହିଁ ? ରଣଗଡ଼ର ସେବକ-ସମାଜର ସଭ୍ୟ ହେବାର ଯୋଗ୍ୟତା ମୁଁ ଅର୍ଜନ କରୁଛି । ଅତୀତ ଇତିହାସ ଭୁଲି ଚାଲନ୍ତି ଇତିହାସ

Digitized by PPRACHIN, SOA

ଭିତରେ ନିଜକୁ ବିଲୀନ କରିଛୁ । ଅରେ ଆସି ଦେଖି ଯାଅ, ବେଗଗାମୀ ଗଣ୍ଡରଣୀ କିପରି ମଣିଷର ଉଦ୍ୟମ ଓ ବୁଦ୍ଧିରେ ପୋଷା ମାନୁଛି । ସହସ୍ର ସହସ୍ର ଏକର ଅରଣ୍ୟ ଅସମତଳ ଅନୁର୍ବର ଭୂମି ଆଜି ଫଳଫୁଲରେ ହସି ଉଠିଛି ।

ଯେଉଁମାନେ ଦେହର ଝାଳରେ ଏ ସୁନା ଭୂମି ଗଢ଼ିଲେ, ସେଇ ମୁଲିଆ ଦଳ—ଆବାଳବୃଦ୍ଧବନିତା—ପେଟକୁ ଦାନା ନାହିଁ, ଦେହ ଘୋଡ଼ାଇବାକୁ କନା ନାହିଁ,—ନୂଆ ସ୍ୱର୍ଗ ଗଢ଼ିବାକୁ ହସିହସି, ସଂସାରରେ ଯାହା ତାଙ୍କର ସମ୍ବଳ ଥିଲା ମୁଣ୍ଡରେ, କାନ୍ଧରେ, ପିଠିରେ ବୋହି କିଏ କୁଆଡ଼େ ଚାଲିଗଲେଣି ।

ଯେଉଁ କେତୋଟି କୁଟୁମ୍ବ ନୂଆ ଜମିର ଅଂଶ ପାଇଲେ, ସେମାନେ ସୁଖରେ ଅଛନ୍ତି । ସେମାନଙ୍କର କିପରି ଆର୍ଥିକ ଓ ସାମାଜିକ ଉନ୍ନତି ହେବ, କିପରି ସେମାନେ ସବୁ କୁଅଭ୍ୟାସ ପରିତ୍ୟାଗ କରି ପ୍ରକୃତ ମନୁଷ୍ୟ ହୋଇପାରିବେ, ସେହି ବିଷୟ ମୁଁ ଚିନ୍ତା କରୁଛି । କର୍ମୀଦଳ, ସ୍ୱେଚ୍ଛାସେବକ ଗଠନ କରୁଛି ।

ଆମ ଦେଶ, ଆମ ସମାଜ କିପରି ସବୁ କ୍ଷେତ୍ରରେ ପଛରେ ପଡ଼ୁଛି, ସେତିକି ଦେଖି ମୁଁ ଚାଟଙ୍ଗା ହେଉଛି । ଆମକୁ କିଏ ଉପରକୁ ଉଠାଇବ ? ଆମର ଦୁଃଖ କିଏ ଦୂର କରିବ ? କିଏ ଆମକୁ ସଭ୍ୟ, ଉନ୍ନତ ମନୁଷ୍ୟ କରି ବିଶ୍ୱଦରବାରରେ ସମାନ ଆସନ ଦେବ ?

ଆମେ !

କିପରି ଏହା ସମ୍ଭବ ହେବ ଧର୍ମାନନ୍ଦ ?

ତିମିର ମନ୍ତ୍ର ମୋ'ର କାନରେ ବାଜୁଛି—କର୍ମଂ ବା ସାଧୟେତ୍, ଶରୀରଂ ବା ପାତୟେତ୍ ।

କିପରି ସେ କର୍ମ ?

ଆମର କଅଣ ଲୋଡ଼ା, ସେ କଥା ଆମକୁ ବୁଝିବାକୁ ହେବ । କଅଣ କଲେ ଅଭିଳଷିତ କର୍ମ ହୋଇ ପାରିବ ? ସେଥିପାଇଁ ଯୋଜନା ଆବଶ୍ୟକ । ଯୋଜନା କିପରି କାର୍ଯ୍ୟରେ ପରିଣତ ହେବ ? ଯନ୍ତ୍ରପାତି, ଲୋକବଳ, କର୍ମୀ ଓ କର୍ମନିୟନ୍ତ୍ରଣ ! ଲୋକବଳ ଆମେ । କର୍ମୀ ଆମେ ।

ପଛରେ, ଅନ୍ଧାରରେ, କୁସଂସ୍କାରରେ ପଡ଼ି, ଆଳସ୍ୟର ମହାନିଦ୍ରାରେ ଶୋଇଥିଲା ଯେଉଁ ଜାତି, ତା'ର ନିଦ୍ରା ଭାଙ୍ଗିଛି । ସୁଖସ୍ୱପ୍ନ ଭାଙ୍ଗିଛି । ଦିନରାତି ଆମରି କର୍ମର ମୂର୍ଚ୍ଛନା ଭିତରେ ଆତ୍ମଗୋପନ କରୁ, ସତ୍ତା ହଜାଇ ଦେଉ ।

ରଣଗଡ଼ର ରାଜପୁତ୍ର ମୁଁ ?

ଦିନେ ଥିଲେ ମୋର ପୂର୍ବପୁରୁଷେ, ଦିନେ ଥିଲେ ମୋର ପିତା । ସେତେବେଳେ ରାଜ୍ୟ କହିଲେ ବୁଝାଉଥିଲା ଲୋକଙ୍କର ପାର୍ଥିବ ସମ୍ପତ୍ତି ଉପରେ, ଧନ ଉପରେ ଆଉ ଜଣଙ୍କର ପ୍ରଭୁତ୍ୱ । ସେ ସମସ୍ତ ଅତୀତର ଅସୀମ ଅନ୍ଧାରର ଆବରଣ ତଳେ ଆତ୍ମଗୋପନ କରିଛି । ଯେଉଁ ନିର୍ବୋଧ ଦଳ ସେଇ ଯୁଗକୁ ଝୁରି ହେଉଛନ୍ତି, ସେମାନେ ଅତି ଶୀଘ୍ର ସେମାନଙ୍କର ଭ୍ରମ ବୁଝି ପାରିବେ ।

Digitized by PPRACHIN, SOA

ଅପନ୍ତର ଅନାବାଦୀ ଭୂମିରେ ତମେ ଆଜ ସୁନା ଫଳାଉଛ । ରଣଗଡ଼ର ଆଖପାଖ ପଚିଶ ଖଣ୍ଡ ଗ୍ରାମର ରୂପ ବଦଳାଇବାକୁ ଚେଷ୍ଟା କରୁଛ । ତମର ସାଧୁ ଉଦ୍ୟମ ସଫଳ ହେବ ।

ପିତା ବାଧା ଦେଉଛନ୍ତି ?

ଦେବେ । ତାଙ୍କର ଭ୍ରମ ଦିନେ ଭାଙ୍ଗିବ । ଦିନେ ସେ ବୁଝିବେ କେବଳ ମଖମଲି ତକିଆ ପଛରେ ସେ ଧାଇଁଛନ୍ତି ।

ତମର ଆଶୀର୍ବାଦ ମୋର ଲୋଡ଼ା— ମୋ'ର ଦୁଇ ବାହୁ ବଜ୍ର ହେଉ । ସେଇ ଦୁଇ ବାହୁର ଶକ୍ତି ଦେଶର ଅଶି-କୋଟୀ ବାହୁରେ ସଂଚରୁ ଧର୍ମାନନ୍ଦ, ତାଆର ଶକ୍ତିରେ ପର୍ବତ ଟଳୁ । ନଦୀ ଅଟକୁ, ସମୁଦ୍ର ପଛେଇ ଯାଉ, ଦେଶର ଦାରିଦ୍ର୍ୟ ହେଉ ଲୁପ୍ତ, ସ୍ୱର୍ଗର ସୁଖ ଆନନ୍ଦ ଟାଣିହୋଇ ଆସୁ !

କେବେ ଫେରିବ ?

ମୁଁ ରଣଗଡ଼ରୁ ଦୂରରେ ଅଛି ବୋଲି ଅନୁଭବ କରି ପାରୁନାହିଁ । ପର୍ବତ ଖୋଳୁ ଖୋଳୁ କିମ୍ବା କ୍ଲାନ୍ତ ହୋଇ ମୁଣ୍ଡରୁ ଝାଳ ପୋଛୁଥିଲା ବେଳେ ମୋର ଆଖି ଆଗରେ ଉଭାହୁଏ ରଣରଙ୍ଗା । ଦୁଇ ହାତରେ କୋଦାଳ ଟେକିଛି, ହସୁଛି, ହସୁଛି । ସେଇ ହସ ଯେପରି ବିଦ୍ରୂପ କରି କହୁ ଉଠୁଛି, ରଣଗଡ଼ ସେବକ ସମାଜର ସଭ୍ୟ ହେବାର ଯୋଗ୍ୟତା ଏବେ ବି ତମର ହୋଇ ନାହିଁ ଭାଇ । କ୍ଲାନ୍ତ ହାତ ପୁଣି ମୁଠାଇ ଧରେ ଶାବଳକୁ, ଶାବଳ ଉଠେ ନାହିଁ । ପ୍ରୁଆଡ଼େ ଗ୍ନହିଁଲେ ତମେ ପଡ଼ ଆଖିରେ— ମାଟି ତାଡ଼ୁଛ, ଚେଛ ହାଣୁଛ, ପିଠିରେ ପଥର ବୋହି ଗ୍ନଲିଛ । ତମର ଅଙ୍ଗର ଗ୍ନଳନା ଚତ୍କାର କରୁଛି, କର୍ମଂ ବା ସାଧୟେତ୍, ଶରୀରଂ ବା ପାତୟେତ୍ । ଆପେ ଆପେ ବାହୁରେ ମୋ'ର ବଜ୍ରର ଶକ୍ତି ସଂଚରେ ।

ତମେ ଡାକ ଶୁଣୁଛ । ସୁବ୍ରତ ରଣରଙ୍ଗା ଡାକ ଶୁଣୁଛି । ସେବକ ସମାଜର ସଭ୍ୟମାନେ ସେମାନଙ୍କର ସହକର୍ମୀ କରିବାକୁ ମୋତେ ବ୍ୟଗ୍ର ରହିଛନ୍ତି । କିନ୍ତୁ ମୋ'ର ପିତା ? ମୋ'ର ମାତା ? ଦୁଇ ପୁତ୍ରଙ୍କୁ ପରିତ୍ୟାଗ କରି ସେମାନେ ସୁରିଦେବୀଙ୍କର ଆରାଧନାରେ ବ୍ୟସ୍ତ । ଏଇସିଙ୍ଗି ନାଳର ପବିତ୍ର ଉଦକ- ଯହିଁରେ ରଣଗଡ଼ର ମାଟି ଆଉ ରଣେଡ୍ରର ପିଲାଙ୍କର ଲୁହ ଲହୁ ଓ ସ୍ୱେଦ ମିଶିଥିବ, ସେଇ ପବିତ୍ର ପଞ୍ଚାମୃତ ଯେଉଁଦିନ ପିତାଙ୍କର ଉଦରରେ ସ୍ଥାନ ପାଇବ, ସେଇଦିନ ସୁରା ଓ ଅମୃତର ପ୍ରଭେଦ ସେ ଅନୁଭବ କରିବେ ।

ଯେଉଁ ଦୁଇଟି ସନ୍ତାନଙ୍କୁ ସଂସାରକୁ ଆଣିଛନ୍ତି, ବଡ଼ ନକ୍ଷତ୍ର ଦେଖି ପୁରୋହିତ ପୂଣ୍ୟ ମନ୍ତ୍ର ଉଚ୍ଚାରଣ କରି ନାମ ଦେଇଛନ୍ତି, ସୁବ୍ରତ ଓ ସୁରତ, ସେଇ ଦୁଇ ଜଣଙ୍କୁ ଖୋଜି ବାହାର କରିବାକୁ ସେମାନେ ଉଆସ ଛାଡ଼ି ରଣଗଡ଼ର ଦାଣ୍ଡକୁ ଓହ୍ଲାଇବେ । ଦେଖିବେ, ରଣଗଡ଼ର ସମସ୍ତେ କାର୍ଯ୍ୟକୁ ହିଁ ଜୀବନର ବ୍ରତ କରିଛନ୍ତି । ସମସ୍ତେ

Digitized by PPRACHIN, SOA

କାର୍ଯ୍ୟରେ ହିଁ ରତ ହୋଇଛନ୍ତି । ସମସ୍ତେ ସୁ ବ୍ରତ । ସମସ୍ତେ ସୁରତ । ସମସ୍ତଙ୍କ ଭିତରେ ଆମ ବୁଢ଼ିଙ୍କୁ ସେ ଅନୁଭବ କରିବେ ।

ସେଇ ଶୁଭ ମୁହୂର୍ତ୍ତିରେ ବୁଢ଼ିଙ୍କର ଚରଣ ବନ୍ଦନା କରିବାକୁ ମୁଁ ରଣଗଡ଼ ଫେରିଯିବି ।

ଏଠାକାର କାମ ଶେଷ ହୋଇଛି । ଅନ୍ୟ କାମର ଦାୟିତ୍ୱ ତୁଲାଇବାକୁ କେତେ ବନ୍ଧୁ, କେତେ କର୍ମୀ ଅଗେଇ ଆସିଲେଣି । ମୁଁ ଏଥର ଅନ୍ୟ କ୍ଷେତ୍ରକୁ ଚାଲିଯିବି । କେତେ ହସଖେଳ, ଆନନ୍ଦ-ଉତ୍ତେଜନା, ଅଭାବ ଅଭିଯୋଗ ଆଶା-ଦୁରାଶାର ମିଳନ ଥିଲା ଏଇ ରଙ୍ଗମଞ୍ଚ । ସେମିତି ସେ ଥିବ । ଚିରନ୍ତନ ନାଟିକାଟି ଚିରଦିନ ଅଭିନୀତ ହେଉଥିବ । କେତେ ଚରିତ୍ର ଅସିଲେ ଗଲେ, ଆସିବେ ଯିବେ । ସାମାନ୍ୟ ଚରିତ୍ରଟିଏ । ସ୍ମୃତି ରଖିଯିବାର ଯୋଗ୍ୟତା ମୋର ନାହିଁ । ସ୍ମୃତି ନେଇଯିବି ମାତ୍ର ।

ହରି ଶାସ୍ତ୍ରରେ ତମେ ସୁପଣ୍ଡିତ । ବିଦ୍ୟା ତମର ପୋଥିଗତ ନୁହେଁ । ତୁମେ ହିଁ ବୁଝିବ ମୋ'ର ଉଦ୍ଦେଶ୍ୟ । ନୂତନ ରଙ୍ଗମଞ୍ଚରେ ଅଭିନୟ କରିବି—କର୍ମର ଅଭିନୟ । ଆବଶ୍ୟକ ମଣିଲେ ଲେଖି ଜଣାଇବି ଏ କ୍ଷେତ୍ରରୁ ଏହି ମୋ'ର ଶେଷ ପତ୍ର ।—

ଏଇ ଗୋଟିଏ ପତ୍ରର ପ୍ରଭାବ ରଣଗଡ଼ର ଯୁବକମାନଙ୍କ ମନରେ ଓ ଅଙ୍ଗରେ ନୂତନ ଶକ୍ତି ସଞ୍ଚାର କରିଛି । ବଜ୍ରବାହୁ ଏ ପତ୍ର କେବଳ ଧର୍ମାନନ୍ଦଙ୍କୁ ଲେଖିନାହାନ୍ତି, ଲେଖିଛନ୍ତି ରଣଗଡ଼ର ସମସ୍ତଙ୍କୁ, ଯେଉଁମାନେ ବୁଢ଼ା ଦରବୁଢ଼ା, ଅତୀତକୁ ଏବେ ବି ଝୁରି ହେଉଛନ୍ତି, ସେମାନେ ମଧ୍ୟ ନୂଆ ଯୁଗର ନୂତନ ଉଦ୍ୟମ-ସ୍ରୋତରେ ଭାସି ଚାଲିଛନ୍ତି । ଅତୀତକୁ ହାତ ବଢ଼ାଇଲେ ହାତ ପାଉ ନାହିଁ । ହାତରେ ଯାହା ପଡ଼ୁଛି ସେ ବି ଖସି ଯାଉଛି, ଅଥବା ବୁଡ଼ୁଛି ।

ରଣଗଡ଼ ଦ୍ରୁତ ଗତିରେ ଆଗଉଛି । ସେମାନେ ବୁଝି ସାରିଲେଣି ଯିଏ ଅନେଇ ରହିବ ସେ ପଛରେ ପଡ଼ିବ । ପ୍ରଗତି ଅଟକି ରହିବ ନାହିଁ । କୁଟିଳ ବୁଦ୍ଧି ପ୍ରୟୋଗ କରି ବିନା ପରିଶ୍ରମ ଓ ବିନା ଉଦ୍ୟମରେ ନିଘାସ, ନିଷ୍ପଟ, ନିରକ୍ଷର ଲୋକର ଧନ ଓ ଶ୍ରମ ଚୋରି କରି ହେବ ନାହିଁ । ଦେଶରେ ସଦ୍‌ବୁଦ୍ଧିର ଅଭାବ ନାହିଁ । ସୁ-ନିୟନ୍ତ୍ରଣ କରି କାର୍ଯ୍ୟରେ ପରିଣତ କଲେ ସମସ୍ତେ ରହିବେ ସୁଖରେ, ଆନନ୍ଦରେ ।

ଆଳସ୍ୟ ଓ ନିଶ୍ଚେଷ୍ଟତାର ସ୍ଥାନ ନାହିଁ ରଣଗଡ଼ରେ ।

ସବନା ପଧାନ । ତିନି କୋଡ଼ି ସାତ ବର୍ଷର ଲୋକ ସେ । ଗରିବ ମୂଲିଆଘରର ପୁଅ । ନିତି ମୂଲ ଥିଲା ସମ୍ବଳ । ଜମିଦାରଙ୍କ ଘରେ ହଳିଆ କାମ କରୁଥିଲେ । ଶୁଣି ଶୁଣି,

Digitized by PPRACHIN, SOA

ଦେଖି ଦେଖି ଗୁରୁ ଅକ୍ଷର ପାଠ ପଢ଼ିଲାରୁ ସନେ ସେ ଜମିଦାରଙ୍କର ପିଆଦା କାମ ଜଲେ । ଦଶ ବର୍ଷ ପିଆଦା ହୋଇ ଅତି କଷ୍ଟରେ କେତେ ଉପାୟ କରି ଜମି ଦୁଇ ମାଣ କିଣି ଯାଇଥିଲେ । କୌଣସି କାରଣରୁ ଜମିଦାରଙ୍କର ବିଷଚକ୍ଷୁରେ ପିଆଦା ଚାକିରି ଗଲା । ସେଇଠୁ ଆରମ୍ଭ ହେଲା ପେଟ ପୋଷ ନାହିଁ ଦୋଷ ନାହିଁ । ଘର-ଦୁଆରେ ମୂଳ ଲଗିବାକୁ ଆଉ ମନ ଡାକଲା ନାହିଁ । ଜମି ତ' ମାଣେ କୁଟୁମ୍ବ ପୋଷଣ ପାଇଁ ଯଥେଷ୍ଟ ନୁହେଁ । ଗୋଟିଏ ଝିଅ ଚଳେ ଦେଉପଯୋଗୀ ଚୋଳବଖର ପୁଅ ବାବନ । ସ୍ତ୍ରୀ ଯେ ହାଡ଼ ଗୃହଖଣ୍ଡ । କଷ୍ଟେମଷ୍ଟେ ଗଣ୍ଡିଏ ଫୁଟେଇ ଦେବା ତା'ଙ୍କ ପକ୍ଷେ ଯଥେଷ୍ଟ । ବାହାର କାମରେ, ବଳବାଡ଼ କାମରେ ସାହାଯ୍ୟ କରିବା ତା'ଙ୍କ ପକ୍ଷେ ଅସମ୍ଭବ । ଯାହା କରିବେ ସେ ନିଜେ । ବାବନାଟି ତ ଗୁରୁ ଅକ୍ଷର ପଢ଼ୁଛି, ପଢ଼ୁଥାଉ ।

ପଧାନ-ସାହିର ଶେଷ ମୁଣ୍ଡରେ ଜମିଦାରଙ୍କର ଦଳୁଆ ପୋଖରୀ ଉପରେ ତାଙ୍କ ଘର । ଗାଁ ଦାଣ୍ଡକୁ ଆସିବାକୁ ହେଲେ ସେଇ ପୋଖରୀର ଅର୍ଦ୍ଧଚକ୍ରାକାର ବନ୍ଧ ଉପର ବାଟେ ଅଦମା ଜଙ୍ଗଲ ଭିତରେ ପଶି ଆସିବାକୁ ସିଧା; ନୋହିଲେ ପଧାନ ସାହି ଦାଣ୍ଡବାଟେ ଯାଇ, ନାଉରି-ସାହି କଡ଼ବାଟେ କୁମ୍ଭାର ସାହି ଆଗରେ ଉଠିବ । ଗାଁ ଦାଣ୍ଡଟା କୁମ୍ଭାର-ସାହି ଗଳିକୁ ଲାଗିଛି । ବୁଲଣି ପଡ଼େ ବୋଲି ଦଳୁଆ ପୋଖରୀ ହୁଡ଼ାବାଟେ ପବନା ପଧାନ ଓ ତାଙ୍କର ପିଲାମାନେ କାରବାର ହୁଅନ୍ତି । ହୁଡ଼ା ଉପରେ ଡମ୍ଫଶାପର ବଣ । ପୁରୁଷକୁ ପୁରୁଷ ପଧାନଙ୍କ ବଂଶରୁ କେହି ହେଲେ ଜଣେ ଶିବଲୋକକୁ ଯାଆନ୍ତି । ଏମାକେତେ ବାଟ ବନ୍ଦ ହୁଏ, ପୁଣି ସେଇଁ କଥାକୁ ସେଇ କଥା ।

ପଧାନଙ୍କ ପିଉସୀ—ବାହାହେଲା ଝିଅ, ଶାଶୁଘରକୁ ଯିବାକୁ ସବୁ ଆୟୋଜନ ହୋଇ ସାରିଥାଏ, ଏନ ଦ'ପହରେ ପୋଖରୀ ସେପାଖ କିଆ, ବାଉଁଶ, କନ୍ଥର ବଣ ଭିତରକୁ ନିତ୍ୟକର୍ମ ପାଇଁ ଯାଇଥିଲେ । ଉପରକୁ ଗୁହିଁଦେଲାବେଳକୁ ଡିମ୍ବିରିଗଛ ସେପାଖ ଗହଳ ଭିତରେ ମୁହଁଟାଏ ଦିଶିଲା । ମଥାରେ ସିନ୍ଦୂର ଟୋପା ଦାଉ ଦାଉ ଚହଟୁଛି । ଆଖି ଦ'ଟା ନିଆଁ ପିଣ୍ଡୁଳା ପରି ଜଳୁଛି । ମେଥିପକ୍ଷାର ମହକରେ ନାକ ଫାଟି ପଡ଼ୁଛି । କହିଲା ପରି କଥା ଶୁଭୁଛି । କହିଲେ ଶାଶୁଘରକୁ କାହିଁକି ଯିବୁ ? ତୋ' ଠେଇଁ ମୋ'ର ବଡ଼ ଶରଧା । ତତେ ମୁଁ ନେବାକୁ ଆଇଛି ।

ନାଇଁ, ନାଇଁ—ପାଟିକରି ଝିଅଟି;—ହଳଦୀଗଣ୍ଠି ପରି ପାଚିଲା ଆମ୍ବ ସରି ତା'ର ରୂପଟି—, ଘରକୁ ଧାଇଁ ଆସିଲା । ତ' ମୁହଁ ଛୁଇଁଲା । ସବୁ କଥା ସେ କହିଲା । ଶାଶୁଘରକୁ ନ ଯାଇ ଠାକୁରାଣୀଙ୍କ ଘରକୁ ଚାଲିଗଲା । ଶହେ ବରଷ ପାଖେଇ ଆଇଲା, କଥାଟା ମୁହଁରୁ ମୁହଁ ଗଡ଼ି ଆଉଛି । ଝିଅଟି ନାମ ଥିଲା ମଙ୍ଗଳା ।

ପବନା ପଧାନଙ୍କ ପୁରୁଷରେ ତାଙ୍କ ବଡ଼ ଭାଇ—ସାତ ବରଷର ପୁଅ ପୋଖରୀ ହୁଡ଼ାରେ ଡମ୍ଫ ଝୋଟରେ ଗଲା । ଗୁଣିଆଁ ନଜଡ଼ ବାହାରି, ଛକଡ଼ିର ବାପ-

Digitized by PPRACHIN, SOA

ବଗୁଲିଆଙ୍କ ଗୁରୁ, ଛଅ କଡ଼ର ଅଜା—ଆଛା ଗୁଣିଆଁ ସେ ଥିଲେ—ବାଣ ପେଣ୍ଡୁଥିଲେ ଘା' ଘାଉଡ଼ ଧରୁଥିଲେ, ଦୁହାଁଳ ଗାଈର ଦୁଧ ହରଣଚାଳ କରୁଥିଲେ, ସେ କି ବିଷ ହରଣ କରିପାରିଲେ ନାହିଁ । ଆହା, ସାତ ବରଷର ପୁଅ ଗଗନା ଗୁଲିଗଲା । ନକଡ଼ କହିଲେ, ଡମ୍ବସାପ ସେ ନୁହଁ । ସେଇ ବେଶରେ ଆସିଥିଲେ ମା-ମଙ୍ଗଳା । ପଦ କାଟି କଲି ନାହିଁ ।

ଛଅ ଝିଅ ପବନା ପଧାନଙ୍କର ଯାଇ ପର ଘରେ ଖଟିଲେଣି । ସୁଖେ ଦୁଃଖେ ସେମାନଙ୍କର ସଂସାର ଚଳୁଛି । ଏତେଗୁଡ଼ାର ଝମିଡ୍ୟ ଉଠାଇ, ସଂସାର ଚଳେଇ ଜମି ଦି ମାଣ କରି ପାରିଲେ ପବନା ପଧାନ ବଡ଼ ସିଦ୍ଧାନ୍ତ କରି !

ନା, ସେ ବୁଦ୍ଧି ଖେଳେଇଲେ । ପିଆଦା କାମ କରୁଥିଲାବେଳେ ଜମିଦାରଙ୍କର ପଚିଶ ଖଣ୍ଡି ଗାଁରେ ଦଶ ବର୍ଷ କାଳ ସେ ବୁଲିଛନ୍ତି । କାହା ଘରେ କଅଣ ହେଉଛି ତାଙ୍କୁ ଜଣାଥିଲା । ସେହି ଜ୍ଞାନକୁ ଖଟେଇ ଧୀରେ ଧୀରେ ସେ ମାମଲତ ଆରମ୍ଭ କଲେ । କୁକୁଡ଼ାକୁଆ ଲଢ଼େଇ, ଖଉଁଖଉଁ ହୋଇ ଝୁଣ୍ଟଝୁଣ୍ଟି ହେଲା ବେଳକୁ ଦୁଇ ହାତରେ ଦୁଇ କୁକୁଡ଼ାଙ୍କୁ ଅଲଗେଇ ହାପୁହାପୁ କରି ଦି ଆଡ଼କୁ ଛଡ଼ି, ନଚେଇ ଭଟେଇ ହେବା, ହାତୀ ଘୋଡ଼ା ତ ଲାଭ ମିଳେ ନାହିଁ, ମିଳେ ଶାଗଟାଏ, ମାଛଟାଏ । ଧାର-ଉଧାର ଟଙ୍କାଏ ମହାଏ, ଯାହା କେବେ ଶୁଝିବାର ପ୍ରଶ୍ନ ଉଠେ ନାହିଁ ।

କଟିଗଲା ଦିହାତ । ପେଟ ପୋଷ, ନାହିଁ ଦୋଷ । ବାବନାଭୂତ ପରି ସେଉଁ ବାବନାଟା ବେକ କଟାଉଥିଲା, ତା ହାତକ ଦି ହାତ କରିବାକୁ ପବନାଙ୍କର ମନ ହେଲେ ବି ସାହସ ହୁଏ ନାହିଁ । ଅବଧାନେ ଗଣନା କରି କହିଛନ୍ତି, ତେଇଶ ବର୍ଷରେ ଘାଟି ଅଛି । ତେଇଶ କଟିଲେ ପଚିଶକୁ ସେ କଥା ମନକୁ ଆଣିବ । ପଧାନେ ସେଇଥିପାଇଁ ପୁଅକୁ କିଛି କହନ୍ତି ନାହିଁ । ପୁରୁଷକୁ ପୁରୁଷ ବଂଶରୁ ଗୋଟାଏ ଖସୁଛି । ବାବନା ଏକୋଇଶ ବଳା ଷିଶିକେଣନ । ପଧାନଙ୍କ ଗୁରୁ ଧଡ଼ଧଡ଼ ହୁଏ । ପୁଣି ଭାବନ୍ତି, ବାବନା ଛଳେ ପେଟରୁ ହେଉଁ ମଲାପିଲାଟା ଜନମିଲା, ସେଇଟାକୁ ହିସାବ କରିବା କଥା, ମା' ମଙ୍ଗଳା ତାକୁ ପେଟରୁ ନେଇଛି । ତଥାପି ମନ ଦୁରୁଦୁରୁ ହୁଏ ।

ଜମିଦାରୀ ଗଲା ପରେ ଜମିଦାର ସେତେବେଳେ ନଶ ପକେଇ ଚିତାଚଇତନ ହୋଇ ମାଳା ଧରିଲେ ଓ ଅତି ଭକ୍ତିରେ ଗୋପୀକୃଷ୍ଣ ଠାକୁରଙ୍କ ମନ୍ଦିରରେ ବେଳ କାଟିଲେ, ସେତିକବେଳେ ବାବନା ସଙ୍ଗେ ତାଙ୍କର ଭେଟ । ତକେ ବୋଲାବୋଲି ତେଣେମେଣରୁ ଦୁହିଁଙ୍କର ଗୁଣ ଦୁହେଁ ଚିହ୍ନିଲେ । ମାଳା କୋଅଳ ବରଜ ବଲେଇ-ବୈଷ୍ଣବ ଯେତେବେଳେ ପୁଣି ନିଜ ଘରେ ନିଜ ମୂର୍ତ୍ତି ଧରିଲେ, ବାବନାକୁ ନେଲେ ନିଜ ପାଖକୁ, ବାବନା ହେଲା ଅତି ବିଶ୍ୱାସୀ । ନିଜ ଘରେ ପାଦ ପଡ଼େ, କେବଳ ସେଇଦିନ ଯେଉଁଦିନ ନିଜ କାର୍ଯ୍ୟର ମୂଲ୍ୟ ସେ କବାଟ କଳ ବାପାଙ୍କ ହାତରେ ଦେବାକୁ ଆସେ । ବାପେ ଖୁସି । ବାବନା ତକେ ପୁଣି ମଣିଷଟାଏ ହୋଇ

Digitized by PPRACHIN, SOA

ଅଚ୍ଛା ସୁଖ ପଇସା ଉପାୟ କରିବ, ଏ କଥା କେବେହେଲେ ସେ ଚିନ୍ତା କରି ନ ଥିଲେ ।

ପେଟ ପୋଷ, ନାହିଁ ଦୋଷ । ନେଇ ଆଣି ଥୋଇ ପାରିଲେ ସବୁ ବିଦ୍ୟା ତ ଭଲ, ଖାଲି ଚୋରି ବିଦ୍ୟା କାହିଁକି ? ଯେଉଁମାନେ ସବୁ ଏତେ ଧନସମ୍ପତ୍ତି କରି ଯାଇଛନ୍ତି, ଧର୍ମକାର୍ଯ୍ୟ ବି କେହି କେହି କରିଛନ୍ତି ସେମାନେ ସବୁ କଣ ଋଷି-ମୁନି ଥିଲେ ନା ନିଜ ହାତଗୋଡ଼ର ପରିଶ୍ରମରେ କରି ଯାଇଥିଲେ ? ଅସଲ ହେଉଛି ବୁଦ୍ଧି ଓ କୌଶଳ । ଦେଖେଇ କରି ମନ ଭଣ୍ଡେଇ କରି ହେଉ କି ନ ଦେଖେଇ ନ ଜଣେଇଁ ହେଉ, ଯିଏ ନବୁ ଧିଆଟ ଛଡ଼େଇଆଣି ପାରୁଛି, ସେଇମାନେ ଘର ସମ୍ପତ୍ତି କରିଛନ୍ତି. ଦେଉଳ ତୋଳିଛନ୍ତି । ଭାବନାଟି ଯେ ବୁଝିଆ । ହେଲେ, ଟଙ୍କାପଇସା ପାଖରେ ରଖିବା ଭଲ ନୁହେଁ ।

ପଧାନେ ଦରବଢ଼ାଇ ଜମି ଦି ମାଣ କିଣିଲେ । ହାତୀ ପରି ହଳେ ବଳଦ ବି ଖରିଦ କଲେ । ଘରେ ଦୁଇଟା ଦୁହାଁଳି ଗାଈ ! ଛଡ଼ା ବାଛୁରି – । ଏ ସବୁ ପଦନାର ରୋଜଗାର । ମା’ ମଙ୍ଗଳା ତାଙ୍କୁ ଆଇଷ ଦେଇ ଥାଆନ୍ତୁ । ଚଉଦ ପୁରିଲେ, ତା’ର ହାତକୁ ଦି ହାତ କରିଦେଲେ ବୁଢ଼ା ପଧାନଙ୍କ କର୍ତ୍ତବ୍ୟ ସରିବ ।

ବଡ଼ ସକାଳ । ପାଟିତୁଣ୍ଡ ଶୁଣି ଛଦ୍ଦାଢଥା ପାଚିଲା ଠେଙ୍ଗାଟା ଧରି ବାରଆଡ଼କୁ ଆସିଲେ ପଧାନେ । କାବା ହୋଇ ଗଲେ । ଏ ଧର୍ମଟୁକଠିଆ ଦଳ ଆଜି ଏଠି ଜୁଟିଲେ କାହିଁକି ? ଆଜି ଭୁଇଁ ନଛୁଣ ଦିନ । ଭେଣ୍ଡିଆ, ଦରବୁଢ଼ା, ବୁଢ଼ା ସମସ୍ତେ ଅଛନ୍ତି । କାହା ହାତରେ କୋଡ଼ି ତ କାହା ହାତରେ କଟୁରି, କାହା କାନ୍ଧରେ ବାହୁଙ୍ଗୀ ତ କାହା ମୁଣ୍ଡରେ ଟାଣ୍ଡିଆ । ସମସ୍ତଙ୍କ ଆଗରେ ଜମିଦାରଙ୍କ କୁଳକଳଙ୍କ ପୁଅ ରଣରଙ୍କା । ପୁରୋହିତ ନିତ୍ୟାନନ୍ଦଙ୍କ ଧର୍ମଛଡ଼ା ପୁଅ ଧର୍ମୀ ବି ଅଛି । ଆରେ, ଏ ତ ବଡ଼ ମଜା ! ଗ୍ରାମପଞ୍ଚର ସଭ୍ୟ ହରି ପଟ୍ଟନାୟକ ବୁଢ଼ା ଟାଙ୍ଗିଆଟାଏ ଧରି ପୋଟଲି ହୁଡ଼ାରେ ଯେ !

କାହାକୁ କିଛି ନ କହି ପଧାନେ ଘର ଭିତରେ ପଶି ଭାବିଲେ, ଏଗୁଡ଼ାଙ୍କୁ ଅଜ ଭୂତ ଲାଗିଛି । ଘରୁ ଖାଇ ଘୋଡ଼ା ଆଗରେ ଠିଆ ହେଉଛନ୍ତି । ହେଉନ୍ତୁ । କ’ଣ ଗୋଟାଏ କରିବାକୁ ଆଇଛନ୍ତି । କରନ୍ତୁ, ଦେଖାଯିବ । ଆଗରୁ ସାବଧାନ ହୋଇ ରହିଗଲେ ଭଲ । ଆଉ ଗାଁରେ ତ କାମ ଅଛି ।

ପଧାନେ ଜାମା ପିନ୍ଧିଲେ । ପାଞ୍ଚ ବର୍ଷ ତଳର ଖଣ୍ଡିଆ ଯୋତା ହଳକ ମାଡ଼ିଲେ । କାନ୍ଧରେ ଗାମୁଛାଟା ପକେଇ ସ୍ତ୍ରୀଙ୍କୁ କହିଲେ, ବାଉଁଶ ଟୋକା ଢାଳକଡ଼ୁଆ

Digitized by PPRACHIN, SOA

ଆଇଲେ ଗୋରୁ ବଳଦଙ୍କୁ ମୋଣ୍ଡି ଦେବ, ଗୁହାଳ ସଫା କରିବ । ମୋ'ର ଅସୁ ଆସୁ ତେଣୁ ହେବ । ହିଁ, ବାଦନା ଯଦି ଅଜ ଘରକୁ ଆସେ, ତାକୁ କହିବ, ଏ ଧର୍ମଛଡ଼ା, ଗୁଡ଼ାଙ୍କ ସଙ୍ଗେ ବୋଲ ବୋଲ ହେବ ନାହିଁ । ଜମିଦାରଙ୍କୁ ଯାଇଁ ଖବର ଦେବ, ଏମାନେ ଅନାବାଦୀ ହାଣୁଛନ୍ତି ।

ପଧାନେ ବାହାରି ଗଲେ । ଗାଁ ଦାଣ୍ଡଟା ମଇଳା । ଯାହାଘରେ ଯାହା ମଇଳା ଅଛି, ଘରଣୀମାନେ ସବୁ ପକେଇ ଦେଉଛନ୍ତି ଦାଣ୍ଡ ଉପରକୁ । ନିଜ ଘରଟି ସଫା ହେଲେ ଗଲା, ଦାଣ୍ଡଟା ପଛେ ମଇଳା ହେଉ । ଛୋଟ ଛୋଟ ପିଲାମାନେ ସେଇ ମଇଳା ଉପରେ ଗଡ଼ଗଡ଼ ହୋଇ ଖେଳୁଛନ୍ତି ।

ପଧାନେ ହେଲେ କୁମ୍ଭାର ସାହି ଜଳରେ । ମାଟି ପକେଇ ରାସ୍ତାଟି କେତେ-ଉଚ, କେତେ ଚଉଡ଼ା ସମତୁଲ ହେଉଛି । ରାସ୍ତା ଉପରେ ଟିକିଏ ମଇଳା ନାହିଁ । ଗାଁ ଦାଣ୍ଡକୁ ନ ଯାଇ ପଧାନେ ବଡ଼ ପୋଖରୀ ହୁଡ଼ାପାଖେ ଗମ୍ଭୀରରାସ୍ତାକୁ ଗଲେ ।

ପୋଖରୀ ହୁଡ଼ା ବାଡ଼ାବନ୍ଧ ହୋଇଛି । କଦଳୀଗଛ ଅସୁମାରି । ବଉଳ, କାଟିଆ, ଚମ୍ପା କଦଳୀ ଜାତିମାନ ପଡ଼ିଛି ଯେ ଗଣି ହେବ ନାହିଁ । ଡାଙ୍ଗ ଲେଖାଏଁ ଲମ୍ବ । ଦେଖିଲେ ପେଟ ପୂରି ଉଠୁଛି । ଦୁଆରପାଖେ ଫାଟକ ଲାଗିଛି । ଲେଖା ହୋଇଛି, "ରଣଗଡ଼ ଗ୍ରାମ ପଞ୍ଚାୟତର ସ୍ନାନ-ଘିକ୍ରା ପୋଖରୀ ।" କେଉଁ ଫାଟକରେ ଲେଖା-ହୋଇଛି "ସ୍ତ୍ରୀ"; କେଉଁଥିରେ "ପୁରୁଷ" ମାନ ଜଣେ ଜଗିଛି, ପୋଖରୀ ଓ ବଗିଚାର ତଦ୍ୱାରକ କରୁଛି । ବଡ଼ ସକାଳୁ ଝିଅବୋହୂମାନେ ଦଳ ଦଳ ହୋଇ ଯାଉଛନ୍ତି, ଆସୁଛନ୍ତି ।

ହୁଡ଼ା ତଳେ ଚଉଡ଼ା ରାସ୍ତା । ରଣଗଡ଼ ଗ୍ରାମରୁ ବାହାରି ଛୋଟା ମାଳ ଭିତରେ ପଡ଼ିଛି । ଆଖି ନ ଯାଇଲା ଗମ୍ଭୀର ମଝିରେ ଗୋଦଣ୍ଡାକୁ ଢ଼'ଖଗ କରି ଯେଉଁ ଶଗଡ଼ଗୁଳା ପଡ଼ି ଛଟି ଡିପ, ଖାଲ, ବାଲି ଭାଦୁଅ, ଝୋଇଲଖିଆ କଣ୍ଟା ବଣ ଭିତରେ ଆଉ ଗାଁକୁ ଯାଇଥିଲା, ସେ ରାସ୍ତାର ଚହ୍ନବର୍ଣ୍ଣ ନାହିଁ । ନାକସଳଖା ସିଧା ରାସ୍ତା ଆଉ ଗାଁ ଯାଏଁ ପଡ଼ିଛି । ପୁରୁଷେ ଉଞ୍ଚ । କେତେ ଚଉଡ଼ା । ପାଣି ଝରିଯିବା ପାଇଁ ଛୋଟ ବଡ଼ କେତେ ପୋଲ । ରାସ୍ତା ଦୁ'ପାଖରେ ଇଟା ତୋଳିକରି ଜାଡଜାଡକା ଗଛ—ଦେବଦାରୁ, କଦମ୍ବ, କୃଷ୍ଣଚୂଡ଼ା, ଋକୁଣ୍ଡା, ବର, ଓସ୍ତ ଲଗା ହୋଇଛି । ଗୋରଡ଼ି ଡେଇଁ ଗଛଗୁଡ଼ିକ ଉପରକୁ ମୁଣ୍ଡ ଟେକିଲେଣି ।

ଏଇ ତ 'ଜାହ୍ନବୀ' ନାଳ । ପୋଲ ଉପରେ ଠିଆହୋଇ ଲୁହାବାଡ଼କୁ ଧରି ପଧାନେ ତଳକୁ ଚାହିଁଲେ । ଆଣ୍ଠୁଏ ହେବ ପାଣିର ଗମ୍ଭୀରତା, ଚଉଡ଼ା ଦଶ ହାତ । କୁଳୁକୁଳୁ ପାଣି ଚାଲିଛି—ଦୁଇ ପାଖ ବନ୍ଧ ମଝିରେ, ଆଖପାଖର ବିଲ ପଡ଼ନରୁ ହାତେ କ ପାଞ୍ଚପା ଉପରେ ।



Digitized by PPRACHIN, SOA

ପଧାନେ ଦୂରକୁ ଅନେଇଲେ । ଦେଖାଁଯାଉଛି ଦୂର ପାହାଡ଼ଟା । ସୁଣ ଷାଠିଏ ମାଇଲ୍ ଦୂର । ଉଣ ବାର ବର୍ଗମାଇଲ୍‌ର ଉଚ୍ଚ ନୀଚ ପାହାଡ଼ିଆ ଭୂଇଁ । ଘୋଟ ଜଙ୍ଗଲ । ଘୋର ଅରଣ୍ୟ । ଜଙ୍ଗଲ ହଟାଇ ଏବେ ସେଥିରେ ସାଗୁଆନ୍, ଶାଳ, ଧାତା-ଆମ୍ବ ଗଛ ଲଗାଉଛନ୍ତି ।

ସେଇ ପାହାଡ଼ ତଳୁ ବାହାରିଛି ଝରଣା, ଜଙ୍ଗଲ ମଝିରୁ କେତେ ସାନ ସାନ ନାଳ ଆସି ସେଥିରେ ମିଶିଛି । ଉଣେଇଶ ମୁଣ୍ଡରେ ସେଇ ଝରଣାଟା ପଚିଶ ହାତ ଚଉଡ଼ା ହୋଇ ବଡ଼ ନଈରେ ମିଶିଛି । ଉପରେ, ଗ୍ରେଟ ଗ୍ରେଟ ଦୁଇଟା ଟାଙ୍ଗର ମଝିରେ ଯେଉଁଠି ନାଳଟା ବଙ୍କେଇ ଅସିଛି, ଗାଁ ଲୋକେ ସରକାରଙ୍କ ସାହାଯ୍ୟରେ ସେଇଠି ବାନ୍ଧିଲେ ବନ୍ଧ । ସେଇଠୁ ବାହାରିଛି ଏ ଜାଲ୍ସୀ ନାଳ । ଏଣିକି ଗ୍ରାମର ଲୋକଙ୍କର ହାତର ଲଗ୍ନମଠ ।

ପାଣି ମାଡ଼ୁଛି ଚଷାର ବଳରେ । ଯେଉଁ ଦ ମାଣ ଜମି ପଧାନଙ୍କର ଥିଲା, ଜନ୍ଦନାଳୀର ପାଣି ସେଟି ମାଡ଼ଲା । ଏବେ ଯେଉଁ ଦ'ମାଣ ପଞ୍ଚାୟତଙ୍କଠାରୁ କିଣିଲେ ସେ ଜମି ତ ଜାଲ୍ସୀର କୂଳରେ । ସବୁ ଏକା, ଗୋଟାଏ କାମ କରୁଛନ୍ତି । ତାହାରେ ତାଙ୍କ ଜମିକୁ ହଳ, କ ଦେଉପଦ କର ପଛେ, ମନ କହୁଛି, ଗୋଟାଏ ମାଉଛନ୍ତି. ଭଲ କାମ କରୁଛନ୍ତି । ପାଣି-କର ପଞ୍ଚାୟତ ଆଦାୟ କରନ୍ତୁ ପଛେ; ପାଣି ସୁବିଧା ଆଉ ସାର ସୁବିଧା ପାଇଁ ସେ ଜଣେ ଏଥର ଦୁଇ ଗୁଣ ଫସଲ ଆମଦାନ କରିଛନ୍ତି । ଜମି ମାଣେ ଏ ବର୍ଷ ବାଲଉଆଳୁ କରିବେ ବୋଲି ମନ କରିଛନ୍ତି ।

ଗ୍ରାମପଞ୍ଚାୟତ ଯିନା ଯୋଜନା କରିବେ, କାମ କରେଇବାକୁ ଯିନା ସୁଦକ୍ଷ ସରକାରୀ କର୍ମୀମାନେ ଉପାୟ ଚଳାଇବେ, ସାହାଯ୍ୟ କରିବେ, ଗ୍ରାମବାସୀମାନେ ନିଜେ ଅଣ୍ଟା ନ ଭିଡ଼ିଲେ କାମ ହେବ କପରି ? ଗ୍ରାମ-ସେବକ ସଙ୍ଗର କର୍ମୀମାନେ ସେଇ କଥା କହୁଛନ୍ତି । ନିଜେ କାମ ଉଠାଉଛନ୍ତି । ହେଲେ, ପବନା ପଧାନ ଚଳାକ୍ଷ ଲୋକ ! ବାବନା ବାପ୍‌ପନ୍ଥ ପୁଅ । ଅନ୍ୟମାନେ କରନ୍ତୁ, ପଧାନେ ସେମାନଙ୍କ କାର୍ଯ୍ୟର ସୁବିଧା ଖୋଜି କରିବେ ।

ପଧାନେ ହସି ଉଠିଲେ । ଗ୍ରାମଲୋ ଆଗକୁ । ନାଳ ବନ୍ଧା ହେଲା । କାଳ ଖୋଲା ହେଲା । କେତେ ନୂଆ ରାସ୍ତା ପଡ଼ିଲା । ସ୍କୁଲ ବସିଲା । ସର୍ବସାଧାରଣଙ୍କ ପାଇଁ ପଢ଼ିବା ଘର, ସମିତ ଘର, ଡାକ୍ତରଖାନା, ପଶୁ ଚିକିତ୍ସାଳୟ, ବିନୋଦବିହାର, ନୈଶ ବିଦ୍ୟାଳୟ – ସବୁ ତ ହେଲା, ପଧାନେ କ ତାଙ୍କ ପୁଅ କାହିଁକିର ହାତ ମିଳନ୍ତି କରି ନାହାନ୍ତି କ.ଗୁଡ଼ା ବ ହଳେ ଦେଇ ନାହାନ୍ତି । ପଞ୍ଚାୟତ ଶିକ୍ଷା ଅଂଶର ଦୁଅଣ ସମସ୍ତେ ଦେଇଛନ୍ତି; ସେ ନ ଦେବେ କପରି ? ଦେଖିଆ ଦଳ ସବୁ କାମ କରିଛନ୍ତି ।

Digitized by PPRACHIN, SOA

ଜଗନ୍ନ ମନା ନାହିଁ; ଏ ଧର୍ମଛଡ଼ା ସନ୍ଥ୍ୟାନାଶିଆ ବୁଦ୍ଧି ଧରିଛନ୍ତି କାହିଁକି ? କୁଆଁକୁଣ୍ଡ ପିନ୍ଧା ଉଠିଗଲା, ସେଇଟା ଧୀରେ ଧୀରେ ଦେହସହା ହେଲାଣି । ଯିଏ ଯାହା ଘରେ ଖିଆପିଆ କରି ଜାତ ହରାଉଛନ୍ତି କାହିଁକି ? କୁମ୍ଭାର, କମ୍ମାର, ଗଉଡ଼, ଚଷା, ମହାନ୍ତି, ବ୍ରାହ୍ମଣ, ଖଣ୍ଡାୟତ-ସବୁ ଏକାକାର କଲେ ତ ବାବା ଏ ବାଳୁଙ୍ଗା ଦଳକ ! ସମସ୍ତେ ତ ଜାତ ଗୋଟେ ହୋଇଗଲେ, କାହାକୁ ଏବେ କାହାରୁ ଅଟକ କରିବ ?

କୁଆଁ ଜାତିଙ୍କ ଭିତରେ ଖିଆପିଆ କାମ ଚଳେଇ ଦେଲ, ସେଇଟା ହେଲେ ଆଖି ବୁଜିଦେଲେ ଚଳେଇ ନେଇ ହେବ, କିନ୍ତୁ କାଲି ଯେଉଁମାନେ ଅଛୁଆ ଥିଲେ, ସେମାନଙ୍କ ଘରେ ପାଣି ତୋରାଣି ପିଇବାଟା କେଉଁ ନ୍ୟାୟକୁ ପାଉଛି ?

ବାବାଜୀଟି ଭଲ ଥିଲା । ଏ ସବୁଥିରେ ସେ ନ ଥାଏ । ପ୍ରଧାନେ ଅଗକୁ ଚାଲିଲେ ।

ଦୁଇ ଦିନ ପରେ ଫେରିଲେ ପ୍ରଧାନେ । ଦୁଇ ଗାଆଁରେ ବଡ଼ଝିଅ ଘରେ ଅଟକି ଗଲେ । ବଡ଼ ଜୋଇଁଙ୍କର ଖୁଡ଼ୁତା ଝିଅ ଭଉଣୀ ସୁଭଦ୍ରା, ତା'ର ବିଷୟରେ ସବୁକାର ବାହାଘର କଥା ପଡ଼ିଲା । ମନଲାଖି ବୋହୂଟିଏ ହୋଇପାରିବ ସୁଭଦ୍ରା—ରୂପ, ଗୁଣ, ଚଳନ ସବୁଥିରେ । ପାଠ ପଢ଼ୁଛି । କେତେ ନକ୍ସାରେ କେତେ ପ୍ରକାର ବୁଣାବୁଣି କାମ ଶିଖିଛି । ମନକୁ ପାଇଲା, ହେଲେ ଗୋଟିଏ କଥାରେ ମନ ପୁଣି ଦୋଦୋ ପାଞ୍ଚ ହେଲା । ଆଜି ଗୃହୀଘର ଝିଅ, ଖାଲି ପାଠ ପଢ଼ି ଅକ୍ଷର ପଢ଼ିଲେ କି ଧୋବ ଶାଢ଼ୀ ପିନ୍ଧି ବୁଣା ଶିଖିଲେ ତ ସଂସାର ଚଳିବ ନାହିଁ, ଢିଙ୍କିମୁଣ୍ଡାରେ ଗୋଡ଼ ଦେବା, କୁହାଳ ପୋଛା ଘସି ପାରିବା, ଏପରି କି ବେଳ ପଡ଼ିଲେ ଚୁଲି ବଖ ପାଣିରେ ଉନ୍ନବୁଡ଼ି ବାଲ ବାଛୁଟା କ ନେଡ଼ା । ସବୁ କାମକୁ ପାରଙ୍ଗମ ହେଲେ ଯିବା ଭାବ ।

ବଡ ଝିଅ ହସିଦେଇ କହିଲା, ଏ ସବୁ କଥାରେ ଚିନ୍ତା କର ନାହିଁ ବାପା । ଖାଲି ସୁଭଦ୍ରା କାହିଁକି, ଏଇ ନାଲଙ୍ଗ ଗାଆଁର ସବୁ ଝିଅବୋହୂ ଏ ସବୁ କାମ ଜାଣନ୍ତି, କରନ୍ତି । ଆମ ଘରୁ ଅଇଲାବେଳେ ମୁଁ ଜମା ଲେଖିପଢ଼ି ଜାଣି ନ ଥିଲି, ଏବେ ମୁଁ ମଥୁରାମଙ୍ଗଳ ପଢ଼ିଲିଣି ।

ସତେ ?

ହଁ, ବାପା । ଏ ଗାଆଁରେ ଟୁନାଥପା ଆସି ନାରୀକଲ୍ୟାଣ ସମିତି ଗଢ଼ିଲେ । ମୁଁ ସେ ସମିତିର ସଭ୍ୟା ସବୁ । ଆମେ ରାତି-ସ୍କୁଲ ବସେଇଛୁ । ଦିନ ଦ'ପହରେ ପ୍ରଉ

Digitized by PPRACHIN, SOA

ସାହାରେ ଆମ ଝିଅ-ବୋହୂଙ୍କୁ ପଢ଼େଇବାକୁ ଶିଖେଇବାକୁ ସ୍କୁଲ ବସିଛି । ଶିଖେଇବାକୁ ମାଷ୍ଟରାଣୀ ରହୁଛନ୍ତି । ଆମେ ପଢ଼ୁଛୁ, ଶିଖୁଛୁ । ଘର କାମରେ ତ ବାଧା ପଡ଼ୁନାହିଁ । ହଁ, ଆମୁକୁ ଟିକେ ଅଧିକ ପରିଶ୍ରମ କରିବାକୁ ପଡ଼ୁଛି । ହେଲେ, କେତେ କଥା ଆମେ ଶିଖିଲୁଣି ଯେ— ।

ପଧାନେ ଝିଅର ମୁହଁକୁ କାବା ହୋଇ ଚାହିଁଲେ । ପରଗୋଷୀ । ଗୁରୁ ପିଲାର ମା । ମୁହଁକୁ ଚାହିଁଲେ ନିଜ ଝିଅ ବୋଲି ଚିହ୍ନି ହେଉଛି । ଚଳନ ଦେଖିଲେ, କଥା ଶୁଣିଲେ ପଚାରେ ହେଉନାହିଁ । ଗାଆଁକୁ ସମୃଦ୍ଧ ସମୁଦ୍ଧଶୀ ସ୍ୱର୍ଗପୁରକୁ ବୁଲି ଯାଉଛନ୍ତି । ନୋହିଲେ, ଏ ନୂଆ ଢଙ୍ଗ ଦେଖି ସେମାନେ କ'ଣ କହନ୍ତେ କି !

ତହିଁ ଆରଦିନ ନାରଙ୍ଗ ଗାଆଁରେ ଘେରଟାଏ ଯେ ବୁଲି ଆସିଲେ । ପୂର୍ବ ନାରଙ୍ଗ ଆଉ ନାହିଁ । ଏ ଗାଆଁ ବି ବଦଳିଛି, ବଦଳୁଛି । ନୂଆ ରାସ୍ତା, ନୂଆ ନୂଆ ଘର, ସ୍କୁଲ, ଡାକ୍ତରଖାନା, ସମବାୟ ସମିତି, ସେବକ-ସଙ୍ଘ କୋଠଘର, ଇତ୍ୟାଦି— । ନାମ ଗ୍ରାମ୍ୟ । ସତେ କ'ଣ ସ୍ୱର୍ଗ ଓହ୍ଲାଇଛି କି ? ବୁଢ଼ୀଆଁ କଥା ସତ । ମାଇପେ ପାଠ ପଢ଼ିଲେ, ଦୋକାନ ଆସି, ଲଜ୍ଜା ଛାଡ଼ି ଗୁରୁଜନ ମୁହଁ ଉପରେ କଥା କହିଲେ । ଥିଏଟର, ନାଚ, ଯାତ୍ରା ମେଳା, ଖଞ୍ଜଣି ମାଡ଼, ଜନ୍ମ କଥା ଉଠିଲା । ସନ୍ଧ୍ୟାବେଳେ କୋଠାଘର ବସି ଅଳ୍ପବୟସ୍କମାନେ ରେଡ଼ିଓରେ ଆକାଶବାଣୀ ଖବର ଶୁଣୁଛନ୍ତି ଗୀତ ଶୁଣୁଛନ୍ତି, କେତେ ଜାତିର ନୂଆ ନୂଆ ଖେଳ ଖେଳୁଛନ୍ତି ।

ରଣଗଡ଼ରେ ହେଲେ ପୁରୁଣା କଥା ଚାଲିଛି ଚାଲିଛି ଅଛି । ନାରଙ୍ଗ ଗାଁରେ ଆଉ କିଛି ନାହିଁ । ଏ ଗାଁରୁ ଯେ ନେବେ ବୋହୂ—ପୁଣି ସୁଭଦ୍ରା ପରି ଝିଅକୁ ? ସେ ତ ତାଙ୍କ ବାଡ଼ି ବଢ଼େଇବ । ବାବନା କୋଉଠି ତା'ଙ୍କୁ କାବୁ କରି ରଖିପାରିବ ? ପୁଣି ବାବନାକୁ ତ ଚରିଷି ପୁରନାହିଁ । ଆଜିଠୁଁ କାହିଁକି ବାହାଘର ଚିନ୍ତା ?

ଜବାବ ନ ଦେଇ ପଧାନେ ନାରଙ୍ଗରୁ ଫେରିଆସିଲେ ରଣଗଡ଼କୁ । ଗ୍ରାମ ନେଉଛିଲେଣି । ଘର ଆଗରେ ପହଞ୍ଚି ଦେଖିଲେ, ଘର ପଛ ପୋଖରୀ ହୁଡ଼ାରେ କାମ ଲାଗିଛି । ରଣଗଡ଼ର ଅଧେ ଲୋକ ଯାଇ ସେଇଠି । ଛୋଟ ଛୋଟ ପିଲାମାନେ ବି ଜୁଟି ହୋଇଛନ୍ତି । ସେମାନଙ୍କ ସାଥିରେ ପୁଣି ଅଛନ୍ତି ପଧାନ ଝିଅବୋହୂ । ବଡ଼ ବଡ଼ ବାହାଲୀଠା ମା ମଙ୍ଗଳାଙ୍କ କୋଠାଲୋକଙ୍କ ଅଧରେ ବନ୍ଧା ହୋଇଛି । ତା'ଆରି ଭିତରୁ କଥା ବାହାରୁଛି—ସମସ୍ତେ ଆସ ଭାଇମାନେ ସମସ୍ତେ ଆସ, ଆମର ମା ଝିଅ ବୋହୂଣୀମାନେ । ଇଏ ଆମର କାମ । କାମ କରୁ କରୁ ଆମେ ଖେଳିବା, ଆମେ ନାଚିବା, ଗୀତ ବୋଲିବା । ଖେଳ ଖେଳ, ଗାଇ ଗାଇ, ହସି ହସି ଆମେ କାମ କରିବା । ଏଇ ମଇଳା ଗାଁର ସବୁ ପୋଖରୀ ସଫା ହେଲାଣି । ପୋଖରୀ ହୁଡ଼ା ଉପରେ ରାସ୍ତା ପଡ଼ିଲାଣି । ବାରମାସ ଭୁଇଁରୁ ଜଙ୍ଗଲ ଅଳିଆ ସଫା ହେଲାଣି । ଜମି ସମତୁଲ କରାହେଉଛି । ଏଇଠି ପିଲାଙ୍କ ପାଇଁ ଖେଳପଡ଼ିଆ କରିବା । କେତେ ଜାତିର ଖେଳ ଆଣି ବସାଇବା । ଆସ ରେ ପିଲାଏ ! ତମେ ସବୁ ଆମର ଗୁଣ୍ଡିଟମୁଷା । ତୁମପାଇଁ

Digitized by PPRACHIN, SOA

ଆମେ ଖେଳପଡ଼ିଆ କରିବୁ । ପୋଖରୀହୁଡ଼ାକୁ ହେରୁଛନ୍ତି କାଲୁଆ । ତମେ ଆଉ ମୁଠାଏ ମୁଠାଏ ମାଟି ପକେଇବ । ମୁଁ ତମ ରାମଙ୍କ ଭାଇ ବହୁଛି । ମୁଁ ତମର ହନୁମାନ । ତମେ ସବୁ ଆମର ବାନରସେନା । ହେଇଟି ନୂଆ ଅପା ଆଇଲେଣି । ଦେଖ ତ, ତମ ପାଇଁ ସେ କେତେ କାମ କରୁଛନ୍ତି । ସେଦିନ ଆସ, କେମିତି ପଙ୍କ କାଦୁଅରେ ସେ ଗୁଡ଼ ବୁଡ଼ ହେଉଛନ୍ତି । ଶୁଣ, ନୂଆ ଅପା ଆଜି ତମ ପାଇଁ ଗୀତ ବୋଲିବେ । ମୁଁ ଯାଉଛି, ମାଟି ତାଡ଼ିବ । —

ବଡ଼ବୋହୂ କାହାଣୀ ଗୁଡ଼ ହେଲା । ପରେ କୁଡ଼ିଆ ଭିତରୁ ବାହାରି ଆସିଲେ ରଣଜିତ୍ । ତାଙ୍କ ଧଳା ଓଢ଼ଣୀରେ ପଡ଼ିଲା ନୂଆ ସମ୍ଭ୍ରାନ୍ତ କୋଇଲିଖିଆ କଣ୍ଠାବଣକୁ । କେତେ ଲୋକ ମାଟି ତାଡ଼ୁଛନ୍ତି । କାଣ୍ଡିଆ ଗାଣ୍ଡିଆ କରି ଆଣି ପୋଖରୀ ହୁଡ଼ାରେ ପକାଉଛନ୍ତି । ଆରେ ସେ କ'ଣ ? ଛକଡ଼ି ବାଉରି ହରି ପଟ୍ଟନାୟକ ପଞ୍ଚୁଙ୍କ ମୁଣ୍ଡକୁ ମାଟି ବୋଝ ଟେକି ଦେଉଛି । ରଥ ଦଳେଇ, ହରି ତନ୍ତୀ, ଗୁରୁ ମାଳି, ଗୁଲ ସେଠି, ନନ୍ଦୁ ଚମାର, ହରି ସ୍ୱାଇଁ ଏମାନେ କ'ଣ ପଙ୍କ ସଫା କରି ଟୋକେଇରେ ନେଇ ଆମ୍ବ ମୂଳରେ ଜମଉଛନ୍ତି । ଅନନ୍ତ, ଦଳେଇ ସାହୁ, ପୁରୋହିତ ପୁଅ ଧର୍ମାନନ୍ଦଙ୍କ ହାତରେ ପିଶି କଣ୍ଠାବଣ ତ ହାଣୁଛନ୍ତି । ଆରେ ସେ କିଏ ? ଅକମ୍ ମିଆଁ ତ ? ଦାଢ଼ିଟାଏ କାଟୁଛନ୍ତି କାହିଁକି ? ସେ ପାଖରେ କିଏ ସେ ଗଛ ତଳେ ? ମୁଣ୍ଡରେ ଟୋକାଟିଏ ଭିଡ଼ି ଦାଉଡ଼ିର ଅଗପାଖଟା ଧରିଛି ?

ସଧବେ ଆଖିମଳି ଚାହିଁଲେ । ବିଶ୍ୱାସ ଜମା ହେଉ ନାହିଁ । ତାଙ୍କର ଏକୋଇର ବଡ଼ା ଲକ୍ଷ୍ମୀକାନ୍ତ ପଟନାୟକ ? ଏଁ ସତେ ତ ! ଶେଷକୁ ସେ ବି ଯାଇଁ ଏ ଛତିଶ ପାଟଣ ସଙ୍ଗରେ ମିଶିଲା ? ପଧାନଙ୍କ ଗୋଡ଼ ତଳୁ ସତେ କି ବସୁନ୍ଧରା ଖସିଯାଉଛି । ମୁଣ୍ଡ ବୁଲିଯାଉଛି । ଜମିଦାରଙ୍କ ଗ୍ରୁଣ୍ଡିଲା । ଶେଷଗାର ଦାନ୍ତ ବନ୍ଦ ହେଲା । ଜମି ଗୁଡ଼ମାନଙ୍କରେ କ'ଣ ସମ୍ବାଦ ଚାଲିବ ? କେତେ ଆଶା କରିଥିଲେ, ଯାହା ହେଉ, ଦାବନା ଭଲ ଗୁଡ଼ ପଇସା ଦିଆଯାଉଛି । ସେ କଟା ସୂତ ଲଗେଇଛନ୍ତି । ମଲ ଅଗରୁ ଦୁଷ୍ଟସୁ ସେ ଅନ୍ତତଃ ଦଶ ମାଣ ଅଢ଼ଲ୍ ଜମିକୁ ନାଲକୁଲିଆ ଜମି ଖରିଦ୍ କରି ଯାଇଥାନ୍ତେ । ଶ୍ରେଷ୍ଠ କରିଥାନ୍ତା ହେଲା ଦାବନା — ତା ପୁଅ — ତା ନାତି ।

ଆଶା ସୁଫଳ ହେଲା ନାହିଁ । ଦାବନାକୁ ପୁଣି ସେଇ ମୂଲିଆ ଯୋଗ ଅଛି । ତା' ପୁଅ ତା' ନାତି — । ହେଉ, ଦାବନା ଗାଣ୍ଡିଆଟା ଧରି ପୋଖରୀହୁଡ଼ାକୁ ଧାଇଁଗଲାଣି ।

ପଧାନଙ୍କ ବୁଦ୍ଧି ହଜିଗଲା । ବଡ଼ବୋହୂ କାହାଣୀଟା ପୁଣି ପାଟି କରି ଉଠିଲାଣି । ଗୀତ ବୋଲୁଛନ୍ତି କିଏ ଗୋଟାଏ, ପୁଣି କହୁଛି — ଶୁଣ ମୋ'ର ମା ଝିଅମାନେ ଭଉଣୀମାନେ, ଆମ ମାଉସି କାହିଁଟା କଉଣ ଚନ୍ଦନ ପଲଙ୍କରେ ପଡ଼ି ରହିଥିବା, କାହିଁ ନ ଜାଣି ନ ଶୁଣି ଅନ୍ଧାରରେ ଘାଣ୍ଟି ହେଉଥିବା, ବାପା ଦାଦା ଭାଇଙ୍କ ଉପରେ

Digitized by PPRACHIN, SOA

ସବୁଦିନେ ବୋଝ ହୋଇ ନଇ ହୋଇଥିବା, ଅମୁକୁ ସୁଖରେ ଶାନ୍ତିରେ ରଖିବା ପାଇଁ ଦିନ ରାତି ଖାଲି ସେମାନେ ପରିଶ୍ରମ କରୁଥିବେ, ଦହଗଞ୍ଜ ହେଉଥିବେ ? ତାଙ୍କ ସାହାଯ୍ୟ କରିବାକୁ, ଘରଟା ସାରା ହସଖୁସିରେ ତ କେତେ କାମ କରି ପାରିବା, ଘରର ଅଭାବ ଦୂର କରିପାରିବା ।

— କେମିତି କରିବା ?

ସେ କଥା ଆମେ ଜାଣିଲା ଲୋକଙ୍କଠାରୁ ବସିକି ଶିଖିବା ଯେ । ଆମ ନାରୀ-କଲ୍ୟାଣ ସଙ୍ଘର ଯେଉଁମାନେ ସଭ୍ୟ, ସେମାନେ କେତେ କାମ ଶିଖି ସାରିଲେଣି ଆଉ କେତେ କାମ ଶିଖିବା ଯେ । ଆମ ସଙ୍ଘର ଗୋଟାଏ ଘର ଦରକାର । ଯେଉଁଠି ସବୁ ଏକାଠି ହେବା, ବିଚାର କରିବା । ଆମ ବାପା ଦାଦା ଓ ବଡ଼ ଭାଇ ଭଉଣୀମାନେ ସମସ୍ତେ ମିଶି ଆମ ପାଇଁ ଏଇଠି ଘର ତୋଳୁଛନ୍ତି । ସେପାଖେ ପିଲାଙ୍କ ପାଇଁ ଖେଳପଡ଼ିଆ ଓ ବଗିଚା ହେବ । ଏପାଖେ ହେବ ଆମ ସଙ୍ଘ ପାଇଁ ଘର । ଆସ ମ ମୋର' ମା ଖୁଡ଼େଇ ସାହନ୍ତ ଓ ଭଉଣୀମାନେ, ସବୁ କାମ ଛାଡ଼ିଦେଇ ଆସ । ଆଗ ଏ କାମ କରିବା । ଆମ କାମ ଆମେ ତ କରିବା । ଲାଜ କାହାକୁ, ସରମ କାହାକୁ ? ମୁଁ ତମ ଟୁମା କହୁଛି—

ପଧାନେ ନାକ ଟେକିଲେ । ହଁ, ସେଇ ସତ୍ୟାନାଶୀ ଟୋକୀଟା କୁଆଡ଼ୁ । ଗାଁ ଗାଁ ବୁଲି ଝିଅବୋହୂଗୁଡ଼ାଙ୍କୁ ଖାଲି ମତାଉଛି । ସମସ୍ତଙ୍କୁ ବେସରମ ଉପରମୁହାଁ କରିଦେଲାଣି । ସ୍ୱାର କଥା ବଡ଼ ଝିଅ କହୁଥିଲା । ଦରମା ଦେଇ ସରକାର ଅଚ୍ଛା ଜନ୍ତୁଟାଏ ରଖିଛନ୍ତି ।

ପଧାନେ ଟଙ୍ଗା ଭିତରକୁ ପଶିଲେ ।

ସେ' କ'ଣ, ତାଙ୍କ ଶୋଇଲାଘରେ ବୁଢ଼ୀଙ୍କ ପାଖରେ କଏ ଗୁଡ଼ାଏ ମାଇପେ ପଶିଛନ୍ତି ? ଆରେ, ଏ କୁମ୍ଭାଟୁଣୀ ବୁଢ଼ୀଟା ଅଗଣା ଭିତରେ ପଶି ଖରକୁଛି କାହିଁକି ? ପିଣ୍ଡା ଉପରେ ବସି କାହାର ଦୁଇଟା ଝିଅ ଚଟା ପକାଉଛନ୍ତି ! ଆଉ କାହା ଘରକୁ ଭୁଲ୍‌ରେ ସେ ପଶିଆସିଲେ କି ? ରୋଷେଇଘରକୁ ଚାହିଁଦେଇ ଗ୍ରୁନଥା ହୋଇଗଲେ । ବୋହୂଟାଏ ହାତରେ କଳା ହାଣ୍ଡିଟା ଧରି ନଳାମୁହଁକୁ ଆସି ଧୋଉଛି । ଶୋଭାକାର ବୋହୂ । ଚହଲିଲା ଚହଲିଲା ପରି ମନେ ହେଉଛି ତ ! କେଉଁଠି ଭୁଲ୍‌ଟାଏ କରି ପକେଇଲେ । ବୁଢ଼ା ଲୋକ, ମତିଭ୍ରମ ହେଲା ପରା । ସେ'ତ ଆଉ କାହା ଘର ।

ପଧାନେ ପଛେଇ ପଛେଇ ପଦାକୁ ବାହାରି ଆସିଲେ । ଦାଣ୍ଡରେ ଠିଆ ହୋଇ ଚାରି ଅଡ଼କୁ ବଲ ବଲ କରି ଚାହିଁଲେ । ହଁ, ଏ ବଣଗଡ଼ । ଏଇ ତ ପଧାନ

Digitized by PPRACHIN, SOA

ସାଙ୍ଗ । ଆଉ. ଏଇଟା ତ ତାଙ୍କର ଘର । କେବେ — ? ଏଁ, ଘରଦ୍ୱାର ସବୁ ଧନ ଦୌଲତ ଭିତରେ ନିଲାମ ହୋଇଗଲା ? ଜମିବାଡ଼ି, ଗାଈଗୋରୁ ସବୁ ଗଲା । ପର ଲୋକେ ଘର ଦଖଲ କଲେ । ଧନ ସମ୍ପତ୍ତି ସବୁ ମାଡ଼ି ବସିଲେ । ସେଇଥିପାଇଁ ବାବନା ମୂଲ ଲାଗୁଛି ? କିନ୍ତୁ, ସେ ଜାଣିବାରେ ତ କେବେ କାହାଠୁଁ ପଇସାଟିଏ କରଜ କରି ନାହାନ୍ତି ।

ପଧାନେ ବିଚଳିତ ହେଲେ । ବଡ଼ ପାଟି କରି ଭେ ଭେ ରଡ଼ି ଛାଡ଼ିବାକୁ ତାଙ୍କର ମନ ହେଲା । ମୁଣ୍ଡରେ ହାତଦେଇ ନଥ୍ କରି ବସି ପଡ଼ିଲା ବେଳକୁ, ସେଇ ବୋହୂଟି ଆଗକୁ ଆସି କହିଲା, ଆସନ୍ତୁ ଭିତରକୁ ।

ପଧାନେ ଠିଆ ହେଲେ ।

ଚିହ୍ନିପାରୁ ନାହାନ୍ତି ?

ପଧାନେ ହୋ ହୋ ଚକ୍କା ହେଲେ ।

ମୁଁ ସଗ୍ର ତମର ବୋହୂ ।

କିଛିଦିନ ସେ ସପନ ଦେଖିଛନ୍ତି । ଭାଲୁ ଗାଡରେ ଝିଅ ଘରେ ବଡ଼ ଝିଅ ବଡ଼ ହୋଇଁ ସୁଭଦ୍ରା ସମ୍ବନ୍ଧରେ କଥା ପକେଇଥିଲେ । ଆଜି ସକାଳେ ସୁଭଦ୍ରାକୁ ସେ ନିଜ ଆଖିରେ ଦେଖିଲେ । ସେ ତ ଛଏ ନୁହେଁ ! କଏ ସେ ? ଝଲଙ୍ଗ, ଆଗରେ ଠିଆ ହୋଇ ହସି ହସି କହୁଛି, ବୋହୂ ! ବାବନା କ'ଣ —

ଚିହ୍ନି ପାରିଲେ ନାହିଁ ? ମୋ ନାମ ଆଲ୍ଲୁ !

ଆଲ୍ଲୁ ?

ଆପଣଙ୍କ ପୁରୋହିତ ଶ୍ରୀ ନିତ୍ୟାନନ୍ଦ ତ୍ରିପାଠୀ ମୋ'ର ଶଶୁର । କେଠେଇଙ୍କର ଦେହ ଭଲ ନାହିଁ । ଖବର ପାଇ ଟୁମାନା ଆସି ଔଷଧ ଦେଲେ । ମତେ ଜଣେଇ ଦେଇଗଲେ । ଆମେ କେତେ ଝିଅବୋହୂ ଆପଣଙ୍କ ଘରେ ଜମା ହୋଇଛୁଁ । ଟୁମାନା କାମ କରିବାକୁ କୁ । କେହିଆଉ କହିଲା, ଅଗଣାଟା ସଫା କରିଦିଏଁ । ମୁଁ କହିଲି ହାଣ୍ଡି ପୁଞ୍ଜାକ ଧୋଇ ଦିଏଁ । ଶୁକ୍ରୁ ମଉସା ଆଉ ରଥ ମାମୁଙ୍କ ଝିଅ ଦିହେଁ ନକ୍ସା କାମରେ ବଡ଼ ପାରିଲାର । ଟୁମାନା ତ ଶିଖେଇଛନ୍ତି । ଝିଅ ଦିଓଟି କହିଲେ ଆମେ ଚିତା ପକେଇବୁଁ । ମୁଁ କହିଲି ପକା ।

ପଧାନଙ୍କ ପିଣ୍ଡରେ ପ୍ରାଣ ପଶିଲା । ତାଙ୍କ ଘରଦ୍ୱାର ନିଲାମ ହୋଇ ନାହିଁ କି ତାଙ୍କ ଅନୁପସ୍ଥିତିରେ କେହି ଦଖଲ କରି ନାହିଁ । ମା' ମଙ୍ଗଳା ଦୟା କରିଛନ୍ତି । ହେଲେ, ଏ କି ନୂଆ ବିପଦ ? ପୁରୋହିତ ବୋହୂ, ଜାତ୍ୟାଭିମାନ ଗୁଡ଼ି ତାଙ୍କ ଘରେ ପଶି ଅଇଁଠା ହାଣ୍ଡି ଧୋଉଛି । ଗାଁ ମାଇପେ — ବାର ଜାତିର ଲୋକ ଆସି ଘରେ ପଶିଲେଣି । ଆପେ ଆପେ ପଧାନଙ୍କ ହାତ ଯାଇ ଅଣ୍ଟା ଦବାଣ୍ଡିଲା । ଚାବି ପେଣ୍ଠାକ ଅଛି । ଭଣ୍ଡାରଘର ଭିତରେ ଥିବା ବାକ୍ସ ପେଟିକାରେ ବଡ଼ ତାଲା ପଡ଼ିଛି । କେହି

Digitized by PPRACHIN, SOA

ଖୋଲି ପାରି ନ ଥିବେ । ଯଦି ବା କିଏ ଖୋଲିଥିବ,—ହୁଁ, ଥାନାଟା କେଉଁ ବାଟ ନୁହେଁ । ମୋଟେ ତିନି କୋଶ— ।

ଆଖି ବନ୍ଦ କଲେ, ଆସନ୍ତୁ ଭିତରକୁ । ଜେଠେଇଙ୍କର ଦେହ ଭଲ ଅଛି । କାଲି ସକାଳୁ ଦିନ ଦି' ପହର ଯାଏ ଏତେ ସେ କାମ କରିଛନ୍ତି—ଗୁହାଳପୋଛା, ଘରଲିପା, ଧାନକୁଟା, ରୋଷେଇ— । ଦୁର୍ବଳ ଲୋକ । ମୂର୍ଚ୍ଛା ହୋଇ ପଡ଼ିଲେ । ସାରଙ୍ଗୁ କେମିଅଛି ହାଣ୍ଡି ନେଇ ଆସି ଦେଖି ଡାକ ଛାଡ଼ିଲେ, ନୋହିଲେ— । ଔଷଧ ଖାଇ ବେଶ ଭଲ ହେଲେଣି । ତେବେ, ବିଛଣାରୁ ଉଠି କାମ କରିବାକୁ ଝନ୍ନଜାନ ମନା କରିଛନ୍ତି । ସେ ଭଲ ହେବା ଯାଏ ତ ବାବନାକୁ ବାହାର ଏ ଘରକୁ ଚାଣିଲ ଶୁଣିଲ କାମିକା ବୋହୂ, ଆଣିବା ଯାଏ, ଅମେ ବୋହୂ, ଝିଏ ତାଙ୍କ ସେବା କରିବୁଁ, ତାଙ୍କ ପାଇଁ ସବୁ କାମ ଆମେ କରିଦେବୁ ।

ପଧାନେ ଟାକ ଟେକି କହିଲେ, ମୋ' ଘରକଥା ମୁଁ ବସେ ବୁଝିବି । ସେଥିପାଇଁ ଅନ୍ୟମାନଙ୍କୁ ଚିନ୍ତା କରିବାକୁ ପଡ଼ିବ ନାହିଁ ।

ପଧାନେ ଖଞ୍ଜା ଭିତରକୁ ପଶିଲେ ।

ସୁବିଧା ଖୋଜୁଥିଲେ, କେବେ ଏମାନେ ଯିବେ ଓ ସେ ଦାଣ୍ଡ କବାଟ ଖିଲି କବାଟ ବନ୍ଦ କରି ସବୁ ହତ୍ୟାନାଗିଆ ସର୍ବନାଶୀଙ୍କ ଦଳର ଚକାନ୍ତରୁ ଉଦ୍ଧାର ପାଇବେ । ଅଚ୍ଛା କଥା ହେଲା ତ, ଦିନ ଗଲେ ଆଉ ଦୁଇ ଜଣ ଆସି ପଶୁଛନ୍ତି । ରାତିରେ ବୁଢ଼ୀଙ୍କୁ ଜଗି ରହୁଛନ୍ତି । ଅଶ୍ଚର୍ଯ୍ୟର କଥା, କେହି ତା'ଙ୍କ ଘରେ ପାଣି ମନ୍ଦାଏ ବି ପିଉ ନାହାନ୍ତି ।

କାହା ଘର ଝିଅ, କାହା ଘର ବୋହୂ । କିଏ ରୋଷେଇ କରୁଛି ତ, କିଏ ବାସନ ମାଜୁଛି, କିଏ ଗୁହାଳ ପୋଛୁଛି ତ, କିଏ ଘର ଓଳାଉଛି, କିଏ ବୁଢ଼ୀଙ୍କୁ ଜଗି ବସିଛି ତ, କିଏ ପଥି ରାନ୍ଧି ଦେଉଛି । ତାଙ୍କ ଘରୁ ଚାଉଳଟିଏ କି ତାଙ୍କ ବାଡ଼ିରୁ ବାଇଗଣ ଖଣ୍ଡିଟିଏ ବି କେହି ନେଉ ନାହିଁ । ପଧାନେ ମନେ ମନେ ଖୁସି ହେଉଛନ୍ତି । କରନ୍ତୁ ସେମାନେ କ'ଣ କରୁଛନ୍ତି, ଧର୍ମ ବେଟିଆ ଦଳକ । ତାଙ୍କର ତ କାଣିକଉଡ଼ି ଖରଚ ହେଉ ନାହିଁ ।

ଦିନ ପାଞ୍ଚଟାରେ ବୁଢ଼ୀ ଉଠି ବସି ଲେଣି । ପଧାନେ ଦେଖୁଛନ୍ତି । ନିଭୃତରେ ପଦେ ପରାମର୍ଶ କରିବାକୁ ସୁବିଧା ପାଉ ନାହାନ୍ତି । ସବୁବେଳେ ପାଖେ ପାଖେ ଜଣେ କିଏ ଅଛି । ଆଉ ସେଇ ବଚନ ଝିଅ ଖଣ୍ଡିକ ଟୁନି— ! ବଜୁଳି ପରି ତା'ର ଚଳନ । ବେଳେ ବେଳେ ଆସୁଛି । ମଉସା, ମଉସା ତାଙ୍କ ନମସ୍କାର କରୁଛି । ବୁଢ଼ୀଙ୍କୁ ଔଷଧ ଦେଉଛି । ଗୋଡ଼ ହାତ ଆଉଁଷୁଛି । ଦାନ୍ତ ଉଗ୍ରାଳ ପୋଛି ସଫା କରୁଛି । ନିଜେ ସଫା ହେଉଛି । ପୁଣି ଚାଲିଯାଉଛି ।

ବାବନା କେବେ ଆସୁଛି, କେବେ ନାହିଁ । କେଉଁ ବେଳ ଧର୍ମବେଟିଆ ଦଳ ଯଗଯାଳ ପରି ମାଡ଼ି ଆସୁଛନ୍ତି । ଦିନ ପାଞ୍ଚଟାରେ ପିଲଙ୍କ ପାଇଁ ଖେଳ ପଡ଼ୁଆ

Digitized by PPRACHIN, SOA

ହେଲ । ଅନ୍ଧମା ଜଙ୍ଗଲ ସଫା ହେଲା । ବଡ଼ ପୋଖରୀରୁ ଦଳ ଓ ପଙ୍କ କଢ଼ା ସରିଲାଣି । ଷୋଳିଏ ହାତ ଚୌଡ଼ାର ରାସ୍ତା ପଧାନ ସାହି ମୁଣ୍ଡରୁ ନେଇ ପୋଖରୀ ହୁଡ଼ା ବାଟେ ଗୋପୀକୃଷ୍ଣ ମନ୍ଦିର ବଡ଼ ରାସ୍ତାରେ ମିଶାଇ ଦେଲେଣି । ନାଗକଲ୍ୟାଣ ସଙ୍ଘ ପାଇଁ ପୋଖରୀ ସେପାଖ ପଡ଼ିଆରେ ନୂଆ ରାସ୍ତା କଡ଼ରେ ଘରଚୋଳା ହେଉଛି । ଟଙ୍କା କିଏ ଦେଉଛି, ଜିନିଷ କେଉଁଠୁ ଆସୁଛି ପଧାନେ ଜାଣିପାରୁ ନାହାନ୍ତି । ବାବନାଟା ସେଇ ଘରଚୋଳା ପାଖରେ । ଜମିଦାରଙ୍କ ପାଖକୁ ଯାଉ ନାହିଁ । ପଧାନଙ୍କୁ ପଦେ ପଚାରୁ ନାହିଁ ।

ପଧାନେ ଖାଲି ଉବେଇ ଖବେଇ ହେଉଛନ୍ତି । କାହାକୁ କିଛି କହି ପାରୁ ନାହାନ୍ତି । ଘଜ ଗ୍ରାମ ଥାନାକୁ ଯାଇ ପାରୁ ନାହାନ୍ତି - ବିନାଧିକାର ପ୍ରବେଶ ପାଇଁ ଗୋଟାଏ ଡାଇରି କରିଥାନ୍ତେ ତ । ଦରବାର ଦେବେ ବର୍ମିରେ ଆସିଥାନ୍ତା । ପୁଣି ଖାରୁଛନ୍ତି. ବାବନାଟ ତ ଛତରା ଦଳରେ ମିଶିଲା, ଆଉ ସେ ବାଟକୁ ନ ଆସେ । ତ୍ୟାଜ୍ୟପୁତ୍ର କରିଦେବେ କି ? ସମ୍ପତ୍ତି ତ ରକ୍ଷା ପାଇଯିବ ।

ଆଜି ପୁଣି ସେ କ'ଣ ? ପଧାନ ସାହିଆ ମାଡ ହୋଇଲେ କାହିଁକି । ହୋଇ ହୋଦାକ, ରାଣ୍ଡୁଆ – । ପିଲାଗୁଆରୁ ବଡ଼ବଡ଼ୁଆ ଯାଏ ।

କ'ଣରେ ଛକଡ଼ ?

ପଧାନ ସାହି ରାସ୍ତାଟା ଭଜ କରିବୁଁ ।

ନମସ୍କାର ମଉସା !

ଏଁ, ରଜାପୁଅ ସୁରଜ ଉଦରଙ୍କା ?

ପ୍ରଣାମ ଜେଠା !

ଆରେ, ପୁରୋହିତ ପୁଅ ଧର୍ମାନନ୍ଦ !

ଓଳଗି ପଧାନେ—

ଉଥ ଦକେଇ !

ମୋ'ର ଏଇଠି-—

ଅଙ୍ଗଦ ଦନେଇଁ ସାହୁ—

ଆଉ ସବୁ ଭଲ ପଧାନେ ?

ପଞ୍ଚ ମେମ୍ବର ହରି ପଟ୍ଟନାୟକ ।

ପଧାନେ ମୁହଁ ଖୋଲିଲେ, ଆପଣ ବି ବାଇଆ ହେଲେ ? ଏ ସବୁ କ'ଣ ହେଉଛି ପଟ୍ଟନାୟକେ ?



Digitized by PPRACHIN, SOA

ଘଣ୍ଟନାୟକ ହସି ହସି କହିଲେ, ଆସନ୍ତୁ ପଧାନେ ଦେଖିବ ! କାମ ପୁଳାଏ ଢ ହୋଇ ଯାଉଛି । ଲଣବା ଲୋକେ କରିବେ—ଏଇ ଧର୍ମବେଟିଆ ଦଳ । ଆମେ ଖାଲି ଠିଆ ହୋଇ ହୁଁ, ହୁଁ, କରିବା । ଦେଖିବ ବହୁ କାମ କେମିତ ଆପେ ଆପେ ହଟିଯିବ । ଖାଲଟାରେ ବସି ରହିଲ ଚାହିଁକ ଏଠି । ଗ୍ଲାନ ଗାଁ ମୁଣ୍ଡ ବହଳ-ଗୁଡ଼ନୀ ପାଟକୁ । ଆସ ହେ, ମଜାଟା ଦେଖିବ । ହୁଁ, ଶୁଣ, ଉମର ଗୁହାଳଘରଟା ଯେମିତ ସ୍ପଷ୍ଟ ହେଲଣି, କେତେବେଳେ ଯଦ ମାଡ଼ ବସିବ – ଗୋ'ବଧ ଦୋଷ ଲାଗିବ ହେ । ଆସ, କହୁଛି । ହିଙ୍ଗଏ ଉସୁକେଇ ଦେଲେ ଏଇମାନେ ବିନା ପଇସାରେ କାମଟା ଉଠେଇ ଦେବେ । ବନ ହ'ଟାରେ ବିନା ଖର୍ଚ୍ଚରେ ନୂଆଘର ଠିଆ ହେବ । ବୁଝିଲ ନା— ?

ପଧାନେ ବୁଝିଲେ । ଉଠିଲେ ।

ଗାଁ ରାସ୍ତା କାମ । ପଧାନେ ଦେଖଣାହାରୀ । ଝୁଡ଼ନୀ ଉପରେ ଚୁପ କରି ବସି ଦେଖୁଥିଲେ । କେତେବେଳେ ଅଜାଣତରେ ମୁହଁ ଖୋଲି ଉପଦେଶ ଦେଲେ । କେତେବେଳେ ଖୁବ୍ ଖୁବ୍ କାମ ଉପରେ ଠିଆ ହୋଇ ବାଙ୍କୁଲି ବାଡ଼ିରେ କାମ ଦେଖାଇଲେ । କେତେବେଳେ ବାଡ଼ିଟାକୁ କେଉଁ ନାଠ ଟୋକାର ହାତକୁ ବଢ଼ାଇ ତାଙ୍କ ମଦଦ୍ ଛିଅଳ ହାତରୁ ନେଇ ସାହାଡ଼ାମୂଳ ହୁଙ୍କା ହାଣିଲେ । ସେଥିରେ ଫଣା ଉଡ଼ା ସାପ ସେ ଦିନେ ଦେଖିଥିଲେ । ମାଟି ଟୋକେଇ ଗୁଳେଇ ଯେଠୀ ମୁଣ୍ଡକୁ ଟେକିଦେଲେ । ନନ୍ଦ ନାହାକର ଏଗାର ବର୍ଷର ପୁଅ ମୁଣ୍ଡରେ ଓଜନିଆଁ ମାଟି ବୋଝେଇ ଟୋକେଇ ଦେଖି ହାଁ ହାଁ । କରି ନିଜେ ବୋହୁ ନେଇ ରାସ୍ତାରେ ପକେଇଲେ ।

ଟୋକେଇଟା ହାତରେ ଲାଖିଗଲା ।

କାମର ନିଶା ଲାଗିଲା । ତନ କୋଡ଼ି ପାଞ୍ଚ ବର୍ଷର ଅଶକ୍ତ ହାତ ଅଟଳ ମୁଣ୍ଡର କସ୍ରତ ସେ ନିଜେ ଦେଖି ବିଶ୍ୱାସ କରିପାରିଲେ ନାହିଁ । ରାସ୍ତା ହଟୁଛି । କାମ ଚାଲିଛି । କୋଦାଳ ଫୋପାଡ଼ି ଦେଇ ଦୂରରୁ ହସି ଘଣ୍ଟନାୟକେ ଧାଇଁ ଆସିଲେ । ପଧାନ ବୁଢାଙ୍କ ମୁଣ୍ଡରୁ ଟୋକେଇ ଉଠାଇ ତଳେ ପକାଇଲେ । ଟୋକିଆ ଗୁଡ଼ିକୁ ଝାଳୁଆ ଛାତିରେ ଲଗାଇ ଭିଡ଼ି ଧରି କହିଲେ, ଆରେ ମୋ'ର ବୁଢ଼ା ଭାଇ ମୁଣ୍ଡରେ କେଉଁ ନବୁଝିଆ ଟୋକେଇ ଥୋଇଲା ରେ, ଦିଶୁ ନାହିଁ କି ତାଙ୍କର ମୁଣ୍ଡ ଥରୁଛି, ଗୋଡ଼ ଟଳୁଛି ? ତମେ ପଧାନେ, ଏଇଠି ଠିଆହେଲେ ତ ଆମେ ପର୍ବତ ଟାଳିବୁଁ ।

ସତେ ମହିମା— । ଅଣ୍ଟା ସଳଖି ରଣେରଙ୍କା କହିଲା, ଆପଣଙ୍କ ତୁଣ୍ଡର ଉପଦେଶ ଶହେ ଟୋକାଙ୍କ କାମ ସଙ୍ଗେ ସମାନ । ଆପଣ ମୁଣ୍ଡରେ ମାଟି ବୋହିଲେ ଆମ କୋଡ଼ି ହାଙ୍କ ଅଚଳ ହେବ ।

Digitized by PPRACHIN, SOA

ସତ କଥା ଜେଠା, ଆପଣଙ୍କ ତୁଣ୍ଡର ପଦେ କଥା, ମନର ଶୁଭଇଚ୍ଛା, ଆଶୀର୍ବାଦ ଆମ ରଣଗଡ଼ର ରୂପ ବଦଳେଇ ଦେବ । ରଣଗଡ଼ ଖାଲି ହସିବ । ଆପଣ ବୋଲୁଛନ୍ତି ମାଟି ?

ପଧାନଙ୍କ ଆଖିରୁ ଦ'ଧାର ଲୁହ ଗଡ଼ି ଆସିଲା । ଓଠ ଥରାଇ କହିଲେ, ଦେଖୁଛୁ, ଖାଲି ଉପଦେଶ ବାଢ଼ିଲେ କିଛି ହୁଏ ନାହିଁ ରେ ବାପ, ହାତ ଲଗାଇଲେ କାମ ହୁଏ । ଦେଖୁଛୁ ନଅ ବର୍ଷର ସେଇ ଟିକି ଝିଅଟି ତା' ପାଦଆରେ ମାଟି ବୋହି ବୋହି କରି ନେଇ ଅଜାଡ଼ୁଛି ରାସ୍ତା ଉପର ଖାଲରେ । ରଣଗଡ଼ର ଝିଅଟି ସେ, ଠାକୁରେ ଆଶିଷ ଦେଇଥିଲେ ସେ ପାଇଁ ଆଉ କେଉଁ ଗାଁରେ ମା, ଆଈମା ହେବ ।

ସମସ୍ତେ ଚାହିଁଲେ ସେ ଝିଅଟି ଆଡ଼କୁ । କାହାର ଉପରେ ତା'ର ଦୃଷ୍ଟି ନାହିଁ । ମଇଳା ଛିଣ୍ଡା କନାକୁ ଅଣ୍ଟାରେ ଗୁଡ଼ାଇ ସେ କାମ କରୁଛି । ସେ ହରି ତନ୍ତୀଙ୍କ ଝିଅ ଚୁକା ।

ସତେ ଜେଠା ।

ଏମିତି ଉପଦେଶ ଆମର ଲୋଡ଼ା ମଉସା ।

ମୁଁ ଆଉ ଉପଦେଶ ଦେବି ନାହିଁ ରେ ବାପ, ଧନ କେଇଟା ବଞ୍ଚିବି ଆଉ, ମାଟି ଧ ମୁଠା ପକେଇ ଥାଏ । ବାବନାକୁ ତମେ ନେଇଛ, ବାବନା ମା'କୁ ନେଇଛ । ମତେ ବି ନିଅ । ସମସ୍ତେ ତମେ ସୁଖରେ ରହ ବାପ । ଆନନ୍ଦରେ ରହ । ସମସ୍ତେ ତମେ ମୋ' ମୁହଁରେ ସେ ଧନ ନିଆଁ ଟିକେ ଟିକେ ଦେବ ।

ଆଜିରୁ ଲୁହ ଗଡ଼ିଲା ।

ସେଇ ଝିଅଟି ଚୁକା ଘରୁ ଗେଲ୍ଲାକ ଆଣି କହିଲା, ନିଅ ଅଜା ତମ ଘରୁ ସେଠି ପକେଇ ଦେଇ ଆସିଥିଲେ ।

ପଧାନେ ପିଲାଟିର ମୁଣ୍ଡ ଆଉଁଷିଲେ ।

ରଣସିଂହେ ଅଧୀର ହେଉଛନ୍ତି, ଛଟପଟ, ଉଚ୍ଛନ୍ନ ହେଉଛନ୍ତି । ନାଥୁଆ ଏତେବେଳେ ଯାଏ ଫେରିଲା ନାହିଁ । କେଉଁଠି ସେ ଅଟକିଗଲା । ଅସି ହଞ୍ଜ ହେଲାଣି । ପଡ଼ିଲା କି ସେ ଛତର ଧର୍ମବେଟିଆଙ୍କ ହାବୁଡ଼େ, ଠିକ୍ ସେଇ ବାବନା ପଧାନ ପରି ? ସହି ହେଉ ନାହିଁ ଯନ୍ତ୍ରଣା । ତଣ୍ଟି ଶୁଖିଯାଉଛି । ଗ୍ଳାସ ତଳେ କଅଣ ଗୋଟାଏ ବ୍ୟାକୁଳ— ଛଟପଟ ହେଉଛି—ଦରମରା ନାଗସାପ ପରି । ଦଂଶୁଛି ଦଂଶୁଛି ! ଦୁଇଟା ଯାକ ଆଲମାରି ଭିତରେ ଯେତେ ବୋତଲ ଥିଲା ସବୁ ସେ ପରୀକ୍ଷା କରି ସାରିଲେଣି । ଦେଶୀ କି ବିଲାତି କାହିଁରେ ହେଲେ ଟୋପାଏ ନାହିଁ ।

Digitized by PPRACHIN, SOA

କୁଳାଙ୍ଗାର ସୁରନ୍ତ ! ପୁଅ ନୁହେଁ ସେ ଶତ୍ରୁ, ମହାଶତ୍ରୁ ! ତାହାର ପାଇଁ ଭାବନା କଲା । ଦେଖାଣି ପୁଣି ତାହାର ପାଇଁ ନାଥିଆ ବି ଘୁଲିଯିବ । ଏଁ, ଘୁଲିଯିବ ନାଥିଆ, ପିଲାଦିନରୁ ସେ ନିମକ୍ ଖାଇଛି ? ନା, ସେ ଅବଶ୍ୟ ଆସିବ, ଆସୁଥିବ । ଦେଖାଣି କେଉଁଠି ଭୁଲ୍‌ରେ କିଛି ରହିଯାଇ ନାହିଁ ତ ? ରଣସିଂହେ ଘାରବାକମରେ ପଲଙ୍କ ଉପରୁ କୁଦାମାରିଲେ ତଳକୁ । ଲମ୍ବ ଖଣରେ ତାଉ ଦେଇ ଆଲମାରି ପାଖକୁ ଗଲେ । କିଛି ନାହିଁ । କାନ୍ଥ କଡ଼ରେ ଗଦା ହୋଇଛି ଖାଲି ବୋତଲ ।

ଖାଲି ବୋତଲ ? ଦେଖେ—

ଗୋଟିକ ପରେ ଗୋଟିଏ ଟେକି ମୁହଁରେ ଲଗାଇଲେ । ଛାତି ଭିତରେ ଅଭ୍ୟାସ ରକ୍ତ ଛୁଟିଲାଣି । ମନ ଭିତରେ ବାସନା ଗର୍ଜି ଉଠିଲାଣି ।

ନାହିଁ କି ? ଦେଖ, ଆହୁରି ଦେଖ ।

ତରଙ୍ଗ ଏ ପାଖ ସେ ପାଖ ଖୁଣ୍ଟି ଧୂଆଁ-ଟଣା ଲୋକ ଧୂଆଁ ଟାଣିବ ନାହିଁ ବୋଲି କେତେଥର ପ୍ରତିଜ୍ଞା କରି ଖଟ ତଳୁ ବାକ୍ସ କଡ଼ରୁ ଯୋଡ଼ା ସନ୍ଧିରୁ ଖଣ୍ଡିଆ ବିଡ଼ି ଗୋଟାଏ । ବୋତଲ ସରି ନାହିଁ । ଆହୁରି ଅଛି ।

କାହିଁରେ କିଛି ନାହିଁ । ଶୁଣିଲ ୫୦ ଟଙ୍କାଏ ବି ଓଦା ହେଲା ନାହିଁ । ସୁରେନ୍ଦ୍ରତେ କହିଗଲେ, ଭାଙ୍ଗିଦିଅ ମଦ ନୁହେଁ । ଯୋଗାଡ଼ କଲେ ଆଣି ହେବ— ଭାଙ୍ଗ କହ, ଗଞ୍ଜେଇ କହ, ଅଣ୍ଟାରେ ଖୋସିଲେ ଗୁରୁବ୍ରହ୍ମା ଜାଣିପାରିବେ ନାହିଁ । ମନ ଥିଲେ, ଧନ ଥିଲେ, ସ୍ୱୟଂ ଜଟାଧାରୀ କୈଳାସରୁ ଆସି ଦେଇଯିବେ । ମର୍ତ୍ତ୍ୟରେ ଯିନା ନିଶାନିବାରଣ ଆଇନ ଜାରି । କୈଳାସରେ ସେ ସବୁ ଆଇନ୍ ଫାଇନ୍ ନାହିଁ ।

ନାଥିଆ କହିଲା, ସେମିତି ଆଜ୍ଞା, ମନ ଥିଲେ ଧନ ଥିଲେ ଜନା କୃଷ୍ଣ ଲକ୍ଷ୍ମୀ ଠାକୁରାଣୀଙ୍କୁ ଛାଡ଼ି ଏଇ ଘର ଭିତରକୁ ଓହ୍ଲେଇ ପଡ଼ିବେ । ଗଞ୍ଜେଇ କହ, ଅଫିମ କହ, ତା'ର ମଜା ଅଲଗା । ଧୂଆଁ ପଦର ମଜା ବି ଅଲଗା । କୋଉଟା କୈଳାସର ମାଲ ତ କୋଉଟା ବୈକୁଣ୍ଠର । ଧୂଆଁ ଟା ପାତାଳପୁରର ଚିଜ ।

ଜୟ ସୁର ! ସୁର, ଅସୁର, ମାନବ ସମସ୍ତଙ୍କର ସେ ମା ! ସେ ବ୍ରହ୍ମ !

କାହିଁରେ କିଛି ନାହିଁ । କହୋ, ଯାହାର ପାଖରେ ଧନ ଅଛି, ଯାହାର ମନ ଅଛି ସେ କିଣିବ, ସେ ଖାଇବ । ତମେ ଧର୍ମଛଡ଼ା ପାଞ୍ଚ ବର୍ଷ ଆଇପିଆ ନିଶା ନିବାରଣ କଲ କାହିଁକି ? ଦେଖିବ ଆସ, ରଣଗଡ଼ର ରଣସିଂହେ, ମଣିଷ ରକ୍ତ ନ ଖୁଣ୍ଟି ବୋତଲ ମୁହଁ ଖୁଣ୍ଟୁଛନ୍ତି ।

ସଞ୍ଜ ହୋଇ ଆସୁଛି । କିଏ ଆସିଯିବ ପରା ।

ରଣସିଂହେ କାନ୍ଥକଡ଼ରୁ ଉଠିଲେ । ଦରଜା ପାଖକୁ ଆସିଲେ । ବୁଝିଲେ କେହି ଆସୁନାହିଁ । କଣିକଅ ଘରେ ଆଲୁଅ ଲାଗିଲାଣି । ମମତାଙ୍କର ବ୍ୟାଭଙ୍ଗ କ୍ରନ୍ଦନ ଶୁଭୁଛି । କିଏ ତାଙ୍କୁ ସାନ୍ତ୍ୱନା ଦେଉଛି । ଟେଷ୍ଟମଣି ବେଗ । ପେଟରେ

Digitized by PPRACHIN, SOA

ଚକିଆ ମାତ୍ର ସେ ପଡ଼ି ରହିଛନ୍ତି । ଉଠି ଆସିବାକୁ ଶକ୍ତି ନାହିଁ । ଯିବେ କି ଥରେ, ଦେଖି ଆସିବେ ?

ଯେତେଥର ସେ ଯାଉଛନ୍ତି, ସେତେଥର ସେ ଡାକନ୍ତି, ମମତା ଚହିଁକି ଉଠିଛନ୍ତି । ପେଟରେ ହାତ ଦେଇ ଅସ୍ତବ୍ୟସ୍ତ ହୋଇ ଉଠି ବସିଛନ୍ତି । ଆକୁଳ ବ୍ୟାକୁଳ ହୋଇ ବୁଝିଁଛନ୍ତି, ପିଲାଙ୍କ ପରି ଅଳି କରୁଛନ୍ତି, ଆସିଛ ? ବାବନା ପଧାନ କଟକରୁ ଫେରିଛି ? ଦିଅ, ଦିଅ —; ମୋ'ର ତଣ୍ଟି ଶୁଖିଯାଉଛି । ମୋ'ର ପେଟ କ'ଣ ହୋଇ ଯାଉଛି । ଦିଅ ସେଇ ଅମୃତରୁ ଟୋପାଏ, ପେଟବ୍ୟଥା ମୋ'ର ଭଲ ହୋଇଯିବ । ମୁଁ ଉଠି ବସିବି । ମନ ପୂର୍ଣ୍ଣ କରି ହସିବି, ଦିଅ ଟିକେ ।

ବାବାନା କଟକରୁ ଫେରିଲାଣି ।

ଆଣିଛି ତେବେ ?

ମମତାଙ୍କ ନିଷ୍ପ୍ରଭ ଆଖିରେ ଆଶାର ଆଲୋକ ଝଲକି ଉଠେ । ଓଠରେ ମନ ଟଣା ହସ ଖେଳିଯାଏ । ନୂଆ ଉତ୍ସାହରେ ଚପଳମତି ଶିଶୁଟି ପରି ସେ ଉଠି ଆସନ୍ତି । କେଶବାସ ଫିଟି ପଡ଼ୁଛି । ଦୁଇ ହାତରେ ରଣସିଂହଙ୍କୁ ଆଲିଙ୍ଗନ କରି, ସ୍ଥାନ, କାଳ ଭୁଲି ଚୁମ୍ବନ କରନ୍ତି । କହନ୍ତି, ଆଣି ଦିଅ ମତେ । ତମେ ସବୁ ଖାଇଦିଅ ନା । ଭାରି ଶୋଷ !

ମମତା !

ରଣସିଂହେ ପିଠି ଆଉଁଷନ୍ତି । ମଦ ଆସିନାହିଁ । କିନ୍ତୁ ତାଙ୍କର କୁଳଲକ୍ଷ୍ମୀ ସୁରାଦେବୀଙ୍କର ଅତି ସ୍ନେହର କନ୍ୟା, ଯାହାଙ୍କର ଶିରା-ପ୍ରଶିରାରେ ମଦ୍ୟର ବନ୍ୟା ଛୁଟିଛି, କାଲି ପରି ଲାଗୁଛି ସେଦିନର କଥା । ତାଙ୍କୁ ମଦ୍ୟପାନରୁ ନିବର୍ତ୍ତାଇବାକୁ ଯାଇ ଅଭିମାନରେ ମଦ୍ୟପାନ କରିଥିଲେ । ଅଚେତନ ହୋଇ ରଣସିଂହଙ୍କର ବକ୍ଷ ଉପରେ ଢଳି ପଡ଼ିଥିଲେ । ତିନି ବର୍ଷ ଭିତରେ ସବୁ ଓଲଟି ଯାଇଛି, ଧନ ସରିଛି । ଦେହରୁ ଗହଣା କାଢ଼ି ଦେଇଛନ୍ତି ମମତା । ରଣସିଂହେ ପରାଜିତ ହୋଇଛନ୍ତି, ବାବନା ପଧାନ ସବୁ ଧନ ବୋହିନେଇ ସ୍ବେଚ୍ଛାମଦ କିଣି ଆଣିଛି । ଶେଷକୁ ବାବନା ପଧାନ ବି ଠକିଛି ।

ମମତା, ବାବନା ଗ୍ରାମସେବକ-ସଙ୍ଘରେ ଯୋଗ ଦେଇଛି । ଗାଁଆଯାକ ପାଗଳ ହୋଇଛନ୍ତି । ତମର ସେଇ କୁଳାଙ୍ଗାର ପୁଅ ସୁବ୍ରତ ଆଉ ପୁରୋହିତଙ୍କର ଧର୍ମଛଡ଼ା ପୁଅ ଧର୍ମାନନ୍ଦ ସମସ୍ତଙ୍କୁ ମତେଇ ଦେଇଛନ୍ତି । ଏ ଗାଆଁ ସୁଖ-ଆନନ୍ଦ ଦୂର ହେଲାଣି । କାମ କାମ ହୋଇ ସବୁଗୁଡ଼ାକ ବାଇଆ ହୋଇଛନ୍ତି । ରାତି ବି ତାଙ୍କୁ ରାତି ପରି ଦିଶୁନାହିଁ । ଅଳିଅ କାଳି ଦଳଦଳ ହୋଇ କାମ କରୁଛନ୍ତି । କେବଳ ରଣଗଡରେ ନୁହେଁ, ଆଖପାଖ ଦଶ ଖଣ୍ଡି ଗାଆଁର ଲୋକ । କହୁଛନ୍ତି, ମୂଲିଆ ହୋଇ କେହି ରହିବେ ନାହିଁ, ପୁଣି ସମସ୍ତେ ହେବେ ମୂଲିଆ । ବାବନା ଆଉ ଏ ଘରଦ୍ୱାର ମୁହଁ ମାଡ଼ିବ ନାହିଁ ବୋଲି ନାଥିଆ ହାତରେ ଖବର ଦେଇଛି ।

Digitized by PPRACHIN, SOA

ଆସିବ ନାହିଁ ଧାବନା, ମଦ ଆଣିବ ନାହିଁ ?

ମମତା ଦର୍ପସିଂହଙ୍କ ଗ୍ରନ୍ତ ପଲଙ୍କ ଉପରେ ଲେଟି ପଡ଼ିଲେ । ପେଟର ଯନ୍ତ୍ରଣା କଷ୍ଟ ଦେଉଛି ।

ନାଥୁଆ – ବୃନ୍ଦାବନଚନ୍ଦ୍ର ଯେ, ସେଇ କେବଳ ଆଶାଭରସା । ସେ କେବେ ବିଶ୍ୱାସ ଭାଙ୍ଗିବ ନାହିଁ । ସଞ୍ଜ ହେଲେ କେଉଁ ଛଟକରେ ଶିଥିଳଘରୁ ବୋତଲରେ ପୁରାଇ କୋଟଲ ଭିତରେ ଲୁଚାଇ ସେ ନିଶ୍ଚୟ ଆଣିବ । ମମତା ଖାଇ ଯାଇବେ । ଉଠି ବସିବେ । ଢକ ଢକ କରି ପିଇଦେ । ପେଟ ବ୍ୟଥା ଭଲ ହେବ । ହସି ହସି ସେ ପାଖକୁ ଆସିବେ । ପ୍ରେମମୟୀ ସେ । ଜୀବନରେ ଯେତେ ନାରୀ ଯେବେ ଥିଲେ, ଯେଉଁମାନେ ପରିତ୍ୟାଗ କରି ଚାଲି ଯାଇଛନ୍ତି, ଜଣ ଜଣ କରି ସମସ୍ତଙ୍କୁ ସେ ମମତାଙ୍କ ରୂପରେ, ଢଙ୍ଗରେ ଦେହରେ ଦେଖନ୍ତି । ନାଥୁଆ ଆସୁଥିବ । ସଞ୍ଜ ଅନ୍ଧାର ଘୋଟି ଆସିଲାଣି । ଆଜି ବହୁଳ-ଅମାବାସ୍ୟା !

ଅଲୁଅ ଧରି ଧୀରେ ଧୀରେ ଘରେ ପଶିଲା ମାଳତୀ । ଟେବୁଲ୍ ଉପରେ ରଖିଲା । କଣେଇଁ ଚାହିଁଲା । କାନ୍ଥକଡ଼ରେ ବୋତଲଗୁଡ଼ାକ ଛନ୍ନଛତର ହୋଇ ପଡ଼ିଛି । ଦର୍ପସିଂହ ଆଖି ବୁଜି ଆରାମ ଚଉକିରେ ପଡ଼ି ଜୋର୍‌ରେ ନିଃଶ୍ୱାସ ନେଉଛନ୍ତି । ଉପର ପେଟ ହଲୁଛି । କଳା ମିଚମିଚ ଲମ୍ବ ଜଣହଳକ ଏ ପାଖ ସେ ପାଖ କରୁଛନ୍ତି । ସେଇ ଜଣକୁ ଦେଖିଲେ ମାଳତୀର ପିଳ୍ ହୋଇ ଯାଣି ହୁଏ । କୁଆଡ଼େ ଗଲା ସେ ଚଢ଼ାକଟା ବୋଧିଲବୃଦ୍ଧା ଓଷେ ବାବାଜିଟା ? ଥରେ ଆସି ଜଣ ହଳକ କଟେଇ ଦେଇଥିଲା । ଆଉ ଥରେ ସେ ଆସୁନାହିଁ ?

କିଏ ସେ, ନାଥୁଆ ?

ପଶୁଶବଦର ଦର୍ପସିଂହ ଆଖି ଖୋଲିଲେ । ଉତ୍ତରରେ ମାଳତୀର ଗୋଡ଼ରୁ ମୁଣ୍ଡଯାଏ ଥରି ଉଠିଲା । ସିଂହ ପାଖରେ ମିଇଁମିକା ମେଣ୍ଢାଟାଏ ତ ସେ । ଆଁ କରି ଖାଇବ କହିଲେ ପ୍ରାଣ ଉଡ଼ିଯିବ । କଥାଁ ଲଗି ଚମ୍ପା ଯାଇ କେଉଁ ଚୂଲିରେ ପଶିଲାକୁ ସିନା ମାଳତୀ କପାଳେ ଥିଲା ବାଘଗୁହାରେ ଗୋଡ଼ ଦେବାକୁ । ଆଉ ତ ପଳେଇ ହେବ ନାହିଁ । ଡରି ଡରି ଉତ୍ତର ଦେଲା, ମୁଁ ତ ମାଳତୀ ।

ଆବେ ବଦ୍‌ଜାତ୍ ନାଥୁଆ କାହିଁ ?

ମୁଁ ଜାଣି ନାହିଁ ସାଆନ୍ତେ— ।

ଶିଥିଳଘର ଦେଖିଛୁ ?

ଦେଖି ନାହିଁ ସାଆନ୍ତେ ।

ଯା, ଯା, ନାଥୁଆକୁ ସେଠୁ ଡାକ ଆଣିବୁ ।

ମାଳତୀ ତରତର ହୋଇ ଘରୁ ପଦାକୁ ବାହାରିଗଲା କହୁକହୁକା, ତା' ଘର ମୁଁ ଦେଖି ନାହିଁ ସାଆନ୍ତେ— ।

Digitized by PPRACHIN, SOA

ମାଳତୀ ଶୁଣିଗଲା । ନାଥୁଆ ଫେରିଲା ନାହିଁ । କାହିଁକି ସେ କାହା ଉପରେ ଆଉ ନିର୍ଭର କରିବେ । ଅନ୍ଧାର ତ ହେଲାଣି । ପଦାକୁ ବାହାରିଲେ ମୁହଁକୁ ମୁହଁ ଦିଶୁନାହିଁ । କିଏ ଚିହ୍ନିବ ? ଗାଁ ମୁଣ୍ଡରେ ତାର କୁଡ଼ିଆ । ଲୁଚେଇ ଲୁଚେଇ ସେ ମଦ ଆଣେ । ବିକେ । ବର୍ଷା ଛଟକ ତଳେ ଗଲେ କେହି ଦେଖିବେ ନାହିଁ । ହାତରେ କପିଳାପିଥା ଠେଙ୍ଗାଟା ଥିଲେ କେହି ପାଖରେ ପଶିପାରିବେ ନାହିଁ । ପର ଉପରେ କେତେଦିନ ଆଉ ନିର୍ଭର କରିବେ ?

ସେଠି ମଦ କିଏ ଚିହ୍ନି ପକାଏ ?

କିଏ ଗୋଟାଏ ଗୁଡ ଭଳି ଥାଇ ବସିଛି—କେହି ନ ଥିବେ । ଥିଲେ ବି ଚିହ୍ନି ପାରିବେ ନାହିଁ । ମୁଣ୍ଡରେ ଚଦରଟା ଘୋଡ଼ାଇ ଦିଅ । ଘର ଶୋଷ । ପ୍ରାଣ ରହିବ ନାହିଁ । ଆହା, କେତେ କଷ୍ଟ ପାଉଛନ୍ତି ମମତା । ତାଙ୍କର ତ ଜୋରଡ଼ା ଆଗ । କୋହିଲେ ଠିକ୍ ଜଣ ପ୍ରାଣ ଛାଡ଼ିଯିବ । ସ୍ୱାମୀ ମେ । କଟେଇ ବଞ୍ଚି ଆଖଣ୍ଡ ବଳମାଟିର ରାଜକେମା ରଣଜିତର ରାଜରାଣୀ ଛଟପଟ ହୋଇ ପ୍ରାଣ ହାରିବେ ? କଦା ହେବ ତ ତାଙ୍କର । କେହି ଚିହ୍ନିବେ ନାହିଁ ଯେ --

ଖାଲି ଏଇ କଣହାକକ ଅଡ଼ୁଆ । ନାଥୁଆ କମକହାରମ୍ କଲା କୁଆଡ଼େ ? ଭଣ୍ଡାର ପିଲା । ମାଲ୍ ପାଇଛ ନ ଆଣ୍ଡ କହିଁଚଟା ତ ଆଣିବ ? ଏ କଣର ଆଉ ପ୍ରୟୋଜନ ନାହିଁ । କାଟିଦେଲେ ଭଲ ।

ଧଇଁସଇଁ ହୋଇ ନାଥୁଆ ପଶିଲା ଘରେ । ଦେହ ବରଡ଼ାପତ୍ର ପରି ଥରୁଛି । ଠିଆହେବାର ଶକ୍ତି ନାହିଁ । ବୋତଲ ଦୁଇଟା ତଳେ ଥୋଇ ସେ ବସି ପଡ଼ିଲା ।

ସ୍ୱର୍ଗରୁ ସୁଧା ଝାଇଲା ପରି ଆନନ୍ଦରେ ରଣସିଂହଙ୍କର ମନ ପୁଲକ ହେଲା । ସାବାସରେ ମୋ'ର ନାଥ ! ପ୍ରଭୁଭକ୍ତ, ସଚ୍ଚୋଟ ଲୋକ । ଦୁହିଁଙ୍କର ଆଜ ପ୍ରାଣ ବଞ୍ଚେଇ ଦେଲୁ । ସ୍ୱେଚ୍ଛା ଅଫିମ ଭରି ଶହେ ଟଙ୍କା ହେଲେ ବି ଚିନ୍ତା ନାହିଁ । ନାଥ ତା'ର ପରିଶ୍ରମର ମୂଲ୍ୟ ପାଇବ । ମରୁ ସେ ବାବନା ପଧାନ କମକହାରମ୍ ।

ରଣସିଂହେ ଚଉକି ଉପରୁ ତଳକୁ ଡେଇଁ ଦ'ଖେପାରେ ନାଥୁଆ ପାଖରେ ହେଲେ । ଗୋଟାଏ ବୋତଲ ଟେକି ଏକାଥରେ ମୁହଁରେ ଲଗାଇ ଢକ୍ ଢକ୍ କରି ଦୁଇଢୋକ ପିଇଦେଇ ମୁହଁରୁ ବୋତଲ କାଢ଼ି ତଳେ ରଖି ଅବାକ୍ ହୋଇ ନାଥୁଆର ମୁହଁକୁ ଚାହିଁ ରହିଲେ । ନାଥୁଆ ଯେ ତାଙ୍କୁ ଠକିପାରେ, ଏ କଥା ସେ ସ୍ୱପ୍ନରେ ହେଲେ କେବେ ଚିନ୍ତା କରି ପାରିନାହାନ୍ତି ।

ନାଥୁଆ ହାତ ଯୋଡ଼ି ସ୍ୱର ଥରାଇ କହିଲା, ପାଣି ।

Digitized by PPRACHIN, SOA

ରଣସିଂହଙ୍କର ବ୍ରହ୍ମ ଜଳିଗଲା । ପେଟର ନିଆଁ ମଥାକୁ ଉଠିଲା । ତାଙ୍କ ପୂର୍ବ ଅଭ୍ୟାସ ଫେରିଲା । ବିବେକ ବିସ୍ମୃତିଶକ୍ତି ଦ୍ୱାରାହୃତ ଜ୍ଞାନ ଲୋପ ହେଲା । ଅଧାବୋତଲଟା ହାତରେ ଧରି ଉପରକୁ ଟେକି କହି ଉଠିଲେ, ହଇରେ ଶଳା, ପାଣି !

ତାଙ୍କର ଉଗ୍ରଙ୍କର ମୂର୍ତ୍ତି ଦେଖି ଭୟରେ ଥର ନାଥିଆ ମଥା ଉପରକୁ ହାତ ଟେକି ଚିତ୍କାର କଲା, ଶିଅଳ ମଡ଼ ଭଜା ଗୁଡ଼ାଦେଇଛୁ ସାଆନ୍ତେ । ସାନବାବୁ ଆମ ଅନାବାଦୀ ଭୂମିରୁ ଦୁ'ମାଣ ତାଙ୍କୁ ଦାନକରି ଖାଇବାକୁ ଦେଇଛନ୍ତି । ବଳ ଲଙ୍ଗଳରେ ଚଷାଚଷି ସମ୍ବଳ ହେଇ ଯେଉଁ ଜମି କରିଛନ୍ତି ନୂଆ-ନାଳର ପାଣି ସେଥିରେ ମଡ଼ାଉଛନ୍ତି ସମସ୍ତେ । ଶିଅଳ ପୁଅ ସେବକ ସିଙ୍ଗ ମେମ୍ବର ହେଲାଣି । ବାବନା ପଧାନ ସେଇଠି ଅଛି । କୋଦାଳରେ ପାଣି ମଡ଼ାଉଛି ଜମିଟିଆକୁ ଲୋକଙ୍କରେ । ସେଇ ଉମେଦ୍‌ରାମ୍ ବେମାନ୍ ମୋ ଗାମୁଛା ତଳୁ ବୋତଲ ଦି'ଟା ଟାଣିନେଲା ।

ରଣସିଂହଙ୍କ ହାତରେ ବୋତଲଟା ଯେମିତି ଟେକା ହୋଇ ରହିଛି । ଗର୍ଜି ଉଠିଲେ ସେ, ପାଣି କାହିଁକି ଆଣିଲୁ ବେ ?

ଉଙ୍କା ସାଆନ୍ତେ, ମୁଁ ଆଣିନାହିଁ । ଧର୍ମନନା ନୂଆ ନାଳର ପାଣିରେ ବୋତଲ ଭୁଡ଼େଇ ଦେଲେ । କହିଲେ, ନେଇ ଯା ଏଇ ଗଙ୍ଗାପାଣି । ରଣଗଡ଼ର ରାଜାରାଣୀଙ୍କୁ ଦେବୁ । କହିବୁ ଯେ କୃଷ୍ଣପୁରେଶ୍ୱର ଧର୍ମନନା ଏଇ ଗଙ୍ଗାଜଳ ପଠେଇ ଦେଇଛନ୍ତି । ଏହାକୁ ପିଇଲେ ଅପବିତ୍ର କାୟା ଅପବିତ୍ର ମନ ପବିତ୍ର ହେବ । ସବୁ ପାପ ଧୋଇ ହୋଇଯିବ ।

ରଣସିଂହଙ୍କ ମୁଣ୍ଡକୁ ପିତ୍ତ ଉଠିଲା । ସେ ଗର୍ଜି ଉଠିଲେ, ଆଉ ତୁ ବଦମାସ୍, ସେଇ ପାଣି ନେଇ ଧାଇଁ ଆସିଛୁ ନା ? କହୁ କହୁ ବୋତଲ ଟେକି ନାଥିଆର ମୁଣ୍ଡରେ ପିଟିଲେ । ବୁଢ଼ା ନାଥିଆର ମୁଣ୍ଡ ଫାଟି ରକ୍ତର ସୁଅ ଛୁଟିଲା । ଜୀବନମୂର୍ଚ୍ଛା ଦେଇ ପଡ଼ିଲା, ବାପା ଲୋ — । ହତଜ୍ଞାନ ହୋଇ ସେ ତଳେ ଲୋଟିଲା ।

ରକ୍ତର ସୁଅ ଛୁଟିଛି, ଛୁଟିଛି — ।

ରଣସିଂହଙ୍କର ପିତ୍ତ ଖସିଲା । ରକ୍ତଛିଟାରେ ମୁହଁ ଧୋଇହେଲା । ନିର୍ବାକ ହୋଇ, ଗୋଟାଏ ନିର୍ଜୀବ ସ୍ତମ୍ଭ ପରି ଠିଆ ହୋଇ ରହିଲେ । ମୁଣ୍ଡ ଭ୍ରମିବାକୁ ଲାଗିଲା । ଆଖି ଆଗରେ ଅଗଣନ ଜୁଳୁଜୁଳିଆ ପୋକ ମିଟି ମିଟି ହେବାକୁ ଲାଗିଲେ । ତରଳ ମନ, ଅନୁତପ୍ତ ବିକଳ ମନ ଡାକ ଛାଡ଼ିଲା । ନାଥିଆ, ନାଥିଆ, ନାଥ, ନାଥ—ତୁଣ୍ଡ ଫିଟିଲା ନାହିଁ । ନିଜର ଡାକ ନିଜର କାନକୁ ଶୁଭୁ ନାହିଁ । ସତେ କ'ଣ ନାଥିଆ ମରିଛି, ସେ ମାରିଛନ୍ତି, ଖୁନୀ ହୋଇଛନ୍ତି, ଠିକ୍ ନଟବର ଶତ୍ରୁଘ୍ନଙ୍କ ପରି ?

ରଣସିଂହଙ୍କର ମହାନିଦ୍ରା ଭାଙ୍ଗିଲା ମମତାଙ୍କର ଭୟବିହ୍ୱଳ ଚିତ୍କାରରେ, ଏ କ'ଣ କଲ ? ଏ କ'ଣ କଲ ?

Digitized by PPRACHIN, SOA

ରଣସିଂହଙ୍କର ଥରନ୍ତ ହାତରୁ ରକ୍ତାକ୍ତ ବୋତଲ ରକ୍ତର ସୁଅରେ ପଡ଼ିଲା । ସେ ପାଟି କରି ଉଠିଲେ । ପଳାଅ ଏଠୁ ପଳାଅ କହୁଛି । ନୋହିଲେ—,

ସେ ନର୍ଦ୍ଦିପଡ଼ ବୋତଲଟିକୁ ହାତରେ ଧରିଲେ । ବୋତଲ ଆପେ ଆପେ ଖସିପଡ଼ିଲା । ମମତା ନାଥିଆକୁ କୋଳକୁ ଆହ୍ଵାନାଇଲେଣି । ସୁଦକ୍ଷା ଧାଇଁ ଆସିଲଣି । ଚମ୍ପା, ମାଳତୀ, ଯମୁନା, ନୂଆ ମା— ।

ସମସ୍ତେ କାନ୍ଦଉଠିଲେ ପାଟିକରି ।

ସମସ୍ତଙ୍କ ଠେଲି ଅସ୍ତବ୍ୟସ୍ତ ହୋଇ ଆହୁତ ଆସିଲା ପାଖକୁ ।

ଆହୁତ ବଦାୟ ନେଇଛି । ତା'ର କର୍ମକ୍ଷେତ୍ରର ପରିଧି ଗୋଟିଏ କୃଷ୍ଣମୁକ୍ତ ଗୋଟିଏ ଗ୍ରାମ ନୁହେଁ, ଏ କଥା ସମସ୍ତେ ଜାଣନ୍ତି । ତଥାପି, ସେ ଗଲେ ଦୁଃଖ ଲାଗେ, ମନ ଝୁରିହୁଏ । ସମସ୍ତେ ତା'ର ଆପଣାର । କେଉଁ ଗୋଟିଏ କୃଷ୍ଣମୁକ୍ତ ଗ୍ରାମରେ ସେ ଅଟକି ରହିବ କିପରି ? ତା'ଉପରେ ପୂର୍ଣ୍ଣ କର୍ମର ଦାୟିତ୍ୱ ନ୍ୟସ୍ତ କରାହୋଇଛି ।

ହେଲେ ଭଲପାଏ ସେ ସନ୍ଧ୍ୟାକୁ ! ଯେତେ କାମ ଯେଉଁଠି ଥିଲେ ମଧ୍ୟ ପ୍ରତିଦିନ ସେ ଆସେ । କେତେ କଥା କହେ । କେତେ କାମ ଶିଖାଏ । ନୂଆ ନୂଆ ବହି ମଗାଇ ପଢ଼ିବାକୁ ଦିଏ । ସେ ଏତେଗୁଡ଼ାଏ ପାଠ ପଢ଼ିଛି ବୋଲି କାହାକୁ କେବେ ଜଣେଇଦିଏ ନାହିଁ, ଦେଖେଇହୁଏ ନାହିଁ । କେତେଦିନ ଗୁଣ ଓ ଜ୍ଞାନ ଲୁଚି ରହିବ ? ଆପେ ଆପେ ଦିନେ ଫୁଟି ବାହାରିବ, ଜଣା ପଡ଼ିବ । ସନ୍ଧ୍ୟା ଜାଣି ସାରିଲଣି ଆହୁତ ଏମ୍. ଏ. ପଢ଼ିଛି – ସୁବ୍ରତ ଭାଇ ପାଠ ସଙ୍ଗେ ସମାନ ।

ଦିନେ ସେ ପଚାରିଥିଲା । ମୋ ଭାଇଙ୍କି ତମେ ଚହ୍ନ କି ଆହୁତ ଅପା ?

ନୂଆନାମ ବୋଲି ତାକୁ ନା ।

ଆହୁତ ନାମଟି ସୁନ୍ଦର, ଶୁଣିରେ ଧରିବାକୁ ସେଇ ନାଆଟି, ମତେ ଭଲ ଲାଗେ ।

କାହିଁକି ?

ସନ୍ଧ୍ୟାର ମୁହଁରେ ଗୋଲାପର ଆଭା । ସୂତା ଓ କ୍ରସ୍ କଣ୍ଟା ଟେବୁଲ ଉପରେ ରଖି ସେ ଆହୁତର ହସିଲା ମୁହଁକୁ ଜଣେଇ ଚାହିଁଲା । ଆହୁତ ବୁଝିଲା, ସନ୍ଧ୍ୟାର ସରଳ ନିଷ୍କପଟ ମନରେ କ'ଣ ଗୋଟିଏ ଗ୍ରେଟ ସନ୍ଦେହ ଜନ୍ମିଛି ।

ତା'ର ମୁହଁଟିକୁ ଟେକିଧରି ଆହୁତ କହିଲା, ତମ ଭାଇଙ୍କି ମୁଁ ଚହ୍ନେ ନାହିଁ, କିନ୍ତୁ ଏଇ ନଳିଗ୍ରାମଟିକୁ ମୁଁ ଦେଖିଛି, ଚହ୍ନିଛି । ଆମ କଲେଜରେ ସେ ପଢ଼ୁଥିଲେ ।



Digitized by PPRACHIN, SOA

ସନ୍ଧ୍ୟାର ମୁହଁ ଉଜ୍ଜ୍ୱଳ ଦିଶିଲା । କ'ଣ କହିବାକୁ ଯାଉଁଥିଲା ଅଟକି ଗଲା । ତଳକୁ ମୁହଁ କଲା । ଆନୁଗତର ବାଁ ହାତ ମଝି ଆଙ୍ଗୁଠିରେ ଦୃଷ୍ଟି ପଡ଼ିଲା । ସୁନ୍ଦର ମୀନାକରା ସୁନା ମୁଦିଟି । ହାତ ଉଠାଇ ମୁଦିଟିକୁ ସେ ଦେଖିଲା, ଗଛ ଡାଳରେ ବସି ପାରିଟିଏ ଘୁମଉଛି । ପଛକୁ ଗ୍ରୀବା ଆଉ ପାରିଟି ଉଡ଼ି ଯାଉଛି । ଛବିଟି ଅତି ଶ୍ରେଷ୍ଠ ହେଲେ ବି କେତେ ପରିଷ୍କାର ହୋଇଛି । ଟିକି ଟିକି ଅକ୍ଷରରେ ଲେଖାହୋଇଛି— ଆନୁଗତ ।

ଭାରି ସୁନ୍ଦର ହୋଇଛି ଆନୁଗତ ଅପା ?

ସତେ, ନେବୁ କି ?

ଆନୁଗତ ଆଙ୍ଗୁଠିରୁ ମୁଦି କାଢ଼ିଲା ।

ନାଇଁ, ନାଇଁ, ତମ ମନ ଦୁଃଖ ହେବ ।

ହଁ ହେବ, ଯଦି ତେବେ ନ ନିଅ । ଆନୁଗତ ସନ୍ଧ୍ୟାର ହାତ ଟାଣିଆଣି ମଝି ଆଙ୍ଗୁଠିରେ ପିନ୍ଧାଇଦେଲା । କହିଲା, ବଡ଼ାଙ୍କିଅର ଅନାବନା ଶାଗରେ ଶରଧା ହୁଏ ।

ତମକୁ ମୁଁ କ'ଣ ଦେବି ?

ମୂଲ ? ଏଇ ଶ୍ରେଷ୍ଠ ପଦାର୍ଥଟି ଉପରେ ତମର ସ୍ନେହଟି ତ ତାର ମୂଲ ।

ନାଇଁ --

ତେବେ, ମୁଁ ଘରଚନ୍ତ୍ର କହିବି । ରଜାଘର ଝିଅ ପାଖରୁ ମୋ ମୁଦିର ଦାମ୍ ମୁଁ ନେବି । ସହଜରେ କହି ପାରିବ କି ? ଏମିତ ଚିଜ ଦିନେ ମାଗିବି, ଏମିତ ଦାମିକା, ତମେ ଚମକ ପଡ଼ିବ । ଦେବଟି ?

ଯଦି ଥିବ ନିଶ୍ଚେ ଦେବି ।

ହଉ, ମନେ ରଖି ଥା ।

ଆନୁଗତ ଗୁଲିଗଲା । ପୁଣି କେବେ ଏ ଗାଁକୁ ଆସିବ, ଦାମିକା ଚିଜ ମାଗିବ । କଅଣ ସେ ମାଗିବ ? ସନ୍ଧ୍ୟାର ଜାତଜାତକା ମୂଲ୍ୟବାନ୍ ପଥରବସା ମୁଦି, ହାର, କାନଫୁଲ, ମୁଣ୍ଡର ଗହଣା ଅଛି । ଯାହା ଆନୁଗତ ମାଗିବ ସେ ଦେଇ ପାରିବ ।

ଆନୁଗତ କୁହୁକ ଜାଣେ । ମମତାକୁ ସେ ଆପଣାର କରି ସାରିଛି । ଯେଉଁଦିନ ନାଥିଆର ମୁଣ୍ଡ ଫାଟିଲା, ସେହି ଦିନ ଏକା ଆନୁଗତର ପ୍ରକୃତ ଗୁଣ ସେମାନେ ଜାଣିଲେ । ସମସ୍ତଙ୍କୁ ଠେଲି କରି ନିଜେ ସେ ନାଥିଆକୁ ରଣସିଂହଙ୍କର ପଲଙ୍କ ଉପରକୁ ଟେକି ନେଲା । ମୁଣ୍ଡର କ୍ଷତ ଧୋଇ ଦେଇ ଔଷଧ ଲଗାଇ ପଟି ବାନ୍ଧିଲା । ଆଘାତ ଗୁରୁତର ନୁହେଁ । ଉପର ହାଡ଼ ସାମାନ୍ୟ ଫାଟିଯାଇଛି । ନାଥିଆକୁ ଔଷଧ ଦେଇ ଚେତା କରାଇଲା । ଆଉ ଦିନେ ବଛଣା ପାରି ସେଠାକୁ ନେଲା ।

Digitized by PPRACHIN, SOA

ରକ୍ତର ସ୍ରୋତ ଦେଖି ରଣସିଂହେ ବାଉଳା ପରି ହେଉଥାନ୍ତି । ଆହୁତ ତାଙ୍କୁ ସାନ୍ତ୍ୱନା ଦେଲା, ବ୍ୟସ୍ତ ହୁଅନ୍ତୁ ନାହିଁ, ତା'ର କିଛି ହୋଇ ନାହିଁ । ସାମାନ୍ୟ ଟିକେ ଅଘାତ । ଭଲ ହୋଇଯିବ ।

ଭଲ ହୋଇଯିବ ?

ତାର ଚେତା ଫେରିଲାଣି । ସେ ଆଖି ଖୋଲିଲାଣି । କଥା କହିଲାଣି । ଡାକ୍ତରବାବୁ ତା'ପାଖରେ ଜଗି ବସିଛନ୍ତି, ଚିନ୍ତା ନାହିଁ ।

ନାଥ ମୋ'ର ମରିଯିବ ?

ମରିବ ବାହିଁକି ? କିଛି ହୋଇ ନାହିଁ ତ ! ଆପଣଙ୍କର ସ୍ୱାସ୍ଥ୍ୟ ଅତ୍ୟନ୍ତ ଦୁର୍ବଳ । ଆସନ୍ତୁ — ।

ନିଜ ହାତରେ ପଲଙ୍କ ଉପରେ ବିଛଣା ପାରିଛି । ରଣସିଂହଙ୍କର ଟଳିଲା ଦେହକୁ ଧରି ପଲଙ୍କ ଉପରେ ଶୁଆଇଛି । ଔଷଧ ଦେଇଛି । ଆଗ୍ନେ ଦେବୀ ଓ ସୁପନ୍ଦ୍ୟାକୁ ଜଗାଇ ଦେଇଛି ପାଖରେ । କହୁଛି, ଆପଣ ନିଶ୍ଚିନ୍ତ ହୋଇ ଶୁଅନ୍ତୁ । କିଛି ଚିନ୍ତା ନାହିଁ ।

ବାଧ୍ୟ ଶିଶୁଟି ପରି ରଣସିଂହେ କଥା ମାନିଛନ୍ତି ।

ଘଡ଼ି ଘଡ଼ି ମୂର୍ଚ୍ଛା ହେଉଛନ୍ତି ମମତା । ମୂର୍ଚ୍ଛା ଭାଙ୍ଗିଲେ ପେଟର ବେଦନା କଷ୍ଟ ଦେଉଛି । ତାଙ୍କର ସେବା କରୁଛି ନିଜେ ଆହୁତ । ଝିଡ଼ୀ, ନୂଆ ମା ପାଖରେ ଜଗି ବସିଛନ୍ତି । ସାରାରାତି ସମସ୍ତେ ଅନିଦ୍ରା ।

ଜାଗରାତ ଯାଉଛି । ଗ୍ରାମବାସୀମାନେ କୌଣସି ବାଧା ନ ମାନି ଦେଖିବାକୁ ଧାଇଁ ଆସିଛନ୍ତି । ଯେତେ ଗୋପନ ରଖିବାକୁ ବସିଲେ ମଧ୍ୟ କଥା କେବେ ଲୁଚ ଛପି ରହୁଯାରେ ନାହିଁ । ଛଳ ପ୍ରମାଣେ ଘଟଣା ତାଳର ଅକାର ଧରି ଦୁନିଆର ଲୋକଙ୍କ ମଝିରେ ବୁଲ୍ କରି ପଡ଼େ ।

ନାଥିଆ ଭଣ୍ଡାରର ତାଲୁ ଚୂନାକରି, ରଣସିଂହ ମାରି ପକାଇଛନ୍ତି । ରଣସିଂହ ଧରା ହେବେ, ଜେଲ୍‌ରେ ରହିବେ, ଫାଶୀ ପାଇବେ ।

ପଞ୍ଚର ସଭ୍ୟମାନେ ଜଣ ଜଣ ହୋଇ ଆସିଛନ୍ତି । ପୋଲିସ ଅଫିସର ଆସିଛନ୍ତି । ଦେଖିଛନ୍ତି, ନାଥିଆ ବଞ୍ଚିଛି । ନାଥିଆର ମୁଣ୍ଡରେ ପଟି ବନ୍ଧାହୋଇଛି ।

ନାଥିଆ କଥା କହୁଛି, ବୁଢ଼ାଲୋକ, ଗୋଡ଼ ଖସିଗଲା, ମୁଣ୍ଡ ବାଜିଲା ଚଉକାଠରେ । ନହୁଲୁହାଣ ହୋଇପଡ଼ିଲା । ଖାଉଁଦେ ଧରି ନ ଥିଲେ, ଏଇ ମା ବଞ୍ଚାଇ ନ ଥିଲେ, ମରିଥାଆନ୍ତି—

ଗ୍ରାମଲୋକେ ଫେରିଲେ । ପଞ୍ଚର ସଭ୍ୟମାନେ, ପୋଲିସ ଅଫିସରମାନେ ଫେରିଗଲେ । ଆହୁତର କଥା ଓ ନିଜେ ନାଥିଆର କଥା ସେମାନେ ଅବିଶ୍ୱାସ କଲେ ନାହିଁ । ଯେଉଁ ଶତ୍ରୁମାନେ ସତ କଥା କ'ଣ ଅନୁମାନ କରୁଥିଲେ, ସେମାନଙ୍କର ମନର କୁପାଣ୍ଡ ମନରେ ମଲା ।

Digitized by PPRACHIN, SOA

ସମସ୍ତେ ଦେଖିଛନ୍ତି, ଗୋଟିଏ ସ୍ଥିର ସ୍ୱଚକ୍ଷଣ ଚଳନ, ବୁଦ୍ଧି ଓ ସେବା । ରାତି ରାତି ଅନିଦ୍ରା ହୋଇ ରୋଗୀ ଜଣଙ୍କର ସେବା କରନ୍ତି । ନାଥିଆର ଜ୍ଞାନ ଫେରୁଛି । ସେ ଭଲ ହୋଇ ଆସୁଛି । ସ୍କୁଲକୁ ଯାଉଛି । ଡାକ୍ତରଖାନାକୁ ଯାଇ ଔଷଧ ଲଗାଉଛି । ଏତେ କଷ୍ଟ ପାଇ ମଧ୍ୟ ରଣସିଂହଙ୍କୁ ଗୁଡ଼ି ଗୁଲି ଯାଇ ନାହିଁ । ରଣସିଂହେ ପୀଡ଼ିତ । ଦୁଃଖ ଓ ଅନୁଶୋଚନାରେ ସେ ଭାଙ୍ଗି ପଡ଼ୁଛନ୍ତି । ଗୁଡ଼ି ଥରୁଛି । ବିଛଣାରୁ ଓହ୍ଲାଇବା କଷ୍ଟକର ହେଉଛି ।

ଆଖି ଖୋଲିଲେ ଦେଖୁଛନ୍ତି, ପାଖରେ ବସିଛି ତାଙ୍କର ଛାତ୍ରୀପୁଅ ରଣରଙ୍ଗା, ପାଦ ଆଉଁଷୁଛି । ଝରଝର ଝରୁଛି ଲୁହ । ତୁଣ୍ଡରୁ କଥା ବାହାରୁ ନାହିଁ । ବୁଢ଼ା ନାଥିଆ ତାଙ୍କୁ କ୍ଷମାକରୁଛି ସତ, କିନ୍ତୁ ସେଇ କ୍ଷମାର ଆଘାତ ସେ ସହିପାରୁ ନାହାନ୍ତି । ସେ ଆଖି ବୁଜୁଛନ୍ତି । କେତେବେଳେ ଦୃଷ୍ଟିରେ ପଡ଼ୁଛି ଆହ୍ଲାଦ; ପାଖରେ ଠିଆ ହୋଇଛି ସନ୍ଧ୍ୟା । ଆହ୍ଲାଦ ମୁଣ୍ଡ ସାଉଁଳୁଛି, ଔଷଧ ଦେଉଛି । କହୁଛି ହସହସ ହୋଇ, କଥନ୍ତୁ, ଖାଇ ଦିଅନ୍ତୁ । ଦୁର୍ବଳତା ଭଲ ହୋଇଯିବ । ମାଙ୍କ ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ତାଙ୍କର ପେଟର ବେଦନା ଊଣା ହେଲାଣି ।

ଆଉ ପାଖରେ ସଚ୍ଚିଦାନନ୍ଦ ।

ତୁମେ, ପାଖରେ ଥାଅ, ନ ଅବୋଧ, ମୁଁ ଏଇ ଚଗଲାକୁ ନେଇଯାଏଁ ।

ସଚ୍ଚିଦାନନ୍ଦକୁ କାଖ କରି ଆହ୍ଲାଦ ନେଇ ଆସେ । ସେଇ ଧଡ଼ିଆ ପେଡ଼ଙ୍ଗ ପିଲାଟିକୁ ସେ ଭଲ କରିଛି । ଔଷଧ ଦେଇଛି ହଁ, ହେଲେ ଔଷଧ ଅପେକ୍ଷା ଯତ୍ନ କିପରି ନେବାକୁ ହେବ ସେଇ କଥା ସେ ମା, ଆଇମାଙ୍କୁ ବତାଇଛି । ଏକା ସଚ୍ଚିଦାନନ୍ଦ ନୁହେଁ, ଏମିତି କେତେ ପିଲା ତ ଭଲ ହୋଇଛନ୍ତି ।

ମା'ମାନେ ଶିଖିଲେଣି, ପିଲାଙ୍କୁଅଙ୍କୁ ସଫାସୁତରା ରଖିବ । ଠିକ୍ ବେଳରେ ଖାଇବାକୁ ଦେବ । ଯାହା ଦେବ, ତାକୁ ମଧ୍ୟ ପରିଷ୍କାର କରି କରିବ । ବେଶୀଗୁଡ଼ାଏ ବେଳ ଅବେଳରେ ଗିଳେଇବ ନାହିଁ । କ ଜ ଚଜ, କିପରି ତିଆରି କରି ସେ କେତେ-ବେଳେ ଖୋଇବ ସେ କଥା ବି ତୁମ୍ଭ ଶିଖେଇଛି । ପେଜ ଟିକେ କି ଶାଗପାଣି, ବାଲିଆ ଚାଉଳର ରସ, ଛେଳିଦୁଧ—ଏମିତି କେତେ କଥା ସେ ଜାଣେ ମ, ସତେ କି ସେ ସାତଟା ପିଲାର ମା — !

ପୁରୋହିତଙ୍କର ସ୍ତ୍ରୀ ଏଇ କଥା ଡାକ ବଜେଇ କହନ୍ତି । ତୁମ୍ଭକୁ ପ୍ରଶଂସା କରନ୍ତି । ଅନ୍ୟମାନେ ବି । ସବୁ ପିଲାଙ୍କର ଅପା ସେ ତୁମ୍ଭନାନୀ — । ହାତ ବଢ଼ାଇଲେ ଗୁଡ଼ ଉପରକୁ ପିଲାଏ ଫକ୍ କରି ଡେଇଁ ପଡ଼ନ୍ତି । ଯେଉଁମାନେ ଟିକିଏ ବଡ଼ ହୋଇ ଗଲେଣି ସେମାନେ ହାତଧରି କାନ୍ଧଧରି ଗୋଡ଼ାନ୍ତି । କିଏ କାହାର ପିଲା ସେ କଥା ତୁମ୍ଭନାନୀ ବାରନ୍ତି ନାହିଁ । କହନ୍ତି, ସବୁ ପିଲା ଭଲ, ସବୁ ପିଲା ସୁନ୍ଦର, ସିଆଣା, ଗେହ୍ଲା । ତାଙ୍କୁ ଗଡ଼ି କାଶିଲେ ହେଲା ।

ସଚ୍ଚିଦାନନ୍ଦଟା ତ ବେଶି ଆଦରିଛି ।

Digitized by PPRACHIN, SOA

ମମତାଙ୍କ ପାଖେ ଆଦ୍ଭୁତ । ଗେଲ୍ଲେଇ ହୋଇ କହୁଛି, ଦେଖ ସନ୍ଧ୍ୟା, ମା'ଙ୍କର ମୁହଁକୁ ରକ୍ତ ଫେର ଆସିଲାଣି । ଏଇ ଔଷଧ ଖାଇବାକୁ ଦେବ । ପେଟର ଯନ୍ତ୍ରଣା କମିଲାଣି । ଏକାଥରେ ଭଲ ହୋଇଯିବ । ତମେ ପାଖରେ ଥିବ ସବୁବେଳେ । ହଁ, ଶୁଣ ସନ୍ଧ୍ୟା, ମା ଖୁଡ଼ୀଙ୍କର ସେବା ନଜେ କରିବା ଭଲ । ଗୃହର ଗୃହଣୀଙ୍କ ସେବା ଭିତରେ ଝିଅବୋହୂଙ୍କ ପ୍ରାଣର ଉଦ୍‌ବେଗ କ ମନର ବ୍ୟାକୁଳତା ମିଳିବ ନାହିଁ ।

ତୁମେ କୁଆଡ଼େ ଚାଲିଯିବ କ ଟୁମାଅପା ?

ମତେ ଟୁମା ବୋଲି ଡାକ ମା —

ହେଲା, ଟୁମା —

ପୁଣି ମୁଁ ଫେର ଆସିବ । ମୋ'ର କର୍ତ୍ତବ୍ୟ ମତେ ତଦ୍ଧଣ୍ଡ କରୁଛି ଯେ ! କେତେ ଘରେ ପଶିବ, କେତେ ମା ଖୁଡ଼ୀ ଭାଉଜ ଅପାଙ୍କୁ ଶିଖେଇବ ମୁଁ ଯାହା ଜାଣେ, ପୁଣି ଶିଖିବ ମୁଁ ଯାହା ନ ଜାଣେ । ମୁଁ ଅଳପ ଜାଣେ ମା, ବହୁତ ଶିଖିବାକୁ ମୋର ମନ ।

ହାତଟି ଧରି ଆଦ୍ଭୁତର ମୁହଁକୁ ଚାହିଁ ରହନ୍ତି ମମତା । ସନ୍ଧ୍ୟା ଦେଖେ, ଆଦ୍ଭୁତର ମୁହଁରେ ଅଜଣା ଲାଜର ରଙ୍ଗିମା ଘୋଟିଯାଏ । କହେ, ଆଦ୍ଭୁତ ଅପା, ଶୁଣ ମା, ମଦ ଖାଇଲେ କ ଅଫିମ ଗଞ୍ଜେଇ ଖାଇଲେ ପେଟର ଅନ୍ତ ଜଳିଯାଏ । ମଣିଷର ବିବେକବୁଦ୍ଧି ଲୋପ ହୁଏ । ମଣିଷ ସଇତାନ ପରି ଦୁଷ୍ଟ-ବୁଦ୍ଧି ହୁଏ । ତମର ପେଟର ବେଦନା କେବଳ ସେଇଥିପାଇଁ । ଭଲ ହୋଇ ଆସୁଛି । ଆଜି ଡାକ୍ତରଙ୍କୁ ଡକେଇ ଯାଇଛି । ସେ ଔଷଧ ଦେବ । ଅଳପ ଦିନରେ ତମେ ଭଲ ହୋଇଯିବ ।

ଆଲୋ ଟୁକି, ମଦ ଖାଇଲେ କ'ଣ ହୁଏ ସେ କଥା ମୁଁ ପିଲାଟି ଦିନୁ ଦେଖିଛି । ପିଲାଟି ଦିନୁ ଜାଣେ । ଟେକ୍ରମାଟିର ରାଜା ମୋ'ର ବାପା — ମଦ ଖାଇ ମଲେ । ଭାଇମାନେ ମୋ'ର, ମଦ ପାଇଁ କୁବେର ସମ୍ପତ୍ତି ଜଳ ଜୂର କଲେ । ତମର ମଉସା— ରଣଗଡ଼ର ରାଜା, ଦେଖିଲୁ ତ ତାଙ୍କର ଅବସ୍ଥା । ଦିନେ ତା'ଙ୍କୁ ବାରଣ କରିବାକୁ ମୁଁ ଯାଇଥିଲି — ।

ମମତାଙ୍କର ଦୁଇ ଆଖିରୁ ଝରିଲା ଲୁହଧାର ।

ସବୁ ମୁଁ ଶୁଣିଛି । ତାଙ୍କର ସ୍ୱାସ୍ଥ୍ୟ ଅତି ଦୁର୍ବଳ ହୋଇ ପଡ଼ୁଛି । ସେ ବ ଶୀଘ୍ର ଆରୋଗ୍ୟ ହେବେ । ସୁବ୍ରତ ଭାଇ ପାଖରେ ସେ ପଣ କରିଛନ୍ତି ଆଉ ମଦ ଛୁଇଁବେ ନାହିଁ— ।

ତାଙ୍କର କାଳ ସେଇ ବାବନା ପଧାନ —

ବାବନା ଭାଇ ତା'ର ଦୁଷ୍କର୍ମ ପାଇଁ ଅନୁତାପ କରୁଛି । ସେଥିପାଇଁ ସୁବ୍ରତଭାଇ ଆଉ ଧର୍ମଭାଇ ତା'ର ଚୋଡ଼ ଧରି ପଡ଼ିଥିଲେ । ସେଇ ଦିନେଁ ତା'ର ମନ ବଦଳାଇଲେ । ବାବନା ଭାଇ ଗ୍ରାମସେବକ ସଙ୍ଘର ସଭ୍ୟ ହେଇଛି । ଯବନା

Digitized by PPRACHIN, SOA

ମହୁଆ ତା'ଙ୍କୁ ସୁବ୍ରତ ଖାଲି ହାତରେ ସମର୍ପି ଦେଇଛନ୍ତି । ତା' ସଙ୍ଗେ ସଙ୍ଗେ ତମର ସବୁ ଗହଣା— ।

ଜାଣେ ମା, ସୁବ୍ରତ ମତେ କହୁଥିଲା । ଗହଣାଗାଠି ଆଣି ମୋ ଗୋଡ଼ ତଳେ ଥୁଆଡ଼ିଦେଲା । ସେଗୁଡ଼ାକ ମୋ'ର ହେବ କଅଣ ? ତା'ଙ୍କୁ ଗୋଡ଼ରେ ଆଡ଼େଇ ଦେଇ ପୁଅକୁ ମୋ'ର କୁଣ୍ଢାଇ ଧରିଲି । କହିଲି, ଦାଦନା ଏ ଗୁଡ଼ା ନେଇ ଯଉଛି, ଏ ଘରେ ତା'ର ଗୋଡ଼ ନ ପଡ଼ୁ । ଇଣ୍ସ୍ପେକ୍ଟର ମଦ ନ ଛୁଅନ୍ତୁ—

ସେ ଆଉ ମଦ ଛୁଇଁବେ ନାହିଁ । ସୁବ୍ରତ ଝିଅର କଥାରେ ଓଁ ନାମରେ ଯେଉଁ ଜଣା ଅଛ ମା' ସେ ତ ଅମୃତଟୁଁ ବଳି । ତା'ଙ୍କୁ ମହୁଆ ଚାଖିଲେଣି । ସେ ଆଉ ମଦ ଛୁଇଁବେ ନାହିଁ ।

ତୋ ଉତ୍ତ୍ ସୁପୁତ୍ର ହେଉ ଟୁମା; ସୁବ୍ରତ ମୋ'ର ବାଇଆଟା । ମୂର୍ଖଟା ଘରେ ତ ପଶିଲା ନାହିଁ,— । ଆଉ, ମୋ'ର ସୁବ୍ରତ ସେ ବି ବାଇଆ ହେଲା । ଏତେ ପାଠ ପଢ଼ି, ସେ ବି ଘର ଛାଡ଼ିଲା । ଚିଠି ଖଣ୍ଡେ ବି ଦେଲା ନାହିଁ —

ପୁଣି ଆଖିରୁ ଲୋତକ ଝରିଲା ।

ଆହୁତ ପ୍ରଣାମ କରି ବିଦାୟ ନେଲା । କହିଲା, ଖଗ ମାଉ ଆସୁଛି, କେତେ ଆଡ଼େ ଯିବ ।

କେବେ ପୁଣି ଫେରିବୁ !

ଫେରିବ ଯେବେ ହେଲେ ।

ଆହୁତ ଚାଲି ଯାଇଛନ୍ତି । ମମତା ଭୁଲି ନାହାନ୍ତି । ସୁସନ୍ଧ୍ୟା ମନେ ପକାଉଛି ।

ସତ୍ୟପାଳର ପ୍ରକୃତ ହେଲା ଚମଡ଼ିଛଡ଼ା । ସେ କେବଳ ଦରିଦ୍ର ଶ୍ରମିକଙ୍କର ପରିଶ୍ରମର ଅଂଶ ସଞ୍ଚୟ କରି ଧନୀ ହେବାକୁ ଚାହିଁଲେ ନାହିଁ, ସେଇ ସଞ୍ଚିତ ଧନରୁ କିୟଦଂଶ ବ୍ୟୟକରି ଦରିଦ୍ରର ଆତ୍ମସମ୍ମାନ କ୍ରୟ କରିବାକୁ ଚାହିଁଲେ । ଧନ ପରାଜିତ ହେଲା । ମନର ଉଦ୍ବେଗ ଧକ୍କା ଖାଇ ଫେରିଲା । ଦେହର ଶକ୍ତି ଜିଗୋଲାରେ ପ୍ରୟୋଗ କରି ପ୍ରାଣର ପିପାସା ମେଣ୍ଟାଇବାକୁ ଉଦ୍ୟମ କଲେ ।

ଯେଉଁମାନଙ୍କର ମନର ଅପବିତ୍ର, ସମାଜଦ୍ରୋହୀ ଆଶା, ଦରିଦ୍ର ନିଃସହାୟ ରୂପ-ଯୌବନର ଲାବଣ୍ୟ ମୂର୍ତ୍ତିକୁ ବେଷ୍ଟନ କରିଥିଲା, ସେମାନେ ମଧ୍ୟ ଅନୁଭବ କରିଥିଲେ ଫୁଲଦାନୀ ସେମାନଙ୍କୁ ଚୂର୍ଣ୍ଣ କରିଛି । ରକ୍ତର ସ୍ରୋତ ପଦାକୁ ଛୁଟି ନାହିଁ, ମନ ଭିତରେ ଛୁଟିଛି । ବାଁ ହାତ ଅଚଳ ହୋଇ ନାହିଁ, ଅଚଳ ହୋଇଛି ସେମାନଙ୍କର ମନୁଷ୍ୟତ୍ୱ ।

Digitized by PPRACHIN, SOA

ଦୁନିଆ ଆଗରେ କଳଙ୍କ ବର୍ଷାପାତ ଓ ମହନ୍ତଙ୍କ ପ୍ରଚାରିତ କଥାବାର୍ତ୍ତା ସତ୍ୟପାଳ ଗଳ୍ପ ପଢ଼ିଥିଲେ, ଅଳସ୍ୱ ଧନଞ୍ଜୟଙ୍କ କଥା ସାକ୍ଷ୍ୟ ଦ୍ୱାରା ପ୍ରମାଣ କରାଇଥିଲେ ଯେ ତାଙ୍କର ମନଗଢ଼ା ଗଳ୍ପ ସତ୍ୟ—ଫୁଲଦାନୀ ଦୁଷ୍ଟରତା, ତା'ର ଆତ୍ମସମ୍ମାନ ନାହିଁ; ସୁବ୍ରତ ବଜ୍ରବାହୁର ପ୍ରରୋଚନାରେ ସେ ଖୁନ୍ କରିଛି ।

ଏତେ ଗଳ୍ପ, ଏତେ ପ୍ରମାଣ ଆବଶ୍ୟକ ହେଲା ନାହିଁ । ଫୁଲଦାନୀ ସ୍ୱୀକାର କଲା, ସେ ଆତ୍ମସମ୍ମାନ ରକ୍ଷାକରିବାକୁ ସତ୍ୟପାଳଙ୍କୁ ଜଖମ କରିଛି, ଅଚଳ କରିଛି । ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ଏ ସମ୍ବାଦ ଜଣାଇ ଦେଇଛି । ସେ ଅନୁତପ୍ତ ନୁହେଁ । ଯାହା ସେ କରିଛି, ସେଥିପାଇଁ ଅନ୍ୟ କାହାର ଉପଦେଶ ସେ ଗ୍ରହଣ କରି ନାହିଁ, ସେଥିପାଇଁ ଅନ୍ୟ କାହାର ପ୍ରରୋଚନା ମଧ୍ୟ ନାହିଁ ।

ବିଚାରପତି ରାୟ ଦେଇଛନ୍ତି — ଫୁଲଦାନୀ ଦୋଷୀ । ଆତ୍ମରକ୍ଷା ପାଇଁ ଯଦି ସେ ବଳପ୍ରୟୋଗ କଲା ବୋଲି ଧରିନିଆଯାଏ, ସେ ବଳ ପ୍ରୟୋଗ ଅତିରିକ୍ତ ହୋଇ ପଡ଼ିଛି । ସେ ପଳାଇଯିବାକୁ ଚେଷ୍ଟା କରିନାହିଁ, ପାଟିକରି ଅନ୍ୟମାନଙ୍କର ସହାୟତା ଲୋଡ଼ି ନାହିଁ । ସତ୍ୟପାଳଙ୍କୁ ଖୁନ୍ କରିବ ବୋଲି ଆଗରୁ ସେ ଚକ୍ରାନ୍ତ କରି ପ୍ରସ୍ତୁତ ରହିଥିଲା । ଆତ୍ମସମ୍ମାନର ଦୋହାଇ ଗୋଟାଏ ଗଳ୍ପ । ସ୍ୱାମୀପରିତ୍ୟକ୍ତା ଯୁବତୀ — ଯାହାର ଅନ୍ୟ ସାକ୍ଷୀ ଓ ସତ୍ୟପାଳଙ୍କ ସଙ୍ଗେ ଆନ୍ତରିକତା ଥିଲା, ତାର ପୁଣି ଆତ୍ମସମ୍ମାନର ପ୍ରଶ୍ନ ଉଠିବ କେଉଁଠୁ ? ଘଟଣାର ଅନ୍ତରାଳରେ ପ୍ରେମର ଦ୍ୱନ୍ଦ୍ୱ ଓ ଏକାଧିକ ପ୍ରେମିକଙ୍କର ଈର୍ଷା ଯେ କାମ କରିଛି, ଏଥିରେ ସନ୍ଦେହର ଅବକାଶ ନାହିଁ । ଘଟଣାର ମୂଳରେ କାହାର ପ୍ରରୋଚନା ଓ ଅଦୃଶ୍ୟ ହାତ ଅଛି, ସେ ବିଷୟରେ ସନ୍ଦେହବିହୀନ ପ୍ରମାଣ ନାହିଁ । କିନ୍ତୁ, ଘଟଣା ଯେ ସତ୍ୟ ଓ ଫୁଲଦାନୀ ଯେ ବଳ-ପ୍ରୟୋଗର ମାତ୍ରା ବଢ଼ାଇ ସତ୍ୟପାଳଙ୍କୁ ହତ୍ୟା କରିବା ଉଦ୍ଦେଶ୍ୟରେ ଖୁନ୍ କରିଥିଲା, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ସତ୍ୟପାଳ ଭାଗ୍ୟବଳରୁ ବଞ୍ଚିଯାଇଛନ୍ତି । ଦେଢ଼ ମାସ ଡାକ୍ତରଖାନାରେ ପଡ଼ି ଭଲ ହୋଇଛନ୍ତି । ତଥାପି, ବାଁ ହାତଟି କେତେକାଂଶରେ ଚିରଦିନ ପାଇଁ ଅଚଳ ହୋଇଛି । ଫୁଲଦାନୀ ନାରୀ, ପୁଣି ଯୁବତୀ । ଭବିଷ୍ୟତ ଜୀବନରେ ସତ୍ପଥକୁ ଆସି ନୈତିକ ଜୀବନ ଅତିବାହିତ କରିବ, ଏହି ଦୃଢ଼ ଆଶାରେ ତା' ଉପରେ ନ୍ୟସ୍ତ କରିବା ଦଣ୍ଡଭାର ଲାଘବ କରାଗଲା । ସେ ଏକ ବର୍ଷ ସଶ୍ରମ କାରାଦଣ୍ଡ ଭୋଗ କରିବ ।—

ସତ୍ୟପାଳ ପ୍ରଚାର କରିଛନ୍ତି—

ଦିନେ ଯେ ରାଜନଅରରେ ନର୍ତ୍ତକୀ ଥିଲା, ଦାସୀ ଥିଲା, ପ୍ରେମ ଓ ଉତ୍ତେଜନାର ତରଙ୍ଗ ଛୁଟାଇଥିଲା, ସେଇ ଫୁଲଦାନୀ ! ସ୍ୱାମୀ ତାକୁ ପରିତ୍ୟାଗ କରିଛି । ସମାଜ ଦୂରେଇ ଦେଇଛି । ବାଣ୍ଡା ଗୁଣ୍ଡ଼ ସେ ଟୋକେଇ ଧରିଥିଲା । ମୁଣ୍ଡରେ ଫୁଲମାଳ ନ ଗୁଡ଼ାଇ ସେ ମାଟିବୋଝ ରଖିଥିଲା । ଦେହରେ ଚନ୍ଦନ-ଅଗୁରୁ କି ସ୍ନୋ ପାଉଡ଼ର

Digitized by PPRACHIN, SOA

ନ ବୋଲି ସେ ବେଳଥିଲା ମାଷ୍ଟିକାଦୁଅ । କେତେ ଲୋକଙ୍କୁ ନଷ୍ଟକରି ଶେଷକୁ ବାଛି ନେଲା ତା'ର ମନର ମଣିଷ—ରଣଗଡ଼ର ଜମିଦାରପୁଅ ସୁବ୍ରତ ବଜ୍ରବାହୁ !

କର୍ମୀ ହୋଇ କୁଳର ଆଚରଣକୁ ସେ ପୁନରାବୃତ୍ତି କରୁଛି ବଜ୍ରବାହୁ । ଜମିଦାରୀ ନାହିଁ, ସ୍ଵତପତ୍ତି ନାହିଁ, ପିତାଙ୍କର ଧନରୁ ବଞ୍ଚିତ । ମନ ମତ ନାହିଁ । ପ୍ରକୃତ କଥା କୋଉଁ ନାହିଁ । ପ୍ରବୃତ୍ତି ଓଲେଇ ଖାଇ ପରି ଚଞ୍ଚଳ, ଅବ୍ୟବସ୍ଥିତ । କ ପ୍ରକାର କର୍ମୀ ସେ ? କର୍ମରେ ବ୍ୟାଘାତ ଘଟାଇବାକୁ ସେ ମୂଳଥା ଦଳକୁ ଉତ୍ତେଜିତ କରେ । କାର୍ଯ୍ୟରେ ଘଟେ ବ୍ୟାଘାତ । ଦେଶର ଉନ୍ନତିମୂଳକ କାର୍ଯ୍ୟର ଅଗ୍ରଗତି ଅଟକି ରହେ । ସେ ସମାଜର ଶତ୍ରୁ, ଦେଶର ଶତ୍ରୁ । ତା'ର କୁଶିକ୍ଷା, ପ୍ରରୋଚନାରେ ଫୁଲଦାନୀ ସତ୍ୟପାଳଙ୍କର ଜୀବନ ନେବାକୁ ଚେଷ୍ଟା କରିଥିଲା ।

ପ୍ରକୃତ କର୍ମୀ ସତ୍ୟପାଳ ସିଂ । ଦେଶର ସ୍ଵାଧୀନତା ପାଇଁ ତାଙ୍କର ଦାନ ଅତୁଳନୀୟ, ତାଙ୍କର ଆତ୍ମୋତ୍ସର୍ଗ ଐତିହାସିକ । ଭଗ୍ନୀ, ଦାର, କନ୍ୟା ପୁତ୍ର—ସେମାନେ ଏ ଦେଶରେ ନାହାନ୍ତି, ଅଛନ୍ତି ହୁଏତ ସେ ଦେଶରେ, କେଜାଣି ବା ଏ ପୁରରେ ନୁହେଁ ସେ ପୁରରେ । ସେ କୋଟିପତି ଥିଲେ, ଦେଶ ପାଇଁ ହେଲେ ଭିକାରୀ । ତଥାପି ଦେଶ ପାଇଁ ସେ କର୍ମରତ । ସେ ପାଖ ଆସି ଏ ପାଖେ ସେ ରାସ୍ତା, କୋଠା, ପୋଲ, ନାଳ ଗଢ଼ାଉଛନ୍ତି । ଧର୍ମକାର୍ଯ୍ୟ, ଦେଶକାମରେ ଧ୍ୟାନ ଦେଇଛନ୍ତି !

ସତ୍ୟପାଳର ପ୍ରଶଂସା ଲୋକେ ଶୁଣିଛନ୍ତି । କଏ ବିଶ୍ଵାସ କରୁଛି । କଏ ଚନ୍ଦ୍ରା କରୁଛି, କଏ ହସି ଉଡ଼ାଇ ଦେଉଛି ।

ଏକ ବର୍ଷ ଜେଲ୍ ଦଣ୍ଡ ସେ ଭୋଗ କରିବ । ହେଉ ପଛେ ହାତଟା ଜଖମ, ସତ୍ୟପାଳ ଜସ୍ତୁ କରିଛନ୍ତି, ପ୍ରତିଶୋଧ ନେଇଛନ୍ତି ।

ଗାରଦ ଭିତରୁ ଫୁଲଦାନୀ ପଦାକୁ ଅଣା ହୋଇଛି । ଅନ୍ୟ ମୁଦାଲମାନଙ୍କ ସଙ୍ଗେ ସେ ମଧ୍ୟ ଜେଲଖାନାକୁ ଚାଲି ଚାଲି ଯିବ । ପାଖରେ, ଦୃଷ୍ଟିରେ ପଡ଼ିଲେ ସତ୍ୟପାଳ । କଣେଇ ଚାହୁଁଛନ୍ତି ।

ଫୁଲଦାନୀ ମୁହଁ ବୁଲେଇଲା ।

ସତ୍ୟପାଳ ହସିଉଠିଲେ । ଦୂରେଇ ଗଲେ । ବାଁ କାନ୍ଧ ଦରଜ ଭଲ ହୋଇ ନାହିଁ । ହାତଟା ଉପରକୁ ଉଠୁ ନାହିଁ । ଡାକ୍ତର ପଟି ବାନ୍ଧିଛନ୍ତି । ଧନ ଓ ଆଇନ୍ ବଳରେ ଫୁଲଦାନୀକୁ ସେ ଦାଗୀ କରିଛନ୍ତି । ସତ୍ୟପାଳ ମୁଖ ବକ୍ର କଲେ । ସେ ବୁଝିଲେ ବଞ୍ଚିଥିବାଯାଏ ସେ ନିଜେ ଦାଗୀ ହୋଇ ରହିଲେ । ହାତର ଜଖମ୍ ଓ କାନ୍ଧ ଉପରର ଗହିରା ଦାଗ ପ୍ରତିମୁହୂର୍ତ୍ତରେ ମନେ ପକାଇ ଦେଉଥିବ କିଏ ଦାଗୀ ।

Digitized by PPRACHIN, SOA

ଫଲଦାମୀ ଜେଲ୍ ଯାଇଛି । ବଜ୍ରବାହୁର ମନରେ ଆଘାତର ଧକ୍କା ଲାଗିଛି । ସେ ଆଖି ମେଲାଇ ଗ୍ରହିଛି ଗୃହ ଆଡ଼କୁ । କାନ ଡେରି ଶୁଣୁଛି ଦୁନିଆର କଥା । ନାଳ କାମ ଶେଷ ହେବା ପରେ ଅଧିକାଂଶ ମୂଲିଆ ଗ୍ଲଲି ଯାଇଛନ୍ତି । କେଉଁଠାଣି ବା ସତ୍ୟପାଳ ନୂଆ କାମରେ ନିଯୁକ୍ତ କରିବାକୁ ସେମାନଙ୍କୁ ନେଇ ଯାଇଥିବ । ଯେଉଁ-ମାନଙ୍କୁ ନୂଆ ଆବାଦ ଜମିରୁ କିଛି କିଛି ଦିଆଗଲା, ସେମାନଙ୍କର ରହିବା ପାଇଁ ନୂଆ ଗ୍ରାମ ବସାଗଲା । ଏବେ ବି ଘର ତୋଳା ଲାଗିଛି । ଲୋକେ କାର୍ଯ୍ୟରେ ବ୍ୟସ୍ତ । ସବୁ ଜମି କୋଠଳୁଷ ହେଉଛି । ସୁଦକ୍ଷ କର୍ମୀବୃନ୍ଦମାନେ ଲୋକଙ୍କୁ ସବୁ ଦିଗରେ ସାହାଯ୍ୟ କରୁଛନ୍ତି ।

ଆଦର୍ଶ ଗ୍ରାମ -- ରତ୍ନପୁର !

ରାସ୍ତାମାନ ଖୋଲାଛି । ଖୋଲୁଛି । ଟାଇପ ପ୍ଲାନ ପ୍ରକାରେ ଘର ସବୁ ତୋଳା ହୋଇଛି, ତୋଳା ହେଉଛି । କୋଠଗୃଷ, ସମବାୟ ସମିତି, ସ୍କୁଲ, ଡାକ୍ତରଖାନା, ପୋଷ୍ଟଅଫିସ, ପାନୀୟ ଜଳର ବ୍ୟବସ୍ଥା, ପଶୁପାଳନ ଓ ପଶୁଚିକିତ୍ସା ଶିକ୍ଷା, ଆମୋଦ ଆଳୟ, ସ୍ତ୍ରୀ ଶିକ୍ଷା, ଶିଶୁପାଳନ, ଜନ୍ମନିରୋଧ ଶିକ୍ଷା---ସବୁ ଦିଗରେ କାର୍ଯ୍ୟ କରା-ହେଉଛି । ଗ୍ରାମପଞ୍ଚାୟତ ଗଢ଼ା ସରିଲାଣି ।

ରତ୍ନପୁର ଦିନେ ଅଞ୍ଚଳର ମଧ୍ୟରେ ବଡ଼ ଗ୍ରାମ ହେବ । ଲୋକେ କାର୍ଯ୍ୟରେ ମନପ୍ରାଣ ଢାଳି ଦେଇଛନ୍ତି । କିଏ ମନେ ରଖିଛି ସତ୍ୟପାଳ ସିଂହ ବା ଅନ୍ୟାନ୍ୟ ଠିକାଦାରମାନଙ୍କୁ ? ସେମାନେ ଦିନେ ଆସିଥିଲେ ଲୋକ ନିଯୁକ୍ତ କରି କାମ କରାଇ-ଥିଲେ, ନିଜର ଲାଭ ନେଇ ଗ୍ଲଲି ଯାଇଥିଲେ ।

କିଏ ମନେ ରଖିଛି ସେ କାଳର କର୍ମଚ୍ୟାରୀବୃନ୍ଦଙ୍କୁ---ଇଞ୍ଜିନିୟର, ରେଭିନ୍ୟୁ ଅଫିସର, ଡାକ୍ତର ବଡ଼ ଗ୍ରେଡ଼ କେତେ ଅଫିସର-- । ଅକ୍ଲାନ୍ତ ପରିଶ୍ରମ କରି ସେମାନେ ଅସମ୍ଭବକୁ ସମ୍ଭବ କରିଥିଲେ । ନୂଆ ଦୁନିଆ ଗଢ଼ିବାକୁ ସବୁ ଦୁଃଖ କଷ୍ଟ ସହିଥିଲେ । ନୂତନ କାର୍ଯ୍ୟ ପାଇଁ କିଏ କୁଆଡ଼େ ଗ୍ଲଲିଗଲେଣି ।

କେତେ ଲୋକ ପ୍ରାଣପାତ କଲେ । ସେମାନଙ୍କୁ ବା କିଏ ମନେ ରଖିଛି ? ଭବିଷ୍ୟତ ଗଢ଼ିବାକୁ ସମସ୍ତେ ଆଜି ଆଗଭର । ଅତୀତକୁ ପେଟରି ଭିତରେ ନିକ୍ଷେପ ହୋଇ ରହିବାକୁ କାହାରି ସମୟ ନାହିଁ ।

ଫୁଲଦାମୀ ଅତୀତ । ସତ୍ୟପାଳ ଅତୀତ ।

ଫୁଲଦାମୀ ଜେଲ୍ ଯାଇଛି । ଯେଉଁ ଟିଅବୋହୁମାନଙ୍କର ଦେହରୁ ସେ ନିଜେ ମଇଳା ପୋଛୁଥିଲା, ଯାହାଙ୍କର ପିଲାଟିମାନଙ୍କୁ କୋଳରେ ଧରିଥିଲା, ଯାହାଙ୍କୁ ବିବିଧ କାର୍ଯ୍ୟ ଶିଖାଉଥିଲା, ପାଠ ପଢ଼ାଇଥିଲା, ଯେଉଁମାନଙ୍କ ପାଇଁ କାସ୍ତମଙ୍ଗଳ

Digitized by PPRACHIN, SOA

ସମ୍ପତ୍ତି ଗଢ଼ି ଯାଇଥିଲା, ସେମାନେ କାବା କାବା ହୋଇ ଚାହିଁଥିଲେ । କେତେ ଜଣଙ୍କ ଆଖି ଛଳ ଛଳ ହୋଇଥିଲା । ଅନ୍ୟ କେତେଜଣ ହସି ଉଠିଥିଲେ । ସେ ସବୁ ବ ଅତୀତ ହୋଇଛି ।

ଫୁଲଦାମୀର ବୁଢ଼ୀମାଉ ଆଜି ବନ୍ଦ ହୋଇଛି । ତା'ର ସାନଭାଇର ବଜ୍ରମୁଷ୍ଟି —ସତ୍ୟପାଳଙ୍କ ପ୍ରାଣନେବ—ସେ ବ ଦୁର୍ବଳ। ହୋଇଛି । ପୁଣି ଧରିଛି ଶାବଳ । ଯେଉଁ ଭୂମି ଖଣ୍ଡିକ ଘର କରିବାକୁ ତାକୁ ମିଳିଛି ତାର ଉପରେ ସେ ଘର କରୁଛି । ସହକର୍ମୀମାନେ ସାହାଯ୍ୟ କରୁଛନ୍ତି । କୋଠଭୂଷ ଭୂମିରୁ ତା'ଙ୍କୁ ବ ମିଳିଛି ଭାଗ । ସମସ୍ତଙ୍କ ସଙ୍ଗେ ମିଶି ହଳ କରିବାକୁ ପାଣି ମଡ଼େଇ ଫସଲ କରିବାକୁ ସେ ପ୍ରସ୍ତୁତ ହୋଇ ରହିଛି । ସେ ଜାଣେ ମହତ ରକ୍ଷା ପାଇଁ ଅପା ତା'ର ଜୁଇ ମାରି ଚାଲି ଯାଇଛି । ପୁଣି ସେ ଫେରିଆସିବ । ଗୋଟିଏ ବର୍ଷର ବିଚ୍ଛେଦ ଲାଗିବ ଗୋଟିଏ ମୁହୂର୍ତ୍ତ ପରି ।

ବଜ୍ରବାହୁ ତା'ର ଗ୍ରେଟ କୁଡ଼ିଆଟିରେ ବସି ଚିନ୍ତା କରୁଛି । ମଧ୍ୟାହ୍ନରେ ଖର-ଝଞ୍ଜା ତାତି । ସବୁ ଅସ୍ଥାୟୀ କୁଡ଼ିଆ ତ ଭାଙ୍ଗିଗଲଣି । ତା'ରଟି ସେ ବଞ୍ଚାଇ ରଖିଛି । ଅଦୂରରେ ନୂଆ ନାଳ । ଭାଟିକେନାଲ୍ ପରି ନିର୍ମଳ ଜଳ ମନ୍ଥର ଗତିରେ ଗଡ଼ିଗଲାଣି । ନାଳ ସେପାଖେ ଶୁଖିଲା ନଈ । ନଈ ସେପାରି ପାହାଡ଼ମାଳ, ଜଙ୍ଗଲ ଶୁଖିଛି । ସବୁଜ ପ୍ରକୃତି କ୍ଳାନ୍ତ ନିର୍ଜୀବ ହୋଇ ଝୋଲି ମାରୁଛି ।

ତାହିଁକି ଆଜି ଫୁଲଦାମୀକୁ ସେ ମନେ ପକାଉଛି ? ତା'ର ଗ୍ରେଟ ଜୀବନରେ କେତେ ବନ୍ଧୁ, ଆତ୍ମୀୟ, ଶତ୍ରୁ ଓ ଅପରିଚିତଙ୍କର ସଂସର୍ଗରେ ସେ ଆସିଛି । ସମସ୍ତେ ତା' ଉପରେ ପ୍ରଭାବ ପକାଇ ଚାଲି ଯାଇଛନ୍ତି, ହୁଏ ତ, ସେ ବି ଅଜାଣତରେ ତାହା ତାହା ଉପରେ ନିଜର କ୍ଷୁଦ୍ର ପ୍ରଭାବ ପକାଇଥିବ । ସମସ୍ତେ ସେମାନେ ଅତୀତ । ଫୁଲଦାମୀ ମଧ୍ୟ ଅତୀତ, ତା'ର ସ୍ମୃତି ମନରୁ ପୋଛି ହୋଇଯାଉ ।

ଯାଉ ନାହିଁ ତ ! ଫୁଲଆଁ ବନ୍ଧିଲେ ସେ ଆଖି ଆଗରେ ଦିଶିଯାଉଛି, ହସୁଛି । ହାତ ବଢ଼ାଇଲେ ଘୁଞ୍ଚି ଘୁଞ୍ଚି ଯାଉଛି । ମୁହଁ ଶୁଖାଇ କହୁଛି, ବାବୁ, ଭଗବାନ ମୋତେ ରୂପ ଦେଇଛନ୍ତି କ'ଣ ଦୁନିଆକୁ କଳଙ୍କିତ କରିବାକୁ ? ଲୋକେ ସେଇକଥା ମନେ କରନ୍ତି । କଳଙ୍କିତ ହେବାକୁ ଜୀବନର ଗୁପ୍ତସମ୍ମାନ ଦୋଳି ଭାବନ୍ତି । ଯାହା ଭାବନ୍ତୁ ସେମାନେ, ଯେଉଁ ହାତଟା ଏଇ କାଳସର୍ପକୁ ଧରିବାକୁ ଲମ୍ବି ଆସିବ, ସେ ସାପର ଚୋଟ ଖାଇବ । ଫୁଲଦାମୀ ମନରୁ ସବୁ କଳଙ୍କ ପୋଛି ପାରିଛି କେବଳ ଜଣକ ପାଇଁ—

Digitized by PPRACHIN, SOA

ସେ ଜଣଙ୍କ କଏ ଏ କଥା ପଚାରିବାକୁ ସୁବ୍ରତ କେବେ ଆବଶ୍ୟକ ମଣିନାହିଁ । ଲମ୍ବିଲା ହାତ ଅନ୍ୟ ଆଶ୍ରା ଖୋଜୁଛି, ସଙ୍କୁଚିତ ହୋଇ ଫେରି ଆସିଛି । ଦୀର୍ଘଶ୍ୱାସ, ଛାତିର ଉଠ୍‌ପଡ଼ ସମତଳ ହୋଇଛି । ମୁହଁରେ ହସ ଫୁଟିଛି । ତୁଣ୍ଡରୁ ବାହାରର ବାଣୀ ବାହାରିଛି, ଆରେ ଫୁଲଦାନୀ ଛଟେ ପାଇବାକୁ ଯାହାର ହାତ ଲମ୍ବି ଆସେ, ତା'ର ଚାରା ନ ଥାଏ । ଦୋଷ ତାର ନୁହେଁ । ଦୋଷ ତୋର ବି ନୁହେଁ । ଦୋଷ ହେଉଛି ତୋର ଏକୁଟିଆ ଜୀବନର । ସତ୍ୟପାଳର ପିଲାକୁଟୁମ୍ବ ନାହାନ୍ତି । ସେ ଯଦି ତୋତେ ବିବାହ କରିବାକୁ ଚାହେଁ, ତୁ ମନା କରିବୁ ? ସେ ସଂସାର କରିବାକୁ ମନ କରିଛି ।

ପଞ୍ଜାବୀ — ।

ହଁ, ଫୁଲଦାନୀ । କେତେ ପଞ୍ଜାବୀ ଏ ଦେଶରେ ଆସି ରହିଲେଣି । ବିବାହ କରି ନୂଆ ସଂସାର ଗଢ଼ିଲେଣି । ଆରେ, ଆର୍ଯ୍ୟମାନେ ପ୍ରଥମେ ଆସି ଏଇ ପଞ୍ଜାବରେ ବାସ କରୁଥିଲେ । ସେଇଠୁ ଧୀରେ ଧୀରେ ସେମାନେ ସାରା ଭାରତବର୍ଷରେ ଖେଳିଗଲେ ।

କେବେ ବାବୁ ?

ପାଞ୍ଚ ହଜାରରୁ ସାତ ହଜାର ବର୍ଷ ପୂର୍ବେ — ।

ସତେ ? ସେମାନେ ଏବେ କେଉଁଠି ଅଛନ୍ତି ? ସମସ୍ତେ କ'ଣ ଏମିତି ଠିକାଦାରୀ କରୁଛନ୍ତି ? ଟଙ୍କାକୁ ମୂଳ ଲଗାଇ ନିଜେ ଲାଭ ଉଠାଇ କୋଠାବାଡ଼ି ତୋଳି ଧନୀ ହେଉଛନ୍ତି ? ନିଜର ରକ୍ତକୁ ନିର୍ମଳ ରଖି, ନିଜ ଘରକୁ ପବିତ୍ର ରଖି ସତ୍ୟପାଳ ପରି ପର ରକ୍ତରେ ରକ୍ତ ମିଶାଇବାକୁ, ପର ଘରକୁ ଅପବିତ୍ର କରିବାକୁ ଆଗ୍ରହ ଦେଖାଉଛନ୍ତି ?

ଔଠହାସିକ ସୁବ୍ରତ ବଜ୍ରବାହୁ ଚମକି ଉଠିଲା । ଫୁଲଦାନୀ ଆସି ନାହିଁ । ଆଜି ଆଉ ସେ ପ୍ରଶ୍ନ ପଚାରୁ ନାହିଁ । ମନେ ହେଉଛି, ସତେ କି ସେ ସେଦିନ ପରି ଆଗରେ ବସିଛି । ପ୍ରଶ୍ନର ଉତ୍ତର ଶୁଣିବାକୁ ଆଗ୍ରହରେ ଚାହିଁ ରହିଛି । କି ଉତ୍ତର ସେ ଦେବ ? ଫୁଲଦାନୀର ପ୍ରଶ୍ନର ଉତ୍ତର ତା'ର ପ୍ରଶ୍ନଗୁଡ଼ିକରେ ହିଁ ନିହିତ ଅଛି । ଚାରିଆଡ଼େ ଦୃଷ୍ଟି ପକାଇଲେ ତା'ର ପ୍ରଶ୍ନର ଉତ୍ତରଗୁଡ଼ିକ ଜୀବନ୍ତ ହୋଇ ଆଖି ଆଗରେ ଠିଆ ହେଉଛନ୍ତି ।

ପଞ୍ଜାବକୁ ଯେଉଁମାନେ ଆସିଥିଲେ, ପଞ୍ଜାବରୁ ଯେଉଁମାନେ ଖେଳି ଯାଇଥିଲେ ସେମାନେ ଆର୍ଯ୍ୟ ! କେଉଁଠି ଅଛନ୍ତି ସେମାନେ ? କ'ଣ ସେମାନଙ୍କର କାର୍ଯ୍ୟ ? ଯେଉଁମାନେ ନିଜକୁ ଏବେ ବି ଆର୍ଯ୍ୟ ବୋଲି ପରିଚିତ କରାଇବାକୁ ଚାହାନ୍ତି ଓ ଆତ୍ମସମ୍ମାନ ଲାଭ କରନ୍ତି, ସେମାନେ କ'ଣ କେବଳ ଆର୍ଯ୍ୟରକ୍ତରୁ ସମ୍ଭୂତ ?

ଉତ୍ତର ଦେଲା, ସେମାନେ ଆମର ରକ୍ତରେ ମିଶି ଯାଇଛନ୍ତି । ଆମ ରକ୍ତରେ କେତେ ଭାଗ ଆର୍ଯ୍ୟ ରକ୍ତ ଓ କେତେ ଭାଗ ଅନାର୍ଯ୍ୟ ରକ୍ତ ମିଶିଛି କେହି ଠିକ୍ କରି କହିପାରିବେ ନାହିଁ ।

Digitized by PPRACHIN, SOA

ଫୁଲଦାନୀ ହସି ହସି ନିସ୍ତାନ୍ତ ହେଲା । ସୁବ୍ରତ ଅନ୍ୟକୋ ଦୋଳ ଧରି ରହିଲା । କ'ଣ ଭାବ ସେ ଏତେ ହସୁଛି ସେ ଅନୁମାନ କରି ପାରିଲା ନାହିଁ । ଅପେକ୍ଷା କଲା । ହସୁ ହସୁ ଫୁଲଦାନୀର ଆଖିରୁ ଗଡ଼ିଲା ଲୁହ । ଅଞ୍ଚଳରେ ଆଖି ପୋଛୁ, ପ୍ରକୃତସ୍ଥ ହୋଇ କହିଲା, ସତେ ବାବୁ, ସ୍କୁଲରେ ଇତିହାସ ପଢ଼ୁଥିଲେ । ମୁଁ ବି ପଢ଼ିଥିଲି । ସେଥିରେ ଲେଖାଥିଲା, ଆର୍ଯ୍ୟମାନେ ପଞ୍ଜାବରେ ବାସ କରୁଥିଲେ । ସେଥିରେ ଲେଖାଥିଲା ପୁଣି ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କୁ ପରାସ୍ତ କରି, ବାସ କରିଥିଲେ । ଏବେ ବୁଝିଲି ସତ୍ୟପାଳ ଆର୍ଯ୍ୟ ।

ସେ ଗମ୍ଭୀର ହେଲା ।

ଏତେ ହସିଲୁ ଯେ !

ଲଜ୍ଜା ଏମିତି ମିଶେ ? ଆମର ଘର ଅଇମା'ନେ ସୀତା ଓ ସାବିତ୍ରୀ ଉପାଖ୍ୟାନ ପଢ଼ି ନ ଥିଲେ ? ହେଲେ ସ୍ୱାମୀର ଚିତାରେ ଝାସ ଦେଉଥିଲେ ତ !

ଫୁଲଦାନୀ ନୀରବ ! ବଜ୍ରବାହୁ ଗୁହିଁ ରହିଲା ତା'ର ମୁହଁକୁ । ବଜ୍ରଷୀ ଆହୁତ ଅଳ୍ପ ଶିକ୍ଷିତା । ଫୁଲଦାନୀ—ଡରଲିବାକୁ ମନ ହେଉଛି । କିନ୍ତୁ ଆହୁତ ସଙ୍ଗେ ଏତେ ଘନିଷ୍ଠ ଭାବରେ ମିଶିବାର ସୁଯୋଗ ସେ ପାଇନାହିଁ । ନଳ ଦମୟନ୍ତୀ କ୍ରୀଡ଼ା ଓ ତା'ର ସ୍ମୃତି ଏବଂ ଧାରଣା, ଗୋଟାଏ ଆବାଦଆ ଉତ୍ତେଜନା । ଆହୁତ ତା'ର ନିଜ ପଥରେ ପଥିକା ।

ଫୁଲଦାନୀ— ।

ମୁଁ ଯାଉଛି ବାବୁ !

ସେ ଉଠି ଠିଆ ହେଲା ।

ଶୁଣ୍ । ମୁଁ ବି ତତେ ଭଲପାଏ ।

ପୁଣି ତା' ଅଖିରେ ଲୁହ ଗଳି ଆସେ । କହିଲା; ସେ କଥା ମୁଁ ଜାଣେ । କହିବ କେବେ ? ସେ ଦିନ ସକାଳେ ସେଇ କଥା କହିବାକୁ ମୁଁ ଆସିଥିଲି । ପାରିଲି ନାହିଁ । ଦାରିଦ୍ର୍ୟର ସୁଯୋଗ ସତ୍ୟପାଳ ନେଇଥିଲା । ସୁଖ ସଂସାରର ଆଶା ଓ ଉତ୍ତେଜନା ମତେ କଳଙ୍କିତ କରିଥିଲା ।

ଅସ୍ୱସ୍ତି ହୋଇ ସୁବ୍ରତ ତା'ର ମୁହଁକୁ ଅନାଇଁ ରହିଲା । ଫୁଲଦାନୀ ଆଖିରୁ ଲୁହ ପୋଛୁ କହିଲା, ମତେ ବିବାହ କରିବେ ଏଇ ଧାରଣା ସତ୍ୟପାଳ ମନରେ ଜନ୍ମାଇଥିଲେ । ସୁନାର ହାରଟିଏ ମୋତେ ଉପହାର ଦେଇଥିଲେ । ନକଲି ସୁନାର ହାର—ମୂଲ୍ୟ ତାର ମୋଟେ ତିନୋଟି ଟଙ୍କା । ବୁଝିଲେ ତ ବାବୁ, ସତ୍ୟପାଳଙ୍କର ବିବାହଟା ନକଲି । ତା ମୂଲ୍ୟ ମୋଟେ ତିନୋଟି ଟଙ୍କା । ତାଙ୍କର ନାମଟି ବି ନକଲି । କେତେ ନକଲି ସୁନାର ହାର ମୋର କେତେ ଗରିବ ଭଉଣୀଙ୍କ ବେକରେ ଝୁଲୁଛି । ସେଇଥିରୁ ହାରର ପଦକଟିମାନଙ୍କୁ ଝିଅମାନେ ଦିନମାନେ କାନ୍ଥୁଆ ପାଟିରେ ଚୁଚୁମିବେ । ସେଥିରୁ ରସ ବାହାରିବ ନାହିଁ । ମୁହଁ ଫଟାଇ କାନ୍ଦିବେ ବାବୁ, କାନ୍ଥୁଆ

Digitized by PPRACHIN, SOA

ତୁଣ୍ଡ ଅନ୍ୟ- ଆଣ୍ଟ୍ରା ଅଷ୍ଟ୍ରାଲ ଧରିବ । ବଡ଼ ହେଲେ ସେମାନେ ଇତିହାସ ପଢ଼ିବେ । ଆର୍ଯ୍ୟପୁତ୍ର ବୋଲି ଗର୍ବ କରିବେ । ଆପଣ ହିଁ କହୁଛନ୍ତି, ଆର୍ଯ୍ୟମାନେ ଆମରି ରକ୍ତରେ ମିଶି ଯାଇଛନ୍ତି ।

ମୁଁ ଉତ୍ତେ ବିବାହ କରିବି ଫୁଲଦାମୀ - କହୁ କହୁ ସୁବ୍ରତର ମୁହଁ ରଙ୍ଗ ହେଲା । ଗୁଡ଼ାଉଛଳେ ଅଜଣା ଯନ୍ତ୍ରଣା ସେ ଅନୁଭବ କଲା । ନିଜର କଥା ନିଜର କାନରେ ପଡ଼ିବାରୁ ସେ ବିଚଳିତ ହେଲା ।

କିଏ କହିଲା ଏ କଥା ? କର୍ମୀ ସୁବ୍ରତ ବଜ୍ରବାହୁ ? କଥାଟା ଦୂରରୁ ଭାସି ଆସିଲା ପରି ମନେ ହେଉଛି । ସେ କହୁନାହିଁ—ସୁବ୍ରତ ବଜ୍ରବାହୁ ! କହୁଛି ଫୁଲଦାମୀର ରୂପ ଓ ଯୌବନ, ତାର ଅତୀତ ଓ ବର୍ତ୍ତମାନ ଜୀବନ, ତା'ର ଦାରିଦ୍ର୍ୟ ଓ ନିଃସହାୟତା, ସତ୍ୟପାଳର ପ୍ରତାରଣା ଓ ଫୁଲଦାମୀର ସାନ୍ନିଧ୍ୟ, ଫୁଲଦାମୀର କହିବାର ଢଙ୍ଗ ।

ଆହୁତ ହସି ଉଠୁଛି ଦୂରରୁ କେଜାଣି କେଉଁ ଅଜଣା ସ୍ଥାନରୁ । ହାତରେ ଧରିଛି ପାଞ୍ଚ ବର୍ଷର ଶିଶୁପୁତ୍ର—କଙ୍କାଳସାର, ମୁହଁ ଫଣଚା । କୋଳରେ ତାକୁ ଧରିଛି ଦୁଇ ବର୍ଷର କନ୍ୟାଟିଏ—ଜୁଳୁ ଜୁଳୁ ଆଖି ଦିଓଟି ତାର ସମ୍ମୁଳ, ମୁଣ୍ଡର ବାଳ କହରା, ଫୁର୍ ଫୁର୍ । ନାକରୁ ଗଡ଼ୁଛି ଦୁଇ ଧାର ସିଙ୍ଗାଣି । ଆହୁତର ଆଖିରେ ବି ଲୁହ ।

ଡାକ ଛାଡ଼ୁଛି ଆକୁଳ ହୋଇ—ନଳରାଜ, ଦେଖ ତୁମ୍ଭର ପିଲା ଦିଓଟିଙ୍କୁ । ସବୁଠି ସେମାନେ ଅଛନ୍ତି । ଅତୀତ ଇତିହାସ ଭୁଲିଯାଅ । ପ୍ରେମ ଓ ଆନନ୍ଦର ଫଳ ଫୁଲ ଏ ଦିଓଟି । କୋଳକୁ ନିଅ, ବଞ୍ଚାଅ । ମଣିଷ କର । ଏକା ମୁଁ ପାରିବି ନାହିଁ ।

ନଳରାଜ, ରୂପ ଓ ଯୌବନ ଚିରନ୍ତନ ଥିଲା, ଚିରଦିନ ରହିବ—ଦୁନିଆରେ ସର୍ବତ୍ର—ସୃଷ୍ଟିର ଫନ୍ଦୀ । ସବୁଠି ଅଛି ଇତିହାସ । ଇତିହାସ ଚର୍ଚ୍ଚା କର ପଛେ ତା' ଭିତରେ ନିଜକୁ ହଜାଇ ଦିଅନାହିଁ । ରୂପ-ଯୌବନ ଦେଖି ସୁଖୀ ହୁଅ ପଛେ, ନିଜକୁ ବାନ୍ଧି ପକାଅ ନାହିଁ । ଦେଖ ମୋ'ର ଏଇ ପିଲା ଦିଓଟିଙ୍କୁ । ସେମାନେ ଇତିହାସ ଉପରେ ଜନ୍ମ ନେଇଛନ୍ତି । ରୂପ ଓ ଯୌବନକୁ ବିଦାଶ୍ଚି କରି ଜନ୍ମ ଲଭିଛନ୍ତି । ସେମାନେ ସର୍ବତ୍ର ଅଛନ୍ତି । ବଞ୍ଚାଅ, ବଞ୍ଚାଅ, ବଞ୍ଚାଅ—

ଫୁଲଦାମୀ କାନ୍ଦି କାନ୍ଦି ହୋଇ କାନ୍ଦୁଥିଲା । କେଜାଣି ବା ସାନ୍ତ୍ୱନା ଦେବାକୁ ବିଚଳିତ ସୁବ୍ରତ ଛୁଟି ଆସିଲା । ଫୁଲଦାମୀର ହାତଟି ଧରିଲା । ସେ ବାଧା ଦେଲା ନାହିଁ ।

ସୁବ୍ରତ ଅଷ୍ପଷ୍ଟ ସ୍ୱରରେ କହିଲା, କ୍ଷମାକର—

ହାତ ଖସାଇ ଫୁଲଦାମୀ ଘରକୁ ଚାଲିଗଲା । ତଳ ଓଠ ଉପର ଓଠ । ପଛକୁ ସେ ଫେରି ଚାହିଁ ନାହିଁ ।

Digitized by PPRACHIN, SOA

ହଠାତ୍ ସୁବ୍ରତର ମନେ ହେଲା, ସେ ଯେପରି କହୁଥାଇଛି, ସମସ୍ତେ ତମେ ସମାନ — ସତ୍ୟପାଳ, ସୁବ୍ରତ, ସଜ୍ଜନବରରେ ଯେଉଁମାନେ ଫୁଲଦାନୀ ନାମ ଦେଇ ପିକଦାନୀ କରୁଥିଲେ —

ଫୁଲଦାନୀ ଫେର ନାହିଁ ।
ସେ ସତ୍ୟପାଳକୁ ଖୁନ କରି ଜେଲ୍ ଯାଇଛି ।
କେବଳ ସେ ସତ୍ୟପାଳକୁ ଖୁନ କରିଛି କି ?
ସୁବ୍ରତ ନିଜ ଗୁଡରେ ହାତ ବୁଲାଇ ଦେଖିଲା ।

ଜେଲ୍‌ଖାନାର ବଡ଼ ହତା ଭିତରେ କଣିକିଆ ହୋଇ ସ୍ୱତନ୍ତ୍ର ଫିମେଲ୍‌ଓ୍ୱାର୍ଡ । ଚାରିପାଖେ ଉଚ୍ଚ କାନ୍ଥ । ମଝିରେ ପାଞ୍ଚ ବଖରିଆ ଧାଡ଼ିଏ ଘର । ଛୋଟ ଛୋଟ କୋଠରିଗୁଡ଼ିକରେ ଲୁହାବାଡ଼ ଦିଆ କବାଟ । ଆଗରେ ଚଉଡ଼ା ବାରଣ୍ଡା । ଆଗରେ ଓ ପଛରେ ବଗିଚା । ପନିପରିବା ଲାଗିଛି । ପାଣିକଳରୁ ପାଣିନେଇ ଗଛଗୁଡ଼ିକରେ ଦେବା ପାଇଁ ପକ୍କା ନାଳ ବନା ହୋଇଛି । ଦୁଇ କଡ଼ରେ ବୁଦା ବୁଦା ହୋଇ ଲଗାହୋଇଛି ଗୋଲାପ, ଜାଉ ଛାଉବା । ଗୋଟିଏ ପାଖରେ ପାଚେରି କାନ୍ଥ ମଝିରେ ଲୁହାଛଡ଼ ବନା ଫାଟକ । ଆଉ ପାଖେ ଜଗୁଆଳି ପହରା ଦେଉଛି । ଭିତର ପାଖେ କାନ୍ଥକୁ ଜୁଡ଼ି ଆଉ ବଖରାଏ ଘର । ସେଇଥିରେ ସ୍ତ୍ରୀ-ଜଗୁଆଳି ରହେ ।

ଫୁଲଦାନୀ ସଙ୍ଗରେ ଆଉ ପାଞ୍ଚ ଜଣ ସ୍ତ୍ରୀ-କଏଦୀ ରହନ୍ତି । ଜଣେ ଉଖୁଡ଼ା ସଙ୍ଗରେ କନିଅର ମଞ୍ଜି ବାଟି ଦେଢ଼ଶୁରର ଦଶ ବରଷର ପୁଅଟିକୁ ଖୋଇ ଦେଇଥିଲା । ମରୁ ମରୁ ସେ ବଞ୍ଚିଗଲା । ଜଣେ ସଦ୍ୟ-ଜନ୍ମ ପିଲାଟିର ତଣ୍ଟି ଚିପି ମାରି ଦେଇଥିଲା । ଜଣେ ମଦୁଆ ଓ ଦୁଶ୍ଚରିତ୍ର ସ୍ୱାମୀର ମାଡ଼ ଓ ଅତ୍ୟାଚାର ସହି ନ ପାରି ବିଷପାନ କରି ଆତ୍ମହତ୍ୟା କରିବାକୁ ଚେଷ୍ଟା କରିଥିଲା । ବଞ୍ଚିଗଲା । ଆଉ ଜଣକ ଛୋଟ ପିଲାଟି ଦେହର ସୁନାହାର କାଟିନେଇ ପାଖରେ ରଖିଥିଲା ।

କେତେ ତ ଆସନ୍ତି, ଯାଆନ୍ତି, କେତେ ପ୍ରକାରର ଦାଗୀ । କିଏ କେଉଁ ଅପରାଧ ପାଇଁ ଦଣ୍ଡିତ । ଦଣ୍ଡ ଭୋଗ କରି ଚାଲିଯାଆନ୍ତି ପଛେ, ନିଜେ ଦୋଷୀ ବୋଲି ସ୍ୱୀକାର କରନ୍ତି ନାହିଁ ।

ନୂଆ ଜୀବନ ଧୀରେ ଧୀରେ ଆଗେଇ ଯାଉଛି, ଅଳସ ନିର୍ଜ୍ଜୀବ ଉତ୍ତେଜନା-ହୀନ ଜୀବନ । ଅତୀତର ସବୁ କଥା ଗୋଟି ଗୋଟି ହୋଇ ମନେପଡ଼େ । ଭବିଷ୍ୟତ କିପରି କଟିବ ଚିନ୍ତା କରିବାକୁ ଆଗ୍ରହ ବଳେ । ଖାଲି, ଆଗରେ ଠିଆ ହୁଅନ୍ତି ଦୁଇଟି ମଣିଷ — ବୁଢ଼ୀ ମା ଓ ସାନ ଭାଇ । ଦୁହେଁ ଯେପରି କହୁଛନ୍ତି, ଚିନ୍ତା ନାହିଁ,

Digitized by PPRACHIN, SOA

ବାହୁରେ ଶକ୍ତି ଥିଲେ, ପାଦରେ ଶକ୍ତି ଥିଲେ ଭବିଷ୍ୟତର ଝଡ଼ବାତ୍ୟା ଡେଇଁ ଡେଇଁ ଆଗକୁ ଚାଲି ହେବ ।

ସତ୍ୟପାଳ ପାଖକୁ ଆସିବ ନାହିଁ । ବଜ୍ରବାହୁ ଉତ୍ତର ହାତ ଲମ୍ବାଇ ପୁଣି ହାତ ସଙ୍କୁଚିତ କରି ନୀତିଶିକ୍ଷାର ବକ୍ତୃତା ଦେବାକୁ ଚାହିଁବେ ନାହିଁ ।

ଖୋଲି ଚିଠି ଖଣ୍ଡେ ଓ୍ୱାର୍ଡ଼ର ଫୁଲଦାନୀର ହାତକୁ ବଢ଼ାଇଦେଲା । ଫୁଲଦାନୀ ପ୍ରଥମ ଦେଖି ଅଟା ଉଆଳ କରୁଥିଲା । ଆଜି ତା'ର ସେଇ କାମ । ମୁଣ୍ଡର ଖୋଳ ଅଙ୍ଗୁଠିରେ ପୋଛି, ଚକ୍ଷୁକୁ ବନ୍ଦକରି ସେ ଚିଠିରେ ଆଖି ପକାଇଲା । ଲେଖିଛି ବଜ୍ରବାହୁ ।

ଭଲକରି ପଢ଼ିଲା -- ଜନ୍ମପୁର ଗ୍ରାମ ମୁଁ ଆଜି ଚାଲିଯାଉଛି ଫୁଲଦାନୀ; ହୁଏ ତ ଆଉ ଥରେ ଏ ଗ୍ରାମକୁ ଫେରିବାର ସୁଯୋଗ ଜୀବନରେ ଘଟିବ ନାହିଁ । ଏ ଚିଠି ଖଣ୍ଡି ଲେଖିବାର ଆବଶ୍ୟକତା ମୁଁ ଅନୁଭବ କଲି କେବଳ ଗୋଟିଏ କାରଣ ପାଇଁ । ଦେଖୁ ଦେଖୁ ବର୍ଷଟିଏ କଟିଗଲା । ଜେଲରୁ ମୁକ୍ତ ହୋଇ ତୁ ଯିବୁ କୁଆଡ଼େ ପୁଣି । କରିବୁ କ'ଣ ଏହି କଥା ମୁଁ ଚିନ୍ତା କରୁଥିଲି ।

ଭାବି ସ୍ଥିର କରିବାକୁ ଅନେକ ସମୟ ଅଛି । ଗୋଟିଏ ବର୍ଷ ତଳେ ମୁଁ ଦେଖିଥିଲି । ତୋ'ର ଚଳନ ଓ କର୍ମକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହିଥିଲି । ତୋ'ର ଜୀବନର ଇତିହାସ ଓ ପ୍ରତିଦିନ ଘଟୁଥିବା ଶ୍ରେଷ୍ଠ ବଡ଼ ଘଟଣାର କାହାଣୀ ତୋ'ର ମୁହଁରୁ ଶୁଣିଥିଲି । ଅତୀତକୁ ପଛକୁ ପକାଇ ଅତୀତକୁ ସମାଧି ଦେଇ ପବିତ୍ର ନୂତନ ଜୀବନ ଯାପନ କରିବାର ବ୍ୟାକୁଳତା ମୁଁ ଦେଖିଥିଲି ତୋ' ଠାରେ । ସବୁ ପ୍ରକାର ପ୍ରଲୋଭନକୁ କର୍ମର ପବିତ୍ର ଯଜ୍ଞରେ ଆହୁତି ଦେଇ ତୁ ଆଗେଇ ଚାଲିଥିଲୁ । ସେତିକି ମୋତେ ଆନନ୍ଦ ଦେଉଥିଲା । ସେଇଥିପାଇଁ ସବୁ ପ୍ରକାର ମିଥ୍ୟା, ଅପବାଦ ଓ ଲୋକନିନ୍ଦାକୁ ମୁଁ ହସିହସି ନିଜର କରି ନେଇଥିଲି । ସେଥିପାଇଁ ମୋ'ର ମନରେ ଦୁଃଖ ନାହିଁ କି ମୁଁ କେବେ ଅନୁତାପ କରି ନାହିଁ ।

-- ତୋ' ସଙ୍ଗେ ସେଦିନ ଶେଷଥର ଦେଖା ହେଲେ ତୁ ମନଃକ୍ଷୋଭରେ ସତ୍ୟପାଳଙ୍କର କଥା କହିଥିଲୁ । ତୋ'ର ତପସ୍ୟା ଯେ ଭଗ୍ନ ହେଲା ସେଥିପାଇଁ ଦାୟୀକଲୁ ତୋ'ର ଜନନୀକୁ । ମୋ'ର ମନରେ ଧାରଣା ହେଲା, ତୋ'ର ଅସ୍ଥିର ଓ ଭସିଲା ଜୀବନକୁ ସ୍ଥିର କରିବାର ବ୍ୟାକୁଳତା ହିଁ ସତ୍ୟପାଳଙ୍କର ପ୍ରତାରଣାକୁ ସତ୍ୟ ବୋଲି ତୋ'ର ଜନନୀ ଗ୍ରହଣ କରି ନେଇଥିଲେ । କେବଳ ତାଙ୍କରି ଦୋଷ ଦେଲେ ତ ହେବ ନାହିଁ ? ତୋ'ର ଆଶା ଉତ୍ତେଜନା କ'ଣ ସେଥିପାଇଁ ଦାୟୀ ନୁହେଁ କି ? ଅବଶ୍ୟ ଯେତେବେଳେ ମୋର ପ୍ରସ୍ତାବ ମୋ'ର ତୁଣ୍ଡରୁ ଖସିଲା, ମୁଁ ଏତେ ଗୁଡ଼ାଏ କଥା ଭାବି ନ ଥିଲି । ବିବାହର ପ୍ରଶ୍ନ କାହିଁକି ହଠାତ୍ ମୋ' ମନକୁ ଆସିଲା ତା'ର କୈଫିୟତ ମୁଁ ଦେଇ ପାରିବି ନାହିଁ । ପ୍ରସ୍ତାବର ଆଘାତ ସଙ୍ଗେ ସଙ୍ଗେ ପ୍ରତିଘାତ ସୃଷ୍ଟିକଲା । ସେଇଥି ପାଇଁ ମୁଁ କ୍ଷମା ଚାହିଁଥିଲି ।

Digitized by PPRACHIN, SOA

-- କର୍ମଯଜ୍ଞରେ ନିଜକୁ ଆହୁତି ଦେବା ମୋର ପଣ । କର୍ମପଥରେ କେଉଁଠି ବାଧା ହୋଇ ରହିବା ମୋ'ର ଉଦ୍ଦେଶ୍ୟ ନୁହେଁ । ଯିଏ ତୋ'ର ନୂତନ ପବିତ୍ର ଜୀବନକୁ କଳଙ୍କିତ କଲା, ତାକୁ ତୁ ଧ୍ୱଂସ କଲୁ ଓ ନିଜକୁ ମଧ୍ୟ ଧ୍ୱଂସ କରିଲୁ; ଏହା ହିଁ ବୋଧହୁଏ ତୋ'ର ମନରେ ଧ୍ୱଂସକାଙ୍କ୍ଷା ଉତ୍ତେଜନା ସୃଷ୍ଟି କରିଥିଲା, ସେ ଧ୍ୱଂସ ହୋଇନାହିଁ । ତୁ ମଧ୍ୟ ଧ୍ୱଂସ ହୋଇ ନାହୁଁ । ବରଂ ହୋଇଛୁ ଦାଗୀ ! ନିଜର କାର୍ଯ୍ୟ ପାଇଁ କେବେ ତମେ ହୁଏ ତ ଅନୁତାପ କରିବ ନାହିଁ, କିନ୍ତୁ କର୍ମର ଦାଗ ଆଜୀବନ ଦେହରେ ଓ ମନରେ ଧରି ବୁଲିବ । ଯାହାର ଅଙ୍ଗ ଅଚଳ ହୋଇଛି ସେ ଖଞ୍ଜା, ଯାହାର ମନରେ ଦାଗ ଲାଗିଛି, ନାମରେ ଦାଗ ଲାଗିଛି ସେ ଦରିଦ୍ର । ଜଣେ ପୁରୁଷ, ଆଉ ଜଣେ ସ୍ତ୍ରୀ । ପ୍ରଭେଦ ସେଇଠି ।

-- ଜେଲରୁ ମୁକ୍ତ ହେଲା ପରେ ହୁଏ ତ ତୁ ମୋ'ର ସାହାଯ୍ୟ ଲୋଡ଼ିବୁ । ବାରମ୍ବାର ତତେ ମୁଁ ଅନୁରୋଧ କରିଥିଲି ମୋତେ ତୁ ଭାଇ ବୋଲି ଡାକ, ମୋତେ ତୁ ଭାଇ ବୋଲି ଗ୍ରହଣ କରି ନେ । ସେତକ ତୁ କରି'ନାହୁଁ । ବନ୍ଧୁପଣରେ ନିଜର ମନକୁ ମୋ' ଆଗରେ ଖୋଲି ଧରିବା ଉଦ୍ଦେଶ୍ୟରେ ହୁଏ ତ ଭ୍ରାତୃତ୍ୱର ସମ୍ମାନ ମୋତେ ଦେବାକୁ ତୁ ରାଜି ହୋଇ ନ ଥିଲୁ । ଭାଇଭଉଣୀ ମଧ୍ୟରେ ଯେଉଁ ନିର୍ମଳ ସ୍ନେହର ପ୍ରବାହ ଛୁଟେ, ସେ ପ୍ରବାହ ଯେତେ ମୁକ୍ତ ହେଲେ ବି ଛନ୍ଦିରେ ସଙ୍କୋଚ ଓ ଆକଟ ଥାଏ । ସେ ସଙ୍କୋଚ ଓ ଆକଟ ତୁ ବର୍ଜିବାକୁ ଚାହିଁ ନ ଥିଲୁ । ତା'ର ଫଳ ହେଲା ତୋ' ମନର ଉତ୍ତେଜନା । ମୁଁ ମଧ୍ୟ ସେଥିରୁ ମୁକ୍ତ ହୋଇ ନ ଥିଲି । ତୁ ଖୁଣୀ ହୋଇଛୁ, ଦୋଷୀ ହୋଇଛୁ । ଜେଲ୍ ଦଣ୍ଡ ଭୋଗ କରୁଛୁ ।

—ସମୟ କଟିଯିବ । ଜେଲରୁ ମୁକ୍ତ ହୋଇ ତୁ ପଦାକୁ ଆସିବୁ । ଦୁଃସ୍ୱପ୍ନ ପରି ଅତୀତକୁ ଭୁଲିଯିବୁ । ତୁବବେ ଥାଇ ମୁଁ ଆଜି ମୋର ବଡ଼ପଣ-ଭ୍ରାତୃତ୍ୱ ଦାବୀ କରୁଛି । ଭାଇପଣରେ ସେଇ ଦାବୀ ତୋ ପାଖକୁ ଏଇ ପତ୍ରଟି ଲେଖିବାକୁ ମତେ ବାଧ୍ୟ କରୁଛି । ଜେଲ୍ ବାହାରକୁ ଆସି ତୁ ଦେଖିବୁ ତୋ'ର ସୁବ୍ରତ ଭାଇ ତୋ'ର ହାତ ଧରି କର୍ମକ୍ଷେତ୍ରକୁ ଆଗେଇ ନେବାକୁ ଠିଆହୋଇଛି । ସର୍ବଦା ସବୁବେଳେ କର୍ମ ଅପେକ୍ଷାରେ ରହିଛି । ଦୁନିଆର ଲୋକେ ତୋତେ ଖୁଣୀ ବୋଲି ଘୃଣା କରିବେ, କେତେଜଣ ଭୟ ବି କରିବେ । ସେଇ ଘୃଣା ଓ ଭୟ ତୋ ପରି କେତେ ନିସ୍ସହ, ନିଃସହାୟଙ୍କୁ ପୁଣି ପାପପଙ୍କକୁ ଠେଲି ଦେଉଛି । ସେପରି ଭୟ ତୁ କରିବୁ ନାହିଁ । ତୋ'ର ସୁବ୍ରତ ଭାଇ ତୋର ହାତଧରି କର୍ମଯଜ୍ଞରେ ଆହୁତି ଦେବାକୁ ବାଟ କଢ଼ାଇ ନେବ । ଚିନ୍ତା ନାହିଁ ।

— ଉତ୍ତର ପତ୍ର ଦେବାକୁ ଚାହୁଁଛି ତ "ଦାଗୀ" ମାସିକ ପତ୍ରିକାର ସମ୍ପାଦକ ଶ୍ରୀ ଧନଞ୍ଜୟ ଦାସ, କଟକଙ୍କ ଜରିଆରେ ପତ୍ର ଲେଖିବୁ । ମୁଁ ଯେଉଁଠି ଥିଲେ ବି ସେ ତୋର ପତ୍ର ମୋ ପାଖକୁ ପଠାଇଦେବେ । ଧନଞ୍ଜୟ ମୋ'ର ବନ୍ଧୁ । ନିଜର ବିନା ଦୋଷରେ, ଅନ୍ୟମାନଙ୍କର କାର୍ଯ୍ୟ ପାଇଁ ସେ ଥରେ ସର୍ବସ୍ୱାନ୍ତ ହୋଇ ଜେଲ୍ ଦଣ୍ଡ

Digitized by PPRACHIN, SOA

ଭୋଗ କରିଥିଲେ । କଟକ ସହରର ଦାଣ୍ଡେ ଦାଣ୍ଡେ ବୁଲି ପେଟ ପୋଷିବାକୁ ହାତ ପାତୁଥିଲେ । ଆଜି ସେ କର୍ମରତ । କେତେ ଦାଗୀଙ୍କର ସେ ଆଶ୍ରୟ ।—

ପତ୍ରଟି ଉପରେ ଝଡ଼ି ପଡ଼ିଲା ବୁନ୍ଦ୍ ବୁନ୍ଦ୍ ଲୁହ । ଅକ୍ଷର ଆଉ ପଢ଼ି ହେଲା ନାହିଁ । ଦିଶିଲା ଧାଡ଼ି ଗୁଡ଼ିଏ । ଲୋତକର ବାଦଲ ଭିତରେ ଧାଡ଼ିଗୁଡ଼ିକ ସବୁ ହଜାଇଲା । ଦିଶିଲା କେବଳ ଗୋଟିଏ ରୂପ – ଗମ୍ଭୀର ହୋଇ ଠିଆ ହୋଇଛି । ମୁଣ୍ଡରେ ବାନ୍ଧିଛି ଗାମୁଛା । ହାତରେ କୋଦାଳ । ଗୋଡ଼ ପାଖରେ ଗାଣ୍ଡୁ ଆଟିଏ ମାଟିପୂର୍ଣ୍ଣ ହୋଇ ରହିଛି ।

ଠେଲିଦିଅ ମୋ'ର ମୁଣ୍ଡକୁ ବାବୁ ।

ଆଉ ଦେବ ନାହିଁ । ନିଜେ ଖୋଳି ନିଜେ ମୁଁ ମୁଣ୍ଡରେ ବୋହି ନେବ । ବନ୍ଧରେ ପକାଇ ଫେରିଆସି ପୁଣି ଡାଡ଼ିବ ମାଟି । ପୁଣି ନେବ ।

ଏକା ? କଷ୍ଟ ହେବ ବାବୁ ।

ମୁଁ ପାରିବ ।

ମୁଁ କରିବ କ'ଣ ?

କ୍ଷଣିକ ରୁହ ।—; ସେ ପୁଣି ଡାକୁଛି ।

ସତ୍ୟପାଳ ନୁହେଁ ଆଉ ଜଣେ । ଛାଇତଳେ ପଥର ଉପରେ ସେ ବସିଛି । ରୁମାଲରେ ମୁହଁ ପୋଛୁଛି । କଣେଇଁ ଚାହୁଁଛି । କେବଳ ଫୁଲଦାନୀ ନୁହେଁ ତ, ସବୁ ରୂପ ଓ ଯୌବନକୁ । ହସୁଛି ।

ସେ କିଏ ବାବୁ ?

ଚିହ୍ନି ପାରୁନୁ ? ସେ ଧନ । ସେ ଠିକାଦାର୍ ।

ଖୁନ୍ କରିବ ତାକୁ ।

ଲୋଡ଼ା ନାହିଁ । ପାରିବୁ ନାହିଁ । ବଡ଼ ପାଟି କରି ଡାକିପାରିବୁ ମତେ ଭାଇ ବୋଲି ? ଡାକିପାରିବୁ ଫୁଲଦାନୀ, ସମସ୍ତଙ୍କୁ ପୁଣି ସେଇ ଧନର ପାହାଡ଼କୁ, ଭାଇ ବୋ'ଲି ? ଭ୍ରାତୃତ୍ୱ ଅନୁଭବ କରି ପାରିବୁ ସଭିଙ୍କଠାରେ ? ନିଜ ମନ ଭିତରେ ଏତିକି ଶକ୍ତି ଯଦି ତୁ ସଞ୍ଚୟ କରିପାରିବୁ ସମସ୍ତେ ହେବେ ତୋ'ର ଭାଇ । ଭୟ ଓ ସନ୍ଦେହ ଦୂର ହେବ ତୋ'ର ମନରୁ । ସେମାନଙ୍କର ଆଖିର ଆଲୁଅରେ ଲାଳସାର ଛାପ ରହିବ ନାହିଁ ।

ଅତୀତ ଅନୁଭୂତି ଛଟପଟ ହେଲା ମନରେ । ସେଇ ଅନୁଭୂତିଗୁଡ଼ିକ ସମସ୍ୱରରେ ଚିତ୍କାର କରି ଉଠିଲେ, ଭୁଲ୍ କଥା, ମିଛ କଥା, ଯୌବନର ଭିତରେ

Digitized by PPRACHIN, SOA

ବଡ଼ି ମଧ୍ୟ ଏପରି ଉପଦେଶ ଦେଉଛ କପରି ବାବୁ ? ସେମାନେ କ'ଣ ତାଙ୍କ ଛୁଡ଼ି ନ ଥିଲେ କି, ଆଜ୍ଞେ ହଁ, ଆଜ୍ଞେ ନିଅ ବୋଲି ?

ଚଟିଖଣ୍ଡି ପାଟରେ ଥୋଇ ଫୁଲଦାନୀ ତଳ ବୁଲେଇଲା ।

ପାଖ କଏଁଟି ପଚାରିଲା, କଏ ଲେଖିଛୁ ବା ?

ଫୁଲଦାନୀ ଉତ୍ତର ଦେଲା ନାହିଁ ।

ଆଉ ଜଣେ ପଚାରିଲା । ଅଶୁଭ ଖବର କି ?

ହଁ — ।

ଆଛା, କଏ ମ ସେ, ଏତେ ବାନ୍ଧଚୁ ଯେ ?

ଉତ୍ତର ଦେଲା, ସେ ଫୁଲଦାନୀ !

ଆମ୍ଭମାନେ ତଙ୍କବୁଲା ବନ୍ଦକରି ହସିଉଠିଲେ । ସ୍ତ୍ରୀ ଜଗୁଆଳଟି ବାଡ଼ି ଖଣ୍ଡେ ହାତରେ ଧରି ଆଉ ହାତର ତୋଳପଫୁଲଟି ମୁଣ୍ଡରେ ଖୋସି ପାଖକୁ ଧାଇଁ ଆସିଲା । ସ୍ୱର ତମତମ ହୋଇ ଟକି ଉଠିଲା, କି ଲୋ, ହେଉଛ ନା ହସୁଛ ବା ! ଦେଖିବ ଏଇକ୍ଷଣି— ?

ହସ ବନ୍ଦ ହେଲା । ହସର ଛୁପା ଓଠରେ ରହିଲା ଲାଖି । ଫୁଲଦାନୀର ଆଖିର ଲୁହ ଗଡ଼ି ଆସିଲା ପାଣି ଭିତରକୁ ।

ହନୋଟି ଚକ ପୁଣି ବୁଲିଲା ।

ବୁନଅର ତଙ୍କ ବୁଲୁଛି, ଧନଞ୍ଜୟର ଛାପାଖାନାର ଚକ ପରି । 'ଦାଗୀ'ର ସମ୍ପାଦକ ଧନଞ୍ଜୟଙ୍କୁ 'ଦାଗୀ' ପତ୍ରିକା ମୁଣ୍ଡରେ ଭରି ଦ୍ୱାର ଦ୍ୱାର ବୁଲି ବିକି କରିବାକୁ ପଡ଼େ ନାହିଁ । ନିଜର ପରିଶ୍ରମ, ଦକ୍ଷତା ଓ ମିତବ୍ୟୟିତା ଫଳରେ ସେ ଯେଉଁ ଧନସଞ୍ଚୟ କରି ପାରିଥିଲେ ସେଇଥିରେ ସେ ଛୋଟ ଛାପାଯନ୍ତ୍ର କିଣି ସ୍ୱାଧୀନ ଭାବରେ କାମ ଆରମ୍ଭ କଲେ । 'ଦାଗୀ'ର ପରିବନ୍ଧା ଗ୍ରାହକ ଦୁଇ ହଜାରକୁ ଟପିଗଲାଣି । ତା' ଛଡ଼ା ହକର-ମାନଙ୍କ ଜରିଆରେ ଆହୁରି ସେତିକି ବିକି ହୁଏ । ପତ୍ରିକା ଛାପିବା ଆଜି ଧନଞ୍ଜୟଙ୍କର ଏକମାତ୍ର କାମ ହୋଇ ରହି ନାହିଁ । ପ୍ରେସ୍‌ରେ ଅନ୍ୟମାନେ ପୁସ୍ତକ ଛାପନ୍ତି । ବ୍ୟବସାୟୀମାନେ ଫର୍ମ, ବିଜ୍ଞାପନ ଓ ଅନ୍ୟାନ୍ୟ କାମ କରାନ୍ତି ।

ଧନଞ୍ଜୟଙ୍କ କାମ ଭଲ । ଛୋଟ ହେଉ କି ବଡ଼ ହେଉ ସବୁ କାମରେ ସେ ନଜର ଦିଏ । ବୁଦ୍ଧି ବିବେକ ପ୍ରୟୋଗ କରି ଯତ୍ନ ସହକାରେ କରେ । ନିର୍ଭୁଲ ଓ ସୁନ୍ଦର କରିବାକୁ ଚେଷ୍ଟା କରେ ।

ଧନଞ୍ଜୟଙ୍କ ଜବାବ ଅଟଳ । ସେମିତିକନ ସେଇଠିଙ୍କବେଳେ ତେଲଭରି ଦେବାକୁ କଷ୍ଟ କରିଥାଏ, ଧନଗାଢ଼ ପରିଶ୍ରମ କରି କଷ୍ଟ ରକ୍ଷାକରେ । ଉଦ୍ର,

Digitized by PPRACHIN, SOA

ବନସ୍ପୀ, ସରଳ, ସଯତ୍ନ ଓ ପରିଶ୍ରମୀ ଧନଞ୍ଜୟ ଆଗେଇ ଗ୍ଳୁଛି ତା'ର ଉଦ୍ଦେଶ୍ୟ ପେନ । ଜେଲ୍‌ରୁ ଫେରିଆସି ନିଜକୁ ନିର୍ଦ୍ଦୋଷ ମଣିବାର ଓ ଅନ୍ୟମାନଙ୍କର ବନ୍ଧୁର ଓ ସିଦ୍ଧାନ୍ତକୁ ଭ୍ରାମ୍ଯକ ମଣିବାର ଅଭିମାନ ଓ ଉତ୍ତେଜନା ତା'ର ଉପସମ ହୋଇ ସାରିଛି । ଜୀବନସଂଗ୍ରାମ ତାକୁ ଶିକ୍ଷା ଦେଇଛି ଯେ ଅବୋଧତା ମଧ୍ୟ ମଣିଷର ଦୋଷ; ସେଥିପାଇଁ ସେ ଦଣ୍ଡ ପାଏ ଓ ଦଣ୍ଡ ପାଇବା ଉଚିତ ।

ନୂତନ ଉଦ୍ୟମ ଓ ନୂତନ ଜୀବନ—ଧନଞ୍ଜୟର ଏହା ହିଁ ପଣ । ସେ ସାବଧାନ ହେବାକୁ ଚେଷ୍ଟା କରୁଛି । ଅନ୍ୟମାନଙ୍କର ବିଶ୍ୱାସଭାଜନ ହୋଇଛି । ବ୍ୟବସାୟରେ ଆଗେଇ ଗ୍ଳୁଛି ।

ଯେଉଁ ହତଭାଗ୍ୟମାନେ ଦଣ୍ଡିତ ହୋଇ କାରାବାସ ଭୋଗକରି ଫେରି ଆସିଛନ୍ତି, ଯେଉଁମାନଙ୍କୁ ସମାଜ ଓ ଦେଶ ଦାଗୀ ବୋଲି ଘୃଣା କରି ଅବିଶ୍ୱାସ କରି ଦୂରେଇ ଦେଇଛି, ଯାହାଙ୍କର ନୂତନ ପବିତ୍ର ଜୀବନ ଯାପନ କରିବା ପାଇଁ ଯାହା ସମ୍ବଳ କିଛି ନାହିଁ, ସେହିମାନେ ଆଜି ଧନଞ୍ଜୟର ସଙ୍ଗୀ ସହକର୍ମୀ ଓ ବନ୍ଧୁ ।

ଆଗନ୍ତୁକକୁ ଚାହିଁ ଧନଞ୍ଜୟ ପଚାରିଲା, କେବେ ତମେ ଜେଲ୍‌ରୁ ଖଲାସ ହେଲ ?

ଗୋଡ଼ ଭାଙ୍ଗି ଆଗରେ ଠିଆ ହୋଇଛି ଅର୍ଜୁନ । ଯଚଶି ବର୍ଷର ଯୁବକ । ଦୁର୍ବଳ ଦେହ । ପିନ୍ଧିଛି ମଇଳା ଦୁର୍ଗନ୍ଧ ଲୁଗା ଖଣ୍ଡେ । ଦେହରେ ଛିଣ୍ଡା କାମିଜ । ରୂପଟି ସୁନ୍ଦର । ମୁଣ୍ଡରେ ବଡ଼ ବଡ଼ ବାଳ । ତଳଙ୍ଗ ଚଳଙ୍ଗ ହୋଇ ଗୃହ ଆଡ଼କୁ ଚାହୁଁଛି ।

ଉତ୍ତର ଦେଲା, ଦୁଇ ମାସ ହେବ—ମୋ'ର କିଛି ଦୋଷ ନାହିଁ ବାବୁ । ମିଛ ମକଦ୍ଦମାରେ ପକାଇ ପୋଲିସ ଚାଲାନ କଲା । ମିଛ ସାକ୍ଷୀ ଦେଇ ଦୁଇ ବର୍ଷ ଜେଲ୍ କରେଇଲା ।

ଦୁଇ ବର୍ଷ ?

ହଁ, ବାବୁ । ତିନ ବର୍ଷ ତଳେ ଆଗରୁ ମୁଁ ଛ'ମାସ ଜେଲ୍‌ଦଣ୍ଡ ଭୋଗିଥିଲି । ସେଥର ବି ସେମିତ ପୋଲିସ ମୋ' ନାମରେ ମିଛ ମକଦ୍ଦମା କରେଇଥିଲା – ।

ଧନଞ୍ଜୟ ହସିଲା । କହିଲା, ସତେ ? ହସିକି ଆଖିରେ ଅର୍ଜୁନକୁ ଚାହିଁ ପଚାରିଲା, ତା' ଆଗରୁ ? ଲୁଚାଅ ନାହିଁ କହ ।

ଅର୍ଜୁନ କହିଲା, ସାଙ୍ଗଯାଥିରେ ଥରେ –

ଆଉ କହିବା ଦରକାର ନାହିଁ ଅର୍ଜୁନ । ପ୍ରଥମ ଥର ତମେ ଭୁଲ୍ କରିଥିଲ ତ ?

ହାକିମଙ୍କ ଆଗରେ ମୁଁ ମୋର ଦୋଷ ମାନିଲି, କ୍ଷମା ମାଗିଲି । ଆଉ ଦିନେ ଏପରି କରିବ ନାହିଁ ବୋଲି ପ୍ରତିଜ୍ଞା କଲି । ତଥାପି ମୁଁ କ୍ଷମା ପାଇଲି ନାହିଁ । ମାସେ

Digitized by PPRACHIN, SOA

ଜେଲ୍ ଦଣ୍ଡ ଭୋଗିଲି । ମୁଁ ଦାଗୀ ବୋଲି ଚହଳ ପଡ଼ିଲା । ଯେଉଁଠି ଯିଏ ଚୋରି କଲା, ପୋଲିସ ଆସି ଆଗ ମୋ' ଘର ଖାନ୍‌ତଲାସ୍ କଲା—

ଏମିତି ସବୁଠି ହୁଏ । ମନ ଭିତରର କଥା କେହି ଦେଖିପାରେ ନାହିଁ । ଥରେ ଯେ ଦୋଷ କରେ ତା'କୁ ମଣିଷ ସନ୍ଦେହ କରେ । ଯେଉଁଠି ସନ୍ଦେହ, ସେଇଠି ବିପଦ ।

ସଂସାର ତ ବିଶ୍ୱାସ କରୁ ନାହିଁ ବାବୁ, ଯୁଆଡ଼େ ଗଲେ ସମସ୍ତେ ଦୁର୍ ଦୁର୍ କରି ତଡ଼ୁଛନ୍ତି । ପାଠ ପଢ଼ି ବୁଝି ଥାଇ ମଧ୍ୟ ଦେହ ମିହନତ କରି ମୂଲ ଲାଗି ପେଟ ପୋଷିବାକୁ ଚେଷ୍ଟା କଲେ ବି ଚେଷ୍ଟା ସଫଳ ହେଉନାହିଁ । ଦାଗୀ ବୋଲି ଜଣାପଡ଼ିଲେ ସେମାନେ ତଡ଼ି ଦେଉଛନ୍ତି । ବାବୁ, ପୁଣି ସେଇ ଜେଲ୍‌କୁ ଫେରିଯିବା ଛଡ଼ା ବଞ୍ଚିବାର ଅନ୍ୟ ଉପାୟ ନାହିଁ ।

ଶୁଣ ଅର୍ଜ୍ଜୁନ, ତପସ୍ୟା କରିବାକୁ ପଡ଼ିବ । ଲୋକଙ୍କ ମନରୁ ସନ୍ଦେହ ଓ ଅବିଶ୍ୱାସ ଦୂର କରେଇବାକୁ ହେବ । ସେଥିପାଇଁ ସାଧନା ଲୋଡ଼ା । ଦୁଃଖ କଷ୍ଟ ସହିବାକୁ ପଡ଼ିବ । ତେବେ ପୁଣି ଲୋକେ କହିବେ ଅର୍ଜ୍ଜୁନ ଭଲ ମଣିଷ । ତମେ ପ୍ରଚାର ନ କଲେ ମଧ୍ୟ ସେମାନେ ବୁଝିବେ, ତମେ ନିର୍ଦ୍ଦୋଷ ଥିଲ ।

ସେତେବେଳେ ଉପାସ ରହିବି କେଉଁଠି ?

ଏଇଠି ଅର୍ଜ୍ଜୁନ ।

ଖାଇବି କ'ଣ ?

ସମସ୍ତେ ଆମେ ଯାହା ଖାଉଛୁଁ ।

ଓଡ଼ିଆ ଓ ଇଂରେଜୀ ଦୁଇ ଅକ୍ଷର ପଢ଼ିଛ ବାବୁ, ହିସାବପତ୍ର କରି ପାରିବ । ଆଉ କିଛି କାମ ମତେ ଜଣାନାହିଁ ।

ପେଟ ପୋଷିବାକୁ ଓ ସରଳ ସ୍ୱାଧୀନ ସାଧୁ ଜୀବନ କଟାଇବାକୁ ତମର ଯଥେଷ୍ଟ ବିଦ୍ୟା ଅଛି, ଦକ୍ଷତା ମଧ୍ୟ ଅଛି । ବେଶ୍, ଆଜିଠାରୁ ଏ "ଦାଗୀ-କାର୍ଯ୍ୟାଳୟ" ତମର । ଯେତିକି ଲୋକ ଏଠି କାମ କରୁଛନ୍ତି, ସମସ୍ତେ ସେମାନେ ଦାଗୀ, ସମସ୍ତେ ସେମାନେ ତମର ।

ଅର୍ଜ୍ଜୁନ ବଲବଲ କରି ଚାରିଆଡ଼କୁ ଚାହିଁଲା । ଯାହା ସେ ଆଗରୁ ଶୁଣିଥିଲା, ଆଖିରେ ତାହା ହିଁ ଦେଖିଲା । ଲମ୍ବାହଲ୍‌ରେ ସବୁ ବୟସର କେତେ ଲୋକ କାମ କରୁଛନ୍ତି । କେତେ ଜଣ ଅକ୍ଷର କେସ୍ ପାଖରେ ବସି କମ୍ପୋଜ୍ କରୁଛନ୍ତି, କେତେ ଜଣ ଇମ୍ପୋଜ୍ କରୁଛନ୍ତି । ଦୁଇ ଜଣ କାନ୍ଥ କଡ଼ରେ ବସି ପ୍ରୁଫ୍ ପଢ଼ି ସଂଶୋଧନ କରୁଛନ୍ତି । ପାଖ ଘରୁ ଛପାକଳର ଶବ୍ଦ ଶୁଭୁଛି । ହଲ୍‌ର ଗୋଟିଏ ପାଖରେ ଯେଉଁ ଟେବୁଲ୍ ଖଣ୍ଡି ପଡ଼ିଛି, ତାଆରି ପାଖରେ ଚଉକି ଉପରେ ବସିଛନ୍ତି ଧନଞ୍ଜୟ ଦାସ । ତାଙ୍କ ପାଖରେ ଲମ୍ବ ବେଞ୍ଚରେ ଆଉ ତିନି ଜଣ ଭଦ୍ରଲୋକ ବସି କ'ଣ

Digitized by PPRACHIN, SOA

କାମର ତଦାରଖ କରୁଛନ୍ତି । ଅର୍ଜୁନର ମନେ ହେଲା ସମସ୍ତେ ଯେପରି ତାକୁ ସନ୍ଦେହଭରା ଆଖିରେ ଅନାଉଛନ୍ତି ।

ଧନଞ୍ଜୟ ଚଉକି ଉପରୁ ଉଠି ଆସିଲା । ଅର୍ଜୁନର ପିଠି ଥାପଡ଼ି ହସିଲା ମୁହଁରେ କହିଲା, ଜେଲ୍ ଭିତରେ ଆମେ କ'ଣ କରୁଥିଲୁ କି ଅର୍ଜୁନ ? ମନେ ନାହିଁ ? ମାଟି ତାଡ଼ା, ମାଟି ବୁହା, ଟେଣ୍ଡାରେ ପାଣି ଉଠାଇ ବଗିଚାରେ ମଡ଼େଇବା, କାଠ ଫାଡ଼ି ବଳ ଦଉଡ଼ି କରିବା, ଲୁଗା ସତରଞ୍ଜି ସପ-ମସିଣା ବୁଣିବା—ଏମିତି କେତେ କାମ । ତମେ ତ କିଛି କିଛି ଶିଖିଥିବ ଅର୍ଜୁନ, ଅନେକ ଦିନ ଜେଲ୍‌ରେ ରହିଲ ।

ସବୁକାମ ଅଳ୍ପ ବହୁତେ ଜାଣେ ହେଲେ, କାହିଁରେ ମୁଁ ପାରଙ୍ଗମ ନୁହେଁ ।

ସବୁ କାମ ମଣିଷର ଉପକାରରେ ଲାଗେ । ଆମର ଏ ଛାପାଖାନାରେ ସେ ସବୁ କାମ ବର୍ତ୍ତମାନ ଲୋଡ଼ା ହେବ ନାହିଁ । ତମକୁ ମୂଳରୁ ଆରମ୍ଭ କରିବାକୁ ହେବ । ଆସ ଦେଖିବ କେମିତି କାମ ହେଉଛି ।

ଦାଗୀ-କାର୍ଯ୍ୟାଳୟର ଜଣେ ପ୍ରଧାନ କର୍ମୀ ଆଜି ଅର୍ଜୁନ ମହାରଥୀ । ସମସ୍ତଙ୍କର ସେ ପ୍ରିୟ । ରାତି-ଦିନ ପରି କାର୍ଯ୍ୟାଳୟ ଭିତରେ ବୁଲେ । ସବୁ କାମରେ ହାତ ଲଗାଏ ।

ପ୍ରଧାନ କାର୍ଯ୍ୟ ତାର ପ୍ୟାକିଂ । ବିଜୁଳି ପରି ହାତ ଚାଲେ । ଯେତେ ପାର୍ସଲ ବାନ୍ଧିବାକୁ ଦିଅ, ମହାରଥୀ ଘଣ୍ଟାକରେ ସବୁ ଶେଷ କରିଦିଏ । ସେ ପାର୍ସଲ କରେ, ଡାକ କିଆଣା କରେ, ବେଳ ପାଇଲେ ଦାଗୀ ପତ୍ରିକା ହକର୍ କରେ । ହିସାବପତ୍ରରେ ମଧ୍ୟ ଏକାଉଣ୍ଟେଣ୍ଟ ଦାମ ବାବୁଙ୍କୁ ସାହାଯ୍ୟ କରେ ।

ମୋର ମନେ ହେଉଛି, ଦିନେ ମୁଁ କ'ଣ ଚୋରି କରି ନେଇ ପଳେଇବି ବାବୁ ।

ତମେ ଏ ଘରସବୁ ରଖ ଅର୍ଜୁନ । ଯାହା ଇଚ୍ଛା ତାହା ନିଅ । ତମର ଧନ ଦରବ ତମେ ଚୋରି କରିବ ?

ଆଜି ଥାଉ କାଲି ନେବ ।

ସବୁ ଆଜି ନୂଆ ନୂଆ ଦିଶୁଛି ସୁବ୍ରତର ଆଖିକୁ । ସେଇ ରାସ୍ତା ସେଇ କୋଠାବାଡ଼ି, ମଣିଷ ଦଳ, ପାଟିତୁଣ୍ଡ, ସିନେମା ଗୀତ, ରିକ୍ସା ଗାଡ଼ି ମଟର, ସଭା, ଲେକ୍‌ଚର, ବେପାର ବଣିଜ, କୋଠାଟୋଳା । ଦଳ ଦଳ ହୋଇ ପୁଅ ଝିଅ ଆଗ ପରି ସ୍କୁଲ କଲେଜକୁ ଯାଉଛନ୍ତି ଆସୁଛନ୍ତି । ମହାନଦୀ ଓ କାଠଯୋଡ଼ି କୂଳରେ

Digitized by PPRACHIN, SOA

ସ୍ତ୍ରୀ-ପୁରୁଷମାନେ ସେମିତି ଆଗପରି ଟହଲୁଛନ୍ତି, ହାଓ୍ୱା ଖାଉଛନ୍ତି । ଭଙ୍ଗା ଡାନ୍ଥ, ଅଧଭୋଳା କୋଠା, ବୁଢ଼ା ଗଛଗୁଡ଼ିକ ବି ସେମିତି ଅଛନ୍ତି । କିନ୍ତୁ, ଏସବୁଗୁଡ଼ିକର ସମାବେଶ ଭିତରେ ପୁରୁଣା କଟକ ସହରର ଚିରପରିଚିତରେ ବଜ୍ରବାହୁ କଅଣ ସେପରି ନୂତନତ୍ୱ ଅନୁଭବ କରୁଛି । ଅତି ପରିଚିତ ଅତି ଆପଣାର କଟକ ସେପରି ତା' ପାଖରେ ଅପରିଚିତ ଓ ପର ହୋଇଗଲାଣି । ଅନ୍ଧାର କଟକ ଆଲୁଅ ହେଲାଣି । ଆବଡ଼ାଖାବଡ଼ା ନାଲି ରାସ୍ତାଗୁଡ଼ା କଳା ମିଚମିଚ ଚିକ୍କଣ ହେଲାଣି । ଚଉଡ଼ା ହେଲାଣି । ପାଣି ପାଇପ୍ ଗୁଡ଼ିକରୁ ଝରଣା ଝରୁଛି ।

କଟକ ସହର ଆଗେଇ ଚାଲିଛି ।

ସେଇ ପୁରୁଣା ହୋଟେଲ, ଦୋତାଲାର ଗୋଟିଏ ରୁମ୍ । ଝରକାବାଟେ ବଡ଼ ରାସ୍ତା ଦିଶୁଛି—ହିଲ୍ଲୋଳମୟ । ଜନତାର କୋଳାହଳମୟ ଦ୍ରୁତଗତି । ସୁରକ୍ଷିତ ତ୍ରିକୋଣୀପାର୍କ, ରଙ୍ଗୀନ ଆଲୁଅ, ରେଡ଼ିଓର ସ୍ୱର । ଛୋଟ ଛୋଟ ପୁଅଝିଅଙ୍କର ପାଟିତୁଣ୍ଡ ଖେଳକୌତୁକ । ବୟସ୍କ ଓ ବୟସ୍କମାନଙ୍କର ଅଳସ ଚାଲି, ଅଡ଼ୁ କାହାଣୀ, ବାଙ୍କୁଲି ହସ । କଟକରେ ପାଞ୍ଚଟା ସିନେମାଘର । ସବୁଠିରେ ସବୁ ଭାଷାରେ ହୋଇଥିବା ଚିତ୍ର ଦେଖାଯାଏ, କେବଳ ଓଡ଼ିଆକୁ ଛାଡ଼ି । ହିନ୍ଦି, ବଙ୍ଗଳା, ତେଲୁଗୁ । ବେଳେବେଳେ ଆସେ ତାମିଲ ଛବି ।

ବଜ୍ରବାହୁ ମନକୁ ମନ ହସିଲା । ଆମ ଝିଅବୋହୂ ଅଡୁଆରେ ପଡ଼ିଛନ୍ତି । ଦେଖୁଛନ୍ତି ତ ଜାତଜାତିକା ଫେସନ୍—ଲୁଗାପିନ୍ଧା, ଗହଣାଲଗା, ମୁଣ୍ଡବନ୍ଧା । ଆଖିକୁ ସବୁ ଭଲ ଦିଶୁଛି— ବମ୍ବେ, କଲିକତା, ମାନ୍ଦ୍ରାଜ ତହୁଁ ବଳି, ତହୁଁ ବଳି— ସବୁ ପ୍ରକାର ଅନୁକରଣ କରିବାକୁ ଆଗ୍ରହ ହେଉଛି । ନିଜର ଯାହା ଥିଲା, ଯାହା ଅଛି, ସେଥିରେ ପର ପିଲାର ମନ ଓଟାରିଲା ଭଳି ବୋଧହୁଏ କିଛି ନାହିଁ । ସଭ୍ୟତାର ଅର୍ଥ —ମନ ଓଟାରି ଜାଲ । କେଉଁଟା ସେ ନିଜର କରିବ ?

ସବୁ । ଆଜି ବମ୍ବେ, କାଲି ମାନ୍ଦ୍ରାଜ, ପଅରଦିନ କଲିକତା । ପୂରା ନ ହେଲେ ପଞ୍ଚାବନ ପଇସା ତ ହୋଇ ପାରିବ ? ହେତୁକରେ ଆମ ମଣିଷେ ବାନ୍ଧି ହେବେ । ନୂଆ କିଛି ଦେଖିଲେ ଓଡ଼ିଆ ଖୁସି, କୃତକୃତ୍ୟ । ଚୁଲି ଅଣ୍ଟା ଦୋହଲା, ନିତମ୍ବ ହଲା, ଅଧାପିଠି ଓ ନାଭିକମଳ ଯାକେ ପୁରା ପେଟ ଫାଙ୍କଲା କରିବା, ଗ୍ରୀବା ବଙ୍କେଇ ଭଙ୍ଗି-ମୋଡ଼ି ହୋଇ ହାତଟେକା ଭଙ୍ଗୀ, ହେଇଠୁ ମୁଣ୍ଡହଲା, ଓଠ ବଙ୍କା, ଆଖି ଟେରା, ଭ୍ରୂଲତା ଟେକା, ବେଣୀ ଦୋହଲା—ଭଲ ଭଲକା, ଭଲ ଭଲକା ବମ୍ବେ, କଲିକତା, ମାଡ୍ରାସ —

ସବୁ ଭଲ । ଓଡ଼ିଆ ଝିଅ ସବୁ ଶିଖିବାକୁ ଚାହେଁ । ମେଦିନାପୁର, କଟକ, ପୁରୀ, ବ୍ରହ୍ମପୁର, ଜୟପୁର, ଜଗଦଲପୁର । ପୁଣି ରାମ୍ପୁର, ସମ୍ବଲପୁର, ଚକ୍ରଧରପୁର, ଖଡ଼ଗପୁର । ଯିଏ ଯେଉଁଠି ଅଛନ୍ତି ଆମର ମା ଝିଅ ଭଉଣୀମାନେ । ନିଜର ଦୃଷ୍ଟି ଖାଙ୍ଗି ପଡ଼ୁଛି— ଜଣେ ଦିଶୁଛି ଆଉ ଜଣଙ୍କ ଆଖିକୁ ଫମ୍ପୁଡ ପରି ।

Digitized by PPRACHIN, SOA

ଦେହ ଓ ଦେହର ପ୍ରୟୋଜନୀୟତା ମନ୍ଦିର ଓ ପର୍ବତ ଗାତ୍ରରେ ଥୋଇ ଯାଇଛନ୍ତି ନିପୁଣ ଶିଳ୍ପୀବୃନ୍ଦ । ତାରୁଣ୍ୟର ଛନ୍ଦ । ଆଦମ୍ଯ ଓ ଶେଷ — । ଅଶ୍ଳୀଳତାର ଶେଷ ସୀମା ସେମାନେ ଦେଖାଇ ଯାଇଛନ୍ତି । ମଣିଷ ଓ ପଥର ଏକତ୍ର । ଦେହଟା ଏଇଆ । ସମସ୍ତେ ତମେ ଜାଣିଛ । ନ ଦେଖିଥିଲେ ଦେଖିଯାଅ । ନ ଜାଣିଥିଲେ ଜାଣିଯାଅ । ସେତିକି । ଗ୍ରାମବଧୂ — ମୁଣ୍ଡରେ ଓଢ଼ଣା ଦେହରେ ହାତବୁଣା ଶାଢ଼ୀ — ଦଶିବ ପାଦ ଦଉଛି, ହାତ ଦ'ଉଛି । ପରପୁରୁଷର ଦୃଷ୍ଟି ଓଟାରିବ ନାହିଁ । କାହାର ଉତ୍ତେଜନା ଆସିବ ନାହିଁ ।

ପ୍ରଗତି କି ଦୁର୍ଗତିର ବନ୍ୟା ଛୁଟିଛି । ରୋକ ହେବ ନାହିଁ । ସେ ମାନବ ନାହିଁ କାରଣ । ଭୂମି ଗ୍ରାସିଛନ୍ତି ସମସ୍ତେ । ଦୃଷ୍ଟିନନ୍ଦନ ପଡ଼ିଛି କେବଳ ଓଡ଼ିଆ ଝିଅ, ସହରର ଝିଅ — ତାଙ୍କ ଆଢ଼ର, ନା, ଆହୁରି ବେଗେ ଆଢ଼ର ସୁଅ ମିଶିଛି ଏଇଠି — ବମ୍ବେ, କଲିକତା, ମାନ୍ଦ୍ରାଜ, ଲଣ୍ଡନ । ମୁଣ୍ଡ ବୁଲି ଯାଉଛି । ସବୁ ତ ଭଲ, ସବୁ ତ ସୁନ୍ଦର । ଜାନୀ ଗ୍ରାଇର ମୁହଁରେ ଚାଳୀ ଜାନୀ ଗାଈ ଦୁଧ ଦେଉ ନାହିଁ । ଅଷ୍ଟ୍ରେଲିଆ ଓ ଆମେରିକାର ଦୁଧଗୁଣ୍ଡ ଭଲ — ଶସ୍ତା ଓ ସୁବିଧା । ଅନ୍ନପୂର୍ଣ୍ଣା ନିଜେ ଉପବାସୀ । ଅନ୍ନ ଲୋଡ଼ା ନାହିଁ । ଗୁ-ଗନ୍ଧମ ଗୁ । ଶସ୍ତା, ସୁନ୍ଦର ଓ ସୁବିଧା -- ପେଟ ରେ ପଡ଼ିଲେ ଭୋକ ମରେ ।

ବନ୍ଧୁବାନ୍ଧୁ ତାଙ୍କୁ ଓହ୍ଲାଇଲ । ସେ ଅଳ୍ପ ନୂଆ ମଣିଷ ହୋଇ ଫେରି ଆସିଛି । ଦିନେ ସେ ଧନୀ କ୍ଷମତାଶାଳୀ ଜମିଦାରର ପୁଅ ଥିଲା, ଘିଅରେ ଖାଇ ଦୁଧରେ ହାତ ଧୋଉଥିଲା । ବୋଲ କରିବାକୁ ଆଗରେ ପଛରେ ଦାସଦାସୀ ଗୋଡ଼ାଉଥିଲେ. ଏସବୁ ସେ ମନେ ପକାଇବାକୁ କୁଣ୍ଠା ଅନୁଭବ କରୁଛି । ପାଠ ପଢ଼ିଲେ ଗ୍ରୀକର କରି ପେଟ ପୋଷିବାକୁ ହେବ, କିମ୍ବା ପାଠ ପଢ଼ି ବ୍ୟବସାୟ କରିବାକୁ ହେଲେ କେବଳ ଓକିଲତି କରିବାକୁ ହେବ । ଏ ଧାରଣା ତା' ମନରୁ କେବେଠୁ ଦୂର ହେଲାଣି । ଦୈହିକ ପରିଶ୍ରମ କଲେ ସମ୍ମାନହାନି ହୁଏ ନାହିଁ, ସମ୍ମାନ ବଢ଼େ, ଏ କଥା ତ ବନ୍ଧୁବର୍ଷ ତଳେ ତା'ର ଯାନଘର ରହିବାରେ ଶିଖେଇ ଦେଇଥିଲା ।

ବନ୍ଧୁବାନ୍ଧୁ ଗ୍ରାମୁଛି କଟକର ଦାଣ୍ଡେ ଦାଣ୍ଡେ । ଜନତାର ସୁଅରେ ସେ ମିଶି ଯାଇଛି । ସମସ୍ତେ ଗୋଡ଼ ହାତ ଥିଲା ଏକା ମଣିଷ, ଭଲ ଭଲିକା ପୋଷାକ, ଲୁଗା, ଜାମାର ଆଭରଣ । ସ୍ୱତନ୍ତ୍ରତା ମନ ଭିତରେ । କିଏ ଯେ କୌଣସି ଉପାୟରେ ଧନ ଉପାର୍ଜନ କରିବାକୁ ଚେଷ୍ଟା କରୁଛି — ଜାଲ ପାତୁଛି । କିଏ ସ୍ୱଳ୍ପଧନ ଗୁଣ କୀର୍ତ୍ତନ କରୁଛି । କିଏ ଆସିଛି ଧନ ବ୍ୟୟ କରିବାକୁ — ସନ୍ତୋଷରେ ମନଖୁସିରେ ଅଥବା କୌଣସି କାରଣରୁ ବାଧ୍ୟ ହୋଇ । କିଏ କେବଳ ଦେଖଣାହାରୀ, ତାଆର ପର ।

Digitized by PPRACHIN, SOA

ହର ମଙ୍ଗରାଜ । ବୋଢ଼ିଏ ବର୍ଷ ତଳେ ପେନ୍‌ସନ ନେଇଥିଲେ । ସେଇ ଦିନରୁ ସନ୍ଧ୍ୟା ହେଲେ ସେ ହୁଅନ୍ତି ପଦଯାତ୍ରୀ । କେଉଁଠି ଦୋକାନରେ ମୁହଁ ମାରନ୍ତି । କେଉଁଠି କେଉଁଠି ଟିକିଏ ବସି ପଢ଼ନ୍ତି ଖବର କାଗଜ ଓଲଟାନ୍ତି । କହନ୍ତି, ଶୁଣନ୍ତି, ପୁଣି ଓହ୍ଲାନ୍ତି ରାସ୍ତା ଉପରକୁ । ପୁରୁଣା ସାଙ୍ଗମାନେ ସେପୁରକୁ ଖସି ପଳାଉଛନ୍ତି ଗୋଟି ଗୋଟି ହୋଇ । ନୂଆ ସାଙ୍ଗ ସେ କରୁଛନ୍ତି । ଭାବୁଛନ୍ତି, ଏହିପରି ଯାବତଚନ୍ଦ୍ରାର୍କେ ଚାଲିଥିବ ।

ଚାଲି ଯାଉଛନ୍ତି । ନଇଁ ପଡ଼ିଲେଣି । ବେଳ ବୋଧହୁଏ ପାଖେଇ ଆସିଲା । ପଦେ ଅଧେ କଥାଭାଷା ହେଲେ ମନ୍ଦ ହେବନାହିଁ ।

ନମସ୍କାର ଅଜା !

ମଙ୍ଗରାଜେ ମୁଣ୍ଡ ଟେକିଲେ । ପାକୁଆ ପାଟିରେ ହସ । ସମସ୍ତଙ୍କୁ ସେ ଚିହ୍ନନ୍ତି ବୋଲି ତାଙ୍କର ଧାରଣା । ଖାଲି ନାଁ ଗାଁ ମନେ ରହେ ନାହିଁ । ଖୁସିଡାଏ ହୋଇ ବଜ୍ରବାହୁର ହାତ ଧରି କହିଲେ, ଆରେ ତୁଇ ନାତି, କହିଲୁ ଆ, କହିଲୁ ଆ,—

ବଜ୍ରବାହୁ କଚେଇ ଆସିଲା ।

କ'ଣଟି ତୋ'ର ନାମ ? ଭୁଲିଗଲିଣି—

ମୋ ନା ସୁବ୍ରତ ବଜ୍ରବାହୁ । ଆମ ଘର ରଣଗଡ଼—

ଏଁ ରଣଗଡ଼ ? ରହ ରହ, ମନେ ପକାଏଁ— ।

ରଣସିଂହଙ୍କର ପୁଅ ମୁଁ ।

ହଁ, ମନେ ପଡ଼ିଲା ଏଥର । ଭେଟେ ପ୍ରାୟ ହେଲା ଦେଖା ହୋଇ ନାହିଁ ରଣ-ସିଂହଙ୍କ ସଙ୍ଗରେ । କାଲି ପରି ଲାଗୁଛି ରଣସିଂହଙ୍କର ବାହାଘର । ରଣଗଡ଼ର ଜମିଦାର ପୁଅ ବାହା ହେଉଛନ୍ତି ବନ୍ତମାଟିର ଜମିଦାର କନ୍ୟାଙ୍କୁ । ସେତେବେଳେ ବାବୁ କଟକ ସହର ଅନ୍ଧାର ଥିଲା । ଆଉ, ଯେତେବେଳେ ରଣଗଡ଼ର ଜମିଦାର ପୁଅବୋହୂ ନେଇ କଟକ ସହରରେ ପହଞ୍ଚିଲେ, ଦିଶିଲା ଆଲୋକମୟ । ବାଣ, ରୋଷଣି, ଅଘୋର ଦୁଆର ଝିଅପିଆ—ସେକାଳର ଲୋକେ ଯେଉଁମାନେ ଦେଖିଛନ୍ତି ଭୁଲି ପାର ନାହାନ୍ତି । କ୍ଷତ୍ରିୟ ଜାତିର ସମ୍ମାନ ରକ୍ଷା କରିଥିଲା ରଣଗଡ଼ । ସେଇ ବଂଶର ପିଲା ତେମେ, ବାଃ— । ବାପା ମା ଅଛନ୍ତି କିପରି ?

ଜାଣେ ନାହିଁ । ବହୁବର୍ଷ ହେଲା ପଦାରେ ଥିଲି ।

ହଁ, ଜମିଦାରୀ ତ ଗଲା । ତା ସଙ୍ଗେ ସଙ୍ଗେ ଭେଟେ ଘରୁଆ ଘର ଭାଙ୍ଗି ପଡ଼ିଲା । ପଦାରେ ବୁଲି ଚାର ପଇସା ଉପାୟ ନ କଲେ ଘର ଚଳିବ କିପରି ? ବହୁ ଚାକର ଖଣ୍ଡେ କରିଚ ନା ।

Digitized by PPRACHIN, SOA

କରନ୍ତୁ ଅଜା— ।

ଚାଃ, ଭଲ କଲ । ବୃଦ୍ଧଙ୍କର ସମ୍ମାନ ରଖ । କାଳର ମହତ୍ତ୍ୱ ରଖ । ଦୁନିଆ ତ ବଦଳି ବଦଳି ଯାଉଚି । ପ୍ରତିଦିନ ମୁଁ ସେଇଆ ଦେଖି ଦେଖି ଆସୁଚି ।

ପସନ୍ଦ କରୁ ନା ଅଜା ? ତମକୁ ଏ ପରିବର୍ତ୍ତନ ଭଲ ଲାଗୁ ନାହିଁ ? ସତ କହ । ତମ ମୁହଁରୁ ସେଇଆ ଶୁଣିବ ବୋଲି ମୁଁ ଅଟକେଇ ରଖିଲି ।

ଆରେ ନାତି, ତମର ପସନ୍ଦ କି ଅପସନ୍ଦକୁ କିଏ ଅନେଇ ବସିଚି ? ତମୁକୁ ଭଲ ଲାଗୁଚି କି ମନ୍ଦ ଲାଗୁଚି ସେ କଥା କିଏ କାହିଁକି ପଚାରିବ ? ସମୟର ସୁଅ ସମସ୍ତଙ୍କୁ ଟାଣି ନେଉଚି । ବାଧା ମାନୁ ନାହିଁ । ସମସ୍ତେ ଆମେ ଆଗେଇ ଚାଲିଛୁ । ଆଜି ନୁହେଁ ରେ ନାତି, କେବଳ ସେ କଥା କେହି କହି ପାରିବେ ନାହିଁ । ଏହା ହିଁ ମୋ'ର ଅନୁମାନ । ଶୁଣ ବଜ୍ରବାହୁ, ଯେତେବେଳେ ମୁଁ ସାତ ବର୍ଷର ପିଲାଟିଏ ହୋଇଥିଲି, ଆମର ପଣ ଅଜା ଅଶୀ ବର୍ଷର ବୁଢ଼ା । ମୁଁ ତାଙ୍କର ସବୁ ସାନ ନାତି । କୋଳରେ ପୁରେଇ ଶୁଅନ୍ତି, ଗପ କହନ୍ତି । ତାଙ୍କ ପିଲାଦିନର କଥାଟିଏ ସେ କହୁଥିଲେ । ପିଲା ସାଥିରେ ଦିନେ ସେ ବାଡ଼ଘେର ସାହି ଭିତରେ ପଶିଗଲେ । ସେତିକିରେ ଜାତି ଚାଲିଗଲା । ଦଶ ବର୍ଷର ପିଲା ସେ । ପୂଜା-ପଦ୍ଧତି ଜାତିଆଣରେ ସେ ଅମଳରେ ତିନିଶ ଟଙ୍କା ଖର୍ଚ୍ଚ । ଜମି ବିକା ହେଲା । କାହିଁକି କହିଲେ କି, ମୁଁ ଜଣେ ଅଛୁଆଁ ପିଲାକୁ ଛୁଇଁଲି । ଗ୍ରେଟ ଲୁଗା ଖଣ୍ଡେ ପିନ୍ଧିଥିଲି । ଜାନି ବାଜିଲା । ମୁଁ ଯାଇଁ ଛୁଇଁଦେଲି ବୋଉକୁ । ମୁଁ ଛୁଆଁ ତା ହୋଇଚି ବୋଲି ତ ଜାଣେ ନାହିଁ । କିଏ ଗୁଡ଼ିଆ ଆସି, କହିଲା ସାନବାବୁଙ୍କ ଜାନି ବାଜିଛି ପାଞ୍ଚ ବର୍ଷର ଲଙ୍ଗଳା ପାଣ ପିଲା ଧୂଆଁରେ । ବୋଉ ସେତେବେଳକୁ କେତେ ଜଣକୁ ଛୁଇଁ ସାରିଲାଣି, ଶେଷରେ ପଶି ଘର ଗାଳିଲାଣି ।

ବଡ଼ ମଜାର କଥା ଅଜା ।

ମଜାଟା ବାହାରିଲା ଯେ ଆମର । ଦ'ଘ୍ୱର ବଧା ଖାଇ ମୋର ପ୍ରାୟଶ୍ଚିତ୍ତ ସରିଲା । ଗୁହ୍ମମୂତ୍ର-ଯାଗ ଗାଧୋଇଲେ । ହାଣ୍ଡି ବଦଳା ହେଲା । ଘର ସବୁ ଲିପାପୋଛା ହେଲା । ବ୍ରାହ୍ମଣ ଆସିଲେ ।

ଆଉ ଏବେ ?

ପୁଅ ଆମର ଛୁଆଁ ଛୁତ ହଟେଇ ଦେଲେ । ନାତି ରଖିଛନ୍ତି ପୁଝାରୀ କରି ଜଣେ ଛତରଖିଆ ଟୋକାକୁ—ଯାହାର ଗ୍ରାଇ ପଡ଼ିଲେ ଆଗେ ଜାତି ଯାଉଥିଲା । ନାତୁଣୀବୋହୂ ବି ତା ହାତରେ ଖାଇଲେଣି ।

ଆପଣ ତ ନରକରେ ପଡ଼ିବେ ?

ମୋର ଛପନ ପୁରୁଷ ସେଇଠି ଥିବେ, ମନେ କଲେ । ପ୍ରତି ପୁରୁଷରେ ବାଳୁଙ୍ଗା ନାତି ଟୋକାଏ ଅବଶ୍ୟ ଏମିତି କିଛି ନୂଆ ଅନ୍ୟାୟ ଅନୀତି କରିଥିବେ । ଆମ ନାତିଙ୍କ ନାତି ବି କରିବେ । ଏମିତି ଚାଲିଥିବ । ତେଣୁ, ଭଲ କେଉଁଟା ମନ୍ଦ

Digitized by PPRACHIN, SOA

କେଉଁଠା କଣ କହିବ ? ସ୍ମୃତି ମାତ୍ର ରହିଛି । ବାବୁ, ସେ ଯାହା କହୁଁଛି ତାହା ଠି ହେଉଛି । କିଏ ଅଟକାଇ ପାରିବ ?

ବଙ୍କୁବାବୁ ସ୍ଥାନ-କାଳ-ପାତ୍ର ଭୁଲି ବୁଢ଼ା ଅଳାକୁ କୁଣ୍ଢାଇ ଧରିଲେ ।

ସକାଳ ନଅଟା । ପାଗ ଅଳ୍ପ ମେଘୁଆ । ଝିପିଝିପି ବର୍ଷା ବନ୍ଦ ହେଲାଣି । ପୁଣି କୁଆଡ଼େ ଯିବାକୁ ସୁବ୍ରତର ମନ ଛଟପଟ ହେଉଛି । ହୋଟେଲର ସେଇ ଗୋଟିଏ ରୁମ୍‌ରେ ସ୍ୱେଚ୍ଛି ତିନି ଦିନ ସେ ରହିଲେଣି । ତିନି ଦିନରେ କଟକ ସହରର ଏପାଖରୁ ସେପାଖ କନ୍ଦି-କନ୍ଦରେ ଥରେ ସେ ଦେଖି ଆସିଲେଣି । ପୁରୁଣା କଟକ ସେମିତି ଅଛି । ନୂଆ କଟକ ଦୁଇ ଆଡ଼େ ଲମ୍ବି ଲମ୍ବି ଯାଉଛି । ଲୋକସଂଖ୍ୟା ବଢ଼ି ବଢ଼ି ଚାଲିଛି । ଗାଁ ଲୋକେ ଗାଁର ସମ୍ପତ୍ତି ଛାଡ଼ି କଟକରେ ଘର କରି ରହିବାକୁ ମନ କରୁଛନ୍ତି । ଯାହାର ଅଛି ସେ ଚାଲି ଆସୁଛି ସହରକୁ । ଏଠି ସବୁ ସୁବିଧା, ସବୁ ଭଲ । ଟଙ୍କା ଥିଲେ ହେଲା ।

ଗ୍ରାମର ଶିଳ୍ପ ତୁଟିଛି ।

ସୁବ୍ରତ ଖଟ ଉପରୁ ଉଠି ଚଉକିରେ ବସିଲେ । ଅନ୍ୟମନସ୍କ ହୋଇ ସେଦିନର ଖବର କାଗଜଟି ଓଲଟାଇବାକୁ ଲାଗିଲେ । ମନରେ ଅନ୍ୟ ଭାବନା ଖେଳୁଛି— ବହୁ ବର୍ଷ ପରେ କଟକ ସହରକୁ ଫେରିଆସି ସେ ତାର ବନ୍ଧୁମାନଙ୍କୁ ଦେଖା କରି ନାହିଁ । ପ୍ରୟୋଜନ ମଣିନାହିଁ । ଯେଉଁମାନେ ଦିନେ ତା'ର ସହପାଠୀ ଥିଲେ କେବଳ ସେହିମାନେ ତ ବନ୍ଧୁ ନୁହନ୍ତି, କର୍ମକ୍ଷେତ୍ରରେ ଯେଉଁମାନଙ୍କ ସମ୍ପର୍କରେ ସେ ଆସିଛି ସେମାନେ ମଧ୍ୟ ତା'ର ବନ୍ଧୁ ।

ବନ୍ଧୁ ରତ୍ନାକର ଆଇ ଏ. ଏସ୍ —ସ୍ୱକୀୟ ଜୀବନରେ ପଦୋନ୍ନତି ପାଇଁ ଅଥବା ଦେଶ ଓ ଦଶର ଉପକାର ପାଇଁ କେଉଁଠି ଆପ୍ରାଣ ପରିଶ୍ରମ କରୁଥିବ ।

ଅରବିନ୍ଦ ଆଶ୍ରମ ବାଟେ ସେ ଚାଲି ଯାଇଥିଲେ । ଦୋ'ତାଲା ଘର ନୂଆ ତୋଳା ହୋଇଛି । ଚକ୍ ଚକ୍ ଦେଖାଯାଉଛି । ବଙ୍କୁବାବୁର ଆଗ୍ରହ ହେଉଥିଲା, ବନ୍ଦ ଫାଟକର ଚକି-କବାଟ ବାଟେ ଯାଇ ଥରେ ଅରବିନ୍ଦକୁ ସଖୋଜି ଆସିବ । ମନ ମନା କରି ଉଠିଲା । ଆହା. ବିଚରାଟି ଭଲରେ ଅଛି ।

ଅରବିନ୍ଦ ଜଣେ କାନ୍ତ୍ରାକ୍ଟି—ଆଜି ରାସ୍ତା କାମ ତ କାଲି ନାଳକାମ । ସେଇଠୁ କୋଠାକାମ, ପୋଲକାମ— । ଅରବିନ୍ଦ ଐତିହାସିକ ହୋଇଥିଲା । ତା' ପରେ ଭୂଗୋଳ ଚର୍ଚ୍ଚା କରି ଲୋକଙ୍କୁ ବୁଝାଇଥିବ—ଲଙ୍କା ଦେଶର ଅନୁରାଧା-ପୁରରେ ରାଧା ଜନ୍ମଗ୍ରହଣ କରିଥିଲେ । ଆଉ ଶ୍ୟାମ ଦେଶରେ ବଂଶୀଧାରୀ ଶ୍ୟାମ ।

Digitized by PPRACHIN, SOA

ଚନ୍ଦ୍ରସେଣାଙ୍କ ଘର ଅବଶ୍ୟ ବଙ୍ଗଦେଶରେ, କାରଣ ରାଜା ଲକ୍ଷ୍ମଣସେଣ ତାଙ୍କର ବଂଶଧର ହୋଇଥିବେ ।

ଅରବିନ୍ଦ ପ୍ରକୃତାର୍ଥ୍ରେ କ ବ ହୋଇଥିବେ । ଲେକ୍‌ଚର ଦେଇଥିବେ—ଶୁଣ ଭାଇମାନେ, ରୁଷ ଦେଶରୁ ଯେଉଁମାନେ ଆର୍ଯ୍ୟଦଳ ଘେନ ଭଲଗା ନଦୀର କୂଳେ କୂଳେ ଦକ୍ଷିଣକୁ ଆସିଥିଲେ ସେମାନଙ୍କୁ ଋଷି କୁହା ଯାଉଥିଲା । କାଶ୍ୟପ ଋଷିଙ୍କର ଆଶ୍ରମ କାଶ୍ୟପ ହ୍ରଦ କୂଳରେ ଥିଲା । ଦାନ୍ୟୁବ୍ ନଦୀ କୂଳର ବାସୀନ୍ଦାଙ୍କୁ ଦାନବ ବୋଲି କୁହାଯାଉଥିଲା । ଯକ୍ଷମାନେ ଜେକ୍—ଚେକୋସ୍ଲୋଭାକିଆର ଲୋକ । ଅତ୍ରି ଋଷିଙ୍କ ଅନୁଚରମାନେ ଆଧୁନିକ ଅଷ୍ଟ୍ରିଆରେ ବସତି ସ୍ଥାପନ କରିଥିଲେ ।

ପୁଲହଙ୍କର ଅନୁଗାମୀମାନେ ରହିଲେ ପୋଲଣ୍ଡରେ । ପୌଲସ୍ତ୍ୟଙ୍କର ଘର ଯେପରି ପ୍ୟାଲେଷ୍ଟାଇନ୍‌ରେ । ପରାଶରଙ୍କ ଘର ଅବଶ୍ୟ ପାରସ୍ୟ ଦେଶରେ ।

ଅରବିନ୍ଦ ରାଜନୀତିକୁ ବେପାର କରୁଛି । କେତେ ତ ସେପରି କରୁଛନ୍ତି । ଆହା, ବସ୍ତ୍ର ନେଇ ଆଣି ଥୋଇ ପାରୁଛି ବୋଲି ଭଲ ଘର ଝିଅଟ୍ରେ ତୋଳିଲାଣି । ରାଜନୀତି ଓ ଅର୍ଥନୀତିକୁ ବୁଦ୍ଧିକୁ ସାଥୀ କରି ସେ ଆଗେଇ ଚାଲିଛି— ।

ବନ୍ଧୁ ସେ ସୁଖରେ ।

ଚକ୍ରଧର କଥା ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼ୁଛି । ହୋଟେଲରେ ମଧ୍ୟ ତାଆରି ଚର୍ଚ୍ଚା । ଭଦ୍ରବୀର ବାହାଘରରେ ସେ ଲୁଆଡ଼େ ଏକଷଠି ହଜାର ନଅଶ ଛପନ ଟଙ୍କା ଏକାବନ ପଇସା ଖରଚ କରିଥିଲା । ଭଟେଣ୍ଟି ବନ୍ଦୋବସ୍ତ କରିଥିଲା ଡ଼ାକ୍ତର । ସାତ ଦିନ ଯାଏ ଖିଆପିଆ ଚାଲି କଥା ଚାଲିଥିଲା । ଖାଇପିଇ ଲୋକଙ୍କୁ ଅଜୀର୍ଣ୍ଣ ଧରିଲା । ଧନ ବି ତାକୁ ଅଜୀର୍ଣ୍ଣ ଧରିଛି । ଅତି କଷ୍ଟ ହେଲେ ବି ଆସୁକରି ବଟିକା ଗିଳିବାକୁ ପଡ଼ୁଛି, ନୋହିଲେ ପେଟ ଫାଟି ଯାନ୍ତା । ରକ୍ତଚାପ ଆକ୍ରମଣ କଲାଣି । ଧନ ତ ଆସୁଛି ଆସିବ । ଖରଚ ହେବ କିପରି ? ଦରିଦ୍ରଙ୍କୁ ବିତରଣ କରିବା କି କେଉଁ ଅନୁଷ୍ଠାନକୁ ଦାନ କରିବା ପ୍ରସ୍ତାବକୁ ଗ୍ରହଣ କରିବା ତ ଦୂରର କଥା, କାନରେ ପକାଇବାକୁ ସେ ପାପ ବୋଲି ମଣେ । ଦାନ କରିବା ତ ସହଜ କଥା । ଦିନ ଦୁଇଟାରେ ଶେଷ । ସଞ୍ଚୟ କରିବା ଯେ କେତେ କଷ୍ଟ, ଯିଏ ସଞ୍ଚୟ କରେ ସେଇ ଏକା ଜାଣେ ।

ଚକ୍ରଧର ସବୁ ପାର୍ଟିର ପୃଷ୍ଠପୋଷକ । ତେବେ ଅକାତରେ ସେ କେବଳ ସେଇ ପାର୍ଟିକୁ ଭିତରିଆ ଅର୍ଥ ସାହାଯ୍ୟ କରେ, ଯେଉଁ ପାର୍ଟି କ୍ଷମତାକୁ ଆସିବ ବୋଲି ସେ ବିଶ୍ବାସ କରେ । ପ୍ରାର୍ଥୀଟିଏ ହୋଇ ପଡ଼ିବ ବୋଲି ସେ ଧାଁ ଧପଡ଼ କରୁଥିଲା । ତେବେ କେଉଁ ପାର୍ଟିର ଟିକେଟ ନେଲେ ବିଜୟ ସୁନିଶ୍ଚିତ ସେଇ କଥାର ସମାଧାନ ସେ କରି ପାରିଲା ନାହିଁ ବୋଲି ଅପସରି ରହିଲା । ଫଳ ବାହାରିଲା । ପରେ ସେ ଅଡ୍‌କା ହୋଇ ବସିପଡ଼ିଲା । କମ୍ରେଡ ଧନକୁବେର ଗୋଟିଏ ପାର୍ଟିର ଟିକେଟ ନେଇ ଦକ୍ଷିଣିରେ ଲଢ଼ୁଥିଲେ । ସେ ମୁହଁ ଶୁଖେଇ ଲାଙ୍ଗୁଡ଼ ଯାକି ଛୁ । ବଳୀର

Digitized by PPRACHIN, SOA

ଧନକୁବେର ଉତ୍ସବରେ ଲଢ଼ୁଥିଲେ ଆଉ ଗୋଟିଏ ପାର୍ଟିର ଟିକେଟ ନେଇ । ସେ ବି ହସିଲେ—ହସି ହସିକା । ଆଉ ମଧ୍ୟ-ଖଣ୍ଡରେ ଧନୀଦେବାସ୍ତ ଲଢ଼ୁଥିଲେ ବେପରୱା ହୋଇ । ଲଢ଼ୁ ନ ଥିଲେ ତ ଖେଳୁଥିଲେ । ହାରିଗଲେ ସିନା, ଲୋକେ ତାଙ୍କୁ କାନ୍ଦିବାର ଦେଖି ନାହାନ୍ତି କି ହସିବାର ଦେଖି ନାହାନ୍ତି ।

ଲୋକଙ୍କୁ ଯେତେ ନିର୍ବୋଧ ବୋଲି ମଣିଲେ ସେଇ ଧନତନ୍ତ୍ରରେ ଗର୍ବିତ-ମାନେ, ଅପମାନିତ ହୋଇ ଟିକେ ବୁଝିଲେ ଧନ ଟିକେଟ ଆଶୀର୍ବାଦରେ କଳୁ ନିର୍ବାଚନରେ ଭୋଟ ଆଣି ପାରିବ ନାହିଁ । ଦେଶର ନାଗରିକ ଯେତେ ଦରିଦ୍ର ହେଲେ ବି ଅପାଠୁଆ ହେଲେ ବି ନିଜର ଦାୟିତ୍ୱ ବେଶ ବୁଝିଲେଣି । ଚନ୍ଦଧର ବୁଝିଛି—ନ୍ୟାୟ ପ୍ରଗତ ସ୍ୱାଧୀନ ମଣିଷକୁ ଠକି ହେବ ନାହିଁ । ବିନା ଖର୍ଚ୍ଚ ଓ ବିନା କ୍ଲେଶରେ ସେ ହାରିଛି ବୋଲି ଚନ୍ଦଧର ଗ୍ରହଣ କରିନେଲା—ରକ୍ଷା ପାଇଗଲା ବୋଲି କଟକରେ ଯେତେ ଦେବଦେବୀ ଓ ପୀର ଫକୀରଙ୍କର ସମାଧି ଅଛି, ସବୁଠି ଭୋଗରାଗ କରି ଅଲେଇ ବହୁତେ ବାଳଗୋପାଳଙ୍କୁ ବଣ୍ଟନ କଲା । କହି ପକାଇଲା ସାଙ୍ଗମାନଙ୍କୁ—ଭୂତ ଧରୁ ଧରୁ ଅଳକେ ଖସି ଆସି ବଞ୍ଚିଗଲି ରେ ବାପୁ, ତମ କଥାରେ ପଡ଼ି ଧରିଥିଲେ ଉନ-ଷଠି ବସି ଅଖା ଧୋଉଥାନ୍ତି ତ । ଆରେ ହେ, ଲୋକେ ପାଖରୁ ହେଲେଣି, ସମସ୍ତେ ଜଣେ ଜଣେ ଗୁଣିଆଁ— ।

ହସି ହସି ନସ୍ଥାନ୍ତ ହେଉଥିଲେ ସାଂଗିଆ ଦଳ । ସୁବ୍ରତ ବି ହସିଥିଲା । ଭାବୁଥିଲା—ଜନ୍ତୁଗ୍ରୂପ ଥାଉ କି ନ ଥାଉ ବନ୍ଧୁ ଚନ୍ଦଧର ନିର୍ବୋଧ ନୁହେଁ । ଆଜିର ଧନ ସେ ଅର୍ଜନ କରୁ: ଲକ୍ଷେରେ ଗୋଟିଏ ହୋଇଛି । କୋଟିକରେ ଗୋଟିଏ ହେଉ— ।

ସୁବ୍ରତ ଆଗେଇ ଚାଲିଛି । ହଁ, ଏଇ ଗଳି ତ, ମୋଡ଼ ବୁଲିଗଲେ ଆହୁତିର ଘର । ଆଲୁଅ ଖମ୍ବ ପାଖରେ ସୁବ୍ରତ ଅଟକିଗଲା । ଅଜାଣତରେ ଗୋଡ଼ ଦୁଇଟା ପୁଣି ତାକୁ ଠେଲି ଆଣିଛି ଏଇ ଗଳିକୁ । ପୁଣି ସେ ପିଲା । ସୁଜନ ଜେଠା ପ୍ରଶ୍ନ କରିବେ, କିଏ ତୁମେ ବାବା ?

ମୁଁ ନଳରାଜ ।

ଭଲ ନାମଟିଏ ତ । କାହାକୁ ଖୋଜୁଛ ?

ଦମୟନ୍ତୀ ଦେବୀଙ୍କୁ ।

ତାଙ୍କ ଘର ଏ ନୁହେଁ । ଆଗରେ ବୁଝ ।

ସତେ ଦମୟନ୍ତୀର ଘର ଏ ନୁହେଁ । ଏ ଘର ଆହୁତିର । ସେ ଦିନେ ତା'ର ବନ୍ଧୁ ଥିଲା । ରୂପ, ବୁଦ୍ଧି, ବିଦ୍ୟା, ଖେଳ ଓ ସ୍କେଟିଂରେ ସମସ୍ତଙ୍କୁ ଟପିଯାଇଥିଲା । ଛାତ୍ରଜୀବନର ସାଥୀ—ଅବିନାଶ ଅରବିନ୍ଦ, ଚନ୍ଦ୍ରଧର ଓ ଧନଞ୍ଜୟ ପଢ଼ୁ । ଅବିକଳ

Digitized by PPRACHIN, SOA

ଅନନ୍ତ, ଆଉସାକ୍ ଓ ଇଉସୁଫ୍ ପରି । ତାହାର ଘରକୁ ସେ ଶଙ୍ଖଲିବାକୁ ଧାଇଁଯାଇ ନାହିଁ । ଆହୁତ ଘରକୁ ଧାଇଁ ଆସିଛୁ କ ହିକ ? କେଉଁ ସାହସରେ କାଲି ଯାଇ ସେ ସୁରତ ଆଗରେ ଠିଆ ହୋଇ କହିପାରିବ, ଆରେ, ମୁଁ ତୋ'ର ବଡ଼ଭାଇ, ଗ୍ରାମ ସେବକ ସଙ୍ଘର କର୍ମୀ ହେବାର ଦକ୍ଷତା ଘେନ ମୁଁ ଫେରିଆସିଛୁ ।

ସତ ଭାଇ ? ପରୀକ୍ଷା ଦେବ ?

ପରୀକ୍ଷା ? ଆରେ ସୁରତ, ଏଇ ଦୁଇ ବାହୁରେ ଅମାପ ଶକ୍ତି ସଞ୍ଚୟ କରି ଫେରିଆସିଛୁ । ମୋ ସଙ୍ଗେ ତୁ ଆଉ କୋଡ଼, ଟାଙ୍ଗିଆ, କୁରାଢ଼ୀ ଧରି ପାରିବୁ ନାହିଁ । ତେଣ୍ଟା, ନଙ୍ଗଳ, ଦାଆ - ଗଛଚଢ଼ା, ପାଣି ପହଁରା, ସେବା, ସଂଗଠନ, ଯୋଜନା ପାରିବୁ ନାହିଁ ରେ ପାରିବୁ ନାହିଁ । ଜାତି, ଧର୍ମ ଓ କର୍ମର ଭେଦ ମୁଁ ଭୁଲିଛୁ ଚିରଦିନ ପାଇଁ । ସବୁ ଜାତି, ସବୁ ଧର୍ମ, ସବୁ କର୍ମ ମୋ' ପାଖରେ ସମାନ । ସବୁ ବଡ଼ ସମସ୍ତେ ବଡ଼ ।

ସୁରତର ମୁଣ୍ଡ ନଇଁ ଆସୁଛି । ସେ ହୁଏ ତ ଅନୁଭବ କରୁଛି ପରୀକ୍ଷାର ପ୍ରୟୋଜନ ନାହିଁ ।

ଗ୍ରାମସେବକ-ସଙ୍ଘର କର୍ମୀ ହେବାର ଅଧିକାର ସମସ୍ତଙ୍କର ଅଛି । କିଏ ତୁମକୁ ବାରଣ କରିବ ଭାଇ ? ରଣଗଡ଼ରେ ସବୁ ତ ସମସ୍ତଙ୍କର ଆଉ ସମସ୍ତେ ସମସ୍ତଙ୍କର, ତେବେ ତୁମେ ମୋ'ର ବଡ଼ ଭାଇ । ବଡ଼ ଭାଇର ସମ୍ମାନ ପାଇବାର ଅଧିକାର ତମର ଅଛି ।

ଧର୍ମାନନ୍ଦ ହସୁଛି । ସମସ୍ତେ ଚାହିଁ ରହିଛନ୍ତି ।

ହସୁଛ କାହିଁକି ଧର୍ମାନନ୍ଦ ?

ତୁମର କୁଳପୁରୋହିତ ମୁଁ ବନ୍ଦୀବାହୁ । ରଣଗଡ଼ର ଯୁବରାଜ ତମେ । ତମକୁ ରଣଗଡ଼ର ମନରାଜ୍ୟରେ ଅଭିଷେକ କରିବାକୁ ଧାଇଁ ଆସିଛୁ । ଏଇ ଦେଖ ମୋ'ର ସରଞ୍ଜାମ – ଧାନ ଗହମର କେଣ୍ଡା, ମାଟି, ଘାସ, ଦା,—କଳୁ –

ଧର୍ମାନନ୍ଦ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହିଛି ।

କ'ଣ ଦେଖୁଛ ?

ବନ୍ଧନ । ବାହୁ ତୁମର ବନ୍ଦୀ ହୋଇଛି ସତ, ତୁମର ଦୁଇ ପାଦରେ ଶିକୁଳୀ ଲାଗିଛି । କ'ଣ ତମର ବନ୍ଧନ, କିଏ ତୁମକୁ ଟାଣୁଛି ? କର୍ମୀର ଯଦି ବନ୍ଧନ ରହିବ ସେ କର୍ମ କରିବ କିପରି, କିପରି ସେ ମହାମନ୍ତ୍ରର ସାଧକ ହେବ—କର୍ମଂ ବା ସାଧୟେତ୍ ଶରୀରଂ ବା ପାତୟେତ୍—।

ବନ୍ଧନ ।

ଅଳକା, ଫୁଲଦାମୀ— ।

ଧର୍ମାନନ୍ଦ କି ସୁରତ କେହି ତା'ର ପାଖରେ ନାହାନ୍ତି । ସେମାନେ ଅଛନ୍ତି ଦୂରରେ । ମନ ହିଁ ତାର ଶାସନ କରୁଛି । ମନ ହିଁ କହୁଛି, ପ୍ରଲୋଭନରେ ପାଣ୍ଡି ହେଲେ କର୍ମୀର ସଫଳତା ଦୂର ହୁଏ ।

Digitized by PPRACHIN, SOA

କଏ ସେ ଅଦ୍ଭୁତ ? ଗୃହଜୀବନର ଗୋଟାଏ ପ୍ରଲୋଭନ, ଫୁଲଦାନୀ ଦୂରେଇ ଯାଇଛୁ । ଅଦ୍ଭୁତ ମଧ୍ୟ ଦୁରେଇ ଯାଉ ।

ବନ୍ଧୁବାନ୍ଧୁ ଫେରିଆସିଲା ତାର ହୋଷ୍ଟେଲକୁ । ସବୁ କାଗଜ ସେ କିଣି ଆଣିଛୁ—ସମାଜ, ପ୍ରଜାତନ୍ତ୍ର, ମାତୃଭୂମି, ଦାଗୀ—ତା'ଆର ଭିତରେ ସେ ନିଜକୁ ହଜାଇ ଦେବ । ଗୃହ ପାଦୁବ, ନୂତନ ଦ୍ରବ୍ୟ ଅବଶ୍ୟ ତା'କୁ ନୂତନ କର୍ମର ପ୍ରେରଣା ଦେବ । ଅଳସ ହୋଇ ବେଳ କାଟିବାକୁ ଆଉ ଭଲ ଲାଗୁ ନାହିଁ ।

ଆମେରିକା ଉଦ୍ଜାନ ବୋମା ବିସ୍ଫୋରଣ କରୁଛି । ଇଂଲଣ୍ଡ କି ରୁଷିଆ ମଧ୍ୟ ଛାଡ଼ି ନାହାନ୍ତି । ସମସ୍ତେ କେବଳ ପରୀକ୍ଷା କରୁଛନ୍ତି । ପରୀକ୍ଷା ବନ୍ଦ କର ବୋଲି କେତେ ଦୁର୍ବଳ ଦେଶ ପାଟି କରୁଛନ୍ତି — ସାବଧାନ, ମଣିଷ ସଭ୍ୟତା ଧ୍ୱଂସ ହେବ । କେବଳ ପରୀକ୍ଷାର ଫଳରୁ ତ ବାୟୁମଣ୍ଡଳ ବିଷାକ୍ତ ହେବ, ମଣିଷ ସମାଜ ରୁଗ୍ଣ ହେବ, ଧ୍ୱଂସ ହେବ ।

ପ୍ରଧାନମନ୍ତ୍ରୀ ଦକ୍ଷିଣ ଆମେରିକା ଭ୍ରମଣ କରିବେ ।

ପୂର୍ବବଙ୍ଗ ଶରଣାର୍ଥୀମାନେ ମଲ୍ଲୀକା-ନଗରୀ ଛାଡ଼ି ଫେରି ଯାଇଛନ୍ତି କଲିକତା । ମଲ୍ଲୀକା ନଗରୀରେ ମାଛ ମିଳନ୍ତି ନାହିଁ ।

ଭାରତର ରାଜଧାନୀ କୁଇନସ୍ୱାକୁ ଉଠିଆସିଲେ ମନ୍ଦ ହୁଅନ୍ତା ନାହିଁ ।

ପାହାଡ଼ ଜଙ୍ଗଲ ଭିତରେ ଯେଉଁମାନେ ଘରକରି ରହୁଛନ୍ତି ସେମାନଙ୍କୁ ବଡ଼ ସହରକୁ ଆଣି ନଗ୍ଲଇଲେ ସେମାନେ ଶୀଘ୍ର ଉନ୍ନତ ହେବେ ।

ଭୀଷଣ ଘରପୋଡ଼ି, ୩୦୦ ପରିବାର ସର୍ବସ୍ୱାନ୍ତ ହେଲେ ।

ହକିଙ୍ଗ ଚାମ୍ପିଅନ୍ —

ବନ୍ଧୁବାନ୍ଧୁର ହାତରୁ ଖବର କାଗଜ ଖସିପଡ଼ିଲା । ସେ ଚମକି ଉଠିଲା । ନିଦ ଝୁଙ୍କିଲାଣି । ବାକିତକ କାଲି ସକାଳେ ପଢ଼ା ହେବ । ଆରେ, ଦାଗୀ ପତ୍ରିକାଟି ପଢ଼ି ପାରିଲା ନାହିଁ ତ । ଧନଞ୍ଜୟ ପତ୍ରିକାର ନାମଟା ବଦଳାଇ ଦେଉ ନାହିଁ କାହିଁକି ? 'ଗ' ପରିବର୍ତ୍ତେ 'ବ' କରିଦେଲେ ଭଲ ହୁଅନ୍ତା ପରା ।

ବନ୍ଧୁବାନ୍ଧୁ ଶୋଇଲା ।

ସକାଳ ହେଲା ତା'ର ଡେରିରେ । ନିତ୍ୟକର୍ମ ସାରି ସେ ପ୍ରସ୍ତୁତ ହେଲା । ବେଳ ନଅଟା ହେଲାଣି । କ'ଣ କରିବାକୁ ସେ ପ୍ରସ୍ତୁତ ହୋଇଛି । ପୁଣି ବେକାର-ଜୀବନର ପଞ୍ଚାକ୍ଷର ମନ୍ତ୍ର ଜପ କରିବ ?

ନା, ନା, ନା — ।

ସ୍କୁଲ ଲାଗିବ ? କମ୍ପଣୀ ହେବ ? ରାଜନୀତିରେ ଯୋଗ ଦେଇ ଲେକ୍ଚର ଦେବ ? ଷ୍ଟ୍ରାଇକ୍ ଅର୍ଗାନାଇଜ୍ କରିବ ? ଫେରିଯିବ ପୁଣି ମୋଫସଲକୁ— ଦୁର୍ବଳ, ଅନ୍ତଦୂରକୁ ଯେଉଁଠି କେହୁ ତାକୁ ଚିହ୍ନି ପାରିବେ ନାହିଁ ? ଫେରିଯିବ ଚଡ଼େଇଗୋଡ଼କୁ ?

Digitized by PPRACHIN, SOA

କିଛି ସେ ସ୍ଥିର କରି ପାରୁ ନାହିଁ । ଅବ୍ୟବସ୍ଥିତତା ଆସିଲେ ବନ୍ଧୁର ପରାମର୍ଶ ଲୋଡ଼ା ପଡ଼େ । ଯିବ କି ବନ୍ଧୁ ପାଖକୁ ? କିଏ ତାର ବନ୍ଧୁ ?

ଆହୁତ, ଧନଞ୍ଜୟ, ଚକ୍ରଧର ସୁବ୍ରତ ସ୍ଥିର କରି ପାରିଲା ନାହିଁ । ଡା'ରୀ ପଞ୍ଜିକାର ପୃଷ୍ଠା ଓଲଟାଇବାକୁ ଲାଗିଲା ।

ପୂର୍ବେହଟେ କହୁଥିଲେ ଛନ୍ତି, ଏକା ରଣଜିତ୍ ନୁହେଁ ରଣସିଂହେ, ସବୁ ଗାଁରେ ଅନେକ ବନ୍ଧୁଙ୍କେ ଏହିପରି କାମ ଚାଲିଛି । ଲୋକେ ମାତି ଉଠିଛନ୍ତି । ଜାତି ଗୋଟେ କେହି ମାନୁ ନାହାନ୍ତି । ଛୁଆଁ ଅଛୁଆଁ ବାଛବିଚାର ଉଠେଇ ଦେଲେଣି । ଯୁଗ ବଦଳୁଛି । ଆମେ କେଇଜଣ ପାଟିତୁଣ୍ଡ କଲେ କି ସେମାନଙ୍କର କାମକୁ ସମାଲୋଚନା କଲେ ଫଳ କିଛି ହେବ ନାହିଁ । କାଲି ରାତିରେ ଧର୍ମୁମାଙ୍କ ସଙ୍ଗେ ସେଇ କଥା ପଡ଼ିଥିଲା । ଭଲ କଥା-ପଦେ ସେ କହିଲେ । ମୁହଁ ମୋର ବନ୍ଦ ହେଲା— ।

ରଣସିଂହେ ଦୀର୍ଘଶ୍ୱାସ ଗ୍ରହିଲେ । ବଲବଲ କରି ଚାହିଁ ରହିଲେ ତ୍ରିପାଠୀଙ୍କ ମୁହଁକୁ । ଧର୍ମୁମା କଅଣ କହିଲେ ସେ କଥା ଶୁଣିବାକୁ ତାଙ୍କର ଆଗ୍ରହ । ମୁହଁ ଖୋଲିବାକୁ ଆଉ ପସନ୍ଦ କରୁ ନାହାନ୍ତି । ମୁହଁ ଖୋଲିଲେ ଯେଉଁ କଥା ତୁଣ୍ଡରୁ ଖସୁଥିଲା, ସେଇଟା ଭଲ କି ମନ୍ଦ ପରଖିବାକୁ ଦିନେ କାହାର ସାହାସ ହେଉ ନ ଥିଲା । ସେଇଟା ଗୋଟାଏ ଆଦେଶ । ଲୋକେ ମାନି ନେଉଥିଲେ । ପାଳନ କରିବାକୁ ତତ୍ପର ହଉଥିଲେ । ରାଜାଙ୍କ ଆଜ୍ଞା । ଚଳନ୍ତି ବସ୍ତୁ ସେ ।

ବଡ଼ ଶ୍ରେଷ୍ଠ ସବୁ ଚଳନ୍ତି ବସ୍ତୁମାନେ ଅଚଳନ୍ତି ଘଷରା ମୁଦ୍ରା ପାଲଟିଛନ୍ତି । ସନ ନାହିଁ । କିଏ ଟଙ୍କା, କିଏ ଦି ଅଣା, କିଏ ପଇସା ତ କିଏ ପାହୁଲା । ସବୁ ଘଷରା, ତେବେ ଅକୃତ ଥିଲା । ଲୋକେ ଟଙ୍କା, ଅଧୁଲି, ସିକି, ପଇସା, ଅଧଲା, ପାହୁଲା ବୋଲି ଚିହ୍ନୁଥିଲେ । ଏବେ ନୂଆ ପଇସାର ଯୁଗ । ସବୁ ସମାନ । ସର୍ବୋପରି ଟଙ୍କା ।

ସୁରଦେବୀଙ୍କ ପରିତ୍ୟାଗ କଲା ଦିନରୁ ଅଳସ ସମସ୍ତ କିପରି କଟିବ ସେଇକଥା ସେ ଚିନ୍ତା କରୁଥିଲେ । ନାଥିଆ ଭଣ୍ଡାରୀ ସେ ପୁରକୁ ଗଲା ଦିନୁ ପଶା କି ତାଆସ ଖେଳିବାକୁ ସେ ମନ କରନ୍ତି ନାହିଁ । କିଏ ସେ ସବୁ ଯୋଗାଡ଼ କରିଦେବ ? ଆହା ବିଚରା ସତୁରି ବର୍ଷର ବୁଢ଼ା ନାଥିଆ । କେତେ କଷ୍ଟ ପାଇ ମୁଣ୍ଡର ଷତ ଭଲ ହେଲା । ସେ ବଞ୍ଚିଲା । କିନ୍ତୁ ଅଫିମ ଆଉ ଛୁଇଁଲା ନାହିଁ । ଜର, ଶରଦ, କଫ । ଔଷଧ ମାନିଲା ନାହିଁ । ଦିନେ ରଣସିଂହେ ଅଫିମ ନେଇ ତା'ଘରେ ତା'ପାଖରେ ପହଞ୍ଚିଲେ ।

କହିଲା, ନାହିଁ ସାଆନ୍ତେ ସେ ଚିଜ ଆଉ ଛୁଇଁବି ନି ।

ମରିଯିବୁ ରେ ନାଥ ।

Digitized by PPRACHIN, SOA

ଧର୍ମୁନନା କହୁଲେ ଆରେ ନାଥ, ଅଫିମ ଖାଇ ଅମର ହୋଇ ରହିଥିବା ଲୋକଟିଏ କାହିଁ ଦେଖିଛୁ କି ? ମଲେ ମର ପଛେ ସେ ବିଷ ତୁ ଆମର ପାଇଁ ଛୁଇଁନା । ସେଇ ଲୋଭରେ ରଣସିଂହକୁ ତୁ ମଦ ଖୋଇଲୁ ।

ଯାଆନ୍ତୁ, ମରିବାର ମୋ'ର ବୟସ ହେଲା । ଯାହା ହେବାର ହେବ । ଆପଣ ଆଉ ମଦ ପାଣି ଛୁଇଁବେ ନାହିଁ ଓ ରାଣୀମାଙ୍କୁ ଦେବେ ନାହିଁ । କାଲି ମୁଁ ଗ୍ରାମ-ସେବକ ସଙ୍ଘର ସଭ୍ୟ ହେଲି । ଏଇଠି ଏଇ ରୋଗ-ଯନ୍ତ୍ରଣାରେ । ଧର୍ମୁନନା, ରଣଜଙ୍କା ବାବନା ସମସ୍ତେ ଆସିଥିଲେ ।

ନାଥ ଚାଲି ଯାଇଛୁ, ବଡ଼ ଶିକ୍ଷାଟାଏ ଦେଇଯାଇଛୁ । ସେ ଶିକ୍ଷାର ମୂଲ୍ୟରେ ଥିଲା ଧର୍ମାନନ୍ଦ । ଧର୍ମୁମା ଏ କଥା କହୁଲେ ଶୁଣିବାକୁ ସେ କାନ ଡେରିଲେ ।

ପୂରେନ୍ଦ୍ରହେ କହୁଲେ, ଧର୍ମୁମା କହୁଛନ୍ତି, ପୁଅ ଯେତେବେଳେ ଯାଏ ଅପାଳଗ ନା'ଅଜ୍ଞାନ ହୋଇଥାଏ, ସେତେବେଳେ ଯାଏ ସେ ଅଢଥି । ସେ ସାରଗ ହେଲେ ତା'ର ବୁଦ୍ଧିସୁଦ୍ଧି ହେଲେ ସେଇ ତ ଗୃହର ମାଲିକ । ବାପ ମା ତାର ଅଢଥି । ସବୁ ବିଦ୍ୟାରେ ସୁପଣ୍ଡିତ ଆମ ଧରମୁ . ଯାହା କରୁଛୁ ଭୁଲ୍ କରୁଛୁ ବୋଲି ଆମେ କିପରି କହିବା ? କହିବାକୁ ଆମେ କିଏ ? ସଂସାର ତାଙ୍କର, ଭଲମନ୍ଦ ସିଏ ବୁଝନ୍ତୁ । ଆମେ କୁଣିଆଁ । ଆମର ଲୋଡ଼ା ସେବା, ଭକ୍ତି । ସେତକ ଦେବାକୁ ତ ପୁଅ ବୋହୂ ପଛାଉ ନାହାନ୍ତି । କ'ଣ ସେମାନେ କରୁଛନ୍ତି କରନ୍ତୁ ।

ରଣସିଂହେ ମୁହଁ ଖୋଲିଲେ, ଶୁଣିଲି, ବୋହୂ ଗାଁର ଘର ଘର ବୁଲି ଔଷଧ ବାଣ୍ଟୁଛନ୍ତି । କାହାର ଦେହ ଖରାପ ହେଲେ ପାଖେ ପାଖେ ଜଗି ରହିବାକୁ ସେବିକା-ସଙ୍ଘର ମେମ୍ବରମାନଙ୍କୁ କହୁଛନ୍ତି ।

ଶୁଣିବା କଥା ନିଜ ଆଖିରେ ଦେଖିଥିବେ ଆପଣ । ରାଣୀମା'ଙ୍କର ରୋଗଶଯ୍ୟା ପାଖରେ ରାତି ଅନିଦ୍ରା ହୋଇ ଜଗି ବସିଥିଲା ମୋର କୁଳଲକ୍ଷ୍ମୀ ଆଉ ଆଉ ତା ସଙ୍ଗର ଝିଅବୋହୂମାନେ । ଆପଣଙ୍କ ରୋଗଶଯ୍ୟା ପାଖରେ ବି ସେମାନେ ଜଗି ବସିଥିଲେ ।

ସତେ ତ । ପୁରେନ୍ଦ୍ରଙ୍କ ବୋହୂ ଆଉ, ପାଖେ ପାଖେ ଯେଉ ଝିଅଟି— ଅଦ୍ଭୁତ । ପେଟରୁ ଜନମିଲା ଝିଅ ଏତେ ସେବା କରି ପାରିବେ କି ନାହିଁ ସନ୍ଦେହ । ସେବା ଯତ୍ନ ଭକ୍ତିରେ ସମସ୍ତେ ସେମାନେ ଜଣକୁ ବଳି ଜଣେ । ସମସ୍ତେ ସେମାନେ ଏଇ ଗାଁର ବୋହୂଝିଏ । ସେମାନେ ପର ଆପଣା ଭେଦ ଜାଣି ନ ଥିଲେ । ଭୟରେ କି କାଣିଚିଏ ଦୟା ପାଇବା ଆଶାରେ ସେମାନେ ସେବାଯତ୍ନ କରି ନ ଥିଲେ ତ ।

ରଣସିଂହେ କହୁଲେ, ସତ କଥା ପୂରେନ୍ଦ୍ରହେ । ସେମାନଙ୍କୁ ପାଖରେ ଦେଖି ମୁଁ ସେତେବେଳେ ଭାବି ପାରି ନ ଥିଲି ଯେ ସେମାନେ ମୋର ଝିଅ ବୋହୂ ନୁହନ୍ତି । କିଏ କି ଘରର ପିଲା କି କିଏ ଧନୀ କି ଦରିଦ୍ର ସେକଥା ମୁଁ ମୋଟେ ଚିନ୍ତା କରି ନ ଥିଲି । ସେମାନେ ସୁଖ ଆନନ୍ଦରେ ସଂସାର କରନ୍ତୁ । ନୂଆ ଦୁନିଆ ତାଙ୍କର ଗଢ଼ନ୍ତୁ । ଆମେ ଅପସରି ରହିବା ।

Digitized by PPRACHIN, SOA

ମୁଁ କହୁଛି, ଚାଲନ୍ତୁ ଗଙ୍ଗା, ଗୟା ବୁଲି ତୀର୍ଥବ୍ରତ କରି ଆସିବା । ଆମର ଏ ଧର୍ମଛଡ଼ା ପୁଅବୋହୂଙ୍କ ହାତରୁ ପାଣି ପାଇ ମୁକ୍ତି ଲାଭ କରିବାର ଆଶା ତ ନାହିଁ, ବଞ୍ଚିଥାଉଣୁ ଆମେ ଆମ ପାଇଁ ଓ ଆମର ପୂର୍ବପୁରୁଷଙ୍କ ପାଇଁ ଶେଷ ଶ୍ରାଦ୍ଧ କରି ଆସିବା । ଜାଣି ଜାଣି ନରକରେ ପଡ଼ିବା କାହିଁକି ?

ତମର ପ୍ରସ୍ତାବଟା ମନ୍ଦ ନୁହେଁ ପୁରୋହିତେ, ତେବେ ସାଂସାରିକ କର୍ମ କେତେଟା ମୋ'ର ବାକି ରହି ଯାଇଛି । ସେତକ ଶେଷ ନ କରି ଗଲେ ଲୋକେ ନିନ୍ଦା କରିବେ । ପୁଅ ଦୁଇଟିଙ୍କର ବିଭାଘର । ଝିଅଟିକୁ ବି ପରଘରକୁ ପଠାଇବାକୁ ପଡ଼ିବ । ଏତିକ ଶେଷ ହେଲା ପରେ ଗଙ୍ଗା, ଗୋଦାବରୀ, ନର୍ମଦା, କାବେରୀ— ଯୁଆଡ଼େ କହିବ ଚାଲିଯିବା । ଏକାଥରେ ଗଙ୍ଗାରେ ଅସ୍ଥି ପକାଇଲେ ଆହୁରି ଭଲ ।

ଫେରିବା ନାହିଁ ?

କେଉଁଠିକି ଆଉ ଫେରିବା ? ଏ ଗାଆଁର ଲୋକମାନେ ଯଦି ସମସ୍ତେ ଧର୍ମଛଡ଼ା ହେବେ, ଜାତି, କୁଳ ଗୋଡ଼ ହରାଇବେ, ପୁଣି ସେମାନଙ୍କ ପାଖକୁ ଆସି ସେମାନଙ୍କ ମଝିରେ ରହିବା କିପରି ? ପୁଣି ପାପପଙ୍କରେ ଲଟର ପଟର ହେବା । ଏକାଥରେ କର୍ମ ଶେଷ କରି ଗଲେ କେଣିକି ନିଶ୍ଚିନ୍ତ । ଗଙ୍ଗାରେ ଅସ୍ଥି ଦେବାକୁ ମନ ନ ହେଲେ, ଗଙ୍ଗା ସେପାରି ହିମାଳୟ । ସେଇବାଟେ ପଞ୍ଚ ପାଣ୍ଡବ ସ୍ୱର୍ଗାରୋହଣ କରିଥିଲେ । ଆମେ ବି ଚାଲିହିଁଲେ ଯିବା ।

ପୁରୋହିତେ ଟିପେ ନାସ ନାକପୁଡ଼ାରେ ପୁ କରି ଟାଣିନେଲେ । ଆଖି ବୁଜି ଚିନ୍ତାକଲେ, ରଣସିଂହଙ୍କର ବୁଦ୍ଧି ବିପର୍ଯ୍ୟସ୍ତ ହେଲା କି ? କଥାଗୁଡ଼ାକ କିପରି ଓଲଟା କହୁଛନ୍ତି । ହେଲେ, ବଡ଼ଲୋକଙ୍କ ଉତ୍ତର ନାହିଁ । ଯେତେବେଳେ ଯାହା କହିବେ ସେଇଟା ସାର, ସେଇଟା ସୁନ୍ଦର । ଏ ମୁହଁରେ ଯାହା କହୁଛନ୍ତି, ଆଉ ମୁହଁରେ ପଛେ ଓଲଟା କଥା କହନ୍ତୁ ।

ପୁରୋହିତେ ଖୁବ ବଣୁରି କହିଲେ, ତିନି ପିଲାଙ୍କର ବିଭାଘର କ'ଣ ଏକା ଥରେ କରିବାକୁ ମନ କରିଛନ୍ତି ରଣସିଂହେ ?

ରଣସିଂହେ ଦୀର୍ଘଶ୍ୱାସ ଛାଡ଼ିଲେ । ଅତୀତ କଥା ମନେ ପଡ଼ିଲେ ଦୁଃଖ ହେଉଛି । ଟୀକା କଥା କି ଜାତିଆଣ କଥା ଯଦି ସେ ଧରି ବସି ନ ଥାନ୍ତେ ତେବେ ମହାପାତ୍ରଙ୍କ ଘରେ କେବେଠୁଁ ପ୍ରଥମେ କମିତ୍ୟ ହୋଇ ସାରିଥାଆନ୍ତା । ସୁବ୍ରତ ଘରଛାଡ଼ି ଚାଲିଯାଇଥାନ୍ତା ବା କାହିଁକି ? କୋଉ ଏବେ ଟଙ୍କା ସୁନା ପାଖରେ ବଳିଛି । ଯାହା ଥିଲା, ସେତିକ ଯାଇ ମଦ ଦୋକାନରେ ହାଜର । ଯେଉଁମାନେ ମଦ ଯୋଗାଉଥିଲେ ପାଞ୍ଚକୁ ପଚିଶ କରି ମଝିରେ ମଧ୍ୟସ୍ଥ ହୋଇ ଫାଉ ମାରିନେଇ ଯାଉଥିଲେ, ସେମାନେ ଆଜି ଭଦ୍ରଲୋକ ହୋଇ ଆତଯାତ ହେଉଛନ୍ତି ।

ରଣସିଂହେ କହିଲେ, ଆଚ୍ଛା, କହ ତ ପୁରୋହିତେ, ମଣିଷ କ'ଣ ଜନ୍ମରୁ ମନ୍ଦ ହୋଇ ଜନ୍ମିଥାଏ ?



Digitized by PPRACHIN, SOA

ଆଉ କ'ଣ, ଯେଉଁ ଯନ୍ତ୍ର ଯେଉଁ କକ୍ଷପଥରେ ମଣିଷ ଜନ୍ମ ଲଭେ ସେଇ ପ୍ରକାରେ ଫଳ ହୁଏ । ସେଇ ଗ୍ରହଫଳ ଯୋଗୁ କିଏ ହୁଏ ସାଧୁ, କିଏ ହୁଏ ଚୋର ଡକାୟତ, କିଏ ରାଜକୁଳରେ ଜନ୍ମେ, କିଏ ଜନ୍ମେ ଦରିଦ୍ର କୁଡ଼ିଆରେ । କିଏ ହୁଏ ପଣ୍ଡିତ, ବୁଦ୍ଧିମାନ, ଆଉ କିଏ ହୁଏ ମୂର୍ଖ, ଜଡ଼ । ପୂର୍ବଜନ୍ମର କର୍ମଫଳ ଯୋଗୁ ମଣିଷ ତା'ର ଉପଯୁକ୍ତ ଗ୍ରହନକ୍ଷତ୍ର ବେଳରେ ସଂସାରକୁ ଆସେ ।

କହ ପୁରୋହିତେ, ଯେଉଁ ଲୋକ ମଦ ଖାଏ, ଘର ପରର ବୋହୂଭୂଆସୁଣୀ ଯାହାର ଖେଳର ସାମଗ୍ରୀ, ଅନ୍ୟ ଲୋକର ଦେହ, ମନ ଓ ସମ୍ମାନର ମୂଲ୍ୟ ଯାହା ପାଖରେ ତୁଚ୍ଛ, ସେ କିପରି ଲୋକ ?

ପୁରୋହିତେ ବିଚଳିତ ହେଲେ । ରଣସିଂହେ ଆଜି ତାଙ୍କୁ ଏ ସବୁ କଥା ପଚାରୁଛନ୍ତି କାହିଁକି ? ନିଜର ଗୁଣକୁ ମୂର୍ତ୍ତିମନ୍ତ କରି ଝିଅ ଆଗରେ ଠିଆ କରି ସେ ଦେଖୁଛନ୍ତି ଓ ପରୀକ୍ଷା କରୁଛନ୍ତି । ପୁରୋହିତେ ଆଉ ଟିକେ ନାସ ଶୁଙ୍ଘି ଆଖି ବୁଜି ଚିନ୍ତା କଲେ । ଅତି ଜଟିଳ ପ୍ରଶ୍ନ । ଭଲ ବୋଲି କହିଲେ ମୂର୍ଖଟିଏ ବି ହସି ଉଠିବ । ମନ୍ଦ ବୋଲିଲେ ରଣସିଂହଙ୍କୁ ଚୁହାଁଉଛି । ଶୀଘ୍ର ଉତ୍ତର ଦେବାକୁ ହିଁ ହେବ ।

କହିଲେ, ଶୁଭ ମୁହୂର୍ତ୍ତରେ ଜନ୍ମିଲେ ଲୋକର ଗୁଣ ପାଖେ ଦୁଷ୍ଟଗ୍ରହ ଭୁଲନ୍ତି । ଅବାଟକୁ ଟାଣନ୍ତି । ଭଲ ମଣିଷ ଅବାଟକୁ ଯାଏ, ମନ୍ଦ ହୁଏ । ସେଥିପାଇଁ ଶୁଭଗ୍ରହର ଦୋଷ ଦେଇ ପାରିବା ନାହିଁ । ଦୋଷ ଆମର । ଦୁଷ୍ଟ ଲୋକଙ୍କ ତାଙ୍କ ପାଖରୁ ଦୂରେଇ ରହିବା କର୍ତ୍ତବ୍ୟ । ମନ୍ଦ ଓ ଅନୀତି କାର୍ଯ୍ୟରେ ସେମାନେ ବାଧା ନ ଦେଇ ସାହାଯ୍ୟ କରନ୍ତି । ଉତ୍ତେଜିତ କରନ୍ତି, ଟାଣି ଟାଣି ନେଇ ନର୍କକୁଣ୍ଡ ଆଗରେ ଠିଆକରି ଦେଇ ସେ ଯୁଆଡ଼େ, ତୁ — ।

ପୁରୋହିତେ — !

ଚିତ୍କାର କରି ରଣସିଂହ ଦୁଇ ହାତରେ ପୁରୋହିତଙ୍କର ଗୋଟିଏ ହାତ ମୁଠାଇ ଧରିଲେ । ଆଖିରୁ ଦୁଇଧାର ଲୁହ ଗଡ଼ିପଡ଼ିଲା । କହିଲେ, ପୁରୋହିତେ, ଏ କଥା ପଚିଶି ବର୍ଷ ଆଗରୁ କହି ନ ଥିଲ କାହିଁକି ? ନର୍କକୁଣ୍ଡ ଆଗରେ ଏକା ମୁଁ କାହିଁକି ଠିଆ ହେବି ! ତମେ ବି ଆସ — ।

ଆଖପାଖର କେତେ ଗାଁ ଲୋକ, କେତେ ଗାଁ ଝିଅ ଆସି ମମତାଙ୍କ ପାଖରେ ଉପସ୍ଥିତ । ଦ'ପହର । ପାଖରେ ବସିଛନ୍ତି ସ୍ୱରତି । ସୁନନ୍ଦା ପୁରାଣ ପଢ଼ୁଛି । ସମସ୍ତେ ମନ କର୍ଣ୍ଣ ଦେଇ ଶୁଣୁଛନ୍ତି ଦାମ୍ଭପୁରାଣ । ମମତା ଏକାଥରେ ତନ୍ମୟ ।

Digitized by PPRACHIN, SOA

ତାଙ୍କର ବାହାର ଦୃଷ୍ଟି ଯେପରି କିଛି ଦେଖିପାରୁ ନାହିଁ। ଭିତରର ଦୃଷ୍ଟି ଭ୍ରମୁଛି ମନ ରାଜ୍ୟରେ। କ'ଣ ଯେପରି ଖୋଜୁଛି।

ଆଖକୁ ଦେଖି ସୁସନ୍ଧ୍ୟା ଦୃଷ୍ଟି ଫେରାଇଲା। ପୁରାଣ ପଢ଼ା ସୁଣିଛ ଟିକିଏ ମୁଣ୍ଡ ଟେକି ବସିଲା। ମମତା ଅତି କୋମଳ ସ୍ନେହ ଝରୋଭା ଭାଷାରେ କହିଲେ, ଜୁଆଁଏ ଆଜି ଆସିଲ ମୋର ଝିଅମାନେ, ଏଇଠି ମୋ ପାଖରେ ବସ। ଭଲ କଥାଟିଏ ଏ ଅଧ୍ୟାୟରେ ପଢ଼ୁଛି। ଶୁଣ। ପଢ଼ ମା ସନ୍ଧ୍ୟା—

ସନ୍ଧ୍ୟା ପଢ଼ିଲା— ନବମ ଅଧ୍ୟାୟ ଦେବାଦି ସୃଷ୍ଟି କଥନ - ବୃତ୍ର ଉତ୍ପତ୍ତି —

ସମସ୍ତେ ମନଦେଇ ଶୁଣିଲେ। ଅଧ୍ୟା ସମାପ୍ତ ହେଲା। ସନ୍ଧ୍ୟା ପଢ଼ିଲା—ଶେଷ ହେଲା ବୃତ୍ରାକର ଗର୍ଭବନ୍ଧ କଥେ। ସମସ୍ତେ ପାଁଚ ଶ୍ୱାସ ଗ୍ରୁଡ଼ିଲେ; ଯାହା ହେଉ ଅଧ୍ୟାୟଟା ସରିଗଲା। ସନ୍ଧ୍ୟା ମୁକ୍ତକଣ୍ଠ କରି ଉଠିଯିବାକୁ ମାଆଙ୍କ ମୁହଁକୁ ଚାହିଁ ଅନୁମତି ମାଗିଲା। ଦୁଇ ଝିଅମାନେ ମୁହଁକୁ ମୁହଁ ଅନାଅନି ହେଲେ। ଚମ୍ପା ଓ ମାଳତୀ ଅଗଣାରେ ଏ କେତେ ବେଳୁ କଡ଼ ହୋଇ ମମତାଙ୍କ ଘର ଭିତରକୁ ଚାହିଁଛନ୍ତି। ଆଜି ଗଲେ କାଲି ପଢ଼ିଲ ପଢ଼ା। ସୁସନ୍ଧ୍ୟା ସେଇ ପାଳିବ। ଏ ଘରେ କେତେ ଗହଳି ଚହଳ ଲାଗିବ। ପିଠାପଣା ଖଆଦିଆ, ଖେଳକୌତୁକ— ।

ଆଖ ପୁରାଣଟିକୁ ନେଇ ପୁଣି ନବମ ଅଧ୍ୟାୟରେ ଆଖି ବୁଲେଇ ନେଲା। ସବୁ ପୁରାଣ ସେ ପଢ଼ି ଶାଶୁ ଶଶୁରଙ୍କୁ ଶୁଣେଇଛି। ଏଇ ଭାଗବତ ପୁରାଣ ସେ କେତେଥର ବାର ପଢ଼ିଛି। ଶଶୁରେ ହାଇ ମାରି ଘୁମ୍ନା ଫିଟାଇଛନ୍ତି। ଶାଶୁ ଢୁଳେଇଛନ୍ତି। ଆଖ କେବଳ କର୍ତ୍ତବ୍ୟ ପାଳିଛି। ପୁରାଣ ଯେ ପାଠ କରେ ତା'ର ଧର୍ମ ହୁଏ। ସେ ଶୁଣେ ସେ ବ ଧର୍ମାତ୍ମା ପୁରୁଷ। ବୁଝିବାକୁ କେହି ଚେଷ୍ଟା କରି ନାହାନ୍ତି। ଶେଷ ହେଲା ବୃତ୍ରାକର ଗର୍ଭବନ୍ଧ କଥେ। ହେଉଁଠି ପୋଥିକୁ ମୁଣ୍ଡରେ ଲଗାଇ ଖାଦ ଉପରେ ରଖିଲେ, କର୍ତ୍ତବ୍ୟ ସରିଲା, ଉଠି ଆଉ ଦେଖା ଯାଏ।

ସୁସନ୍ଧ୍ୟା ପଢ଼ିଛି। ଆଖର କାନରେ ପଡ଼ୁଛି। ମମତା ତନ୍ମୟମଗ୍ନ। କେତୋଟି କଥା ତାଙ୍କ ମନରେ ଘାଣ୍ଟି ଚକଟି ହେଉଛି। ପଦଗୁଡ଼ାକ ମନେପଡ଼ୁନାହିଁ।

ଆଖ ପନ୍ନ ଓଲଟାଇ କ'ଣ ଯେପରି ଖୋଜୁଛି। ମୁହଁରେ ହସ ଖେଳିଲା। ସେ ଖୁଣ୍ଟି ରହିଲା ପଂକ୍ତିଗୁଡ଼ିକୁ। ବିସ୍ମିତ ହେଲା।

ମମତା କହିଲେ, କ'ଣ ଖୋଜୁଚୁ ଅଖ ?

କହୁ, ସୁଣୀ ମା। କେତେଥର ଆଖି ଆଗରେ ପଢ଼ୁଛି, ଚକ୍ଷୁପାର ନ ଥିଲା। ସନ୍ଧ୍ୟାଙ୍କର କଅଁଳ ସ୍ୱର ମୋ କାନରେ ବାଜିଲା। ମୋ ଆଖି ଆଗରେ ଏବେ ସେଇ ବହୁରୂପକ ଝଟକ ଉଠିଲାଣି। ତମର ପୁରୋହିତ-ପଣ୍ଡ କେତେଥର ଉପହାସ କରି କହନ୍ତି, ଗୀତ ବୋଲିଲା ଭ ପୁରାଣ ପଢ଼ିଲା ମ ? ଏବେ ତାଙ୍କ ଉପହାସର ଅର୍ଥ ବୁଝିଲି।

ପଢ଼ ତ ଅଖ ଥରେ ମା !

Digitized by PPRACHIN, SOA

ଆଜ୍ଞ ପଡ଼ିଲ—

କର୍ମର ବାସନା ଯେଉଁ ଜନ୍ମିଲା ପ୍ରକୃତ, ତେଣୁ ଭିନ୍ନ ଭିନ୍ନ କର୍ମେ ବନ୍ଧାଇଲେ ମତ ।—ନିଜ ସ୍ୱଭାବକୁ ଯେଉଁ କର୍ମ ସାଧେ ପ୍ରାଣୀ, ଦୈବ ତା'ର ଉପଯୁକ୍ତ ଫଳ ଦେଏ ଆଣି ।—ପୁରୁଷମାନଙ୍କ ମଧ୍ୟେ ନାହିଁ ଭିନ୍ନାଭିନ୍ନ । ସକଳେ ଅଟନ୍ତି ତୁଲ୍ୟ ପ୍ରାଧାନ୍ୟ ସମ୍ପନ୍ନ ।—କୌଣସି ପ୍ରକାର କର୍ମ ଗୋଟିଏ କର୍ତ୍ତାରେ, ଅଧିକ ହୁଏ ଏହା ବୋଲି ଯାଇ ନ ପାରେ ।—ଏହିପରି ଦ୍ୱିଜାତ ଭେଦେ କର୍ମସାଧନର, ନିର୍ବାଚନ କରିଯାଇ ନାହିଁ ମନେ କର ।—

ଛଳ ଛଳ ଆଖିରେ କହିଲି ଆସ, ତୁମର ପୁରୋହିତ-ପୁଅ ଏହି କଥା କହନ୍ତି । ମା, ଏହାର ଅର୍ଥ ମଧ୍ୟ ଜାଣନ୍ତି ଓ ବୁଝାଇ ଦିଅନ୍ତି । ଗ୍ରାମର ବ୍ରାହ୍ମଣର ପ୍ରଦୀପ, ସୁଯୋଗ୍ୟ ପୁତ୍ର ମୋ'ର ଦେବର ସୁରଥ ରଣଙ୍କୋ କେବଳ ଯେ ଏହାର ଅର୍ଥ ଜାଣନ୍ତି ସେତିକି ନୁହେଁ, ସେ ସେଇ ଅର୍ଥକୁ ପ୍ରାଣେ ପ୍ରାଣେ ଅନୁଭବ କରିଛନ୍ତି । ନିଜେ କର୍ମସାଧନ କରୁଛନ୍ତି, ଗ୍ରାମବାସୀଙ୍କୁ ହୃଦ୍‌ବୁଝ କରି ସାରିଛନ୍ତି । ସମସ୍ତେ ଆଜି ମମତା ପାଇଁ ବ୍ୟାକୁଳ । ନୂଆ କଥା ଏ ନୁହେଁ । ହଜାର ହଜାର ବର୍ଷ ପୂର୍ବେ ଅର୍ଯ୍ୟମୁନିମାନେ ଏ କଥା କହିଯାଇଛନ୍ତି ।

ଆଉ ଏ ବର୍ଣ୍ଣଭେଦ ।

ଋଷିଅପା ବୁଝାଇ ଦେଉଥିଲେ ଦିନେ, ବର୍ଣ୍ଣଭେଦ ଜାତିଭେଦ ନୁହେଁ, କେବଳ କର୍ମର ବିଭାଗ ଭେଦ । କାଳକ୍ରମେ ତାହା ଜାତିଭେଦରେ ପରିଣତ ହେଲା । ଅର୍ଯ୍ୟ ଅନାର୍ଯ୍ୟ, ମଙ୍ଗୋଲ ଦ୍ରାବିଡ଼ କେତେ ଜାତି ଆସି ଏ ଦେଶରେ ମୁହାଁମୁହିଁ ହେଲେ । ଅତ୍ମରକ୍ଷା ପାଇଁ ନିଜ ନିଜ ସ୍ୱତ୍ୱ'ର ପାଇଁ ଲଢ଼ାଲଢ଼ି ହେଲେ । ହଜାର ହଜାର ବର୍ଷ କାଳ ମା । ସେତିକିବେଳେ ଜାତିଭେଦ ସୃଷ୍ଟି ହେଲା । ଋଷିଅପା ଆମର ବୁଝାଇ କହନ୍ତି, ସବୁ ଜାତି ମିଶି ଏକାକାର ହୋଇସାରିଛନ୍ତି ଏ ଦେଶରେ । ଖାଲି ଜାତିର ନାମଟା ରହିଛି ଯିନା । ନାମଟା ଥାଉ, ଭେଦଭାବ କାହିଁକି ରଖିବା ?

ମମତା ଉତ୍ତର ଦେଲେ ନାହିଁ । ବଲବଲ କରି ଚାହିଁରହିଲେ ଅସ୍ତ୍ର ମୁହଁକୁ । ପୁରୋହିତଙ୍କର କୁଳବଧୂ ଏଇ ଝିଅଟି ବଡ଼େଡ଼ ଜମିଦାର ବଂଶର ବ ପ୍ରଥମ ବଧୂ ସେ । ଦେହରେ ସୂର୍ଯ୍ୟାଲୋକ ପଡ଼ିନ୍ତା ନାହିଁ । ଯେଉଁ ବାଟରେ ଅଛୁଆଁ ବା ଅନ୍ୟ ଜାତି ଲୋକ ବୁଲି ଯାଉଛନ୍ତି, ସେବାଟର ଧୂଳି ଲାଗିନ୍ତା ନାହିଁ ଯାହାର ପାଦରେ, ସେ ଆଜି ସମସ୍ତଙ୍କ ଆଗରେ ସବୁ ଜାତିର ଝିଅବୋହୂଙ୍କରେ ଯେଉଁ ନିଃସଙ୍କୋଚରେ ଘୁଲୁଅସିଛି । ଘର ଘର ବୁଲି ତା'ର ଅଲଙ୍ଘନ, ଶୁଣିଲି କଥା ପ୍ରଚାର କରୁଛି । ଛି—।

ସେ ଋଷିନାମ୍ନ ଏଥିକୁ ଦାୟୀ । ଅଜ୍ଞାତକୁଳଶୀଳା ଆହୁତ ଦେଖା ! ସତ ଚିଛ କହି, ଗ୍ରେଷ୍ଠକୁ ବଡ଼ଯାଏ ସମସ୍ତଙ୍କର ସେବାଶୁଶ୍ରୂଷା କରି ମନ କିଣି ନେଇଛି । ନିଜେ ସବୁ କାମକରି ଅନ୍ୟମାନଙ୍କ ଦ୍ୱାରା କରାଇଛି । ଉତ୍ପାତ ସୃଷ୍ଟି କରି ଯାଇଛି ।

Digitized by PPRACHIN, SOA

ଭଲ ନୁହେଁ, ଭଲ ନୁହେଁ । ଏ ଗ୍ରାମରେ ତାକୁ ପୁରାଇ ଦେବା ଉଚିତ ନୁହେଁ । ସେ ଯାଇଛି ଭଲ ହୋଇଛି । ଆଉ ସେ ନ ଫେରୁ ।

କାନରେ ବାଜି ଯାଉଛି ଆହୁରି ମନକଣା ମା' ଡାକ । ଆଖି ଖୋଲିଲେ ତା'ର ହସିଲା ମୁହଁଟି ଦର୍ଶନ । ତା'ଆର କୋଳରେ ମୁଣ୍ଡ । କଅଁଳ ହାତରେ ମୁଣ୍ଡ ଆଉଁଷି ଦେଉଛି । ଆଖି ଛଳ ଛଳ କରି କହୁଛି, କେତେ କଷ୍ଟ ତମେ ପାଇଲଣି । ପେଟର ବେଦନା ଊଣା ହେଲାଣି ତ ? ମୁଣ୍ଡ ବୁଲେଇବାଟା ସାମାନ୍ୟ ରୋଗ । ଏଇ ଔଷଧରେ ଭଲ ହୋଇଯିବ । ଆଁ କର ମା—

ତୁଣ୍ଡରେ ଔଷଧ ଦିଏ ।

ଏଥର ଆସି ମୁଣ୍ଡ ନୁଆଁଇ ପ୍ରଣାମ କଲା । ଗୋଡ଼ଧୂଳି ନେଇ କପାଳରେ ଲଗାଇଲା । କହିଲା, ଆର ଗାଁକୁ ଯାଉଥିଲି ଯେ ମନହେଲା ଏଇ ଗାଁ ବାଟେ ମୁଁ ପଶିଯାଏଁ — ।

ହାତ ଯୋଡ଼ି ଧରି ଅନୁରୋଧ କଲାରୁ ପିଠା ଦି'ଖଣ୍ଡି ତରତର କରି ଗିଳି-ଦେଇ କହିଲା, ସୁନାପୁର ଗାଁରେ ହରି ମଲିକଙ୍କ ବୋହୂ ତିନି ଦିନ ହେଲା କଷ୍ଟ ପାଉଛି ଯେ ବଞ୍ଚିବା ମରିବା ଠିକଣା ନାହିଁ । ମଲିକ ବୁଢ଼ା ଦାଣ୍ଡରେ ଅନେଇ ବସିଛନ୍ତି । ଆଗ ବୋହୂ ତାଙ୍କର ଏମିତି ପ୍ରସବ ନ କରି ମରିଥିଲା । ଗରିବ ପାଣଘର ତ, ବେତା ଟୋକେଇ ବୁଣି ଓଳିଏ ଖାଇଲେ ଦଓଳି ଉପାସ ରହି ବେଳ କଟାନ୍ତି । ଡାକ୍ତର ବଇଦ ଡାକିବାକୁ ପଇସା ନାହିଁ ମା, ସରକାରୀ ଡାକ୍ତରଖାନା ସୋମ-ଗଡ଼ରେ, ବହୁତ ଦୂରରେ । ମଲିକେ ଛଟପଟ ହେଉଛନ୍ତି । ଆଖିରେ ଲୁହ ଧରୁ ନାହିଁ । ଗହୀର ବିଲ ମଝିରେ ସେ ଗାଁ । ଝଣ୍ଡ ! ରାସ୍ତାବାଟ ନାହିଁ । ଧାଇଁ ଧାଇଁ ଯିବାକୁ ପଡ଼ିବ । ମୋ ଯିବା ଯାକେ ଠାକୁରେ ତା'କୁ ବଞ୍ଚେଇ ରଖନ୍ତୁ । ତା' ବିକଳ ଡାକ ମୋ' କାନରେ ବାଜିଯାଉଛି ।

ତଳେ ମୁଣ୍ଡିଆଟାଏ ମାରି ସୁବର୍ଣ୍ଣ-ପ୍ରତିମା ଅଦ୍ଭୁତ ବିଜୁଳି ପରି ଧାଇଁ ପଳେଇଲା । ଆଖିରୁ ଲୁହ ଝରିପଡ଼ୁଛି । ସତେ କି ହରି ମଲିକର ବୋହୂ, ତା'ର ଝିଅ କି ସାନ ଭଉଣୀ । ମମତା ନାକ ଟେକି ତା'ର ଗଲା ବାଟକୁ ଚାହିଁ ରହିଲେ । ମନ କହିଲା, ଛି, ପାଣଘର ଏନ୍ତୁଡ଼ିଶାଳରେ ପଶିବାକୁ ଯାଉଛି । ଏଇଟା ଘରେ ପାଦ-ଦେଲେ ଘର ଅପବିତ୍ର ।

ମମତା ଲୁଗା ପାଲଟିଲେ । ତୁଳସୀପତ୍ରପାଣି ମୁଣ୍ଡରେ ଛିଞ୍ଚି ଦେଲେ । ପଲଙ୍କ ଉପରେ ଶୋଇ ପବିତ୍ର ହେବାକୁ ଭାଗବତ ପୋଥିଟି ଧରି ଓଲଟାଇଲେ । ଅଖିରେ

Digitized by PPRACHIN, SOA

ଖାଲି ସେଇ ସଦକ ପଡ଼ି ଯାଉଛି—ସକଳ ଦେବତ୍ୱ ନାରାୟଣ, ବର୍ଣ୍ଣନ୍ତ ପରମ କାରଣ ।

ପୋଥି ବନ୍ଦ କରି ଉଠି ବସିଲେ । ଆହ୍ଲାଦ ଆଖିରେ ଲୁହ ଛଳ ଛଳ କରି ଡାକ ଶୁଭୁଛି ଦୂରରୁ, ତେବେ ପରା ରାଣୀମା । ସବୁ ପ୍ରଜାପିଲା ତମରି ପୁଅ ଝିଅ ଥିଲେ, ତମେ ପୁଣି ଏମିତ ଭାବୁଛ ? ମା', ସକଳ ଦେବତ୍ୱ ନାରାୟଣ— ।

ହଁ ମା, ସକଳ ଦେବତ୍ୱ ନାରାୟଣ—, କାହିଁ କେତେ ଦୂରରୁ ଡାକ ଶୁଭୁଛି ତାଙ୍କ ଆତ୍ମାର ଜଣିଭା ସୁବ୍ରତ ।

ଅଗଣାଅଗ୍ନି ବନସ୍ତ ଭିତରେ, ପାହାଡ଼ ତଳ ଝରଣା କୂଳରେ ପଦ୍ମ କୁଣ୍ଡଆରେ ତାଙ୍କର ନୟନାଭିରାମ । କେତେ ଦୁର୍ବଳଦିଶୁଛି । ଛଟପଟ ହେଉଛି ମାଲୁଆ ଜରରେ ।

କିଏ ତା'ର ମୁଣ୍ଡ ପାଖରେ ବସିଛି, ମୁଣ୍ଡ ଆଉଁସୁଛି, ପାକଲ ବୁଢ଼ୀଟି ?

ଜଳଘରର ବୁଢ଼ୀମା ।

ସେ ବୋହୂଟି କିଏ, ଅଣ୍ଟାରେ ଦୁଇ ବର୍ଷର ସିଧାଣିନାକିଆ ନଣ୍ଡାମୁଣ୍ଡିଆ ପିଲାଟିକୁ ବାନ୍ଧି ସୁବ୍ରତର ପାଟିରେ ପେଜ ଦେଉଛି ?

ସାନ୍ତାଳ ଘରର ବୋହୂଟି ।

କିଏ ସେ କଳା ମିଚ ମିଚ ଝିଅ ହଉଛି, ଖଟିଆର ଦୁଇ ପାଖେ ବସି ସୁବ୍ରତ ଗୋଡ଼ ଆଉଁସୁଛନ୍ତି ? ମୁଣ୍ଡରେ ଫୁଲମାଳ, ତୁଣ୍ଡରେ ଗୁଣ୍ଡୁ ଗୁଣ୍ଡୁ ଗୀତ ।

କୋହ୍ଲ ଓ ଖଡ଼ିଆ ଘରର ଝିଅ ହଉଛି ।

ସୁବ୍ରତ କଥା କାନରେ ସତେ କି ବାଜୁଛି, ମା ସେମାନେ ମୋ' ଆଈମା, ଖୁଡ଼ୀ, ଭଉଣୀ ହଉଛି, ମୋତେ ସେମାନେ ବଞ୍ଚାଇବେ । ତାଙ୍କର ସେବା କରିବାକୁ ବଞ୍ଚାଇବେ ।

ଏ ପାଖେ ଆହ୍ଲାଦ, ସେ ପାଖେ ସୁବ୍ରତ ।

ଉଠିଆସିଲେ ମମତା । ଡାକଶୁଭିଲେ ମାଳତୀକୁ, ଆଲୋ, ରଥିଆକୁ ଡାକ ।

ସୁନାପୁର ହରମଲିକ ଘରେ ବଥୁଆ ପଥି, ଗୁଡ଼ଳ, ଘିଅ, ଡାଲି, ଆମ୍ବ ଆଚାର, ପୁରୁଣା ଲୁଗା, ନୂଆ ଲୁଗା, ଦଶଟି ଟଙ୍କା ଦେଇ ଆସି ଖବର ଦେଲା, ଆମ ଟୁନାଅପା କ ସୁନ୍ଦର ଭଣ୍ଡାପଟରେ ପଶ ନାଲିଆ ପୁଅଟିକୁ କୋଳରେ ଧରି ସାବୁନ୍ ଲଗାଇ ଗାଧୋଇ ଦେଉଛନ୍ତି । ଏଡ଼େ ବଡ଼ ପିଲା, ପାଟିକରି କାନ୍ଦୁଛି ତ ! ସୁନାପୁରିଆ ସବୁ ମାଇପେ ସେଇଠି ରୁଣ୍ଡ ।

ଟୁନାଅପା କହିଲେ ସେ ନୂଆ ପୋଷାକକୁ, ଆଲୋ, ଲକ୍ଷ୍ମୀ ଦେଖ୍ ତୋ' ବୋଉ ତୋ' ପାଇଁ କ'ଣ ପଠେଇଛି । ରଣେଡ଼ିର ରାଣୀମା ସେ; ଆମ ସନ୍ତୁକର ପରା ସେ ବୋଉ ଲୋ— ।

Digitized by PPRACHIN, SOA

ସାନ୍ତାଣୀ, ସମସ୍ତେ ସେମାନେ ମୁଣ୍ଡରେ ହାତ ଲଗାଇ ଧନ୍ୟ ଧନ୍ୟ କଲେ । ଟୁନ୍ନଅପା କହିଲେ, ମା'ଙ୍କୁ କହିବ, ରଇଙ୍କୁ ସିବ ଯେ ସବୁଯାକ ପିଠା ଖାଇ ଦେଇ ଅସିବ— ।

କାଲି ଗ୍ରଣ୍ଡ ପହରଦନ ରଜ । ଆନ୍ନୁଡ଼ ଆସିବ । ସନ୍ଧ୍ୟା କେତେଥର ମନେ ପକାଇ ଦେଲଣି । କ କ ପିଠା ହେବ, ବରାଦ କର ସାରଲଣି । ପିଲାଟାର ମନ କଣି ନେଇଛୁ ସେ । ଭଣସିଂହେ ବ ଦୁଇଥର ପଗ୍ଭରଲେଣି, ଆନ୍ନୁଡ଼ ଆସିବ ପରା, ଭଲ ଝିଅଟିଏ । ତୁହେଁ କ ମମତା ?

ହଁ, ଭଲ ଝିଅଟିଏ । ସେମିତକା ଝୋଦ୍ଧୁଟିଏ ଆଗିଦେବ ମୋ'ର ସୁବ୍ରତ ପାଇଁ ? ରୂପ ଯେମିତ ଢଙ୍ଗ ସେମିତ ।

ଫେଶବ ନାହିଁ ଟୁନ୍ନା ?

ଗ୍ଭଡଗ୍ଭଡ ସେ ଜଗି ବସିଥିଲା । ପୋଷ ପୋଷ ଅଇ ପୋଛୁଥିଲା । ଅସୁଖ ପାଇ ନାହିଁ । ମନରେ ଘୃଣାଭାବ ନାହିଁ । ଟୁନ୍ନା ନିଶ୍ଚେ ଆସିବ । ଉପାସିଆ ଆଖି ଝୁରି ହେଉଛୁ । କଙ୍ଗାଳିଆ ମନ ଖୋଜୁଛୁ । ସେ ସମସ୍ତଙ୍କୁ ଭଲ ପାଉଛୁ, ସେବା କରୁଛୁ । ତା'ର ଶକ୍ତିକୁ ଗୁହିଁ ପରକୁ ଦେଉଛୁ । କାହାର ସେ ଧାରୁଆ ହୋଇ ନାହିଁ । ଟୁନ୍ନ ଅବଶ୍ୟ ଆସିବ ।

ଅରେ, କାହିଁକ ଏ ବୋହୁଝିଅଗୁଡ଼ିକ ଅଂବଳରେ ଅସିଛନ୍ତି ପଗ୍ଭରଲେ ନାହିଁ ତ ? ଘର ଆଜ ପୁର ଉଠୁଛୁ । ସମସ୍ତଙ୍କ ମୁହଁ ଖଳପୁଟା ଫୁଲଗୁଡ଼ିକ ପର ସୁନ୍ଦର, ସତେଜ, ହସ ହସ । ସମସ୍ତେ କଣେଇଁ କଣେଇଁ ଅନଉଛନ୍ତି ଆଭାର ମୁହଁକୁ । ଆସିବାର ଉଦ୍ଦେଶ୍ୟ ସେଇ କହିବ ।

ମମତା ପଗ୍ଭରଲେ ଆଭାକୁ, କୁଆଡ଼େ ଆସିଛ ମା ?

ଆଭା କହିଲା, ରାଣୀମାଙ୍କ ପାଖରେ ଆମର ଗୋଟିଏ ମାଗୁଣୀ ଅଛୁ । ଏ ଗାଁର ବୋହୂଝିଏ—ଯେଉଁମାନେ "ଗ୍ରାମସେବକା-ସଙ୍ଘ"ର ସଭ୍ୟା, ସେମାନେ ଆମକୁ ଆପଣଙ୍କ ପାଖକୁ ପଠାଇଛନ୍ତି ।

ମମତା ହସିଲା ମୁହଁରେ ଗ୍ଭହିଁଲେ ଜଣ ଜଣ କର । କଏ ଟିକଏ ବୟସର ତ' କଏ ଅଳ୍ପ ବୟସର, କଏ ଡେଙ୍ଗା କଏ ଗୁଣ୍ଡୁଣୀଟିଏ, କଏ ସାମାନ୍ୟ ମୋଟା ଓ କଏ ଧଣ୍ଡୁଆ, କାହାର ଧାର ମୁହଁ, କାହା ମୁହଁଟି ଗୋଲ, କାହାର ନାକଟି ଲମ୍ବ, ପୁଣି କାହାର ଚପିଲା ପର, କାହାର ଆଖି ଟିକଏ ଛୋଟ, କାହାର ବଡ଼, କଏ ମଲ୍ଲୀଫୁଲ ପର କ ଚମ୍ପାଫୁଲ ପର ଗୋରୀ, କଏ ଟିକେ ରଙ୍ଗରେ ଊଣା, କଏ ପୁଣି କଜ୍ଜଳ କଳା ।

Digitized by PPRACHIN, SOA

ନଟବେଶି ଗୃହିଁଲେ ଏମିତ କେତେ ପ୍ରଭେଦ ଦିଶେ । ଖାଲି ଗୃହିଁ ଦେଲେ ସମସ୍ତେ ତ ଝିଅ ।

ପଚ୍ଛରିଲେ ଜଣାପଡ଼ନ୍ତା ସିନା—କିଏ ଶାଗ ପାଣି ଖାଇ ଆସିଛି, କିଏ ମାଣ୍ଡିଆ ଜାଉ କିଛେ, କିଏ ବାସି ପଖାଳ, କିଏ ଅବା କ୍ଷୀର ପୁର ଖାଇଥିବ, ଆଉ କିଏ ପେଟ-ଉପାସୀ । ବୁଝିଲେ ସିନା ଜାଣନ୍ତେ, କିଏ ପାଞ୍ଚ ପୁଅରେ ଟେଲବସର ଝିଅ, କି କିଏ ତା' ମା'ର ଅଲେଡ଼ା ଅଖୋଜା ପଞ୍ଚମ ଝିଅ । କେଜାଣି କିଏ ବାପ ମାଆଙ୍କର ଗୋଟିଏ ବୋଲି କୁଳର ପ୍ରଦୀପ । ଆହା, କିଏ ହାଲେ ବାପ କି ମା' ନ ଥିଲି ଝିଅଟିଏ ହୋଇଥିବ ।

ସିଏ ଯାହା ଖାଇଥାଉ, ସିଏ ଯାହା ହେଇଥାଉ, ସମସ୍ତେ ତ ଝିଅ । କିଏ ବାପ ମାଙ୍କ କନ୍ଦେଇ ଏ ଗାଁକୁ ବୋହୂ ହୋଇ ଆସିଛି । କିଏ ପୁଣି ବାପ ମା ଭାଇ ଭାଉଜଙ୍କୁ କନ୍ଦାଇ କାଲି ଚାଲିଯିବ କେଉଁ ଅଜଣା ଗାଁର ଅଜଣା ଘରର ବୋହୂ ହୋଇ ।

ହସରେ କାହାର ଓଠ ଫାଟି ପଡ଼ୁଛି । କିଏ ପୁଣି ମଉନମୁହିଁଟିଏ, କିଏ ବକୁଳି ପରି ଚଞ୍ଚଳ କର୍ମକୁଶଳୀ, କିଏ ଟିକିଏ ମାନ୍ଦା, କିଏ ପାଠ ପଢ଼ିଥିବ, କିଏ ହୋଇଥିବ ମୂର୍ଖ; କାହାର ବୁଦ୍ଧି ବିଚକ୍ଷଣ, କିଏ ଟିକେ ଓଲିଲିଆ; କାହାର ମନଟି ସରଳ, ନିର୍ମଳ, କାହାର ମନଟି ହିଂସିଆ, ହାଣ୍ଡିପାଣ୍ଡିଆ । ଏମିତ ଏମିତ କେତେ ପ୍ରଭେଦ ଦେଖିବ ଜଣଙ୍କଠାରୁ ଆରଜଣକୁ । ପାଞ୍ଚମନ, ପଚିଶ ପ୍ରକୃତି, ଅସଂଖ୍ୟ ପରିସ୍ଥିତି, ଅକଳନ ଅବସ୍ଥା । ଜଣକଠାରୁ ଆଉ ଜଣେ ଭିନ୍ନ । ଭାଷା, ଭାବ, ଢଙ୍ଗ, ଅବସ୍ଥା—ଭଲଭଲିକା ଗହଣା, ଝଲଝଲିକା ଶାଢ଼ୀ, ବ୍ଲାଉଜ—ହେଲେ, ସମସ୍ତେ ସେମାନେ ଝିଅ । ବୋହୂ ହେଇଛନ୍ତି, ବୋହୂ ହେବେ; ମା ହେବେ, ଶାଶୁ, ଅଈଶାଶୁ ହେବେ—

କା'ଘର ଝିଅ, କା'ଘର ବୋହୂ, ସେମାନେ ନ ଜାଣିଲି ଲୋକ କିପରି ଜାଣିବ ? ସବୁ ରୂପ, ସବୁ ଗୁଣ, ଧନ, ବୁଦ୍ଧି, ବିଂଶବଳ, ଭଲ ମନ, ଭଲପଣିଆ କେବଳ ବଡ଼ ଜାତି ବୋଲିଉଥିବା ଲୋକଙ୍କ ପାଖରେ ନ ଥାଏ, ସବୁ ଘରେ ଥାଏ । କିଏ କା ଘର ପିଲା, ଏ କଥା ତୁଣ୍ଡ ଖୋଲି କିପରି ପଚାରିବେ ମମତା ? ଶୁଣିଲେ, ଅଜାଣତରେ ମନରେ କାଳେ ପାତରଅନ୍ତର ଭାବ ଆସିବ; କାଳେ କିଏ କାହାକୁ ସ୍ନାନ ମଣି ମନର ସରାଗ ମାରି ମୁହଁ ଶୁଖାଇବ । କେତେ ଆଗ୍ରହରେ ଧାଇଁ ଆସିଛନ୍ତି ମାଗୁଣି କରି । ଦେବା ନ ଦେବା କଥା ପଛ ।

ଅତି ସ୍ନେହରେ ଜଣ ଜଣକର ସମସ୍ତଙ୍କ ଚିବୁକରେ ହାତ ମାରିଲେ । କହିଲେ, ଅରେ, ମା' ବୋଲି ଧାଇଁ ଆସିଛ ପରା ମୋ' ପାଖକୁ ମାଗୁଣି କରିବାକୁ । ତେମେଟିମାନେ ମୋ'ର ବୋହୂ, ଝିଅ ହେଲ । ଆଜପରା ତନେ ପାଟିରେ ପାଣି ନ ମାରି ମାଗୁଣି କରିବ କିପରି ? ଆଲୋ ଭରତି, ଜିଲେ ସୁଧନ୍ୟା, ଅନେଇ ରହିଲ

Digitized by PPRACHIN, SOA

କ'ଣ ମ ? ଚମ୍ପା, ମାଳତୀ, ଯମୁନାକୁ ଡାକ । ନେଇ ଯା ସନ୍ଧ୍ୟା ଝୋ'ର ଖୁଡ଼ୀଙ୍କ ଭଉଣୀମାନଙ୍କୁ । ଏ ଘରେ ପାଦ ଦେଇ ପାଣି ଓଦା ନ କଲେ ମୁଁ ଆଉ କିଛି ଶୁଣିବି ନାହିଁ । ଯା—

ସୁସନ୍ଧ୍ୟା ସେମାନଙ୍କୁ ଭଳ ଝଞ୍ଜାକୁ ନେଲା ।

ଭାରତୀ ଗଲେ ପଛରେ । ଭାବିଲେ, କାହିଁକି ମମତାଙ୍କର ମନ ବଦଳିଲା, କପଟ ଦେଖ ନିଜର ବଡ଼ପଣିଆଁ ଗ୍ରାହ୍ୟ ପଛ ଆପଣା ଭୁଲି ଗ୍ରାମର ଝିଅ ବୋହୂଙ୍କୁ ଆପଣାର କରି ପାରିଲେ ?

ଏଥିରେ ଦାୟୀ ସୁରଭି । କନ୍ଦ କରିଛନ୍ତି, କେଉଁଠି ଭଳ ମନଷ୍ଟାଣ୍ଡ କରି ବଡ଼-ପଣର ଧାରଣାକୁ ଆଗ୍ରାହ୍ୟ କରିବେ ? ବଡ଼ପଣ ଅଭିରୁଚି କେଉଁଠି ? ସମ୍ପତ୍ତି ଗଲା । ନୟନର ପିତୁଳା ପିଲା ଦୁଇଟି ଧରଗ୍ରାହ୍ୟ ପଢ଼ାକୁ ଗଲେ । ସାନ ବଡ଼, ପର-ଆପଣା ଭେଦ ଭୁଲି ସମସ୍ତଙ୍କ ସଙ୍ଗେ ମିଳିମିଶି ଚଳିଲେ । ସମସ୍ତେ କପଟ ଉଳରେ ରହିଲୁ, ସୁଖରେ ରହିଲୁ, ଏଇ କଥା ବୁଝିଲେ, ସେଇଥି ପାଇଁ କାମ କଲେ ।

ମମତା ବୁଝିଲେଣି, ପୁରୁଣା-କାଳିଆ ଢଙ୍ଗ ଯାଇଛି । ନିଜେ ସୁଖ ଆନନ୍ଦରେ ରହିବାକୁ ହୁଅନ୍ତୁ ହୋଇ ପରର ଶିଶ ନ ଦେଖିଲେ କେହି ସୁଖରେ ରହିପାରିବେ ନାହିଁ, ସମସ୍ତେ ଘୋଡ଼ ଝଣାଝଣି ହୋଇ ପଡ଼ିବେ ।

କହୁଥିଲେ ସେ ଦିନେ, ଭାରତୀ, କହୁପାରିବୁ କାହିଁକି ମୋର ଏତେ ବଡ଼ ଦୁର୍ଗତି ହେଲା ? ମଦଖିଆରୁ ଫେରାଇବାକୁ ଯାଇ ତାଙ୍କ ଉପରେ ରାଗକରି ଅଭିମାନ କରି, ଦରାଣ ହୋଇ ମୁଁ ନିଜେ କଅଣ କଲିଟି । ଧନ ଗଲା, ଦେହରୁ ଗଲା ଗହଣାଗାଣ୍ଠି, ଦେଶରେ ନିନ୍ଦା ଅପବାଦ ରଟିଲା । ସ୍ୱାସ୍ଥ୍ୟ ହଜିଲା । ରୋଗର ଯନ୍ତ୍ରଣାରେ ଦିହେଁ ଅନେକ ଛଟପଟ ହେଲୁ । ଶେଷକୁ ନାଥିଆ ମଲା । ଘରେ ପଶିଲେ ପୁଲିସ ଫଉଜ । କ'ଣ ହେଲା ଲେ ଭାରତି, କଅଣ ହେଲା ସତେ ? ସତ କଥାଗୁଡ଼ା ସପନ ପରି ଲାଗୁଛି । ଭାବିଲା ବେଳକୁ ଗ୍ରୁନଅଁ ଲାଗୁଛି ।

ଡରି ଡରି ଭାରତୀ ଉତ୍ତର ଦେଲେ, ଯୋଗ ଅପା, ଯୋଗ । କେତେ ଲୋକଙ୍କର ଜମିଦାରୀ ଗଲା, କେହି ତ ଏପରି ଭାଙ୍ଗିପଡ଼ିଲେ ନାହିଁ । ସୁଖେ ଦୁଃଖେ ନିଜର ମାନସମ୍ଭ୍ରମ ରଖି ସମସ୍ତେ ଭଲରେ ଚଳିଲେ । ଠାକୁରେ ଯାହା କରନ୍ତି ମଙ୍ଗଳ ପାଇଁ । ଧନ ପଛେ ଯାଉ, ଗହଣାଗାଣ୍ଠି ପଛେ ଯାଉ ସାଆନ୍ତେ ଫେରି ଆସିଛନ୍ତି । ମଦପାଣି ଛୁଉଁ ନାହାନ୍ତି ।

ହଁ ଲୋ, ସେଥିପାଇଁ ଦାୟୀ ସେଇ ଝିଅଟି—ଆହୁତି ! କେତେ ସ୍ଥାନମାନଙ୍କ କଥା ତାକୁ ମୁଁ ମୁହଁରେ ନ କହୁଛି । ଓଡ଼ସା, ଛଟଣା, ସତ୍ୟାନାଶୀ । ଛଳକର

ନାହିଁ । ମୁହଁ ଶୁଖେଇ ନାହିଁ । ଓଲଟି ଜବାବ ଦେଇ ନାହିଁ । କେଡ଼େ ସୁନ୍ଦର, କି ବିଚକ୍ଷଣ । ବଦାନ୍ୟ, ବୁଦ୍ଧି, ଶକ୍ତି, ଢଙ୍ଗ, ସ୍ନେହ, ସେବା କାହିଁରେ କଏ ତାଙ୍କୁ ବାଛିବ କି ? ତାଙ୍କର ସେବା ଯତ୍ନବେଳେ ଦେଖିଲେ କଏ କହିପାରିବ ସେ ଏ ଘରର ବୋହୂ, କି ଝିଅ ନୁହେଁ ?

ସତେ ଅପା !

ପାପ ମନ ତ, ଶେଯ ବିଛଣାରୁ ଉଠି ଟଳି ଟଳି ଯେବେ ରାତି ଅଧରେ ଯାଉଥିଲି ସେ ଘରକୁ । ବନ୍ଦ କରିଦେଲି । ହାଲୁକା ଶୁଣିଗଲା । ତାଙ୍କ ଡାକଆଜ୍ଞା ଆଜି ଜଗିଇ ବସେଇଛି ଆହୁଡ଼ି । ଯେତେ ବସିଛି ପଲଙ୍କ ଉପରେ ଗୋଡ଼ ପାଖରେ । ପାଦ ଆଉଁସୁଛି । କହୁଛି, ମହାପାପୀ ଆପଣଙ୍କର ଗୋଡ଼ ଛୁଇଁଛି ମୁଁ. ଆପଣ ମୋ'ର ବାପଠୁଁ ବଳି ବଡ଼ । ଆଜି ପ୍ରତିଜ୍ଞା କରନ୍ତୁ । ଆଉ କେବେ ମଦପାଣି ଛୁଇଁବେ ନାହିଁ । ଦେଖୁଛନ୍ତି ତ ମା'ଙ୍କ ଅବସ୍ଥା, ପୁଣି ନାତୁଣୀର ଅବସ୍ଥା ? ଆପଣ ପୁଣି ମଦ ଧରିଲେ ମା' ଆଉ ବଞ୍ଚି ପାରିବେ ନାହିଁ ।

କଅଣ କହିଲେ ସାଆନ୍ତେ ?

ତୁନି ରହିଲେ । ଆହୁଡ଼ି ଉଠି ଠିଆହେଲା । ମୋ' ଆଡ଼କୁ ପଛ କରିଥିଲା । ସେ କହିଲା, ମୁଁ ଜାଣେ ଆପଣଙ୍କର ଦୁଇ ଆଖି ଦୁଇ ପୁଅ ସୁବ୍ରତ ଓ ସୁଚରିତ ଆପଣଙ୍କୁ ତ୍ୟାଗ କରିଛନ୍ତି କେବଳ ଏଇଥି ପାଇଁ । ଦିନୁ ମୁଁ ଶୁଣିଛି । ମଦ ଖାଇ ବୁଦ୍ଧିବୃତ୍ତି ହରାଇ ଆପଣ ଯେଉଁ ପାପ, ଯେଉଁ ଅନୀତି କରି ଆସିଛନ୍ତି, ମାଆଙ୍କର ଅସମ୍ମାନ କରିଛନ୍ତି. କୌଣସି ସନ୍ତାନ ତାହା ସହି ପାରିବ ନାହିଁ । ଏବେ ମୁଁ ସହି ପାରୁନାହିଁ । ପ୍ରତିଜ୍ଞା କରନ୍ତୁ, ଆପଣ ମଦ ଛୁଇଁବେ ନାହିଁ ।

ଏତେ ଟାଣ କରି ସେ କହିଲା ?

ହଁ ଲୋ ଘରଣୀ ! ଜାନୁରେ ମୁଣ୍ଡ ଭରା ଦେଲି । ଆଖିରୁ ମୋର ଲୁହ ଝରି ପଡ଼ୁଥାଏ । ପାଣ୍ଠି ବନ୍ଦ କରି କାନ ଡେରିଲି । କହିଲେ ସେ, ତୁ କିଏ ମତେ ତତ୍ତ୍ୱ ଶିଖାଇବୁ ? ଗୁଲ ଯା—ଆହୁଡ଼ି କହିଲା, କାଲି ଯେଉଁ ପୁତ୍ରବଧୂମାନେ ଏ ଘରକୁ ଆସିବେ ସେମାନେ ଏ ଘରର ଝିଅ । ସତକଥା ଉଲକଥା କହିବାକୁ ସେମାନେ ଡରିବେ ନାହିଁ । ଆଜିଠୁଁ ଆପଣ ନିଜର ଦେହ, ମନ ଓ ବୁଦ୍ଧିକୁ ପବିତ୍ର ନ କଲେ ସେମାନେ ଆପଣଙ୍କର ଅପବିତ୍ର ଦେହ କି ଅପବିତ୍ର ଦୃଷ୍ଟି ସୁଦ୍ଧା ସ୍ପର୍ଶ କରିବେ ନାହିଁ । ପ୍ରତିଜ୍ଞା କରନ୍ତୁ, ଆଉ ମଦ ଛୁଇଁବେ ନାହିଁ । କୁହନ୍ତୁ—ନୋହିଲେ ମୁଁ ଏବେ ବିଦାୟ ନେଇ ଯିବି ।

ରଣସିଂହେ ଛଟପଟ ହେଲେ, ପଲଙ୍କରେ ହାତଭରା ଦେଇ ଉଠି ବସିଲେ । ମୁଣ୍ଡ ହଲାଇ କରି କହିଲେ, ସତ କହିଲୁ ମା, କେବଳ ମଦ ନୁହେଁ, ଆହୁରି କେତେ ନିଶା । କେତେ ଅମଳ ମୋର ଏଇ ଦେହରେ ଭେଦୁଛି । ମନରେ ଭେଦିଛି । ଦେହ ମନ କଷ୍ଟ କରୁଛି । କିନ୍ତୁ, ପାରିବ ସେ ସବୁ ପରିତ୍ୟାଗ କରି ? କେବଳ ପ୍ରତିଜ୍ଞା କଲେ ତ

Digitized by PPRACHIN, SOA

ହେବ ନାହିଁ । କେତେ ଥର ମୁଁ ମନେମନେ କେତେ କଥା ପ୍ରତିଜ୍ଞା କରିଛି । ପାଳନ କରି ପାରି ନାହିଁ । ପୁଣି ଆଜ ମୁଁ ପ୍ରତିଜ୍ଞା କରୁଛି । କିଏ ମତେ ପାଳନ କରିବାରେ ସାହାଯ୍ୟ କରିବ ?

ମା କହିବେ । ଆପଣଙ୍କ ପାଇଁ ନିଜକୁ ସେ ଜାଣି ଜାଣି ପୋଡ଼ିଜାଳି ମାରୁଛନ୍ତି । ତାଙ୍କର କଥା ଯଦି ଆପଣ ଶୁଣନ୍ତେ, ତାଙ୍କର ସମ୍ମାନ ରଖିବାକୁ ଯଦି ଆପଣ ପଣ କରନ୍ତେ, କାହିଁକି ଆପଣଙ୍କର ଏ ଦୁର୍ଦ୍ଦଶା ହୁଅନ୍ତା ।

କହିଲେ ରଣସିଂହେ, ଚେଷ୍ଟା କରିବି ମା—

ଆଲୋ ଖରତି, ମୋର ମନରେ ଅଜଣା ଧାରଣା ଯେପରି ମତେ ମାରି ଗୋଡ଼େଇଲା । ଟଳି ଟଳି ପଳେଇ ଆସିଲି ଏ କୋଠରୀକୁ । ପୁଣି ମୋର ପେଟର ବେଦନା ତୀବ୍ର ହୋଇ ଉଠିଲା । ଚମ୍ପାକୁ ଛୁଇଁ ମୁଁ ମାଳତୀ ଉପରେ ଗଛ କାଟିଲା ପରି ପଡ଼ିଲି ।— କେତେ ଭଲ ପିଲା ସେ ଆହୁରି ।

ଖରତିଙ୍କ କାନରେ ପଡ଼ିଲା ସୁସନ୍ଧ୍ୟାର ଗେହ୍ଲା ଡାକ, ଏଣେ ଆସୁନୁ ଝିଅ. ସେଠି କାହିଁକି ଠିଆ ହୋଇ ରହିଲୁ । ଦେଖିଲୁ, ଆଖି ଖରତି ଫୁଲେଇ ହେଉଛନ୍ତି ।

ଖରତି ଉତ୍ତର ଦେଲେ, ଯାଉଛି ।

ଫେରି ଗ୍ଲହିଲେ, ମମତା ଉପର ଖଣ୍ଡାକୁ ଯାଉଛନ୍ତି ।

ଗେହ୍ଲାରେ ବଢ଼ିଥିଲା ସୁସନ୍ଧ୍ୟା । ବାପ, ବଡ଼ବାପ, ମା', ବଡ଼ମା, ଦୁଇ ଭାଇ, ଆଈବୁଢ଼ୀ, ନୂଆମା, ପୁଣି କେତେ ଦାସୀ ପରିଚାରିକା, ସମସ୍ତଙ୍କର ସେ ହେଉଥିଲା ଖେଳର ପିତୁଳା । ବାପର ମରଣ କଥା ସେ ଜାଣେ ନାହିଁ । ବଡ଼ବାପାଙ୍କୁ ବାପ ବୋଲି ଜାଣେ, ବଡ଼ମା'ଙ୍କୁ ଜାଣେ ମା'ବୋଲି । ଯାହା ପେଟରୁ ସେ ଜନମିଥିଲା, ସେଇ ହେଲା ତାର ଖୁଡ଼ୀ ।

ଯେତେବେଳେ ସେ ପିଲା ଥିଲା, ରଣଗଡ଼ର ସ୍ୱରୂପ ଦେଖିଥିଲା । ଆଖିଦୁଟିଆ ହେଲାରୁ ଯାଠପଡ଼ା ବନ୍ଦ ହେଲା । ସେ ହେଲା ଉଆସରେ ଆବଦ୍ଧ । ସେଇ କାରାଗାର ହିଁ ତାର ସଂସାର । ସାଙ୍ଗ ସାଥୀ ଉଆସର ଦାସୀମାନେ । ତାର ଦେହଟାକୁ କେତେ ପ୍ରକାରେ କିପରି ସଜାଇବାକୁ ହେବ ସେଥିପାଇଁ ମା ଖୁଡ଼ୀ ମଧ୍ୟ ତତ୍ପର ।

ଜମିଦାରୀ ଗଲା ପରେ ଯେଉଁ ପରିବର୍ତ୍ତନ ବାତ୍ୟା ବହିଲା ତା'ର ସ୍ୱରୂପ ମଧ୍ୟ ସେ ଦେଖିଲା ଓ ଅନୁଭବ କଲା, ବାହାର ଦୁନିଆରେ ନୁହେଁ, ତା'ର ସେଇ କ୍ଷୁଦ୍ର ଦୁନିଆ ଉଆସ ଭିତରେ । ବାପ, ମା, ଖୁଡ଼ୀ, ଦୁଇ ଭାଇ, ସ୍ନେହର ସୁନ୍ଦରୀ ନୂଆମା,—ସମସ୍ତେ ।

Digitized by PPRACHIN, SOA

ଝିଅ ମନ ଉପରେ ସବୁ ପରିବର୍ତ୍ତନ ଗଭୀର ଦାଗ ଟାଣିଦେଲା । ସେ ହେଲା ଗମ୍ଭୀର, ଲଜ୍ଜାଶୀଳା ଏବଂ ଡରକୁଳୀ । ବାପ ମା କି ଖୁଡ଼ୀଙ୍କ ପାଖରେ ଆଗ ପରି ସେ ଆଉ ଗେହ୍ଲେଇ ହୁଏ ନାହିଁ କି ମନଖୋଲା କହିପାରେ ନାହିଁ, ହସିପାରେ ନାହିଁ ।

ବଡ଼ ଭାଇ—ସେ ତାକୁ ପ୍ରାଣରୁ ବଳି ଭଲ ପାଉଥିଲେ, ଯାହାଙ୍କ ପାଖରେ ଥିଲା ତା'ର ପୂର୍ଣ୍ଣ ସ୍ୱାଧୀନତା, ସେ ତାହାକୁ କିଛି ନ କହି ଘରୁ ଚାଲିଗଲେ । ବହୁ-ବର୍ଷର ଅଦେଖା ଭିତରେ ବିଭିନ୍ନ ସ୍ଥାନରୁ ପୋଷ୍ଟ କେଇଖଣ୍ଡି ପତ୍ର ସେ ପାଇଛି — ସ୍ଥାନର ବର୍ଣ୍ଣନା ଲୋକଙ୍କର ଦୁଃଖ ଓ ସେ ନିଜେ କଅଣ କରୁଛନ୍ତି, ସେତକ ।

ଉତ୍ତର ଦେବାର ଉପାୟ ନାହିଁ କାରଣ ପ୍ରତି ପତ୍ରରେ ସେ ଲେଖନ୍ତି- ଆଜି ମୁଁ ଏ ସ୍ଥାନ ଛାଡ଼ି ନୂଆ ସ୍ଥାନକୁ ଚାଲିଯାଉଛି । ଦୁଇ ମାସ ତଳେ ସେମିତି ଖଣ୍ଡେ ପତ୍ର ସେ ପାଇଥିଲା, ଟିକିଏ ଲମ୍ବା । ସେଥିରେ ତାଙ୍କର କର୍ମୀ ଜୀବନର ବର୍ଣ୍ଣନା ଆଉ ଶେଷକୁ – କାଲି ମୁଁ ଏ ସ୍ଥାନ ପରିତ୍ୟାଗ କରି ଚାଲିଯିବି ସନ୍ଧ୍ୟା, ପୁଣି କେଉଁ ନୂଆ ପରିସ୍ଥିତି ଭିତରେ ମୋ'ର ସେବାଶ୍ରମ ସ୍ଥାପନ କରିବି, ନୂଆ କାମ ଶିଖିବି । ଆହୁରି କେତେ ଦରିଦ୍ର, ଅଶିକ୍ଷିତ, ଅପାରଗ, ଦଳିତ ଓ ଶୋଷିତଙ୍କ ସେବାରେ ମନପ୍ରାଣ ଢାଳି ଦେବି ।—

ପତ୍ରଗୁଡ଼ିକ ସମସ୍ତଙ୍କୁ ଶୁଣାଇ ସାଇତି ରଖିଛି । ଅମୂଲ୍ୟ ନିଧି । ପଢ଼ିପଢ଼ି ଚିନ୍ତା କରିଛି – ଭାଇ ତା'ର ଦୂରରେ· କେଉଁଠି ଥିଲେ ମଧ୍ୟ ସୁଖରେ ଅଛନ୍ତି, ଆନନ୍ଦରେ ଅଛନ୍ତି । ମଣିଷର ସୁଖ ଆନନ୍ଦ ପାଇଁ ବଡ଼ଘର, ଦାସଦାସୀ ଦାମିକା ଲୁଗାପଟା କି ଗହଣାଗାଣ୍ଠି ଖୀରପୂରି କି ଧନଦଉଲତ ଲୋଡ଼ାହୁଏ ନାହିଁ । ଲୋଡ଼ାହୁଏ ମନ ଓ ସବୁ ପରିସ୍ଥିତିରେ ଚଳିବାର ଶିକ୍ଷା ଓ ଅଭ୍ୟାସ, ସମସ୍ତଙ୍କ ସଙ୍ଗେ ସମାନ ହୋଇ ଚଳିବାର ଆଗ୍ରହ ଏବଂ ଚେଷ୍ଟା ।

ତା'ର ସାନ ଭାଇ ସେଇ ଗାଆଁରେ । ତାହାର ଉପରେ ତାଙ୍କର ରାଗରୋଷ କି ଅଭିମାନ ନାହିଁ । ସେ ନିଜେ କାମ କରି ଅନ୍ୟମାନଙ୍କୁ କାମ କରାନ୍ତି, ଅନ୍ୟମାନଙ୍କୁ ଆଗ ଖୁଆଇଲେ ପଛେ ସେ ଖାଆନ୍ତି । ସେ ଆସନ୍ତି କେବେ କେମିତି ଉଆସ ଭିତରକୁ, ଗେହ୍ଲେଇ ହୁଅନ୍ତି ଖୁଡ଼ୀଙ୍କ ପାଖରେ, ପୁଣି ଫେରିଯାଆନ୍ତି । ସୁସନ୍ଧ୍ୟା ହାବୁଡ଼େ ପଡ଼ିଲେ ଖୁଡ଼ୀଙ୍କୁ କହନ୍ତି, କାହିଁକି ଏହାକୁ ସଂସାର ବାହାରର ଝିଅଟିଏ କରି ବଢ଼ାଉଛ । ଦୁନିଆ ବଦଳି ସାରିଲାଣି, ଏ ବିଶ୍ୱ ଅକର୍ମଣ୍ୟ କ.ଣ୍ଢଇଟିକୁ ବେଶଭୂଷା କରି ଫୁଲରେ ସଜେଇ କେତେଦିନ ଆଉ ଖେଳିବ ? ବାହାର ଦୁନିଆ କ'ଣ ସେ ଦେଖିଲା ନାହିଁ । ମଣିଷ କାହାକୁ କହନ୍ତି ସେ ଚିହ୍ନିଲା ନାହିଁ । କାମ କ'ଣ ଓ କିପରି ହୁଏ ସେ ଜାଣିଲା ନାହିଁ । ଆହା !

ଖୁଡ଼ୀ ଜବାବ୍ ଦିଅନ୍ତି ନାହିଁ । ସୁସନ୍ଧ୍ୟା ମନ ମାରି ଲଜ୍ଜିତ ହୋଇ, ବାଆଁ ରେଇ ହୋଇ ଖସି ଆସେ । ଆଖିରୁ ଲୁହ ଝୋଟେ । ସାନ ଭାଇ ଉପରେ ରାଗି ନିଜକୁ ଶୁଣାଇ କହେ,—ଭାଇ କୁହାଳିଆ ହୋଇଛନ୍ତି; ପରର ବେଠି କରିବେ; ଜାତି

Digitized by PPRACHIN, SOA

ଓ ସମ୍ମାନ ହରାଇବେ; ଖଡ଼ା ପାଣି ଖାଇବେ; ହଳ କରିବେ; ପୁଣି ଆସି ଲଙ୍ଗୁଡ଼-କଟା ବିଲୁଆ ପରି ଉପଦେଶ ଦେବେ । ଓହୋ; ଘୃଣ୍ୟ ତ !

ଆସିଲା ପୁଣି ଆହୁତ । ନିଜର ଭଲପଣିଆରେ ସମସ୍ତଙ୍କୁ ଆପଣାର କଲା । ଗାଳି ମନ୍ଦ, ସମାଲୋଚନା, ଦୁର୍ ଦୁର୍ ମାର୍ ମାର୍ ସବୁ ପ୍ରକାର ଦୁର୍ବ୍ୟବହାରକୁ ପିଠିକୁ ପକାଇ ନିଜ ଗୁଣରେ ସମସ୍ତଙ୍କ ମନ ଜିଣିନେଲା । ସନ୍ଧ୍ୟାକୁ ଟାଣିନେଲା ସେ ହୃଦୟ ପାଖକୁ । କେତେ କଥା ଶିଖାଇଲା । ବାହାର ଦୁନିଆରେ କ'ଣ ଘଟୁଛି କାହିଁକି ଘଟେ ସବୁ ସେ କହିଲା । ମଣିଷ ମଣିଷ ଭିତରେ ଧନ, ଧର୍ମ ଓ ଜାତିଭେଦ, ଘୃଣା-ଭାବ ପର ଆପଣାପଣିଆ ଯେ ସ୍ୱାର୍ଥପର ମଣିଷ ନିଜେ ସୃଷ୍ଟି କରି ଦୁଃଖକଷ୍ଟ ଭୋଗୁଛି, ଏ କଥା ସେ କେତେଥର ବୁଝାଇ କହିଛି । ଏ ସବୁ ଭଲ ନୁହେଁ । ଏ ସବୁ ଶୀଘ୍ର ଦୂର ହେବା ଉଚିତ—ଏ ଧାରଣା ସନ୍ଧ୍ୟାର ମନରେ ଆଣିପାରିଲା ଏକା ସେଇ ।

ତମର ସୁବ୍ରତ ଭାଇ, ସୁରତ ଭାଇ ଯାହା କରୁଛନ୍ତି ତାହା ହିଁ ଠିକ୍ ସନ୍ଧ୍ୟା ! ସମସ୍ତଙ୍କୁ ସୁଖରେ ଓ ଆନନ୍ଦରେ ଚଳିବାକୁ ସୁଯୋଗ ଦେବାକୁ ସେମାନେ ଉଦ୍ୟମ କରୁଛନ୍ତି ।

ଦିନେ ଏଇ କଥା କହୁଥିଲା ଆହୁତ ।

ସନ୍ଧ୍ୟା ପଚାରିଲା, ସେମାନେ ଯଦି ଘରକୁ ନ ଆସନ୍ତି ଏ ଘର ଚଳିବ କିପରି ?

ଆହୁତ କହିଲା, ଆସିବେ ନାହିଁ କାହିଁକି ? ଆପେ ଆପେ ଫେରି ଆସିବେ । ଏ ଘରର ସମସ୍ତେ ଯେଉଁଦିନ ସେମାନଙ୍କୁ ଆଦର କରି ଡାକି ଆଣିବେ ସେମାନେ ମନା କରିବେ ନାହିଁ ।

ବାପା ଓ ବୋଉ—

ଆହୁତ ସନ୍ଧ୍ୟାର ମୁଣ୍ଡ ଆଉଁଷି କହିଲା, ବାପ ମାଙ୍କର ମନ ଦିନେ ବଦଳିବ । ଏ ପ୍ରକାର ମଣିଷର ଡାକ ସେମାନଙ୍କର କାନରେ ବାଜି ବ୍ୟର୍ଥ ହୋଇ ଫେରିଯିବ ନାହିଁ । ସେମାନେ ଦିନେ ତା'ଙ୍କର ଭୁଲ୍ ବୁଝିବେ । ସେଇଦିନ ପୁଅ ଦୁହିଁଙ୍କୁ ଫେରାଇ ଆଣିବାକୁ ଉଆସ ଗ୍ରୁଡ଼ ଗାଁ ଦାଣ୍ଡକୁ ଓହ୍ଲାଇବେ ।

ଅସମ୍ଭବ କଥା !

ଆହୁତ ହସିଲା । କଥା ବୁଲାଇ କହିଲା, ଏଇ ନଳ ଦମୟନ୍ତୀ ଫଟୋଟି ମତେ ଦେଇପାରିବ ?

ଭାଇଙ୍କର ସେ ।

ପିଲାଦିନର ପୁରୁଣା ଫଟୋ ଖଣ୍ଡେ ତ ।

ଅତି ସ୍ନେହ କରନ୍ତି ସେ ।

ଆଚ୍ଛା ନ ଦିଅ । କହିଲା, ଏଠି କିଏ ଠିଆ ହୋଇଛି ?

ଦମୟନ୍ତୀ ।

Digitized by PPRACHIN, SOA

ଠିକ୍ କହୁଛୁ । ରକ୍ଷିତାଅ । ନ ହେଉଣାଶକ ବୋଲି ମନଦୁଃଖ କରିବ ନାହିଁ । କହୁଲ, ପୁଣି ଆଉ ଥର ଆସିଲ ବେଳକୁ ଏ ସ୍ରେଟର ଆଉ, ଏଇ ଧାନ ଗହମ ବାଉଁଟର ମାଳଟି ନଷ୍ଟପ୍ରୁ ଶେଷ କରିଥିବ । ନୂଆ କାମ ଶିଖାଇଦେବ ।

ବାହାର ଦୁନିଆର ରୂପରେଖ ଦେଖିବାକୁ ଆନ୍ତୁର ହି ସୁଷ୍ପନ୍ଧ୍ୟାଉ ମନରେ ଜନ୍ମାଇଥିଲା ଆଗ୍ରହ । ସେଇ ଆଗ୍ରହକୁ ଆହୁରି ତୀବ୍ର କରିଥିଲେ ସମ୍ରାଜ ।

ଆହୁରି ଓ ଆଗ୍ର ! କପରି ସେମାନେ ନିଜ ଘରେ ବାପ ମାଆଙ୍କର ମନ ବଦଳାଇ ପାରିଲେ ? କପରି ସେମାନେ ଗାଆଁର ରକ୍ଷଣଶୀଳ ପୁରୁଣା ଚାଲିଆ ଲୋକଙ୍କୁ ନୂଆ ଆଦର୍ଶରେ ଅନୁପ୍ରାଣିତ କରିପାରିଲେ ? ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ଯେଉଁ ଝିଅ ବୋହୂମାନେ ଏ ଘରେ ପାଦ ପକାଇଛନ୍ତି, ଅଦର କରି ଖୁଡ଼ୀ ଯାହାଙ୍କ ଉଣ୍ଡରେ ଚାବିକାଠିକା ପିଠା ଦେଇଛନ୍ତି, କେଡ଼େ ଭଲ ସେମାନେ । ହୃଦୟରେ ୯୦ ପୁର ଉଠୁଛି ।

ସମସ୍ତେ ଯଦି ତା'ର ସମ୍ରାଜ୍ଞୀ କି ଭଉଣୀ ହୋଇପାରନ୍ତେ କେତେ ଖୁସି ସେ ହୁଅନ୍ତା ।

ମମତାଙ୍କୁ ବେଢ଼ି ସେମାନେ ପ୍ରାର୍ଥନା କଲେ, ଆମର ଗୋଟିଏ ମାଗୁଣି ଅଛି ମା, ସନ୍ଧ୍ୟା କାଲି ଆମ ସଙ୍ଗେ ଯିବେ ।

କୁଆଡ଼େ ଲୋ ଆଗ୍ର ?

ଆମ କଲ୍ୟାଣ-ମନ୍ଦିରକୁ । ଗୋପୀକୃଷ୍ଣଙ୍କ ମନ୍ଦିର କଡ଼ରେ ଆମେ ନୂଆ ଘର୍ତ୍ତା ଖୋଲିଛୁ । ପଦ୍ମନା ପଧାନଙ୍କ ଘର ପାଖ ପୋଖରୀ ଉପରେ ଯେଉଁ ଅନାବାଦୀ ଅନ୍ଧମା ଜମିଟା ପଡ଼ିଥିଲା, ତାଆର ଉପରେ ଆମର "ନାରୀକଲ୍ୟାଣ-ମନ୍ଦିର" ତୋଳା ହୋଇଛି । କି ସୁନ୍ଦର ଘର, ବଗିଚା, ପୋଖରୀ, ପିଲାଙ୍କର ଖେଳିବା ପାଇଁ ସମତୁଲ ପଡ଼ିଆ । ମା, ଅଶୀ ବର୍ଷର ଆଈବୁଢ଼ୀଙ୍କଠୁ ଆରମ୍ଭ କରି ସାତ ବର୍ଷର ଝିଅନାତୁଣୀଙ୍କର ଖେଳିବା ପାଇଁ, କାମ ଶିଖିବା ପାଇଁ, ପାଠପଢ଼ିବା ପାଇଁ ସବୁ ଆୟୋଜନ କରାଯାଇଛି । ସେଇ କୋଠାଗୃହଗୁଡ଼ିକର ନାମ ଦିଆ ହୋଇଛି "ମମତା-ନନ୍ଦନ" ଶାନ୍ତି-ଭବନ"—

ସେ ଅନାବାଦୀ ଜମି କାହାର ?

ଆପଣଙ୍କର ।

ଅନୁମତି ନେଇ ନାହଁ ତ ?

ବାପ ମାଙ୍କର ସମ୍ପତ୍ତି ଭୋଗ ଦଖଲ କରିବାକୁ ପୁଅଝିଅଙ୍କର ଅନୁମତି ଲୋଡ଼ା ହୁଏ ନାହିଁ । ସୁଚେତ ସେଇ କଥା କହିଲେ । ଜମି ତମର । ଆମେମାନେ ବି ତମର ।

Digitized by PPRACHIN, SOA

ଆମେ ଶିଖିଲେ, ଖେଳିଲେ, ଖୁସୀ ହେଲେ ଆମର ମା' କ'ଣ ଖୁସୀ ହେବେ ନାହିଁ ? ଯେଉଁ ଭୂମିରେ ସାପ, ଗୋଧି, ବିଲୁଆ, କୋକି ଦିନ ଦ'ପହରରେ ଆତଯାତ ହେଉ-ଥିଲେ, ଯେଉଁ ଅରମା ବଣ ଭିତରେ ଭୂତପ୍ରେତ ବ୍ରହ୍ମ-ରାକ୍ଷସ, ଚଣ୍ଡୀ ଗୁମ୍ଫଣ୍ଡୀ ଘର-କରି ରହୁଥିବାର ବୋଲି ଲୋକେ ମଣୁଥିଲେ, ତା' ଉପରେ ଆମେ ଇନ୍ଦ୍ରଭବନ ଗଢ଼ିଛୁଁ । ବିଲୁଆ, ସାପ, ଡାଆଣୀ, ଚିରଗୁଣୀ କୁଆଡ଼େ ଉଭେଇ ଗଲେଣି । ତମେ ଘର ତମେ ଥରେ ଦେଖିବ ନାହିଁ ?

ମୁଁ ?

ହଁ । ଦେଖିଲେ ତମେ ଆମ୍ଭୁ ପ୍ରଶଂସା କରିବ । ଗାଁ ଲୋକଙ୍କୁ ଧନ୍ୟବାଦ ଦେବ । ଆମର ପୋଖରୀର କାଚ କେନ୍ଦ୍ରପରି ପାଣିରେ ଶେତ୍ୱ ଖଣ୍ଡକ ଢାଉଁଳ କ ସୁନ୍ଦର ପହଁରୁଛନ୍ତି । ରାଜହଂସ ଆଉ ବତକମାନେ ଯେମିତି ଖେଳୁଛନ୍ତି, ଦେଖିଲେ ଖୁବ ମଜା ଲାଗୁଛି । ପୋଖରୀହୁଡ଼ା ଉପରେ ଢାଡଢାଡକା କଦଳୀଗଛ । କେତେ ଗଛରେ ଭଣ୍ଡା ପଡ଼ିଲାଣି । ଶହେ କୋଡ଼ିଏ ବୁଦା ନଡ଼ିଆଗଛ । ଧାଡ଼ି ଧାଡ଼ି କରି ହତାକୁ ଲଗେଇ ପୋତା ହୋଇଛି ଢାଢଢାଢକା କଲମୀ ଆମ୍ବ, ପିଜୁଳି, ସପେଟା, ଓଉ ନବରଙ୍ଗକୋଳି, ବଡ଼ ଜାମୁ, ଅମୃତଭଣ୍ଡା । ଫୁଲଗଛ ପୁଣି ଲଗା ହୋଇଛି— ଗୋଲାପ, ମଲ୍ଲୀ, ଚମ୍ପା, ହେନା, ରଜନୀଗନ୍ଧା—

ମମତା ହସି ଉଠିଲେ, କହିଲେ ସତେ ତ, ଫୁଲର ବାସନା ଆସି ମୋ' ନାକରେ ବାଜିଲାଣି । ପାଗଳୀ ଝିଅଟା ତୁ । ଏ ସବୁରେ କ'ଣ କରିବାର ପେଟ ପୂରିବ କି ? ତମର ନୂଆ ଘରେ ରେଡ଼ିଓ ଲାଗିଛି ପରା । ସେତେ ଦୂରରୁ ଗୀତର ସ୍ୱର ଆସି କାନରେ ବାଜୁଛି । ଆଖି, ନାକ, କାନ ସବୁ ପିନା ଖୁସିହେବ ପେଟରେ ଦାନା ପଡ଼ିଲେ, ନୋହିଲେ ଏ ସବୁର ମୂଲ୍ୟ କଅଣ ?

ଆଭା କହିଲା, ସତକଥା ଆପଣ କହିଲେ । ମା' ଝିଅ ଭଉଣୀମାନଙ୍କୁ କେତେ ପ୍ରକାର କାମ ଶିଖାଇବାକୁ ବ୍ୟବସ୍ଥା କରାହୋଇଛି । ଅରଟରେ ସୂତା କାଟିବା, ସିଲେଇ ମେସିନ୍‌ରେ ନାନାପ୍ରକାର ସିଲେଇ କାମ, ବୁଣାବୁଣି, ସଙ୍ଗା ବେତଣା, କଣ୍ଢେଇ ତିଆରି । ଅଲ୍ପ କେତେ ଆରମ୍ଭ କରାହୋଇଛି । ଧୀରେ ଧୀରେ ଆହୁରି କେତେ ପ୍ରକାର କୁଟୀରଶିଳ୍ପ କାମ ଶିକ୍ଷା ଦିଆଯିବ । ନୂଆନାନୀ ଆସିବେ ବୋଲି କହି ଯାଇଛନ୍ତି ରଜାବୁ । ଆଉ ସବୁ କ'ଣ ନୂଆ କାମ ଶିଖେଇବେ ।

ଆହୁରି ଆସିବ ?

କହି ଯାଇଥିଲେ ତ । ନ ଆସିଲେ ନାହିଁ । ଆପଣ ଥରେ ଯିବେ । ଗାଁ ମାଇପେ ଅନେକେ ବସିଛନ୍ତି । କହୁଛନ୍ତି, ଜମିଦାରୀ ଉଠିଲା ବୋଲି ସିନା, ଧନ ଦଉ-ଲତଆରି ସମ୍ପର୍କ ତୁଟିଗଲା, ରାଣୀମା ମନର ସମ୍ପର୍କ ତୁଟାଇ ଦେବେ କି ? ଯେଉଁମାନେ ଦିନେ ତାଙ୍କର ପ୍ରଜାପୁଅ ଥିଲେ, ସେମାନଙ୍କର ସୁଖ ଦେଖିଲେ ସେ କଣ୍ଟେ ସୁଖୀ ହେବେ ।

Digitized by PPRACHIN, SOA

ମମତା ଦୀର୍ଘନିଶ୍ୱାସ ଛାଡ଼ିଲେ । ଗାଁ ମାଇପେ ଏଭଳି କହୁଥାନ୍ତୁ କି ରାଇଆଣୀ ଆଉ ମନରୁ ଫାନ୍ଦ କଟେଇ ଉଡ଼ୁଥାଉ କି ଗ୍ରାମୋଫୋନର ଗୀତ ପରି ସେଇ ଉଦାସୀ ଉଦାସୀ ଆହ୍ୱାନର କଥା ଅନ୍ତର ତୁଣ୍ଡରୁ ବାହାରୁଥାଉ, ଏ କଥାର ମୂଲ୍ୟ ଅଛି । କେତେ ଧନ ଆଉ ବଡ଼ପଣିଆଁର ଗର୍ବରେ ମନକୁ ମନ ସେମାନେ ଏକଘରିଆ ହୋଇ ରହି-ଥିବେ ? ମଣିଷ ନିଜେ ବଡ଼ ହୁଏ ନାହିଁ । ପାଞ୍ଚ ଜଣ ତା'କୁ ବଡ଼ ବୋଲି ଗ୍ରହଣ କଲେ ସେ ବଡ଼ ହୁଏ ।

ରଣଗଡ଼ର ରାଜରାଣୀ, ରକ୍ତମାଳିର ରାଜଜେମା ହୋଇ କିପରି ସେ ଗାଁ ଦାଣ୍ଡରେ ପାଦ ପକାଇବେ ? ରଣସିଂହେ ଅନୁମତି ଦେବେ କି ? ରଣଗଡ଼ର ଉତ୍ତରା-ଧିକାରୀ ହବେ ଯେଉଁମାନେ ତାଙ୍କର ପେଟରୁ ଜନମ, ସେମାନେ ନହେବ ଛାଡ଼ି, ରାଜାରାଣୀଙ୍କୁ ପରିତ୍ୟାଗ କରି ଜନତା ସଙ୍ଗରେ ମିଶି ଯାଉଛନ୍ତି । ଦୁନିଆକୁ ସେମାନେ ଆପଣାର କରି ପାରିଛନ୍ତି । ଦୁନିଆ ବି ତାଙ୍କୁ ନିଜର କରିଛି । ସେମାନେ ପିତାମାତାଙ୍କୁ ଛାଡ଼ି ଚାଲି ଯାଇ ନାହାନ୍ତି, ଛାଡ଼ି ଯାଇଛନ୍ତି ରାଜାରାଣୀଙ୍କୁ । ସେଇଥିପାଇଁ କ'ଣ ସୁବ୍ରତ ଲେଖିଥିଲା —ସେଇତକବେଳେ ତୁ ଦେଖିବୁ ତୋର ଶତେ ପୁଅଙ୍କ ମଝିରେ ମୁଁ ଅଛି ।

ଶତେ ପୁଅ ।

ସେମାନେ ଉଆସ ଭିତରେ ନାହାନ୍ତି । ଅଛନ୍ତି ଉଆସ ବାହାରେ । ଜନତା ସାଥିରେ । ସେଇମାନଙ୍କ ମଝିରେ ଅଛନ୍ତି ନୟନପିତୁଳା ସୁବ୍ରତ, ସୁଜିତ, ସୁସନ୍ଧ୍ୟା !

ମମତାଙ୍କ ଆଖି ଛଳଛଳ ହେଲା । କହିଲେ, ତୁ କେବଳ ଏ ଘରର ଲକ୍ଷ୍ମୀ ନୋହୁ ମା', ତୁ ମୋ'ର ଅଙ୍ଗ । ଯିଏ ଆମର ମୁହଁରେ ଶେଷଅଗ୍ନି ଦେବ – ଏ କୁଳର ପ୍ରଥା ଅନୁସାରେ – ତାଆରି ହାତ ତୁ ଧରିଛୁ ଆସି, ତୋ'ର କଥା ଭାଙ୍ଗିବାକୁ ମୋ'ର ସାହସ ହେଉ ନାହିଁ । ତେବେ, ରଣସିଂହଙ୍କର ଅନୁମତି ନ ନେଇ ଦାଣ୍ଡକୁ ଗୋଡ଼ କଢ଼ାଇବାର ଅଧିକାର ମୋ'ର ନାହିଁ ।

ଆଭା କହିଲା, ଆପଣଙ୍କ ଯିବା ପାଇଁ ଆଜ ଆମେ ଜିଦ୍ କରୁ ନାହୁଁ । ଆମେ ସବୁ ଦିନେ ଯାଇ ଜମିଦାରଙ୍କଠାରୁ ଅନୁମତି ଆଣିବୁ । ଦେଖିବା ଭଲା କିପରି ସେ ମନା କରିପାରିବେ । ଖାଲି ଆପଣଙ୍କ ଅନୁମତି ପାଇଲେ ଆମେ ସନ୍ଧ୍ୟାଦେବୀଙ୍କୁ ସାଙ୍ଗରେ ନେଇ ଯିବୁଁ ।

ସେ କିପରି ଯିବ ?

ସବାରି ଗହଣ ଲୋଡ଼ା ହେବ ନାହିଁ, ଆମେ ତାଙ୍କୁ କାଖ କରି ନେବୁ ମା, ଗୋଡ଼ରେ ଧୂଳି ବାଲି ଲାଗିବ ନାହିଁ । ଆମେ କାନ ଢୋଡ଼ାଇ ନେବୁ, ଦେହରେ ଆଲୁଅ କି ପବନ ବାଜିବ ନାହିଁ, ଡାହାଣୀ ଚିରୁଗୁଣୀଙ୍କର ଦୃଷ୍ଟି ପଡ଼ିବ ନାହିଁ । ଗାଁର ସବୁ ଝିଅ ତା'ଙ୍କୁ ଦେଖିବାକୁ ତାଙ୍କ ସଙ୍ଗେ ଖେଳିବାକୁ ଉଦ୍ବିଗ୍ନ ହୋଇ ରହିଁ

Digitized by PPRACHIN, SOA

ବସିଛନ୍ତି । ଏ ବର୍ଷ ଉତ୍ସବରେ ସେମାନେ ସେଇଠି ଖେଳିବେ । ପୁଣି ଅମାନେ ମିଶି କାଡ଼-କାଡ଼ନା ପିଠାପଣା କରିବେ । ଗାଆଁର ସବୁ ବଯାଷ୍ଟଙ୍କୁ ଡାକି ଖୁଆଇବେ ।

ମମତା ହସିଲେ । କହିଲେ, ଆଉ ମା'ଖୁଡ଼ୀ ମାଉସୀମାନେ କି ଦୋଷ କଲେ ?

ହସକୁଡ଼ୀ ପୁଅଟି ସୁମିତା । ସେ କହିଲା, ମା' ଖୁଡ଼ୀମାନେ ତ ବାଲେ ତାଙ୍କ ମନକୁ ଯିବେ, ନୋହିଲେ ଆମକୁ ବକେଇବ କିଏ ?

ମମତା କହିଲେ, ହେଲା ଯେ, ସନ୍ଧ୍ୟା ତ କାହାରିକୁ ଚିହ୍ନେ ନାହିଁ ।

ସନ୍ଧ୍ୟା ଖୁସି ହୋଇ କହିଲା, ଚନ୍ଦ୍ରିକିଶୀ, ଇଏ ଆଣ୍ଟି ସ୍ୱସ୍ତି, ଇଏ ସୁମିତା ଥଯା, ଇଏ ପୂର୍ଣ୍ଣିମା, ଇଏ ତ ଗୃହ୍ଣୁ, ଇଏ ସୁନା ନାମ, ଇଏ କରୁଣା ସ୍ୱସ୍ତି —, ମୁଁ ଯିବ ମା ! ଅରେ ସେମାନଙ୍କୁ ଦେଖିଲେ ସେମାନଙ୍କ ନାମ ମନେ ରଖି ଆସିବ ।

ପୁଣି ଅର ଆଗ୍ରହ ଦେଖି ମମତା ନାହିଁ କରିପାରିଲେ ନାହିଁ । କେତେ ଦିନ ଆଉ କୁଅବେଙ୍ଗ ପରି ଘରଟା ଭିତରେ ଏ ପାଖ ସେ ପାଖ ହୋଇ ଖେଳୁଥିବ ? କେତେ ଦିନ ଆଉ ରହିବ ସେ ଗାଁରେ ? କହିଲେ, ଚମ୍ପା ଓ ମାଳତୀ ତ.' ସଙ୍ଗରେ ଯିବ । ସଞ୍ଜ ଆଗରୁ ଫେରିଆସିବ ।

ଖୁସି ହୋଇ ସନ୍ଧ୍ୟା ମମତାଙ୍କୁ କୁଣ୍ଢାଇ ଧରିଲା । ମୁଣ୍ଡ ପୁଞ୍ଜାଇ ମମତାଙ୍କ ସ୍ନେହାପ୍ଲୁତ ମୁହଁକୁ ଚାହିଁ କହିଲା, ମତେ କେହି କାନ୍ଦ କରିବେ ନାହିଁ କି କାନ୍ଦ ଘୋଡ଼ାଇବେ ନାହିଁ । ମୁଁ ସମସ୍ତଙ୍କ ସଙ୍ଗେ ବୁଲିକରି ଯିବି ।

ମୁଣ୍ଡ ଅଉଁସି ମମତା କହିଲେ, ହଉ ।

ସତ୍ୟବତୀଙ୍କର ଦେହ ଅସୁସ୍ଥ ଥିଲା । ଖବର ପାଇ ଆନୁତ ଛୁଟି ନେଇ କଟକ ବୁଲି ଆସିଥିଲା । ମାସଟିଏ ମାତ୍ର କଟିଗଲାଣି । କର୍ମକ୍ଷେତ୍ରକୁ ଫେରି ଯାଇ ନାହିଁ । ଉପରୁ ତାଗଦ୍ ଆସିଲାଣି, ଆଉ ଛୁଟି ମିଳିବ ନାହିଁ ।

ସତ୍ୟବତୀଙ୍କର ଦେହ ସମ୍ପୂର୍ଣ୍ଣ ଆରୋଗ୍ୟ ହେଲାଣି । ତଥାପି ସେ ଆନୁତକୁ ପାଖରୁ ଛାଡ଼ିବାକୁ ଅନିଚ୍ଛୁକ । ସୁଜନ ଜେଠା ଓ ଚକୋଶ ସେଥିରେ ଏକମତ । ମୋଫସଲରେ ବୁଲି ବୁଲି ପୁଅ ଦନୋଟି ବର୍ଷ ତା'ର କଟିଛି । ସବୁ ଅଭିଜ୍ଞତା ସମସ୍ତଙ୍କ ପାଖରେ ସେ ଗୋଟି ଗୋଟି କରି ବର୍ଣ୍ଣନା କରିଛି । ସତ୍ୟବତୀ ତନ୍ମୟ ହୋଇ ଶୁଣିଛନ୍ତି ।

ଅଳ୍ପଅଳରେ ପିଲାଟିକୁ ସେ ବଢ଼ାଇଥିଲେ । ଅଭାବ, ଦୁଃଖ ଓ କଷ୍ଟ କ'ଣ ସେ ଜାଣି ନ ଥିଲା । କେବଳ ଗୋଟାଏ ନଯୁକ୍ତି ପାଇଁ ଗାଁ ଗାଁ ବୁଲି ତାଙ୍କର ନୟନପିତୁଳା କେଡ଼େ ଦୁର୍ବଳ ହେଲାଣି । ମୁହଁଟି ଶୁଖିଯାଇଛି । ଦେହର ରଙ୍ଗ ଉଣା ହୋଇଛି ।

Digitized by PPRACHIN, SOA

ସ୍ବୀକାର କରି ସେ କି ଧନ ଅର୍ଜିଛି ତା'କୁ ହିଁ ଜଣା । ଘରକୁ ଯେବେ କେମିତି ଟଙ୍କା ପଠାଉଛି ସତ, ଆବଶ୍ୟକ ହେଲେ ପୁଣି ଟଙ୍କା ମଗାଇ ନେଉଛି । ଧନ ଅର୍ଜନ କରିବା:ର ଆଗ୍ରହ ଥିଲେ ଏଇ ସହରରେ ଥାଇ ମଧ୍ଯ ସେ ଉପାୟ କରିପାରିବ ।

ଯେତିକି ସେ ସଞ୍ଚୟ କରି ପାରିଛନ୍ତି, ସେତିକିରେ ପିଲା ଦୁହିଁଙ୍କର ଭବିଷ୍ୟତରେ ଅସୁବିଧା ହେବ ନାହିଁ । ଅର୍ଜନ କରିବାର ଶକ୍ତି ତାଙ୍କର ଅଛି । ପ୍ରତିଦିନ କାଲ୍ ଯାଉଛନ୍ତି । ନ ମାଗିଲେ ବି ଯେଉଁମାନଙ୍କର ଉପକାର କରନ୍ତି ସେମାନେ ବଳେଇ ବଳେଇ ହାତରେ ଯାହା ଦିଅନ୍ତି, ସେତକ ଅଳ୍ପ ନୁହେଁ ।

ଅନାଦ୍ରୁତ ଓକିଲାତିରେ ମନପ୍ରାଣ ଢାଳି ଦେଇଛି । ଯାହା ସେ ଉପାୟ କରେ ତହିଁରୁ ଅଧିକ ଖରଚ କରେ । ସେଥିପାଇଁ ସତ୍ୟବତୀଙ୍କର ଭାବନା ନ ଥାଏ । ଟୁନା ଭଲ ପିଲା ହୋଇଛି, କାର୍ଯ୍ୟରେ ମନ ଦେଉଛି, ଏଇ ତ ତାଙ୍କ ଜୀବନର ଆନନ୍ଦ । ଦରିଦ୍ର ନିଃସହାୟଙ୍କ ପାଇଁ ତା'ର ମନ କାନ୍ଦେ । ତା'ଙ୍କ ଦୁଃଖରେ ସେ ସମଦୁଃଖୀ ହୋଇ ମକଦମାରୁ ଉଦ୍ଧାର କରିବାକୁ ଚେଷ୍ଟା କରେ । ନିଜର ଦକ୍ଷତା ନ ଥିଲେ ବଡ଼ ଓକିଲଙ୍କୁ ପରାମର୍ଶ କରେ ।

ତା ପାଇଁ ସତ୍ୟବତୀ ଚିନ୍ତା କରନ୍ତି ନାହିଁ ।

ଯେତେ ଶିକ୍ଷିତା, ବୁଦ୍ଧିମତୀ, କର୍ମକୁଶଳୀ ହେଲେ ବି ଆଦୃତ ତ ଝିଅ । ହାତକୁ ବ'ହାତ କରିବାର ସୁଯୋଗ ସେ ଅଦ୍ୟାପି କରିପାରିଲେ ନାହିଁ । ସତ୍ୟବତୀ ଆଶା କରିଥିଲେ, ଝିଅ ବଡ଼ ହେଲେ, ଶିକ୍ଷିତା ହେଲେ, ଭଲମନ୍ଦ ବୁଝିବାର ଶକ୍ତି ହେଲେ, ସେ ନିଜର ଉପଯୁକ୍ତ ବନ୍ଧୁ ଖୋଜି ନେବ । ଆସିଲେ ତ କେତେ ବନ୍ଧୁ, କିନ୍ତୁ ଅଧିକାଂଶ ଆଦୃତର ମନକୁ ପାଇଲେ ନାହିଁ । ଯେଉଁମାନଙ୍କୁ ସେ ସ୍ନେହଚକ୍ଷୁରେ ଅନାଉଥିଲା, ସେମାନେ ଆପେ ଆପେ ଦୁରେଇ ଗଲେ ।

କାହିଁକି ?

ହିନ୍ଦୁ ସମାଜର ନିୟମ ଅତି କଠୋର । ପୁରୁଷର ସାତଖୁନ୍ ମାଫ୍; କିନ୍ତୁ ନାରୀ ଚୁଇଁଲେ ଛଅ ଘା । ସେମାନେ ଜାଣିବାକୁ ଚାହିଁଥିଲେ—ଆଦୃତ କେଉଁ ଜାତିର ଝିଅ, କେଉଁ କୁଳର ଝିଅ । କିଏ ତା'ର ପିତା ଓ ଅଭିଭାବକ । ଯେଉଁ ଉତ୍ତର ପାଇଲେ, ସୁଏତ ମନ ମାନିଲା ନାହିଁ । ଆଦୃତର ରୂପ, ସ୍ୱାସ୍ଥ୍ୟ, ବିଦ୍ୟା, ବୁଦ୍ଧି, କର୍ମକୁଶଳତା, ଭଦ୍ରତା ଓ ସମସ୍ତଙ୍କୁ ସ୍ନେହ ଆଦର କରିବା ମନର ମୂଲ୍ୟ ଦୁନିଆ ବୁଝିଲା ନାହିଁ ।

କେତେଦିନ କେତେ ରାତି ସେ ଏଇ କଥା ଭାବିଛନ୍ତି । ଅମାନିଆ ଲୁହ ଗଡ଼ି ଆସିଛି । ଧୈର୍ଯ୍ୟ ଭାଙ୍ଗିଛି । ନିସ୍ସଙ୍ଗ କୋଠାରେ ବାଇଆଣୀ ପରି ଏ ପାଖ ସେ ପାଖ ହୋଇଛନ୍ତି । ନିଃସହାୟ ଶ୍ରେଷ୍ଠ ଅବୋଧ ଶିଶୁଟି ପରି ମୁହଁ ଘୋଡ଼ାଇ କାନ୍ଦି ଉଠିଛନ୍ତି । ଅତୀତ ନଗ୍ନ ବିକଟାଳ ରୂପ ଧରି ଆଗକୁ ଆସିଛି । ଅଟ୍ଟହାସ୍ୟ କରିଛି—ଆଦ୍ୟ ଜୀବନର ଉତ୍ତେଜନା ଓ ଅସାବଧାନତାର କ୍ଷମା ନାହିଁ ସତ୍ୟବତୀ, କେବଳ ଦୁଃଖ ତ ଅଭିଶାପ

Digitized by PPRACHIN, SOA

ନୁହଁ, ଯେଉଁମାନଙ୍କୁ ସଂସାରକୁ ଆଣିଛ ସେମାନେ ମଧ୍ୟ ଅଭିଶପ୍ତ । ଆଉ, ସେମାନେ ଯାହାଙ୍କୁ ଆଣିବେ ସେମାନେ ବି ।

କ୍ଷମା ନାହିଁ ?

କ୍ଷମାର ପ୍ରଶ୍ନ ଉଠୁ ନାହିଁ ।

ହିନ୍ଦୁ ସମାଜ ଅତି ପୁରାତନ । ବିରାଟ ମହାନ୍ । ସମସ୍ତଙ୍କ ପାଇଁ ସେ ସମାଜରେ ସ୍ଥାନ ଅଛି । ଭଗବାନ୍ କେବେ ଚାରୋଟି ବର୍ଣ୍ଣ ସୃଷ୍ଟି କରିଥିଲେ । ଆଜିକାର ହିନ୍ଦୁ ସମାଜରେ ଅଗଣନ ବର୍ଣ୍ଣ—ଜାତିଭେଦ ।

ଲକ୍ଷ ଲକ୍ଷ ଜାତି, ଉପଜାତି, ବନ୍ଧସ୍ଥାନ ଭେଦର ସମଷ୍ଟି ଏ ଭାରତବର୍ଷ ।— ଆଦିବାସୀ, ଅଣଆଦିବାସୀ । ସବର୍ଣ୍ଣ ଅସବର୍ଣ୍ଣ । ପ୍ରତି ବର୍ଗର ଭିତରେ ବିଭେଦ --କନ୍ଧ ଓ ସାନ୍ତାଳ, ହାଡ଼ି ଓ ଡମ, ବ୍ରାହ୍ମଣ ଓ ଭଣ୍ଡାରୀ । ଜାତି ଓ ଉପଜାତି । ପରସ୍ପର ମଧ୍ୟରେ ମିଶାମିଶି ବା ବୈବାହିକ ମୈତ୍ରୀର ସମ୍ବନ୍ଧ ନାହିଁ । ଆକସ୍ମିକ ସମ୍ବନ୍ଧ ହୋଇଛି ଯେଉଁଠି ସେଇଠି ପୁଣି ନୂଆ ଜାତିର ସୃଷ୍ଟି । ଚାଲିଛି ଏମିତି —

ଜାତିଭେଦ ସଙ୍ଗେ ସଙ୍ଗେ ଭାଷାଭେଦ । ଏକ ଜାତିର ଲୋକ ବୋଲି ନିଜର ପରିଚୟ ଦେଉଥିଲେ ମଧ୍ୟ ତୁଣ୍ଡରୁ ଭିନ୍ନ ଭାଷା ବାହାରେ ବୋଲି ପରସ୍ପର ସଙ୍ଗେ ସମ୍ବନ୍ଧ ହୋଇପାରେ ନାହିଁ । ଆରବ ସାଗରରୁ ବଙ୍ଗୋପସାଗରର ସେପାରି, ଆଉ ହିମାଳୟରୁ କୁମାରିକା ଯାଏ ସବୁଠି ଏହି ବିଭେଦ । ବଡ଼ ଜାତି ବୋଲି ଯେଉଁମାନେ ନିଜକୁ କହନ୍ତି, ସେମାନେ ଘୃଣା କରନ୍ତି ସାନ ଜାତିକୁ । ଯେଉଁମାନେ ନିଜକୁ ସାନ ବୋଲି ମଣନ୍ତି ଧନ, ଯଶଃ ଓ ପ୍ରତିପତ୍ତିର ଅଧିକାରୀ ହୋଇ ପୁରୁଷାନୁକ୍ରମେ ଚେଷ୍ଟାକରି ସେମାନେ ପୁଣି ବଡ଼ ବୋଲାଉଥିବା ଜାତିରେ ମିଶି ଏକା ହେଉଛନ୍ତି । ପରକୁ ବୁଢ଼ି ନାକ ଟେକୁଛନ୍ତି ! ଚାଲିଛି ଏମିତି । ଯେଉଁମାନେ ନିଜକୁ ଶ୍ରେଷ୍ଠ ବୋଲି ମଣୁଥିଲେ, ଯେଉଁମାନଙ୍କୁ ଅଛୁଆଁ ଘୃଣ୍ୟ ବୋଲି ବଡ଼ଜାତିର ଲୋକେ ଦୂରେଇ ରଖୁଥିଲେ, ସମ୍ମାନ ପାଇଁ, ମମତା ପାଇଁ, ସମାନ ସୁଯୋଗ ପାଇଁ ସେମାନେ ଅନ୍ୟ ଧର୍ମର ଆଶ୍ରା ନେଲେ ! ଏବେ ବି ଆଶ୍ରା ନେଉଛନ୍ତି ।

ଭଗବାନଙ୍କର ଅବତାର ରାମ ଓ କୃଷ୍ଣ । ସେ ଯୁଗରେ ଜାତିଭେଦ ଥିଲା । ଭଗବାନ ରାମଚନ୍ଦ୍ର ଶୂଦ୍ର ଶମ୍ବୁକକୁ ଶାସ୍ତି ବିଧାନ କରିଥିଲେ । ଶ୍ରୀକୃଷ୍ଣଙ୍କ ଯୁଗରେ ଜାତିଭେଦ ପ୍ରଥାର ବନ୍ଧନ କୋହଳ ହୋଇଥିଲା । ଆର୍ଯ୍ୟ ବସୁଦେବ ଅସୁର କଂସର ଭଉଣୀ ଉଗ୍ରସେନର କନ୍ୟାକୁ ବିବାହ କରିଥିଲେ । ଭୀମ ରାକ୍ଷସକନ୍ୟା ହିଡ଼ିମ୍ବିକା ଓ ଅର୍ଜୁନ ନାଗକନ୍ୟା ଉଲୁପୀର ପାଣିଗ୍ରହଣ କଲେ । ଆଉ ପଣଅଜା ମହାରାଜ ଶାନ୍ତନୁ — ଧୀବର କନ୍ୟା ଯୋଜନଗନ୍ଧା ବ୍ୟାସଦେବଙ୍କର ଜନନୀ ସତ୍ୟବତୀଙ୍କୁ— !

Digitized by PPRACHIN, SOA

ସତ୍ୟବତୀଙ୍କର ବେଦ ଉଲୁସି ଉଠେ । ପୁରାଣ ଓ ଇତିହାସ ସେଇ ସମତା ଧର୍ମ ପ୍ରଚାର କରୁଛି । କର୍ଣ୍ଣ-ଜନନୀ ମହାସତୀ କୁନ୍ତୀ, ସେ ହେଲେ ପାଣ୍ଡୁଙ୍କର ଧର୍ମପତ୍ନୀ । ସେ ସମାଜ ଉନ୍ନତ ଥିଲା, ଉଦାର ଥିଲା । କେବେ ପୁଣି ସଙ୍କୀର୍ଣ୍ଣତା, ସ୍ୱାର୍ଥପରତା, ଭେଦଭାବ ସମାଜକୁ ଗ୍ରାସକଲା କେଜାଣି ?

ଅସହ୍ୟମାନ୍ୟ ହେଲା । ଈଶ୍ୱରଙ୍କର ଅବତାର ବୁଦ୍ଧ ଐକ୍ୟ ଧର୍ମ ପ୍ରଚାର କଲେ । ବର୍ଣ୍ଣଭେଦ, ଭାଷାଭେଦ, ଜାତିଭେଦ ଦୂର ହେଲା । କେବଳ ହିମାଳୟରୁ କୁମାରୀକା ନୁହେଁ, ସାରା ଏସିଆ ମହାଦେଶରେ ସମତା-ମନ୍ତ୍ର ପ୍ରଚାରିତ ହେଲା ।

କେଉଁ ଶୁଭ ମୁହୂର୍ତ୍ତରେ ଈଶ୍ୱରଙ୍କର ବରପୁତ୍ର ମହାମାନବ ଯୀଶୁଖ୍ରୀଷ୍ଟ ଧରା-ପୃଷ୍ଠରେ ପଦାର୍ପଣ କଲେ । ସବୁ ଧର୍ମ, ସବୁ ବିଦ୍ୟାରେ ସୁପଣ୍ଡିତ ହେଲେ । ଶୁଣାଯାଏ —ମେଷ ପାଳନରୁ ବୌଦ୍ଧଭିକ୍ଷୁମାନଙ୍କ ସଙ୍ଗେ ପୁଣ୍ୟଭୂମି ଭାରତବର୍ଷରେ ପହଞ୍ଚିଲେ । ପୂର୍ବ-ସାଗର କୂଳରେ ପୁଣ୍ୟଭୂମି ପବିତ୍ର ଧର୍ମକ୍ଷେତ୍ର ବୌଦ୍ଧପୀଠ ଶ୍ରୀଜଗନ୍ନାଥ ଆଶ୍ରମରେ ବହୁ ବର୍ଷ ଅଧ୍ୟୟନ କଲେ । ସତ୍ୟ, ସାମ୍ୟ ଓ ମୈତ୍ରିଭାବରେ ଉଦ୍‌ବୁଦ୍ଧ ହୋଇ ଫେରି-ଗଲେ ପୈଲେଷ୍ଟାଇନ୍ ଦେଶକୁ । ସବୁ ଦୁଃଖ ସବୁ କଷ୍ଟ ନିଜେ ବରଣ କରି ପ୍ରଚାର କଲେ ସମତା-ମନ୍ତ୍ର— ସମସ୍ତେ ଈଶ୍ୱରଙ୍କର ସନ୍ତାନ, ସମସ୍ତେ ସମାନ । କେହି ଶ୍ରେଷ୍ଠ ନୁହେଁ, ପତିତ ନୁହେଁ; ଘୃଣ୍ୟ ନୁହେଁ । ସାରା ଇଉରୋପ ସେଇ ଧର୍ମରେ ଦୀକ୍ଷିତ ହେଲା । ଆମେରିକା, ଆଫ୍ରିକା ଓ ଅଷ୍ଟ୍ରେଲିଆ । ଯେଉଁ ଦେଶରେ ମଣିଷ ମଣିଷକୁ ଶ୍ରେଷ୍ଠ, ହୀନ ଓ ଘୃଣ୍ୟ ବୋଲି ମଣେ, ସେଠି ମଧ୍ୟ ଏଇ ସମତା-ମନ୍ତ୍ର ପ୍ରଚାରିତ ହେଉଛି ।

ଈଶ୍ୱରଙ୍କର ବାଣୀ ନେଇ ଜନ୍ମିଲେ ପୁଣି ତାଙ୍କର ଦୂତ ମହାମାନବ ମହମ୍ମଦ । ଆଦ୍ୟ-ଜୀବନରେ ବ୍ୟବସାୟୀ ରୂପେ ପ୍ରାଚ୍ୟ ଜଗତରେ କେତେ ଦେଶ ସେ ଭ୍ରମଣ କରିଥିବେ । ଉପନିଷଦ୍‌ର ସମତା ମନ୍ତ୍ର, ବୁଦ୍ଧ ଓ ଯୀଶୁଙ୍କର ସାମ୍ୟ ଓ ମୈତ୍ରୀଭାବରେ ସେ ଅବଶ୍ୟ ଅନୁପ୍ରାଣିତ ହୋଇଥିବେ । ପ୍ରଚାରିତ ହେଲା -ଇସଲାମ ଧର୍ମ ପ୍ରଚାରର ବେଗତ ଯାହା ହେଉ ବ୍ୟାପିଗଲା ସାରା ମଧ୍ୟ-ପ୍ରାଚ୍ୟରେ । କାଶ୍ୟପ ମହାମୁନିଙ୍କର ଆଶ୍ରମ ଥିଲା ଯେଉଁଠି, ଆର୍ଯ୍ୟଭୂମି ପରାଣର ଦେଶ ପାରସ୍ୟ, ଗାନ୍ଧାର, ଶୂରସେନ, ସିନ୍ଧୁ-ଜନପଦ, ଆର୍ଯ୍ୟାବର୍ତ୍ତ, ଗଙ୍ଗା-ବ୍ରହ୍ମପୁତ୍ର-ପୂର୍ବବଙ୍ଗ-ଇସଲାମର ସମତା-ଧର୍ମରେ ଦୀକ୍ଷିତ ହେଲା । ଆରବ, ମିଶର, ଯବ-ସୁମାତ୍ରା, ଶ୍ୟାମ, ଭିଏତ୍‌ନାମ, ମଲୟ —

ଆସିଲେ ପୁଣ୍ୟାତ୍ମା, ଈଶ୍ୱରଙ୍କର ଭକ୍ତବୃନ୍ଦ— ଶଙ୍କର, ଚୈତନ୍ୟ, ନାନକ, ରାମମୋହନ, ଅରବିନ୍ଦ । ବିଶ୍ୱପ୍ରେମର ଜୀବନ୍ତ ପ୍ରତିମା । ସନାତନ ଆର୍ଯ୍ୟଧର୍ମର ରକ୍ଷାକର୍ତ୍ତା । ପ୍ରଚାର କଲେ ସମତା-ଧର୍ମ । ତଥାପି ଭାରତଭୂମିରୁ ବର୍ଣ୍ଣଭେଦ, ଜାତି-ଭେଦ, ଛୁଆଁ ଅଛୁଆଁ, ବଡ଼ ସାନ ଭେଦ ଦୂର ହେଲା ନାହିଁ ।

ମହାଭକ୍ତ ମହାମାନବ, ବିଶ୍ୱପ୍ରାଣ, ସତ୍ୟନିଷ୍ଠ, ସାମ୍ୟ, ମୈତ୍ରୀ ଓ ଅହିଂସାର ପ୍ରତୀକ କର୍ମବୀର ଗାନ୍ଧି । ନିଜ ଜୀବନର ଦୃଷ୍ଟାନ୍ତଦ୍ୱାରା ଓ ଶିକ୍ଷାଦାନଦ୍ୱାରା ସେ ଦୂରକଲେ ମଣିଷ ଓ ମଣିଷ ଭିତରେ ଥିବା ଭେଦଭାବ ।

Digitized by PPRACHIN, SOA

ଅସ୍ପୃଶ୍ୟତା ଦୂର ହୋଇଛି । ଭାରତ ଭୂମିରେ ଆଦିବାସୀ ଓ ଅଣଆଦିବାସୀର ତଫାତ୍ ନାହିଁ । ଜାତି ଥାଉ ପଛେ, ଜାତିଭେଦ ଦୂର ହେଉ । ସବୁ ଜାତି ସମାନ, ସବୁ ଜାତି ବଡ଼, କେବଳ ଶ୍ରେଣିକ ନୁହେଁ । ସବୁ ମଣିଷ ବଡ଼, ସବୁ ମଣିଷ ସମାନ, ' ସବୁ ଧର୍ମର ମୂଳନୀତି ସମାନ । ବର୍ଣ୍ଣ, ଧର୍ମ, ଜାତିନିର୍ବିଶେଷରେ ଭାରତ ସ୍ୱାଧୀନ, ଭାରତର ପ୍ରତ୍ୟେକ ନାଗରିକ ସ୍ୱାଧୀନ ।

ତଥାପି, ଜାତିଭେଦ ଦୂର ହୋଇ ନାହିଁ କାହିଁକି ?

'ରଘୁପତି ରାଘବ ରାଜାରାମ, ଜାନକୀ-ବଲ୍ଲଭ ସୀତା ରାମ'ଙ୍କର ପ୍ରତିକୃତି ତଳେ ମଥା ନତକରି ବ୍ୟଥିତ ଆକୁଳ ମନର ସବୁ ଦୁଃଖ ସେ ଲୋତକ ଛଳରେ ଅଜାଡ଼ି ଦେଇ ପ୍ରାର୍ଥନା କରିଛନ୍ତି—ଇଚ୍ଛେଜନାକୁ ଆୟୁତ୍ତ କରି ପାରି ନ ଥିଲି ଭଗବାନ, ସୁଖର ସ୍ୱପ୍ନ ଦେଖିଥିଲି । ପ୍ରତାରକକୁ ସତ୍ୟ ବୋଲି ମଣି ଅବାଟରେ ପାଦ ପକାଇଥିଲି । ଯେଉଁ ଜୀବନ ତୁମେ ଦେଇଛ ତାକୁ ବଞ୍ଚାଇବାକୁ ଅନୀତି କର୍ମରେ ରତ ହୋଇଥିଲି । ଅତି ଦୂର ଅତୀତର କଥା ସେ । କୋଳରେ ଦେଲ ଦୁଇଟି ସନ୍ତାନ । ମୋ'ର ଭୁଲ୍ ପାଇଁ ସେ ଦୁଇଟି କ'ଣ ଆଜୀବନ ଦୁଃଖୀ ହେବେ ? ହିନ୍ଦୁ ସମାଜରେ ସ୍ଥାନ ନାହିଁ ମୋ'ର ଆତ୍ମଜର ? କେହି ତାକୁ ବିବାହ କରିବେ ନାହିଁ ?

ଧର୍ମାନ୍ତର ?

ସ୍ତୁତି ଥରି ଉଠେ । ଛଳରେ ମଧ ଆତ୍ମଜ ଆଗରେ ଏ କଥା କହିବାକୁ ମୁହଁ ଖୋଲେ ନାହିଁ । ଭେଦଭାବହୀନ ଗୋଟିଏ ସମାଜରେ ଚଳି ଅମୃତସ୍ଥାନ ଫେରିପାଇବାକୁ ମନ ଯୋଗଥିବା ଧର୍ମବିଶ୍ୱାସକୁ କପରି ସେ ତୁଟେଇ ଦେବେ ? ସବୁ ଧର୍ମର ମୂଳ କଥା ଭଗବାନଙ୍କଠାରେ ନିର୍ଦ୍ୱନ୍ଦ୍ୱପୂର୍ଣ୍ଣ ବିଶ୍ୱାସ । ତାଙ୍କଠାରେ ନିଜକୁ ସମର୍ପିଦେବା ଓ ତାଙ୍କର ଗୁଣକୀର୍ତ୍ତନ କରି ପ୍ରାର୍ଥନା କରିବା ହିଁ ପ୍ରକୃତ ପୂଜା । ଭଗବାନ୍ ଏକ, ସର୍ବତ୍ର ସବୁବେଳେ ବିରାଜିତ, କିନ୍ତୁ ସେ ନିର୍ଦ୍ଦେହ, ନିର୍ଲିପ୍ତ । ଭଗବାନ୍ ମୂର୍ତ୍ତି ନୁହନ୍ତି କି ଛବି ନୁହନ୍ତି । ନିର୍ଦ୍ଦେହ ବା ନିରାକାରର ଧାରଣା କରିବା ତାଙ୍କ ପକ୍ଷରେ ସମ୍ଭବ ହେଉ ନାହିଁ । ତେଣୁ ସେ ପ୍ରତିମୂର୍ତ୍ତିର ଧାରଣା କରି ସର୍ବବ୍ୟାପୀ ସର୍ବଶକ୍ତିମାନ୍ ନିରା-କାରଙ୍କର ପୂଜା କରନ୍ତି, ପ୍ରାର୍ଥନା କରନ୍ତି ।

ଗୃହସଂସାର କରି ସୁଖ ଆନନ୍ଦରେ ରହିବାକୁ ଆତ୍ମଜ ଯଦି ଧର୍ମାନ୍ତର ଗ୍ରହଣ କରେ, ସେ ସୁଖୀ ହେବ । ବାଧା ଦେବେ ନାହିଁ । ହିନ୍ଦୁ ସମାଜରେ ସମସ୍ତଙ୍କ ପାଇଁ ସ୍ଥାନ ଅଛି ସତ, ଅଜ୍ଞାତକୁଳଶୀଳାର ସମ୍ମାନ ନାହିଁ । ସେ ଘୃଣ୍ୟ, ସେ ପତିତ ।

ଡରି ଡରି କହିଲେ ଦିନେ ସତ୍ୟବତୀ । କନ୍ୟାର ମନକଥା ଜାଣିବାକୁ ଉଦ୍‌ବିଗ୍ନ ହୋଇ ଅନାଇଁ ରହିଲେ ତା'ର ମୁହଁକୁ ।

ହସ ହସ ଆତ୍ମଜ ବିଚଳିତ ହେଲା ନାହିଁ, ଡରକ୍ତ ହେଲା ନାହିଁ । ସତ୍ୟବତୀ-ଙ୍କର ଆଖିର ଲୁହ ଦେଖି ସେ ବୁଝିଲା ଜନନୀଙ୍କର ସ୍ନେହଶୀଳ ମନ ଅବୁଝା ହୋଇଛି,

Digitized by PPRACHIN, SOA

ଅତୁଷ୍ଟ ହୋଇଛୁ । ଉତ୍ତର ଦେଲ, ମା, ଯଦି ମତେ ଦୁଃଖୀ ବୋଲି ତୁ ମଣୁଛୁ, ହିନ୍ଦୁ ସମାଜରେ ମୁହିଁ କ'ଣ ଏକା ଦୁଃଖୀ ? ମୋ ପରି ସହସ୍ର ସହସ୍ର ଦୁଃଖୀ ତ ଥିବେ । ସମସ୍ତେ କ'ଣ ଧର୍ମାନ୍ତର ଗ୍ରହଣ କରିବେ ? ଶ୍ରେଷ୍ଠବଡ଼ ଜାତିର ସଂକୀର୍ଣ୍ଣ ଧାରଣା ଯଦି ହିନ୍ଦୁ ସମାଜରୁ ଦୂର ହୋଇଯିବ, ପ୍ରତ୍ୟେକ ହିନ୍ଦୁ ଯଦି ଜାତିବର୍ଣ୍ଣନିର୍ବିଶେଷରେ ଆଉ ପ୍ରତ୍ୟେକ ହିନ୍ଦୁକୁ ନିଜର ସମାନ ବୋଲି ମଣିବା, ସମ୍ମାନ ଓ ସୁବିଧା ପାଇଁ ଧର୍ମାନ୍ତର ଗ୍ରହଣ କରିବାର ଧାରଣା ମନକୁ ଆସିବ ନାହିଁ ।

ଆଖିରୁ ଲୁହ ପୋଛୁ ସତ୍ୟବତୀ କହିଲେ, ଯାହା ସହସ୍ର ସହସ୍ର ବର୍ଷ ଶିକ୍ଷା ଓ ପ୍ରଚାରର ଫଳରେ ସମ୍ଭବ ହୋଇପାରି ନାହିଁ, କେବେ ତାହା ସମ୍ଭବ ହେବ ନାହିଁ ।

ତୁ ଭୁଲ୍ ବୁଝୁଛୁ । ନିଶ୍ଚିନ୍ତରେ ଶୋଇ ସୁଖ-ସ୍ୱପ୍ନ ଦେଖୁଥିବା ଲୋକର ନିଦ ଭାଙ୍ଗେ ତ ! ଘରେ ନିଆଁ ଲାଗିଲେ ଦେହରେ ଉତ୍ତାପ ଲାଗିଲେ ସେ ଚମକି ଉଠେ । ନିଆଁ ଲିଭାଏ । ସତର୍କ ହୁଏ । ଚେଇଁ ବସେ । ଘରର ନିଆଁ ଲାଗି ଦୁଇଟି ଅଂଶ ଅଲଗା ହୋଇଛି । ହିନ୍ଦୁ ସମାଜ ଚମକି ଉଠିଲାଣି । ସତର୍କ ହେଲାଣି । ବୁଝି ସାରିଲାଣି, ଜାତି ଜାତି ମଧ୍ୟରେ ଭେଦଭାବ, ଘୃଣା ଓ ଅସହନଶୀଳତା ଦିନେ ସବୁ ଜାତିକୁ ଧ୍ୱଂସ କରିବ । ହିନ୍ଦୁ ସମାଜର ଚାତୁର୍ବର୍ଣ୍ଣ୍ୟ ରହିବ ନାହିଁ । ମା, ହିନ୍ଦୁ ଆଜି ସବୁ ସଂକୀର୍ଣ୍ଣତା ଗୋଡ଼ରେ ଦଳି ଆଗେଇ ଆସିଲାଣି । ସମସ୍ତେ ସମସ୍ତଙ୍କୁ ଆପଣାର କରିବାକୁ ବଦ୍ଧ-ପରିକର ହେଲେଣି— ।

କହୁ କହୁ ନିଜେ ସେ ତନ୍ମୟ ହେଲା ।

ସତ୍ୟବତୀ ଦେଖିଲେ; ଆହ୍ଲାଦର ଦୁଇ ଅଖି ହୋମଶିଖା ପରି ପ୍ରଜ୍ଜ୍ୱଳିତ ହେଉଛି । ସତେ କି ତା'ର ଆଖିରେ ଆଲୋକ । ସତ୍ୟବତୀଙ୍କ ମନରେ ଜମି ରହିଥିବା ଅତୀତର ସବୁ ସନ୍ଦେହ, ସବୁ ଆବର୍ଜନା ପୋଡ଼ି ଭସ୍ମୀଭୂତ ହେଉଛି । ତାଙ୍କର ଓଠରେ ହସ ଚହଟିଲା । ମୁହଁ ନୂତନ ଆଲୋକରେ ଉଦ୍‌ଭାସିତ ହେଲା । ସେ କହି ଉଠିଲେ, ସତେ ମା, ସତ୍ୟ ?

ଆହ୍ଲାଦର ଓଠର ହସ ଓ ଆଖିର ଆଲୋକରେ ସେ ପ୍ରଶ୍ନର ଉତ୍ତର ଦେଲା— ସତ, ସତ !

'ଦାଗୀ' ପ୍ରେସ୍‌ର ଗୋଟିଏ କୋଠରୀରେ ନିଜେ ଧନଞ୍ଜୟ ରହେ । ଅର୍ଜ୍ଜୁନ ମହାରଥୀ ନିଯୁକ୍ତ ହେଲା ଦିନୁ ତା'କୁ ଆଉ ହୋଟେଲ୍‌ରେ ଖାଇବାକୁ ପଡ଼ୁ ନାହିଁ । ଅର୍ଜ୍ଜୁନ ବିଜୁଳି ପରି ଚଞ୍ଚଳ । ପ୍ରେସର କାମ ଶେଷ କରି ଦି'ବେଳା ଦି'ମୁଠି ଭାତ ଫୁଟାଇ-ଦେବାକୁ ତା'କୁ ଅଧିକ ସମୟ ଲାଗେ ନାହିଁ । ଡାଲି ତରକାରି ଭାତଗଣ୍ଡା ସଙ୍ଗେ ସଙ୍ଗେ

Digitized by PPRACHIN, SOA

ହୋଇଯାଏ । ଧନଞ୍ଜୟ ସିଝା ଦରସିଝା, ଲୁଣିଆ ଅଲଣା ବାଛେନି ନାହିଁ । ଅର୍ଜୁନ ଯେଉଁ ଓଳି ଯାହା ଯେମିତି କଲେ ବି ପ୍ରଶଂସା ପାଏ ।

ଅତଏବ ସୁବ୍ରତ ଆସିଲା ବେଳକୁ ଅର୍ଜୁନ ଚନ୍ତ ହୋଇ ପଡ଼ିଛି । ଧନଞ୍ଜୟ ନିଜେ ଚୁଲି ମୁଣ୍ଡରେ ବସି ମାଛଟିକେ ଶାଗଟିକେ କରିବାକୁ ଚେଷ୍ଟା କରୁଛି । ବନ୍ଧୁଟି ତା'ର ଧନୀ ଜମିଦାର ଘରର ପିଲା । ଛାତ୍ରଜୀବନରେ ସେ କପଟ ଚଳୁଥିଲା, ବନ୍ଧୁମାନଙ୍କୁ କପଟ ଖାଇବାକୁ ଦେଉଥିଲା, ଧନଞ୍ଜୟର ମନେ ପଡ଼ିଯାଏ ! ଛଅ ବର୍ଷ କାଳ ବନ୍ଧୁ ବଜ୍ରବାହୁ ଓଡ଼ିଶା ପ୍ରଦେଶର ବିଭିନ୍ନ ସ୍ଥାନରେ ବୁଲିଛି । ବିଭିନ୍ନ ପରିସ୍ଥିତି ଭିତରେ ଚଳି ଆସିଛି । ଏ କଥା ସେ ଜାଣେ । ବଜ୍ରବାହୁର ପଣ ଥିଲା, ସବୁ ଶ୍ରେଣୀର ଲୋକଙ୍କ ସଙ୍ଗେ ମିଶିବ । ଯେତେ ଶ୍ରେଷ୍ଠ କି ହୀନ ହେଲେ ମଧ୍ୟ ସବୁ ପ୍ରକାର କାମ କରିବ । ସେ ସବୁ କରିଛି । ଉପାସ ଭୋକରେ ସମୟ କଟାଇ ଦୁଃଖ ସହିଛି । ତଥାପି ସେ ଧନୀଘରର ପିଲା । —

ଧନଞ୍ଜୟ ଚୁଲି ପାଖକୁ ଆସିଲେ ସୁବ୍ରତ ବିରକ୍ତ ହୁଏ । ନିଜେ ଆସି ପାଖରେ ବସେ । କହେ, ମହାରଥୀଙ୍କୁ ଯେପରି ଆସୁଛି ସେ କରନ୍ତୁ । ଆମେ କାହିଁକି ବେଳ ନଷ୍ଟ କରିବା ? ଆରେ, ଯେ କୌଣସିମତେ ପେଟ ପୂରିଲେ ହେଲା । ଦେଖିଆସିଲି, ଲୋକେ କପଟ ଚଳୁଛନ୍ତି ଏ ଦେଶରେ । ଯେଉଁମାନଙ୍କର କିଛି ନାହିଁ ସେମାନେ ତ ଜାଣି ପାଣି ଗିଳିସେ ପିଇ ସମୟ କଟାଉଛନ୍ତି । ଯେଉଁମାନଙ୍କର ଅଛି ସେ ଦେଶରେ, ବଡ଼ କୋଠାରେ ରହନ୍ତି, ବ୍ୟାଙ୍କରେ ଟଙ୍କା ଜମାଇ ରଖନ୍ତି, ମଟରଗାଡ଼ି ଚଢ଼ି ବୁଲନ୍ତି ଓ ବେପାର ବଣିଜ କରନ୍ତି । ସେମାନେ କରନ୍ତି କ'ଣ ? ପାଣିରେ ସିଝେଇ ଦେଲୁଲି, ଦିଓଟି ଲଙ୍କା, ଚିମୁଟେ ଲୁଣ । ଯଥେଷ୍ଟ ହେଲା । ସେ ପଦାର୍ଥ ନାମ କାରୁ । ଖାଆନ୍ତି ଯେଉଁମାନେ ସେମାନେ ଗାରୁ । କେବଳ ଭାରତବର୍ଷ ନୁହେଁ, ଭାରତ ବାହାରେ କେତେ ଦେଶରେ ସେମାନେ ରହନ୍ତି । ବେପାର ବଣିଜ କରି ଧନୀ ହୁଅନ୍ତି । ଅନ୍ୟ ଦେଶର ନାଗରିକ ହୋଇ ସେଠାରେ ମଧ୍ୟ ପ୍ରତିପତ୍ତି ବିସ୍ତାର କରନ୍ତି ।

ସତେ ?

ସିଂହଳର ଦ୍ୱିତୀୟ ଭାଷା ତାମିଲ୍, ମାଳୟର ଦ୍ୱିତୀୟ ଭାଷା ତାମିଲ୍ କିନ୍ତୁ, ଯାଭା ସୁମାତ୍ରା କି ବାଲିଦ୍ୱୀପରେ ଓଡ଼ିଆ ଭାଷାର ଅସ୍ତିତ୍ୱ ନାହିଁ । ଆରେ ଭାଇ, ଖଣ୍ଡାଧାରରେ ଦେଶଜୟ କଲେ କି ଉପରେ ବସି ରାଜତ୍ୱ କଲେ ମାଟିରେ ଚେର ଲାଗି ରହେ ନାହିଁ । ଚେର ଲାଗେ ଧନ ସଞ୍ଚୟ କଲେ ଓ ସେଇ ଧନରେ ବେପାର କରି ଲୋକଙ୍କୁ ଆୟତ୍ତ କରି ରଖିଲେ । ରାଜତ୍ୱ ଯିବା ସଙ୍ଗେ ସଙ୍ଗେ ପ୍ରତିପତ୍ତି ଲୋପ ହୁଏ । ସେସବୁ କେବଳ ଇତିହାସର ଗଳ୍ପ ହୋଇଯାଏ । ଯେଉଁମାନଙ୍କର ସମାଜ ଭିତରେ ଚେର ଲାଗେ, ଯେଉଁମାନେ ଦେଶରେ ରହି ଆର୍ଥିକ ପ୍ରଭାବ ବିସ୍ତାର କରିପାରନ୍ତି, ସେଇମାନେ କେବଳ ବଞ୍ଚି ରହନ୍ତି । ଜାତୀୟତାକୁ ବି ବଞ୍ଚାଇ ରଖି ପାରନ୍ତି ।

Digitized by PPRACHIN, SOA

ଚିନ୍ତା କରିବାର ବିଷୟ। ବଜ୍ରବାହୁ, ତୋ'କଥାକୁ ସମ୍ପୂର୍ଣ୍ଣ ସତ୍ୟ ବୋଲି ଗ୍ରହଣ କରିବାକୁ ମନ ହେଉନାହିଁ। ତେବେ, ଏ କଥା ସତ ଯେ ପେଟକାଟ ବେପାର ସଙ୍ଗେ ଆଉ କୌଣସି ବେପାର ସମାନ ନୁହେଁ। ଆଚ୍ଛା, ସ୍ୱରୁପାଣି ମୁହେଁ କର ଅର୍ଜ୍ଜନ, ହେଲେ ଲଙ୍କାଗୁଣ୍ଡା ଏ ପକାଇବ ନାହିଁ। ମଣିପି କାଇଲୁ ଅର୍ଥ ମାଣ ପକାଇଲୁ।—

ଦୁଇ ବନ୍ଧୁଙ୍କର ସମସ୍ତ କଟିଯାଉଛି ଆନନ୍ଦରେ। ଧନଞ୍ଜୟଙ୍କୁ ତା'ର କାର୍ଯ୍ୟରେ ସାହାଯ୍ୟ କରିବାକୁ ସୁବ୍ରତ ସବୁବେଳେ ତତ୍ପର। ଧନଞ୍ଜୟ ତାହା ହିଁ ଚାହେଁ। ପ୍ରେସ୍‌ର ଯନ୍ତ୍ରକୁ ଠିକ ଯେପରି ନିଜକୁ ଓ ନିଜର କର୍ମୀମାନଙ୍କୁ ଯନ୍ତ୍ରରେ ପରିଣତ କରିପାରିଛି। କାମ ବେଳେ କାମ। ସେ ସମୟରେ ଆଳସ୍ୟ କିମ୍ବା ବୃଥା ଗଳ୍ପ କରି କାଳକ୍ଷେପଣ ସେ ଭଲ ପାଏ ନାହିଁ। ସେ ଜାଣେ ଓ ତା'ର କର୍ମୀମାନେ ସମସ୍ତେ ଭଲକରି ଜାଣନ୍ତି ଯେ ଧନଞ୍ଜୟର ପ୍ରୋଗ୍ରାମ୍ ଅତି ବନ୍ଧା ଓ ସମୟସାପେକ୍ଷ।

ଯେଉଁମାନେ କୌଣସି କାରଣରୁ ଜେଲଦଣ୍ଡ ଭୋଗନ୍ତି, ଜେଲ୍‌ରୁ ମୁକ୍ତ ହୋଇ ଆସିଲେ ସମାଜ ତାକୁ ସନ୍ଦେହ ଓ ଘୃଣାଚକ୍ଷୁରେ ଦେଖେ। ଯାହାର ଚଳି-ଯିବାର ସଙ୍ଗତି ଅଛି, ଲୋକେ ନାକ ଟେକିଲେ ମଧ୍ୟ ଘରକୁ ଫେରି ସେ କୌଣସିମତେ ଚଳିଯାଏ। ଯାହାର କିଛି ନାହିଁ, ଲୋକେ ସନ୍ଦେହ ଓ ଅବିଶ୍ୱାସ କରି ଯାହାକୁ କୌଣସି କାର୍ଯ୍ୟରେ ନିଯୁକ୍ତ କରିବାକୁ ଭୟଭୀତ ହୁଅନ୍ତି, ନିଜେ ବଞ୍ଚି ରହିବାକୁ ଓ ପିଲାଛୁଆଙ୍କ ତୁଣ୍ଡରେ ଆହାର ଦେବାକୁ କି ଉପାୟ ସେ ଅବଲମ୍ବନ କରେ ? ଠକାମି, ଚୋରି, ଡକାଇତି। ଜେଲ୍, ଜେଲ୍ —।

ଆକସ୍ମିକ ଗୋଟିଏ ଘଟଣାରୁ ଆରମ୍ଭ। ସମାଜ ତା'କୁ ଦୂରେଇ ଦିଏ। ସେ ହୁଏ ସମାଜଦ୍ରୋହୀ। ସମାଜକଣ୍ଟକ। ସତ୍ ଉପାୟରେ କିପରି ବଞ୍ଚିବ ? କିପରି ପୁଣି ସେ ଆତ୍ମସମ୍ମାନ ଫେରି ପାଇବ ? ତାକୁ କାର୍ଯ୍ୟ ଯୋଗାଇ ଦେବାକୁ ହେବ। ପୁଣି, ଦେଖିବାକୁ ହେବ ଯେପରି ସେ ତା'ର ପରିଶ୍ରମର ଉପଯୁକ୍ତ ମୂଲ୍ୟ ପାଏ। ନୋହିଲେ ଅଭାବରେ ପଡ଼ି ପୁଣି ସେ ଚୋରି ଡକାଇତି କରିବ। ସତ ନୁହେଁ କି ବଜ୍ରବାହୁ ?

ପରିଶ୍ରମର ଉପଯୁକ୍ତ ମୂଲ୍ୟ କ'ଣ, ଏ କଥା କିଏ ସ୍ଥିର କରିପାରିବ ଧନଞ୍ଜୟ ? ଏହାର କୌଣସି ମାପକାଠି ନାହିଁ। କେବଳ ସୁବିଧା ଓ ସୁଯୋଗ ବିଭିନ୍ନ ପ୍ରକାର ଶ୍ରମ ଓ ବିଭିନ୍ନ କର୍ମୀର ମୂଲ୍ୟ ନିରୂପଣ କରେ। ଏଥିପାଇଁ ମାପକାଠି ଆବିଷ୍କାର କରିବା ସମ୍ଭବ ନୁହେଁ। ତେବେ, ମଣିଷର ଯାହା ନିତାନ୍ତ ଆବଶ୍ୟକ – ଖାଇବା, ପିନ୍ଧିବା, ଘରକରି ରହିବା, ସାଧାରଣ ଶିକ୍ଷା, ରୋଗବୈରାଗ ପାଇଁ ସଞ୍ଚୟ, ଆନନ୍ଦ ପାଇଁ ବ୍ୟବସ୍ଥା —ଏ ସବୁକୁ ନଜର ଦେଇ ପରିଶ୍ରମର ସର୍ବନିମ୍ନ ମୂଲ୍ୟ ନିରୂପଣ କରିବାର କଥା। କିନ୍ତୁ ଏହା କେତେଦୂର ସମ୍ଭବ ଆମର ଗରିବ ଦେଶରେ, ପୁଣି ଅତି ଗରିବ ପ୍ରଦେଶ ଉତ୍କଳ

Digitized by PPRACHIN, SOA

କ୍ଷଣରେ ସେଇଁଠି ଅଶିକ୍ଷିତ, ଦରିଦ୍ର, ଭୟାଳୁ ଜନତାର ପରିଶ୍ରମ ଅନ୍ୟମାନେ ଅପହରଣ କରିବାରେ ଲାଗିଛନ୍ତି ? ଆର୍ଥିକ ଅବନତି ଯେତିକ ହେଉଛି, ଜୀବନର ମାନଦଣ୍ଡ ସେତିକ ତଳକୁ ଖସୁଛି । ବଢ଼ିବା ଦୂରର କଥା, ସ୍ୱପ୍ନର କଥା । ଦିନୁଦିନ କମି କମି ନୈତିକ ବଳ ତଳକୁ ଖସୁଛି । ଦାରିଦ୍ର୍ୟ ଓ ଅଶାନ୍ତ କାର୍ଯ୍ୟଦକ୍ଷତା କମେଇ ଦେଉଛି । କାର୍ଯ୍ୟ କାହିଁ ? ବେକାର ସମସ୍ୟା ଦୂର ହେବ କିପରି ? ଏଇଟା ଅସଲ କଥା । ପରିଶ୍ରମର ସର୍ବନିମ୍ନ ମୂଲ୍ୟ କମି କମି ଅଟକୁଛି—କୌଣସି ମତେ ଦୁଇ ବେଳା ଉଦର ପୂରଣର ବ୍ୟବସ୍ଥାରେ । ତୋର ଉଦ୍ଦେଶ୍ୟ ଭଲ । ତୋର' ଯୋଜନା ସୁଚିନ୍ତିତ— ପ୍ରେସ୍, ଇଟା କାରଖାନା, କାଠ କାରଖାନା, ମିସ୍ତ୍ରୀକାମ,—

ମୋ ଯୋଜନାରେ ଏପରି ଆହୁରି କେତେ କାମର ତାଲିକା ଅଛି । ତୋ'ର କଥାରେ କହିଲେ – ସୁଆଡ଼େ ଚାହିଁଲେ ଆଖିରେ ପଡ଼ୁଛି କାମ । କାମ ନିମନ୍ତ୍ରଣ କରୁଛି । କିନ୍ତୁ କାମ କରିବା ଓ କରାଇବା ସ୍ତରେ ତିନି ସ୍ତର—ଯୋଜନା, ସଙ୍ଗଠନ, ନିୟନ୍ତ୍ରଣ ଓ ଶେଷକୁ ସମ୍ପାଦନ । କେବଳ ମନ ଥିଲେ ନ ଏ ସବୁ ଆପେ ଆପେ ହେବ ନାହିଁ । ଧନ ଲୋଡ଼ା, ସର୍ବୋପରି ସ୍ୱାର୍ଥତ୍ୟାଗୀ କର୍ମୀ ଲୋଡ଼ା । ସହଯୋଗ ଓ ଉତ୍ସାହ ଲୋଡ଼ା ! ମୁଁ ତ ଦାଗୀ – ଏବେ ବି ଦୁନିଆଁ ମତେ ସନ୍ଦେହପୂର୍ଣ୍ଣ ଚକ୍ଷୁରେ ଦେଖୁଛି । ମୋର ପରି ଦାଗୀଗୁଡ଼ିକ୍ କୁ ନେଇ ମୁଁ ଆଗେଇବାକୁ ଚେଷ୍ଟା କରୁଛି । ଯେତେ ଗୋଡ଼ ଚପି ଚପି ଚାଲିଲେ ବି ଗୋଡ଼ ଖସି ଯିବାର ଭୟ ରହିଛି । ଆକ୍ସିଡେଣ୍ଟ କଥା କିଏ କହିବ ? ତଥାପି ମୋର ଉଦ୍ଦେଶ୍ୟ ଯେନ ମୁଁ ଆଗେଇବାକୁ ଚେଷ୍ଟା କରିବି । ଗୋଡ଼ ଯେବେ ଖସିନ ତ ଖସିବ । କେତେ ଅଭିଜ୍ଞତା ହାସଲ୍ କରି ତୁ ଫେରିଆସିଛୁ ବଜ୍ରବାହୁ, ଯଦି ତୋର ଆପତ୍ତି ନ ଥାଏ, ଆଉ ଯଦି ତୋର ମୋ'ର ଯୋଜନା ଉପରେ ଆସ୍ଥା ଥାଏ, ତୁ ବି ମୋ' ସଙ୍ଗେ ଯୋଗ ଦେ । ତୁ ଯଦି ଦାଗୀ ପ୍ରେସ୍ ଓ ମୋ'ର ଦାଗୀ ବନ୍ଧୁମାନଙ୍କର ଦାୟିତ୍ୱ ନିଅନ୍ତୁ, ମୋ'ର ଯୋଜନା ପ୍ରକାରେ ମୁଁ କେବଳ ସେଇମାନଙ୍କ ପାଇଁ ଅନ୍ୟ କେଉଁ କାମରେ ସଙ୍ଗ-ଠନରେ ଲାଗି ପଡ଼ନ୍ତି ।

ରାତି ହେଲାଣି ନଅଟା । ମହାରଥୀ ତା'ର କାମ ଶେଷ କରି ବାରଣ୍ଡାରେ ବସି ଗୁଣୁଗୁଣୁ ହୋଇ ଉଅପୋଇ ଗୀତ ବୋଲୁଛି । ଗ୍ରେଟ ବହିଟି ଚାପସମ୍ବଳିତ ହୋଇ ଦାଗୀ–ପ୍ରେସ୍‌ରୁ ନୂଆ ରୂପ ଧରି ବାହାରିଛି ।

ଦେବତା ଛନ୍ତି ମଙ୍ଗ କୋଣେ, ବଦାଅ ଯାଇ ଜଣେ ଜଣେ ।—ଭୁଗ୍ଗରେ ଉଅପୋଇ ବାଲୀ, କାଟିଲି ନାକର ବଉଳୀ ।—

ମହାରଥୀ ଆଉ ଆଗେଇ ପାରୁନାହିଁ । ହସିହସି ଲୋଟିଯାଉଛି । ଛଅ ବୋଦ୍ଧୁଙ୍କର ନାକର ବଉଳୀ ଉଅପୋଇ କାଟିଲି, ସେଥିପାଇଁ ମହାରଥୀର ଆନନ୍ଦର ସୀମା ନାହିଁ । କହୁଛି ସେ ନିଜକୁ ନିଜେ—ଏଇ ଦୁ'ପଦ ଗାଇଲେ ତ, ଦୁଇଟା ଦିନରେ ତିନି ହଜାର ବହି ସହରରେ କଟିଯିବ । ହୁଁ —

Digitized by PPRACHIN, SOA

ବଜ୍ରବାହୁ ହସିଉଠିଲା ।

ଧନଞ୍ଜୟ କହିଲା, ସେ ଦକ୍ଷତା ଅର୍ଜୁନର ଅଛି । ସେ ଖାଲି ଅଭି କରୁଛି— ବସ୍ତ୍ରହରଣ, ନାବକେଳୀ, ନଷ୍ଟଚନ୍ଦ୍ରର ବନ୍ଧୁରୁ ଦଶ ହଜାର କରି ଗ୍ରୁପି ଦେଲେ ଦଶଟା ଦିନରେ ସେ ବନ୍ଦୀ କରିଦେବ । ଆଜି ଏକାଉଣ୍ଟେଣ୍ଟ୍ ଦାମ ଦାଉଙ୍କ ସଙ୍ଗେ ସେ ବାଜି ପକେଇଛି । ମନା କରି ଦେଲି ବୋଲି ତା' ମନରେ ଦୁଃଖ ।

କେବଳ ତାଆରି ନୁହେଁ ତ' ତୋ'ର ସବୁ କର୍ମୀଙ୍କର ତୋ'ର ଆନୁଷ୍ଠାନ ପ୍ରତି ଅନୁରକ୍ତି ଅଛି ।

ଅନୁଷ୍ଠାନ ସେମାନଙ୍କର । ମୁଁ କେବଳ ଯୋଜନା ଓ ସଂଗଠନ କରିଛି । ନିୟନ୍ତ୍ରଣ କରୁଛି । ସମ୍ପାଦନାର ଦାୟିତ୍ୱ ସେମାନଙ୍କର । ଫଳାଫଳର ଭାଗୀ ସେମାନେ ।

ଧନଞ୍ଜୟ, ତୋ'ର ନିମନ୍ତ୍ରଣ ରକ୍ଷା କରିବାକୁ ମୁଁ ନିଜକୁ ଅସମର୍ଥ ମଣୁଛି । ମୁଁ ମୋ'ର କର୍ମପନ୍ଥା ସ୍ଥିର କରି ସାରିଛି । ସେ କ୍ଷେତ୍ର ସହର ନୁହେଁ, ମୋଫସଲ । ଗ୍ରାମରେ ଯଦି ମଙ୍ଗଳ କରାଯାଇପାରେ, ଲୋକଙ୍କ ମନରୁ ଭେଦଭାବ, ପରସ୍ପର ପ୍ରତି ଦ୍ୱେଷାଭାବ ଯଦି ଦୂର କରାଯାଇପାରେ, ତ ତୋ'ର କର୍ମର ପରିସର ଆପେ ଆପେ କମିଯିବ । ଗୋଟିଏ ଗ୍ରାମ ହେବ ଗୋଟିଏ କୁଟୁମ୍ବ । ସମସ୍ତେ ସମସ୍ତଙ୍କ ମଙ୍ଗଳ ପାଇଁ କାମ କରିବେ । କେହି କାହାର ପରିଶ୍ରମ ଶୋଷଣକରି ଧନୀ ହେବାର କାମନା କରିବେ ନାହିଁ । ସମସ୍ତଙ୍କର ସାଧାରଣ ଅଭାବ ଯଦି ପୂରଣ କରାଯାଇ ପାରିବ, ଅନ୍ୟକୁ ଠକିବାର ଓ ଅନ୍ୟର ଧନ ଅପହରଣ କରିବାର ପ୍ରବୃତ୍ତି କାହାର ରହିବ ନାହିଁ । ଯଦି କେହି କେବେ ଭୁଲ୍ କରି ଜେଲ୍‌ଦଣ୍ଡ ଭୋଗେ, ସେ ଫେରି ଆସିଲେ ପୁଣି ସ୍ନେହ ଆଦର ପାଇବ । ସମସ୍ତଙ୍କ ସଙ୍ଗେ ମିଶି କର୍ମ କରି ସମସ୍ତଙ୍କ ପରି ସେ ମଧ୍ୟ ସୁଖ ଆନନ୍ଦରେ ସଂସାର କରିବ ।

ବିନୋବା ଝଙ୍କାର !

ପ୍ରଖର ଝଙ୍କାର । ମଣିଷର ସଦ୍‌ବୁଦ୍ଧିର ଆହ୍ୱାନ ! ସମସ୍ତଙ୍କ କାନରେ ବାଜୁଛି, ମନରେ ଭେଦୁଛି, ଗତି କରୁଛି ହୃଦୟ ଆଡ଼କୁ । ଏ ଝଙ୍କାର ଦିନେ ହୃଦୟକୁ ଜୟ କରିବ । ଶ୍ରେଣୀ, ଗୋଷ୍ଠୀ ଓ ଅନ୍ୟାନ୍ୟ ସବୁ ଭେଦହୀନ ମଣିଷ-ସମାଜ ସୃଷ୍ଟି କରିବ । ସେଥିପାଇଁ କର୍ମୀ ଲୋଡ଼ା ! ମୋର ଶ୍ରେଷ୍ଠ ଗ୍ରାମ ରଣଗଡ଼ରେ ମୋ'ର ଶ୍ରେଷ୍ଠ ଭାଇ ସୁବ୍ରତ କ'ଣ କରିପାରିଛି ଥରେ ଦେଖିବୁ ଚାଲ ଧନଞ୍ଜୟ । କର୍ମୀ ଧର୍ମାନନ୍ଦ ଯେଉଁ ପତ୍ରଟି ଲେଖିଛି ତା'କୁ ଥରେ ମନ ଦେଇ ପଢ଼ । ସମସ୍ତେ ସେମାନେ ମତେ ଅପେକ୍ଷା କରି ବସିଛନ୍ତି—

ସୁବ୍ରତ ପକେଟରୁ ପତ୍ରଖଣ୍ଡି ଧନଞ୍ଜୟ ହାତକୁ ବଢ଼ାଇଦେଲା ।

Digitized by PPRACHIN, SOA

ରଣଗଡ଼ । ଇତିହାସ ବା କିମ୍ବଦନ୍ତୀ ନାହିଁ କି ଏ ଗ୍ରାମଟିକୁ କେବେ ବସାଇଥିଲା । ଅତି ପବିତ୍ର, ଅତି ପୁରାତନ । ପ୍ରଚଳିତ କିମ୍ବଦନ୍ତୀରୁ ଜଣାଯାଏ, ଯେତେବେଳେ ପରଶୁରାମ ଏକୋଇଶ ଥର ପୃଥିବୀକୁ ନିଃକ୍ଷତ୍ରି କରିଥିଲେ, ସେତେବେଳେ ମଧ୍ୟ ରଣଗଡ଼ ମୁଣ୍ଡ ଟେକି ଠିଆହୋଇଥିଲା । ଅଧିଷ୍ଠାତ୍ରୀ ଦେବୀ ରଣ ଭୈରବୀ ସିଂହ-ବାହନରେ ବସି ପରଶୁରାମଙ୍କ ସଙ୍ଗେ ଯୁଦ୍ଧ କରିଥିଲେ । ପରଶୁରାମ ପରାଜିତ ହୋଇ ଫେରିଯାଇଥିଲେ । କେତେ ପୁରୁଷ ତଳେ କେଜାଣି ରଣଭୈରବୀ ନଦୀଗର୍ଭରେ ଆଶ୍ରୟ ନେଲେଣି ।

ରଣଗଡ଼ର ରଣସିଂହ ଥରେ ଢେଙ୍କାର କରି କଳିଙ୍ଗ ରାଜାଙ୍କ ସୈନ୍ୟ-ବାହିନୀରେ ପଦାତିକ ହୋଇ ଯୋଗ ଦେଇଥିଲେ । ମାନଗୋବିନ୍ଦ ଦୁର୍ଯ୍ୟୋଧନଙ୍କ ସପକ୍ଷରେ ମହାଭାରତ ଯୁଦ୍ଧରେ ପାଣ୍ଡବମାନଙ୍କ ବିରୁଦ୍ଧରେ ରଣ କରିଥିଲେ । ସମୂଳେ ଧ୍ୱଂସ ହେଲେ ପଛେ ପଛଘୁଞ୍ଚା ଦେଲେ ନାହିଁ । ସେଇମାନଙ୍କର ବଂଶଧରମାନେ ମହାରାଜ ଅଶୋକଙ୍କ ସୈନ୍ୟଙ୍କ ସଙ୍ଗେ ଧଉଳୀ ପାହାଡ଼ ତଳେ ଯୁଦ୍ଧ କରି ପ୍ରାଣ ହରାଇଥିଲେ । କିନ୍ତୁ ସେଇମାନଙ୍କର ନାତି ଅଣନାତି ପ୍ରବଳ ପ୍ରତାପୀ ମହାରାଜ ଖାରବେଳଙ୍କ ଗହଣରେ ଉତ୍ତର-ଭାରତ ଜୟକରି ଆସିଲେ । ସେମାନେ ପୁଣି କାଞ୍ଚି ଜୟ କଲେ, ପରେ ମୁକୁନ୍ଦଦେବଙ୍କ ବାହିନୀରେ ଗଙ୍ଗାକୂଳରେ ପ୍ରାଣ ବିସର୍ଜିଲେ ।

ଗଲା ସେ ଯୁଗ । ଆସିଲେ ଇଂରେଜ । ଚିରସ୍ଥାୟୀ ବନ୍ଦୋବସ୍ତ କରି ଅଭୟ ପ୍ରଦାନ କଲେ । କହିଲେ — ଆମକୁ ବର୍ଷକୁ ଏତିକି ଦେଲେ ଆମେ ଖୁସି । ତେଣିକି ଯାହା କରୁଛ, କର । ତମେ ସୁଖରେ ଅଏସ୍‌ରେ ରହ । ସଂସାରରେ ଯେତେ ପ୍ରକାର ମଜା ଅଛି ସବୁ ଲୁଟ୍ କର, ଭୋଗକର । ସେଥିପାଇଁ ଦୁହାଁଳି ଗାଈ ହେବେ ତମର ପ୍ରଜା । ତମେ ହେବ ଗଉଡ଼ । ଦୁହଁ ଆ କେତେ ଦୁହଁଛ — । ନିଅ, ହାତରେ ଧର ଏ ପଘା — ଦଉଡ଼ି ସ୍ୱତ୍ୱ, ସାକ୍ଷାତ୍ ଦଇବ । ଯେଣିକି ଓଟାରିବ, ତେଣିକି ଯିବ । ଏଇଟା ନିଅ ପ୍ରଜାସ୍ୱତ୍ୱ ଆଇନ୍ — ପାଞ୍ଚଣ ସଙ୍ଗେ ସର ।

ଦୁହିଁ ଦୁହିଁ ପିଟି ପିଟି ଅଣ୍ଟା ଭାଙ୍ଗିଲା । ବରଷ ଶହେ କି ପାଞ୍ଚପା ଭିତରେ ପ୍ରଜାଙ୍କ ଦେହରୁ ରକ୍ତମାଂସ ଶୁଖିଲା । ସେମାନେ ଓରକୁଲା ହେଲେ । ସାହସ ଉଡ଼ିଲା । ନୈତିକ ବଳ କୁଆଡ଼େ ଗଲା । ଗ୍ରାମଶାସନ, ଗ୍ରାମ-ଦସ୍ତୁର, ଗ୍ରାମ-ସଭା ଆପେ ଆପେ ଭାଙ୍ଗିଲା । ଛୋଟ ଛୋଟ କଥାରେ ଅଧା-ଉପାସିଆ ପ୍ରଜା ଧାଇଁଲେ ଫୌଜଦାରୀ ଓ ଅଦାଲତ କଚେରୀକୁ । ଶତ୍ରୁତା ବଢ଼ିଲା । କଲିଲଗା-ଗାଁ-ମାମ୍‌ଲତକାର ଗାଁର ଶିରା-ପ୍ରଶିରାରେ ଉଦ୍‌ଭବିଲେ । ବଜାଇଲେ ଡମ୍ବରୁ । ଟଙ୍କା ଓ ଭୂମି ଗଲା ମହାଜନ ଏବଂ ଓକିଲଙ୍କ ଘରକୁ ।

Digitized by PPRACHIN, SOA

ଗ୍ରାମର ଏକତା ଭାଙ୍ଗିଲା । ଯା ମୁହଁ ଏଣେ ତ ତା' ମୁହଁ ତେଣେ । ଡିଭାଇଡ୍ ଏଣ୍ଡ୍ ରୁଲ୍ । ରାଷ୍ଟ୍ର ଚଳନାରୁ ଗ୍ରାମ ଓ କମ୍ୟୁନ୍ ଚଳନା ଯାଏ । ଘର ଭାଙ୍ଗିଲା—ଖଣ୍ଡିଆ ଜାନ୍ତୁ ମାଳମାଳ ହୋଇ ଠିଆହେଲା । ଭୂମିସବୁ ଅଳ୍ପ ଲୋକଙ୍କ ହାତରେ ଠୁଳହେଲା । ଉର୍ବର ଶକ୍ତି ହ୍ରାସ ହେଲା, ଯତ୍ନାଭାବରୁ । ଉତ୍ପନ୍ନ ହେଲା ଊଣା । ଜମି ନ ଥିବା ଲୋକେ ଜମ୍ବା ଅଣ୍ଡ ଅଳ୍ପ ଜମି ଥିବା ଲୋକେ ଅର୍ଦ୍ଧୋଦନ ଉପାସରେ ରହିଲେ । କମିଲା ଜୀବନୀଶକ୍ତି । ଚାରିଆଡ଼ୁ ଘୋଟିଆସିଲା ରୋଗ-ବୈରାଗ । ପ୍ରଜା ମଲେ । ଦୁର୍ବଳ ହେଲେ । ଦେହ ଓ ମନର ଶକ୍ତି ଆହୁରି କ୍ଷୀଣ ହେଲା, କ୍ଷୀଣତର ହେଲା — ।

ଯମର କରୁଣା ନାହିଁ, ସରକାରର ନାହିଁ, ଜମିଦାର ଓ ରଜାର ବି ନାହିଁ । ଖଜଣା ସେମାନେ ଛାଡ଼ି ଦେବେ ନାହିଁ । ସୁରା ଓ ସଖୀ ସେବାରେ ବହୁ ଅର୍ଥ ବ୍ୟୟ ହେଉଛି । ଯେତେ ପ୍ରକାର କର ସମ୍ଭବ ହୁଏ – ବସାଅ, ଆଦାୟ କର । ମାଲ୍-ଗୁଜରିଟା ଦାଖଲ କଲେ ସୁନାପୁଅ !

ରାଜାଙ୍କଠାରୁ ଅନେକ କରି ସାନବଡ଼ ଯେତେ ଜମିଦାର ଥିଲେ, ସମସ୍ତେ ହେଲେ ବିଦେଶୀ ସରକାରର ସୁନାପୁଅ । ଅତି କ୍ଷୁଦ୍ର ରଣଗଡ଼ ବି । ଦେଶ ଓ ଦଶର ଭଲମନ୍ଦ କଥା ବିଚାରକୁ ଆସିଲା ନାହିଁ । ଶୋଷଣ ହିଁ ହେଲା ନୀତି । ଶୋଷଣ ହିଁ ହେଲା ପଣ । ସହସ୍ର ସହସ୍ର ଗ୍ରାମର ଲକ୍ଷ ଲକ୍ଷ ଘର ଭାଙ୍ଗିଲା । ଗଢ଼ାହେଲା ସହର । ସେଇଠି କେବଳ ଶହ ଶହ କୋଠା ମଥାଟେକି ଠିଆହେଲା । ସେ ସବୁ କାହାର ? ଯେଉଁମାନେ ବିବିଧ ପ୍ରକାରେ ଶୋଷଣ କରିପାରନ୍ତି ସେଇମାନଙ୍କର । ଯେଉଁମାନେ କେବେ ହାତରେ ଧାନଗଛଟିଏ ପୋତି ନାହାନ୍ତି ସେଇମାନଙ୍କର । ସେଇଠି ଗଦା ହେଲା ପୁଣି ସବୁ ଉତ୍ପନ୍ନ । ମୁଠିଏ ଅନ୍ନ ପାଇଁ, ଖଣ୍ଡିଏ ବସନ ପାଇଁ ସହସ୍ର ଗ୍ରାମର ଲକ୍ଷ ପରିବାର ଆକୁଳ ଆଖିରେ ଅନାଇଁ ରହିଲେ ସହରକୁ ।

ସତ୍ୟାଗ୍ରହର ମନ୍ତ୍ର ଉଚ୍ଚାରିଲେ ଜାତିର ପିତା କର୍ମବୀର ଗାନ୍ଧି । ସେଇ ମନ୍ତ୍ର-ଶକ୍ତି ସବୁ ଗ୍ରାମ, ରାଜ୍ୟ, ପ୍ରଦେଶ, ଭାଷାର ଲୋକଙ୍କ ମନରୁ ଭେଦଭାବ ଦୂର କଲା । ଦେଶ ହେଲା ସ୍ୱାଧୀନ । ସାରା ଭାରତ ହେଲା ଗୋଟିଏ । ଦେଶର ପ୍ରତି ନାଗରିକ ହେଲେ ସାରା ଦେଶର ଅଧିକାରୀ – ହିମାଳୟରୁ କୁମାରିକା । ରଣଗଡ଼ର ରଣସିଂହ, ବଜ୍ରବାହୁ କି ବୀରେନ୍ଦ୍ରମାନଙ୍କୁ ମଗଧ, ବଙ୍ଗ କି ଅନ୍ଧ୍ର ବିଜୟ କରିବାକୁ କଳିଙ୍ଗ, ସେନାବାହିନୀରେ ଯୋଗଦେଇ ରେ ରେ କାର କରି ଧାଇଁବାକୁ ପଡ଼ିବ ନାହିଁ । ମଗଧ କି ଅନ୍ଧ୍ରସୈନ୍ୟ ବିରୁଦ୍ଧରେ ଦେଶରକ୍ଷା ପାଇଁ ଯୁଦ୍ଧକରି ପ୍ରାଣପାତ କରିବାକୁ ହେବ ନାହିଁ । ସବୁ ପ୍ରଦେଶ ସମସ୍ତଙ୍କର । ଦେଶରକ୍ଷା ପାଇଁ ସବୁ ପ୍ରଦେଶର ସବୁ ଯୋଦ୍ଧା ଆଜି ଗୋଟିଏ ପତାକା ତଳେ ସମବେତ !

ସମସ୍ତେ ସୁଖରେ ରହିବେ, ଆନନ୍ଦରେ ରହିବେ, ଏହା ହିଁ ସମସ୍ତଙ୍କର ଇଚ୍ଛା, ଏହା ହିଁ ସମ୍ବିଧାନ । ଦେଶର ସ୍ୱାଧୀନ ଜନତା ରାଜରାଜୁଡ଼ାଙ୍କୁ ବିଦାୟ ଦେଇଛନ୍ତି; ଛୋଟ ବଡ଼ ସବୁ ଜମିଦାର ଓ ମଧ୍ୟସ୍ୱତ୍ୱାଧିକାରୀଙ୍କୁ ମଧ୍ୟ ବିଦାୟ ଦେଇଛନ୍ତି । ତଥାପି

Digitized by PPRACHIN, SOA

ଯେଉଁମାନଙ୍କ ପାଖରେ ବଳକା ଭୂମି ରହିଛି, ନିଜେ ଯାହାକୁ ପୂର୍ଣ୍ଣ ବ୍ୟବହାରରେ ଲଗାଇ ପାରୁ ନାହାନ୍ତି, ସେ ସବୁକୁ ମଧ୍ୟ ଅବୋଧ କରିଛନ୍ତି । ଏହା ଅତି ଅନ୍ୟାୟ । ଦେଶର ଜନତା ଏ ଅନ୍ୟାୟ ସହି ଉପାସ ରହିବେ କାହିଁକି ? ସେଇମାନଙ୍କର ଇଚ୍ଛା ତ ଦେଶର ଆଇନ୍ । ଆଇନ୍ ସେଇମାନେ କରିବେ, ଅଚଳ ହେଲେ ପରିବର୍ତ୍ତନ କରିବେ । ଯାହା ନ୍ୟାୟ ତାହା ହିଁ ପ୍ରକୃତ ଆଇନ୍ ।

ବଜ୍ରବାହୁର ଏସବୁ କଥା ଅଜି ରଣସିଂହଙ୍କର କାନରେ ବାଜି ଯାଉଛି । ମନେପଡ଼ିଯାଉଛି ସେ ବନର ଦୃଶ୍ୟ—ଦରିଦ୍ର ମୂଲିଆଙ୍କର ଅଗ୍ରଣୀ ହୋଇ ରଣରଙ୍କା ନିଜେ ହାତ ପାତି ଭିକ୍ଷା ମାଗିଥିଲା—ଅନାବାଦୀ ଜମିଟିକ ଦିଅନ୍ତୁ ଏମାନଙ୍କୁ ପିତା— ! ବଜ୍ରବାହୁ ନିର୍ବୋଧ ବୋଲି ସେ ତିରସ୍କାର କରିଥିଲେ । ରଣରଙ୍କା ମୂର୍ଖ ଓ ଅବାଧ୍ୟ ବୋଲି ସେ ତାକୁ ଉଆସ ମନା କରିଥିଲେ । ସେଇ ଦୁଇଟି ତା'ଙ୍କର ଦୁଇ ଆଖି । ତାହାନ୍ତି ସେମାନେ ? କାହାପାଇଁ ସେ ଧନସମ୍ପତ୍ତି ସଞ୍ଚି ରଖିବେ ?

ଏଇ ତାଙ୍କର ରଣଗଡ଼ । ମେଘମାଳର କନ୍ଧ ବନ୍ଧରେ ଝରି ଆସୁଥିବା ସକାଳସୂର୍ଯ୍ୟର କଅଁଳ ଆଲୋକରେ ଝଟକି ଉଠୁଛି, ହସିଉଠୁଛି । ରଣଗଡ଼ ନୂଆ ରୂପ ଧରିଛି । ନୂଆ ନୂଆ ରାସ୍ତା; କୁଡ଼ିଆ ପରିବର୍ତ୍ତେ ନୂଆ ସୁନ୍ଦର ଘର । ଗ୍ରାମପଞ୍ଚାୟତ ଅଫିସ୍, ଧାନଗୋଲା, ହାଇସ୍କୁଲ, ପୋଷ୍ଟଅଫିସ୍, ଡାକ୍ତରଖାନା, ପଶୁଚିକିତ୍ସାଳୟ, ଋଣ-ସହଯୋଗ ସମିତି, ବିନୋଦ ବିହାର, ଗ୍ରାମସେବକ ସମିତି, ଗ୍ରାମସେବିକା-ସଦନ, ନାରୀ-କଲ୍ୟାଣ ମନ୍ଦିର ।

ଏସବୁ କିପରି ହେଲା, କଳ କଳ, ଧନ ଆସିଲା କେଉଁଠୁ ? ରଣସିଂହେ ଏହା ହିଁ ଚିନ୍ତା କରୁଛନ୍ତି । ଭୁଲିଛନ୍ତି ସେ ଏକ ମୂର୍ଚ୍ଛା ହୋଇ । ସତେ କି ତାଙ୍କର ମହାନିଦ୍ରା ଭାଙ୍ଗିଛି । ଆଖିରେ କିଏ ନୂଆ ଯୁଗର ଅଞ୍ଜନ ବୋଳିଦେଇଛି । ସେ ସ୍ୱପ୍ନ ଦେଖୁନାହାନ୍ତି । ମଦନଶାରେ ସ୍ୱର୍ଗରାଜ୍ୟରେ ଇନ୍ଦ୍ର ହୋଇ ଅପ୍ସରା ଗହଣରେ ବୁଲୁନାହାନ୍ତି ।

ଲୋକେ ଉତ୍ସବରେ ଅପସର ରହୁ ନାହାନ୍ତି । ରଣସିଂହଙ୍କୁ ଦେଖି ଗୋଟିଏ ନମସ୍କାର କରି ନିଜେ ନିଜର କର୍ମରେ ବ୍ୟସ୍ତ । ସମସ୍ତେ ଦିଶୁଛନ୍ତି ସୁସ୍ଥ ଓ ସବଳ । ଆଳସ୍ୟରେ କେହି କେଉଁଠି ସମୟ କ୍ଷେପଣ କରୁନାହିଁ । ସମସ୍ତେ ତତ୍ପର ।

ଝିଅବୋହୂମାନେ—ମୁଣ୍ଡରେ ଓଢ଼ଣା, ତଥାପି କେହି ଲୁଚି ପଳାଉ ନାହିଁ, ପରିଷ୍କାର ପରିଛନ୍ନ । ହାତରେ ଗୋଡ଼ରେ କଂସା ପିତଳର ଓଜନିଆ ଅଳଙ୍କାର ନାହିଁ । ଦେହରେ ଜାମା । ସେମାନେ ମଧ୍ୟ କାର୍ଯ୍ୟବ୍ୟସ୍ତ । ଯେଉଁମାନେ ରଣସିଂହଙ୍କୁ ଚିହ୍ନନ୍ତି, ଦୁଇ ହାତ ଯୋଡ଼ି ମୁଣ୍ଡ ନୁଆଁଇ ନମସ୍କାର କରୁଛନ୍ତି । ଆଡ଼େଇ ଯାଉଛନ୍ତି ।

Digitized by PPRACHIN, SOA

ଏମାନେ ଗ୍ରାମଶିଶୁ । ଧାଡ଼ିହୋଇ ଚାଲିଛନ୍ତି ବିଦ୍ୟାଳୟକୁ । ସେମାନେ ବି ସୁନ୍ଦର, ସେମାନେ ସ୍ୱାସ୍ଥ୍ୟବାନ୍ । ସମସ୍ତଙ୍କ ଦେହରେ କୁରୁତା । ସମସ୍ତେ ସଫାସୁତୁରା । ରଣଗଡ଼ର ଭବିଷ୍ୟତ ଏମାନେ ।

ରଣଗଡ଼ର ଅତୀତ ଥିଲେ ଯେଉଁମାନେ, ସେମାନଙ୍କଠାରୁ କେଡ଼େ ଭିନ୍ନ । ଏମାନେ ମଣିଷ ହୋଇଛନ୍ତି । ଆଗେଇ ଚାଲିଛନ୍ତି । ଏମାନେ ମଣିଷ ବିରୁଦ୍ଧରେ ଯୁଦ୍ଧ କରୁନାହାନ୍ତି । ଯୁଦ୍ଧ କରୁଛନ୍ତି ଅଭାବ ଓ ଅଜ୍ଞତା ବିରୁଦ୍ଧରେ ।

ରଣସିଂହେ ଗ୍ରାମମୁଣ୍ଡରେ ମିଳିଲେ । ଚାହିଁଲେ ଗହୀର ବିଲକୁ । ଆଖି ପାଉନାହିଁ । ସବୁଜ ଧାନକ୍ଷେତ ଉପରେ ସକାଳସୂର୍ଯ୍ୟର ଢେଉଛା ଆଲୁଅ । ଧୀର ପବନର କୁଳୁକୁଳୁ ଖେଳ । ଅତି ମନୋରମ । ଆଗରେ ଦିଶୁଛି ନୂଆ କାଳ । କେନାଲ ବାଟେ ପାଣି ଛୁଟିଛି । ବିଲରେ ମାଡ଼ୁଛି । ଧୋଇ ମରୁଡ଼ିର ପ୍ରଶ୍ନ ଆଉ ଉଠୁନାହିଁ । ରଣସିଙ୍ଗ କାଳ । ରଣସିଙ୍ଗି ଗହୀର ଦୁଇଶ ମାଣ ଅନୁର୍ବର ଅରମା ଅନାବାଦୀ । କାହିଁ ସେ ? ସବୁଜ ଗହୀର ଭିତରେ ହଜିଗଲାଣି ।

କାହାର ସେ ?

ରଣସିଂହଙ୍କର ?

କିଏ ଚାଷ କରୁଛି ?

ରଣସିଂହଙ୍କର ପ୍ରଜାପୁଏ ।

ରଣସିଂହଙ୍କର ମନରେ ଗର୍ବ ଆସିଲା । ତାଙ୍କର ପୁଅ । ତାଙ୍କର ପୂର୍ବପୁରୁଷେ ବେତ ଧରି ଶାସନ କରିଥିଲେ । ସେ ମଧ୍ୟ । କିନ୍ତୁ ଶାସନ କରୁଛି ତାଙ୍କର ପୁତ୍ର— ପ୍ରଜାପୁଅର ହାତଧରି । ପୁରୁଷ ପୁରୁଷ ଲାଗି ସେ କେବଳ ନେଇ ଆସିଥିଲେ, ନିଜର ଖିଆଲ୍‌ରେ ସଖୀ ଓ ସୁରାରେ ସେ ଧନ ସେ ନଷ୍ଟ କରିଥିଲେ । ସୁବ୍ରତ ପୂର୍ବପୁରୁଷଙ୍କର ଅନ୍ୟାୟ ଋଣକୁ ପରିଶୋଧ କରିବାକୁ ଚେଷ୍ଟା କରୁଛି—ବାପ ମାଆଙ୍କର ଇଚ୍ଛା ବିରୁଦ୍ଧରେ । ଭୂମି ତ ସାମାନ୍ୟ କଥା, ଗ୍ରାମର ମଙ୍ଗଳପାଇଁ ନିଜକୁ ସେ ଉତ୍ସର୍ଗ କରି ଦେଇଛି ।

ତ୍ୟାଜ୍ୟପୁତ୍ର ସୁବ୍ରତ ରଣଗଡ଼ର ! ଗୃହତ୍ୟାଗୀ ସୁବ୍ରତ ବଜ୍ରବାହୁ ।

ରଣସିଂହେ ଆଖିକୋଣରୁ ଲୋତକ ପୋଛିଲେ । ଦୁର୍ବଳିପାଇଁ ସେ ଆଜି ଜନ୍ମାସିତ ନିଜର ଜନ୍ମମାଟିରେ । ଗାଁର ଏ ପାଖରୁ ସେ ପାଖଯାଏ ଏକମୁହାଁ ହୋଇ ସେ ଚାଲିଆସିଛନ୍ତି । ପୂର୍ବ ଅଭ୍ୟାସବଶତଃ ଚାଷିଲୋକେ କେହି କେହି ନମସ୍କାରଟିଏ କରି ଦେଇ ନିଜ କାର୍ଯ୍ୟରେ ବ୍ୟସ୍ତ ହୋଇଛନ୍ତି । ରଣସିଂହଙ୍କର ଭଲମନ୍ଦ କେହି ପଚାରୁ ନାହିଁ । ପଛରୁ ଉପହାସ କରିବାକୁ ମଧ୍ୟ ଲୋକଙ୍କର ବେଳ ନାହିଁ ।

ରଣସିଂହଙ୍କର ମରଣ ହୋଇଛି ।

ମରଣ ହିଁ ଭଲ । ଦୁନିଆରେ ଜନ୍ମ ଲଭି କାହାର କି ଉପକାରରେ ସେ ଆସିଛନ୍ତି ? ସଂସାର, ଦେଶ, ପ୍ରଦେଶ, ଗ୍ରାମ, କୁଟୁମ୍ବ, ସ୍ତ୍ରୀ-ପୁତ୍ର, କନ୍ୟା—କାହାର ?

Digitized by PPRACHIN, SOA

କାହାର ?

କାଂସହାସ୍ୟ ନେଯରେ କରେଖିଲେ ଗୃଣଅତକୁ । ସଜ ସକାଳର ଖେଳପ୍ରିୟ ପ୍ରକୃତି ହସିଉଠୁଛି । ସବୁ ଯେପରି ମୁଖର ହୋଇଛି—ଆକାଶର ଘସିଲା ବାଦଲ, ହସିଲା ଆଲୁଅ, ଡଗଡ଼ଗା ସବୁଜକ୍ଷେତ, କୁଳୁକୁଳୁ ନାଳର ଜଳ, ସୁଲୁସୁଲୁ ଶୀତଳ ପବନ— ।

ସମସ୍ତେ ଦେଉଛନ୍ତି ନୂଆ ଜୀବନର ସୂଚନା ।

ନୂଆ ଜୀବନ ।

ମଣିଷର ମରଣ ହୁଏ । ସେ ପ୍ରେତ ହୋଇ ଅପୂର୍ଣ୍ଣ ବାସନାକୁ ଝୁରି ହୁଏ । ପ୍ରେତ ଦେହରେ କାମନା ତା'ର ପରିପୂର୍ଣ୍ଣ ହୁଏ ନାହିଁ । ଅଧୀର, ଅସ୍ଥିର, ଆଶାୟୀ ବ୍ୟାକୁଳ ପ୍ରେତ ନୂଆ ଜୀବନ ଲାଭ କରେ । ଅତୀତ ଜୀବନର ସବୁ ଘଟଣା ଆଶା, ଆକାଂକ୍ଷା ଭୁଲେ । ନୂତନ ପରିବେଶ ଜୀବନ ଗଠନର ସୁଯୋଗ ପାଏ । ପ୍ରକୃତିକୁ ଶାସନ କରିବାର, ଆୟତ୍ତ କରିବାର କାବଶକ୍ତି ସେ ଲାଭ କରେ । ସେହି ଶକ୍ତିକୁ ପ୍ରୟୋଗ କରିବାର ସ୍ୱାଧୀନତା ମଧ୍ୟ ତା'ର ।

ମରଣ ଉତ୍ତମ, ମରଣ କାମ୍ୟ । ମରଣ ନୂତନ ଜୀବନ ଆସ୍ୱାଦନର ନିମନ୍ତ୍ରଣ । ପୁନର୍ଜନ୍ମ କଳ୍ପନା ହୋଇପାରେ—ଦେହ ଛାଡ଼ି ନୂତନ ଦେହର ଅବତାରଣ, କିନ୍ତୁ ଏଇ ପୁରାତନ ଦେହ ତ ସତ୍ୟ ଓ ବାସ୍ତବ । ଏ ଦେହ ନିତି ମରେ, ନୂଆ ଜୀବନ ଲାଭକରି ନିତି ଉଠେ । ଗୁଣ୍ଡିଆଏ ଅଚଳ ହେବାଯାଏ, ବାଲସ୍ତ ହେବା ଯାଏ ।

ଆଜି ଏଇ ଯେଉଁ ମଣିଷ ଦେହଟା ରଣଗଡ଼ର ଉପକଣ୍ଠରେ ଠିଆ ହୋଇ ସବୁଜ ଦୁନିଆକୁ ବୃହିଁରହିଛି, ସେ ଦେହ ଓ ଅନ୍ୟ ଦେହ ଭିତରେ କିଛି ପ୍ରଭେଦ ନାହିଁ । ଜନ୍ମରୁ ନ ଥିଲା । ପରିସ୍ଥିତି ମନକୁ କିସ୍ତାକୁ ନିଜର ଉପଯୋଗୀ କରି ଗଢ଼ିଲା । ସୃଷ୍ଟିକଲା ପ୍ରକୃତି । ପ୍ରକୃତିରୁ ପୁଣି ଜନମିଲା ପ୍ରବୃତ୍ତି । ଚରିତାର୍ଥ ହେଲା ଦେହର କର୍ମରେ ।

ଅନ୍ତର୍ଦୃଷ୍ଟି ଫେରିଗଲା ଅତୀତକୁ । ଜମିଦାରର ବଡ଼ପୁଅ ଅଭିନବ ରଣସିଂହ; ପିଲାକୁ ଅସିଲା ନଟବରର ଶହନଶଖ । ଉଆସ, ଦାସ-ଦାସୀ, ଅସୁଖ, ପ୍ରଜା-ରଜାର ସମ୍ବନ୍ଧ । ମନର ଧାରଣା, ସେମାନଙ୍କର ଜନ୍ମ କେବଳ ରାଜପରିବାରକୁ ସୁଖସମ୍ଭୋଗ ଯୋଗାଇବାକୁ । ଯୌବନ ଉଙ୍କିମାରି ଅସିଲା । ନାରୀ କେବଳ ଆନନ୍ଦର ସାମଗ୍ରୀ, ସମ୍ଭୋଗ ହିଁ ଆନନ୍ଦ । ବିବାହ ଗୋଟାଏ ପ୍ରଚଳିତ ପ୍ରଥା, ବୋଧହୁଏ ଉତ୍ତରାଧିକାରୀ ପାଇଁ । ସ୍ନେହ ପ୍ରେମ—ସମ୍ଭୋଗର ଅନ୍ୟ ନାମ । ପିତା, ମାତା, ନଟବର— ଯାଆନ୍ତୁ

Digitized by PPRACHIN, SOA

ସେ ସ୍ୱର୍ଗପୁରକୁ । ଜମିଦାରୀ ଅଛୁ, ଧନ ଆସୁଛୁ । ଅନ୍ୟ ବନ୍ଧୁମାନେ ଅଛନ୍ତି । ଧନ ଥିଲେ ସୁରା, ସଖୀ, ପ୍ରତିପତ୍ତି ସବୁ ମିଳିବ ।

ଜମିଦାରୀ ଗଲା । ଅଭ୍ୟାସ ବଞ୍ଚିରହିଲା । ପ୍ରବୃତ୍ତି ହେଲା ଉଦ୍ଦାମ ଚଞ୍ଚଳ । ମାଳା କୋମଳ ପ୍ରବୃତ୍ତିକୁ ଦମନ କରି ପାରିଲା ନାହିଁ । ବିଦ୍ରୋହୀ ପତ୍ନୀ ବିଦ୍ରୋହୀ ପୁତ୍ରହସ୍ତ । ବିଦ୍ରୋହ କଲା ଦୁନିଆଁ । ପରିସ୍ଥିତି ବଦଳିଲା । ପ୍ରକୃତି ହେଲା ଛଟପଟ, ଆକୁଳ ଚଞ୍ଚଳ । ପ୍ରବୃତ୍ତି କଲା ବିଦ୍ରୋହ । ବନ୍ଧୁ ବାନ୍ଧବ ପଧାନ, ବନ୍ଧୁ ନାହିଁଆ ଭଣ୍ଡାରୀ । ବାନ୍ଧବ ଗଲା, ନାହିଁଆ ମଲା ।

ଆବର୍ତ୍ତ ହେଲା ଆହୁତ ।

ଅଗ୍ନିଶିଖା ପରି ଜ୍ୱଳନ୍ତ, ତେଜୋମୟୀ । ଲାଳସା ଦୀପ୍ତ ଆଖିରେ ଚାହିଁ ହୁଏ ନାହିଁ । ଜନନୀ ପରି ସ୍ନେହମୟୀ । କନ୍ୟା ପରି ନମିତା । ବନ୍ଧୁ ପରି ସ୍ପଷ୍ଟବାଦିନୀ । ଶିକ୍ଷୟିତ୍ରୀ ପରି ଉପଦେଷ୍ଟା, ଭଗିନୀ ପରି ସେବାରତା । ରଣସିଂହର ମରଣ ହେଲା । ସତେ କି ସଞ୍ଜୀବନୀ ମନ୍ତ୍ର ପଢ଼ି ନୂତନ ଜୀବନ ସଞ୍ଚାର କଲା ପୁରାତନ ଦେହରେ ସେଇ ଆହୁତ !

ସେ ଅଭିନବ । ସେ ରଣସିଂହ । ପୁରୁଣା ଦେହ ଧରି ସେ ନୂତନ ଜୀବନ ଲାଭ କରିଛନ୍ତି । ସେତିକିବେଳେ ସେ ଦେହଟା ବଞ୍ଚି ରହିଛି ଗତ ଜୀବନର ପ୍ରାୟଶ୍ଚିତ୍ତ କରିବାରେ ରତ ହେଉ । ଯୁଗ ବଦଳିଛି । ସତ୍ୟ ଓ ସାମ୍ୟ ଯୁଗ ଆସି ପହଞ୍ଚିଛି । ସବୁ ମଣିଷ ସମାନ । ସୁଖ, ଆନନ୍ଦ ଓ ସ୍ୱାଧୀନ ଭାବରେ ବଞ୍ଚିବାର ଅଧିକାର ଅଛି ସମସ୍ତଙ୍କର । ସେ ସୁଯୋଗ ସମସ୍ତଙ୍କର ପ୍ରାପ୍ୟ । ଏହା ହିଁ ସତ୍ୟ, ଏହା ହିଁ ନୈତିକତା, କିନ୍ତୁ ଏବେ ବି ଯେଉଁମାନେ ପୁରୁଣା ଜମିଦାର ଛନ୍ଦି ଡାକେ ସ୍ୱାର୍ଥକୁ ଆବୋରି ବସିଛନ୍ତି, ସେମାନେ ଆଗେଇ ନ ଆସିଲେ ନୂଆ ଯୁଗ ପ୍ରବର୍ତ୍ତିବ କିପରି ?

ନିଜର ଚିନ୍ତାରେ ନିଜେ ସେ ଉତ୍ତେଜିତ ହୋଇ ଉଠିଲେ । ଜଡ଼ନାଲର ବନ୍ଧେ ବନ୍ଧେ ଚମ୍ପାବଣ ମଝିରେ ସେ ନଈବନ୍ଧ ଆଡ଼େ ଚାଲିଲେ । ପହୁଞ୍ଚିଣି ସୂର୍ଯ୍ୟ ଦିଗ୍‌ବଳୟର କେତେ ଉପରକୁ ଉଠିଲେଣି । ଗ୍ରାମବାସୀମାନଙ୍କର କୋଳାହଳ ଶୁଭୁଛି । ଦଳ ବାନ୍ଧି ସେମାନେ ଗାଁ ଭିତରୁ ରାସ୍ତା ଉପରକୁ ଆସୁଛନ୍ତି । ସମସ୍ତଙ୍କ ହାତରେ ଦାଆ । କେତେଜଣ ଟୋକେଇ ଧରିଛନ୍ତି । ସବା ଆଗରେ ବୁଢ଼ା ପବନା ପଧାନ । ସଙ୍ଗେ ସଙ୍ଗେ କାନ୍ଧରେ ଗାମୁଛା ପକାଇ ଚାଲିଛନ୍ତି ହରି ମହାନ୍ତି ।

ମନ ହେଲା, ଫେରିଯିବେ । ପଚାରିବେ— ।

ଗୋଡ଼ ଅଟକି ରହୁ ନାହିଁ – ଆଗକୁ ଟାଣି ନେଉଛି । ପୁଣି ମୁହଁ ବୁଲାଇ ପଛକୁ ଚାହିଁଲେ— ଇଜିମ୍ ମିଆଁ, ଛକଡ଼ି ବାଉରି, ଦନେଇ ସାହୁ, ଗୁଲେଇ ସେଠୀ, ଅଧର କେତେ । ରଣସିଂହେ ସମସ୍ତଙ୍କର ନାମ ଜାଣନ୍ତି ନାହିଁ । ଚାଲିଛି ମଣିଷ ସୁଅ । ନାଳ-କଡ଼ ଟଙ୍ଗାର ବିଲରେ ଧାଡ଼ି ଧାଡ଼ି ହୋଇ ବସିଗଲେଣି ସେମାନେ । ଆରେ,

Digitized by PPRACHIN, SOA

ରଣସିଂଙ୍କ ଗହ୍ୱରରେ ବଲ ବାଛୁବାକୁ ଆଗେଇ ଆସିଛନ୍ତି ସମସ୍ତେ—ଗ୍ରାମସେବକ ଦଳ ।

ସୂଅ ଛୁଡ଼ ନାହିଁ ।

ଗାଁ ପଛ ଆମ୍ବ ତୋଟା ଭିତରୁ ବାହାରି ଆସୁଛନ୍ତି ପୁରୋହିତ । ଉଚ ହିଡ଼ ଉପରେ ପଡ଼ିଥିବା ବାଟରେ ଟଳଟଳ ହୋଇ ଚାଲି ଆସୁଛନ୍ତି । ରଣସିଂହେ ଅପେକ୍ଷା କଲେ, ପୁରୋହିତ ନିକଟେଇ ଆସିଲେ । ସେ ଦୁଇ ହାତ ଯୋଡ଼ି ନମସ୍କାର କଲେ । ପୁରୋହିତ ହାତ ଟେକି କଲ୍ୟାଣ କଲେ । ରଣସିଂହେ ଦେଖିଲେ. ପୁରୋହିତଙ୍କର ମୁହଁଟି ରୁକ୍ଷ ଦେଖାଯାଉଛି । ଆଖି ଦୁଶୁଛି ରଙ୍ଗାଲ । କାହା ଉପରେ ସେ ରାଗିକରି ଆସିଛନ୍ତି । କ୍ରୋଧ ଶାନ୍ତ ହୋଇ ନାହିଁ । ନାକପୁଡ଼ା ଫୁଲି ଫୁଲି ଉଠୁଛି ।

କଥା କ'ଣ ପୁରୋହିତେ ?

ଗୁଡ଼ାକୁ ଆଜ୍ଞା, କ'ଣ କହିବ ? ଆମ ପରି ପୁରୁଣା କାଳିଆ ଲୋକଙ୍କ ପାଇଁ ଏ ସଂସାରରେ ଆଉ ସ୍ଥାନ ନାହିଁ । ନୀତି ଅନୀତି ସମାନ ହେଲା । ଧର୍ମ ବୁଡ଼ିଲା, ଆସ୍ଥା ଗଲା । ଧନ ସମ୍ପତ୍ତି ଲୁଟ ହେଲା । ମାନମହତ ଦ'କଡ଼ା ହେଲା । ଦୁନିଆ ବଦଳୁଛି, ହିଁ ଯେତେ ଇଚ୍ଛା ସେତେ ବଦଳୁ । ତା'ଆଗରୁ ଆମର ମରଣ ହେଉ । ଆମେ ଆଉ ସହି ପାରିବା ନାହିଁ ।

ସତ କହିଲେ ଯେ, ଡାକିଲେ ମରଣ ପାଖକୁ ଆସୁ ନାହିଁ । ନ ଡାକିଲେ ବି ଯେତେବେଳେ ନିଦାନ ଆସି ପହଞ୍ଚେ, ଆଗରୁ ସତର୍କ ନ କରି ସେ କେଉଁଠୁ ଆସି ମାଡ଼ିବସେ । ନ ଆସିଲେ ନ ଆସୁ, ଆମେ ଯିବା ତା' ପାଖକୁ । ତମର ମତ କ'ଣ ?

ପୁରୋହିତ ନୀରବ ହେଲେ । ରଣସିଂହେ ବଦଳିଛନ୍ତି । ତାଙ୍କର ସବୁକଥା ଓ ଏବକାର ଢଙ୍ଗ ଓଲଟା ଓଲଟା ଲାଗୁଛି । ବହୁସକାଳୁ ଉଠାଏ ଗୁଡ଼ ଏକା ଏକା ସେ ଗାଁ ଭିତରେ ବୁଲି ସବୁ ଦେଖି ଦେଖି ଫେରି ଯାଉଛନ୍ତି । ଗାଁ ବଦଳୁଛି, ଗାଁର ଲୋକେ—ଆବାଳବୃଦ୍ଧବନିତା ସମସ୍ତେ ବଦଳିଛନ୍ତି । ସେ ସୁଖୀ ହୋଇଛନ୍ତି କି ବ୍ୟକ୍ତ ହୋଇଛନ୍ତି, ତାଙ୍କୁ ହିଁ ଜଣା । ଗାଁର ଲୋକେ ତାଙ୍କର ମତାମତକୁ ବୁଝି ହିଁ ବସି ନାହାନ୍ତି ।

ପୁରୋହିତ କହିଲେ, ଆମେ ଗଲେ କେତେ ନ ଗଲେ କେତେ ! ସେ ପୁରରେ ମଧ୍ୟ ପାଣି ମନ୍ଦିଏ ପାଇବାର ଆଶା ନାହିଁ !

କାହିଁକି ?

Digitized by PPRACHIN, SOA

ଦେଖଛନ୍ତି ପିଲାଙ୍କର ଢଙ୍ଗ । ଏକମାତ୍ର ପୁତ୍ର ଧର୍ମାନନ୍ଦ ବାହ୍ମଣର ସବୁ କର୍ମ ଗ୍ରହିଲା । ଛୁଆଁ ଅଛୁଆଁ, ଜାତ ଅଜାତ, ଧର୍ମ ଅଧର୍ମ କିଛି ମାନନ୍ତି ନାହିଁ । କେବଳ ପଞ୍ଚାମୃତ ସେବନ ଓ ଗାୟତ୍ରୀ ଜପିଲେ ତ ବ୍ରାହ୍ମଣତ୍ୱ ଫେରିଆସିବ ନାହିଁ । ଯେତେ କହିଲେ କି ଶାସନ କଲେ ମାନନ୍ତି ନାହିଁ । ତା'ଙ୍କ ମା'ଙ୍କର କନ୍ଦାକଟା ଦେଖି ତାକୁ ଘରେ ପଶିବାକୁ ଅନୁମତି ଦେଲି । ତା'ର ଢଙ୍ଗ ଦେହସହା ହେଲା । ଚଳି ଯାଉଥିଲା କୌଣସିମତେ । କି ଦୁର୍ଯୋଗରେ ମୋଘରେ ପାଦ ପକାଇଲା ସେ ଛୀଟସ୍ତାନ ଟୋକା—

ଆହୁତ ?

ହଁ, ସେଇ ଟୋକାଟା ନାତ ପିଲାଟାକୁ ଭଲ କରିଦେବ, ସବୁ ଅନାଚାର ଆଣି ପୂରାଇଲା ଘରେ । ବୋଉ ଓ ବୋହୂ, ତାଙ୍କ ଶାଶୁଙ୍କୁ ବି ବଟାଳି ଦେଲା । ଦେଖୁଛନ୍ତି ତ ଢଙ୍ଗ । ଛୁଆଁ ଛୁତ ବାରଣ ଗଲା । ଘରଘର ହୋଇ ବୁଲିଲେ । ଔଷଧ ବାଣ୍ଟିଲେ । ସମାଜ ଗଢ଼ିଲେ । ଗ୍ରେଟ ଲୋକଙ୍କ ଏନ୍ଟୁଡ଼ୀଶାଳରେ ପଶିଲେ । ଆଉ ଅମର କ'ଣ ହେଲା ଅଜ୍ଞା ?

ବୁଢ଼ୀ—?

ମୁହିଁ ତ ଦେଇଛନ୍ତି; ବେଳ ହୁଁ ସାବଧାନ କଲି ସେ ଶୁଣିଲେ ନାହିଁ । ପୁଅ ଶିଖାଉଛି ବୋହୂକୁ, ବୋହୂ ଶିଖାଉଛନ୍ତି ପୁଅଙ୍କୁ—ଭେଦଭାବ ଭୁଲ । ଗ୍ରେଟ ଜାତ ବଡ଼ ଜାତ ଏ ଧାରଣା ଦୂର କର । ସବୁ ମଣିଷ ସମାନ । ଯାହାର ମନ ବଡ଼, କର୍ମ ବଡ଼, ସେଇ କୁଆଡ଼େ ବଡ଼ ମଣିଷ । ଆପଣ ଭଲ କହନ୍ତୁ, ପାଞ୍ଚ ଆଙ୍ଗୁଠି କ'ଣ ସମାନ ? ସବୁ ପଶୁ କି ସବୁ ପକ୍ଷୀ ସମାନ ନୁହନ୍ତି । ପର୍ବତ, ନଦୀ କି ହ୍ରଦ ଗୋଟିଏ ଗୋଟିଏ ନାମରେ ପରିଚିତ ହେଲେ ବି ସବୁ ପର୍ବତ, ସବୁ ନଦୀ କି ସବୁ ହ୍ରଦ ସମାନ ନୁହନ୍ତି । ବଡ଼ ସାନ ଅଛି । ସେମିତି ସବୁ ମଣିଷ ସମାନ ନୁହନ୍ତି । ବଡ଼ ସାନ ମଣିଷ, ଜାତ, ଧର୍ମ—

ଆକାଶରେ ?

ପୁରୋହିତ ଭୁଲ ହେଲେ । କ'ଣ ଉତ୍ତର ଦେବେ ଚିନ୍ତା କରିବାକୁ ଲାଗିଲେ । ନାଲିଚକ୍ଷୁରୁ ଦେଖ ଦୁହେଁ ଉଠିଲେ ନଦୀବନ୍ଧ ଉପରକୁ । ଖରାତେଜ ଅଳପ ପ୍ରଖର ହେଲାଣି । କେତେ ଲୋକ ବନ୍ଧ ଉପରେ ଯା' ଆସ କରୁଛନ୍ତି । କଏଁ କଏଁ ସୁହିଁ ଆଡ଼େଇ ଯାଉଛନ୍ତି । କେହି କେହି ପ୍ରଣାମ ବି କରୁଛନ୍ତି ।

କଥା ବୁଲାଇ ପୁରୋହିତେ କହିଲେ, ଗତ ଅଧରେ ଆସି ଗୁଲା ସେଠି ଧୋବା ତାକ ଗୁଡ଼ୁଛି । କବାଟ ଖୋଲିଲି । ଧୋବାଟାର ମୁହଁ ସତରେ ଦେଖିଲେ ସବୁ ପୁଣ୍ୟ ନଷ୍ଟ ହୁଏ । ପଚାରିଲି କହିଲା, ତା' ସାଇବୋହୂ ସକାଳୁ କଷ୍ଟ ପାଉଛି । ବଞ୍ଚିବ କି ମରିବ । ବୋହୂଙ୍କଠୁ ଔଷଧ ନେବାକୁ ଆଇଚି । କହିଲି, ଗ୍ରାମସେବକ ଭଗବାନବାବୁଙ୍କ ପାଖକୁ ଯା । କବାଟ ବନ୍ଦ କରୁଥିଲି ତ, ବୁଢ଼ୀ ଗର୍ଜି ଉଠିଲେ—ରହ, ଔଷଧ ନେଇ ।

Digitized by PPRACHIN, SOA

ଜୀବନ ମରଣ କଥା ତ !

କିଏ ମନା କରୁଛି ? ବୋହୂ ଉଠି ଔଷଧ ଦେଲେ । ପୁଅ କହିଲେ, ଭଲେ ଭଲେ ଚାଲିଯିବେ । ଦୂର ବାଟ ତ ନୁହେଁ । ମୁଁ ବାଧା ଦେଲି । କହିଲି ବୋହୂ, ମାଣ୍ଡ ଅଧରେ ଘରଗୁଡ଼ିକ ପର ଘର ଏକୁଡ଼ୀରେ ଯିବେ । ସେ ପୁଣି ଅଛୁଆଁ । ଧଡ଼ପଡ଼ ହୋଇ ଉଠି ବସିଲେ ଧର୍ମ ମା । କହିଲେ, ବୋହୂଟା ଏକା ଯିବ କପରି ? ଜୀବନ-ମରଣ ସନ୍ଧିଆ । ମୁଁ ସଙ୍ଗରେ ଯିବି । ପାହାନ୍ତା ପହରକୁ ଫେରିଲେ । ଝଟ୍‌କିଆ ବୁଢ଼ୀ ପୁଣି କହୁଛନ୍ତି ଶୁଣିଲଣି ହୋ. ଏତେ ବଡ଼ ପୁଅ ! ଆଜି ମୋ'ର ଯାଇ ନ ଥିଲେ ଆଧା ବାଟରୁ ବୋହୂଟି କ ଶୋଷିକାର ରୂପ-କଷ୍ଟ କ ଥାନ୍ତା । ମା' ମୋ'ର ହେସ ପୂରରୁ ତା'କୁ ଫେରାଇ ଆଣିଲି ।

ବୁଢ଼ୀ କ ଧର୍ମ ଗଲା ?

ଦେଖୁଛନ୍ତି ତ ଆଜ୍ଞା । ସ୍ନାନ, ଗୋମୟ ଓ ପଞ୍ଚାମୃତ ପାନ, ଦେବପୂଜା ସବୁ କରାଇଲି । ମନ ମାନୁ ନାହିଁ । ପ୍ରାୟଶ୍ଚିତ୍ତ ଲୋଡ଼ୁଛି । ଏହିତ ହେବା କଥା । ଅତୀତରେ ଯାହା ହେନ୍ତା ମୁଁ ଜାଣେ ନାହିଁ । ଆଜିକାଲି ତ ପିଲାଙ୍କୁ ଅଳ୍ପ ହେଉ ନାହାନ୍ତି, ବିଶେଷତଃ ଏ ଗ୍ରେଟ୍‌ଲୋକଙ୍କ ଘରେ । କେତେ ଥର ପ୍ରାୟଶ୍ଚିତ୍ତ କରିବ ?

ପ୍ରାୟଶ୍ଚିତ୍ତ ଆଉ ଲୋଡ଼ା ନାହିଁ ପୁରୋହିତେ, ଲୋକଙ୍କର ଆଉ ତା'ଉପରେ ବିଶ୍ୱାସ ନାହିଁ । ଦେବତାମାନଙ୍କର ବି ନାହିଁ । ଲୋକେ ବୁଝୁଛନ୍ତି, ଏ ଦେଶର ବଡ଼-ସାନ ପରିଆପଣା ଭେଦ ଭାବ ଦୂର ହେଉଛି । ଛୁଆଁ ଅଛୁଆଁ ପ୍ରଥା ଲୋପ ହେଉ । ବିଭିନ୍ନ ଜାତିର ନାମ ଥିଲେ ଆଉ ପଛେ ବଡ଼ ଜାତି କ ସାନ ଜାତିର ଧାରଣା ମନରୁ ଦୂର ହେଉ । ଲୋକେ ପୁଣି ବୁଝୁଛନ୍ତି, ସମସ୍ତେ ସୁଖରେ ରହନ୍ତୁ, ଆନନ୍ଦରେ ରହନ୍ତୁ । ବୁଦ୍ଧି କୌଶଳ ପ୍ରୟୋଗ କରି କେହି କାହାର ଧନ କ ପରିଶ୍ରମ ଚୋରି ନ କରୁ । ଏସବୁ ତ ଦେବତାମାନଙ୍କ ମଧ୍ୟରେ ନାହିଁ । ମଣିଷଙ୍କ ଭିତରେ ଥିବା ଭେଦଭାବ ଦୂର ହେଲେ ସେମାନେ ଖୁସି ହେବେ । ପ୍ରାୟଶ୍ଚିତ୍ତର ଧାରଣା ଏ ଯୁଗ ବଦଳାଇ ଦେବାକୁ ଲାଗିଛି ।

କପରି ଆଜ୍ଞା ?

ଆଖି ଖୋଲି ଚାରିଆଡ଼େ ଚାହିଁଲେ ବୁଝିପାରିବେ । ଦେଖୁଛୁ, ଅଧିକାଂଶ ପୁରୁଷ ଗ୍ରାମସେବକ-ସଙ୍ଘରେ ଯୋଗ ଦେଇଛନ୍ତି । ଝିଅବୋହୂମାନେ ଗ୍ରାମସେବିକା-ସଙ୍ଘରେ ମିଶିଲେଣି । କର୍ମ-ସାଧନ ଯେପରି ହୋଇଛି ମହାଯଜ୍ଞ ଆଉ ସମସ୍ତେ ହୋଇଛନ୍ତି ବ୍ରାହ୍ମଣ, ପୁରୋହିତ । ସେମାନେ ସେହି ଯଜ୍ଞରେ ଆହୁତି ଦେଉଛନ୍ତି ବଡ଼-ସାନ, ଜାତି-ଅଜାତି, ଧନୀ-ନିର୍ଦ୍ଧନର ଭେଦଭାବକୁ । ଆମର ଓ ଅତୀତରେ ସ୍ୱାର୍ଥପରଭାବ ଧ୍ୱଂସ ହେବାକୁ ବସିଛି । ଯୁଗର ଆହ୍ୱାନ ଏ । କାନରେ ବାଜୁଛି । ଆମେ କ'ଣ ବଳବଳ କରି ଚାହିଁ ରହିଥିବା ?

Digitized by PPRACHIN, SOA

ରଣସିଂହଙ୍କର ପ୍ରଶ୍ନଟା ସତେ ଯେପରି ଗୋଟାଏ ତୀକ୍ଷ୍ଣ ତୀର ପରି ପୁରୋହିତ-ଙ୍କର ହୃଦୟରେ ଭେଦିଲା । ତାଙ୍କର ମନ ବିଚଳିତ ହେଲା । କ'ଣ ଆଜି ରଣସିଂହେ କହୁଛନ୍ତି ? ସେ ବି କ'ଣ ଏଇ ଧର୍ମନାଶିଆ ଦଳଙ୍କ ସଙ୍ଗେ ଯୋଗଦେବେ କି ? ରାଜଜେମା ସୁନନ୍ଦା ନାଗକଲ୍ୟାଣ-ମନ୍ଦିରରେ ଗ୍ରାମର ସବୁ ଝିଅଙ୍କ ସଙ୍ଗେ ମିଶି ରହି ପାରିଲେ । ଗାଁସାରା ଆନନ୍ଦ ଓ ଉତ୍ସାହର ଢେଉ ଖେଳିଗଲା । ନିଜେ ରାଜରାଣୀ ଉଆସ ଛାଡ଼ି କଲ୍ୟାଣ ମନ୍ଦିରରେ ପାଦ ପକାଇଲେ । ଖବର ପାଇ ସବୁ ଝିଅବୋହୂ ଆସି ରୁଣ୍ଡ ହେଲେ ସେଇଠି । ଛୁଆଁ ଛୁଇଁର ବାରଣ ରହିଲା ନାହିଁ । ସମସ୍ତଙ୍କ ମନରେ ଉତ୍ତେଜନା !

ପୁରୋହିତେ ଉତ୍ତର ଦେଲେ ନାହିଁ ।

ଆଗରେ ରଣଚଣ୍ଡର ପୁରୁଣା ଉଆସ । ଖଣ୍ଡଚେଜରେ ଉଡ଼୍‌କ୍ଷ ହସୁଛି । ଦାଣ୍ଡର ଚଉକ-ଗୃହମୀ ପାଖରେ ଅଟକା ହୋଇ ରଣସିଂହେ ଓ ପୁରୋହିତେ ଠିଆହେଲେ । ଏ କ'ଣ ? ଘାଟି ତୁଣ୍ଡ ନାହିଁ, ଧୀର ସ୍ଥିର ହୋଇ ଗ୍ରାମର କେତେ ଯୁବକ ଉଆସର ଚାରିପାଖ ସଫାସୁତୁରା କରିବାରେ ଲାଗି ପଡ଼ିଛନ୍ତି । ସେମାନଙ୍କର ଅଗ୍ରଣୀ ଚାବନା ପଧାନ । ପାଖେ ପାଖେ ଅଛନ୍ତି ଚନ୍ଦର କୁମ୍ଭାର, ରଥିଆ କେଉଟ, ଦନେଇ ଗୁଡ଼ିଆ ।

ପାଟକୁ ଆସି ଠିଆ ହେଲେ । କହିଲେ, ରାଣୀମାନଙ୍କର ଇଚ୍ଛା ଗାଁ ଝିଅମାନେ ଆଜି ଉଆସ ଭିତରେ ଖୁଦୁରୁକୁଣୀ ଓଷା ପାଳିବେ । ଧର୍ମନନ୍ଦାଙ୍କ ଆଦେଶ—ଆମ ଉଆସ ଆଜି ସଫାସୁତୁରା ହେବ ।

ରଣସିଂହେ ହସି ହସି ମୁଣ୍ଡ ହଲାଇଲେ ।

କର୍ମୀମାନେ ଲାଗିଗଲେ ନିଜ କାମରେ ।

ରଣସିଂହଙ୍କ ପଛେ ପଛେ ପୁରୋହିତେ ପଶିଲେ ଉଆସ ଭିତରେ । ସେଠି ମଧ୍ୟ କେତେ ଝିଅବୋହୂ ରୁଣ୍ଡ ହୋଇଛନ୍ତି । ଘରଦ୍ୱାର ପରିଷ୍କାର କରୁଛନ୍ତି । ନିଜେ ମମତା ମିଶି ଯାଇଛନ୍ତି ସେମାନଙ୍କ ସଙ୍ଗରେ । ହସ-ଖୁସି ଗଳ୍ପ ଓ ପାଟିତୁଣ୍ଡରେ ଉଆସ ଆଜି ଜୀବନ୍ତ ହୋଇ ଉଠିଛି । ମଶାଣିର ନୀରବ ବିଭୀଷିକା ଭାଙ୍ଗିଛି । ସେ ହୋଇଛି ପବିତ୍ର, ତୀର୍ଥକ୍ଷେତ୍ର !

ମମତା ପାଖକୁ ଆସିଲେ । ମୁଣ୍ଡ ଉପରକୁ ଓଢ଼ଣା ଟାଣି କହିଲେ, ଝିଅମାନେ ଆଜି ଉଆସ ଭିତରେ ଖୁଦୁରୁକୁଣୀ ଓଷା ପାଳିବେ । ସୁନନ୍ଦା ଅଳି କଲା । ମୁଁ ନିଜେ ଯାଇଁ କାଲି ସଞ୍ଜରେ ନାଗକଲ୍ୟାଣ ମନ୍ଦିରରେ କହି ଆସିଥିଲି । ସନ୍ଧ୍ୟାକୁ କେଡ଼େ ଭଲପାଆନ୍ତି ସେମାନେ ଦେଖିଲ ! ରାତି ନ ପାହୁଣୁ ସମସ୍ତେ ଆସି ରୁଣ୍ଡ ହେଲେ ।

Digitized by PPRACHIN, SOA

ରଣସିଂହେ ହସହସ ହୋଇ ଗୃହିଁ ରହିବେ ମମତାଙ୍କର ଆନନ୍ଦଉଜ୍ଜ୍ୱଳ ମୁହଁକୁ । ମନଗହନରେ ମାତୃତ୍ୱର ପବିତ୍ର ମମତା ପରିପୂର୍ଣ୍ଣ ହୋଇଛି । ତା'ର ସ୍ନିଗ୍ଧ ଶୀତଳ ଆଲୋକରେ ଆଖି ଦିଓଟି ଝଲସି ଉଠୁଛି । ନୂତନ ସୌନ୍ଦର୍ଯ୍ୟରେ ମୁଖମଣ୍ଡଳ ଉଦ୍ଭାସିତ ହୋଇ ଉଠୁଛି । କହିଲେ, ଅତ ଆନନ୍ଦର କଥା । ସୁସନ୍ଧ୍ୟା କାହିଁ ?

ଆସ ଦେଖିବ ।

ମଞ୍ଚ-ଖଞ୍ଜାର ବଡ଼ ଘରଟି । ଗୋଟିଏ କଡ଼ରେ ଡ୍ରିଙ୍କିଟିଏ ରଖାହୋଇଛି । ତା'ର ଆଗରେ ବଣଗଡ଼ର ଝିଅମାନେ ବସି ଫୁଲ ଗୁନ୍ଥୁଛନ୍ତି । ସମସ୍ତଙ୍କ ଆଗରେ ନାନାଜାତି ଫୁଲର ଗଦା । ଗାଁ-ପୁଏ ତୋଳି ଆଣିଛନ୍ତି । ଫୁଲର ମହକରେ ଖଞ୍ଜା ମହକି ଉଠୁଛି । ସାନ ବଡ଼ ଝିଅମାନଙ୍କର କଅଁଳିଆ ଗୁନ୍ ଗୁନ୍ କଥା । କେହି କେହି ଗୀତ ବୋଲୁଛନ୍ତି । କିଏ ପୁଣି ହସି ହସି ଲେଟିଯାଉଛି । କିଏ କାହା ଉପରେ ଅଭିମାନ କରି କହୁଛି, ଦେଖୁଛୁ. ବଢ଼ିଲା, ମଞ୍ଚ କେମିତ ଆପଣାସାର୍ଥି କା— ।

ରଣସିଂହଙ୍କୁ ଦେଖି ଫୁଲ ଗୁନ୍ଥା ଛାଡ଼ି ସମସ୍ତେ ଠିଆ ହେଲେ । ତାଙ୍କୁ ଓ ପୁରୋହିତଙ୍କୁ ହାତ ଯୋଡ଼ି ମୁଣ୍ଡ ନୁଆଁଇ ନମସ୍କାର କଲେ । ମମତା ଘର ଭିତରକୁ ଆସି ହସିହସି କହିଲେ. ସନ୍ଧ୍ୟାଟି ମୋ'ର ଏଇ ଝିଅମାନଙ୍କ ଭିତରେ ହଜିଯାଇଛି ।

ଅଧାଗୁନ୍ଥା ମାଳଟି ହାତରେ ଧରି ପାଖରେ ଲାଜୁଲାଜ ଆଖିରେ ଏତେତେଣେ କରେଇ ଗୃହିଁ ମୁରୁକି ହସୁଥିବା ସେଉଁ ଝିଅଟି, ତା'ର ମୁକୁଳାବାଳରେ ସ୍ନେହରେ ହାତ ବୁଲାଇ ମମତା କହିଲେ. ଏଇଟିମାନେ ସମସ୍ତେ ଏଇ ବଣଗଡ଼ର ଝିଅ । ସମସ୍ତେ ସେମାନେ ମୋତେ ମା' ବୋଲି ଡାକନ୍ତି ।

ରଣସିଂହ ସ୍ନେହ ଗଦଗଦ ହୋଇ ପଚାରିଲେ, କାହା ଝିଅ ସେ, ତା' ନାମଟି କ'ଣ ?

ରଣେଡ଼ର ଝିଅ ପଗ୍ନ, ତା' ନାମଟି ସନ୍ଧ୍ୟା ।

ସମସ୍ତେ ହସିଉଠିଲେ । ଝିଅମାନଙ୍କ ମଝିରୁ ବାହାରି ଆସି ସନ୍ଧ୍ୟା କହିଲା, ସେ ମୋ' ବାହିଲା. ନୋହିଲେ ତା' ନାମ ମୁଁ କହି ଦେଇଥାନ୍ତି ।

ମୋ ନାମ ଅଞ୍ଜଳୀ ।

ତା' ପାଖ ଝିଅଟି ?

ସେ ମୋ' ଅଭଡ଼ା, ଏଇ ମୋ' ତୁଳସୀ, ଏଇ ତ ମୋ ଚମ୍ପା, ଆଉ ଏ — ମୋ' ନାଁ ଲତା ।

ମୋ ନାଁଟି ଲଳିତା ।

ସେହ୍ନହା — ।

ସନ୍ଧ୍ୟାର ସାଙ୍ଗସାଥି । ସେମାନଙ୍କ ଭିତରେ ସନ୍ଧ୍ୟା ନିଜକୁ ହଜାଇ ଦେଇଛି । ସେମାନେ ବ ନିଜକୁ ସନ୍ଧ୍ୟା ଭିତରେ ମିଶାଇ ଦେଇଛନ୍ତି । ସମସ୍ତେ ମମତାଙ୍କୁ ମା' ବୋଲି ଡାକନ୍ତି ।

Digitized by PPRACHIN, SOA

ବାପ ବୋଲି ରଣସିଂହଙ୍କୁ କେହି ଡାକୁ ନାହାଁନ୍ତି । ନିର୍ମଳ ବଂଶର ଆତ୍ମା ଉପହାସ କରି ପଶ୍ଚରିଲି ତାଙ୍କର ଆବଳ କଳଙ୍କିତ ମନକୁ, କାହିଁକି ଡାକୁ ନାହାନ୍ତି ?

ସେ ଆଖି ବୁଜି ଦେଲେ । ମନର ଅନ୍ଧାର ରଙ୍ଗମଞ୍ଚରେ ଅଭିନୟ କଲେ କେତେ ଅତସୀ, ଲତା, ଲଳିତା, ସ୍ନେହା, ସୁଧା —, ଗୋପବାଳା — । ରଣସିଂହେ, ତାଙ୍କର ପିତା, ପିତାମହ, ପ୍ରପିତାମହ, ସେଇ ରଙ୍ଗମଞ୍ଚର କୃଷ୍ଣ ।

ଅନୁଶୋଚନା ଓ ଅବ୍ୟକ୍ତ ବେଦନାରେ ମନରେ ତୀବ୍ର ଯନ୍ତ୍ରଣା ସେ ଅନୁଭବ କଲେ । ଭୟଭୀତ ଆଖି, ଦୁଇଟି ଉପରକୁ ଟେକିଲେ । ଦୃଷ୍ଟିରେ ପଡ଼ିଲା — ମମତା ଲଳିତାର ଗଣ୍ଡରୁ ପୁଷ୍ପରେଣୁ ପୋଛି ଦେଉଛନ୍ତି ହାତ ପାପୁଲିରେ । ସନ୍ଧ୍ୟା ସେ ଜାଗି କାନ୍ଧରେ ମୁଣ୍ଡ ରଖି ଅଧା ଶୁଖିଲା କଇଁଫୁଲର ମାଳକୁ ହାତରେ ଏପାଖ ସେପାଖ କରୁଛି । ଝିଅଟିମାନେ ସରଳ, ସମ୍ଭ୍ରମଭରା ଆଖିରେ ରଣସିଂହଙ୍କୁ ଅନାଇଁ ରହିଛନ୍ତି । ଭୟ କି ସଙ୍କୋଚ ନାହିଁ ।

ମନ କଲ୍ୟାଣ କରି ଉଠିଲେ — ତମେ ସମସ୍ତେ ମୋ'ର କନ୍ୟା । ମମତାଙ୍କର ପେଟରୁ ଜନମି ନ ଥିଲେ ମଧ୍ୟ ମାତୃସ୍ନେହରୁ ଜନମିଛ । ସମସ୍ତେ ସୁଖରେ ରହ ଆନନ୍ଦରେ ରହ । ଦୀର୍ଘାୟୁ ହୁଅ — ।

ରଣସିଂହେ ଛଳଛଳ ଆଖିରେ କହିଲେ, ପୁରୋହିତେ, ଦେଖିଲ ତ ଆଖିପୂର୍ଣ୍ଣ କରି, ଏ ହୁଆସରେ ଆଉ କେବେ ଏପରି ସୁନ୍ଦର ପବିତ୍ର ଦୃଶ୍ୟ, ଏପରି ଆନନ୍ଦ ତମେ ଦେଖିଥିଲ କି ? ଦେଖ, ମୋ'ର କେତେ କନ୍ୟା । ଯେତେବେଳେ ଯାଏ ପ୍ରଭୁତ୍ୱ-ଧାରଣାର ରାକ୍ଷସୀଟା ଏ ଘରକୁ କାନ୍ଧରେ ଘୋଡ଼ାଇ ରଖିଥିଲା, ଧନଧାନ୍ୟର ଅହମିକା ଓ ଭୋଗ-ବିଳାସର ଲାଳସା ଦୁଇ ଆଖିରେ ଅଞ୍ଜନ ବୋଳିଥିଲା, ସେତେବେଳେ ଯାଏ ଏ ହୁଆସ ଥିଲା ପ୍ରେତପୁରୀ । ଏବେ କ'ଣ ଦେଖୁଛ ?

ଦେବୀଙ୍କର ଆଶୀର୍ବାଦ ।

ହିଁ, ପୁରୋହିତେ । ମୋର ଏଇ ଝିଅମାନଙ୍କୁ ମୁଁ କଅଣ ଦେବି ମୋତେ କହିପାରିବ ?

ସନ୍ଧ୍ୟା ଆଜାନୁଲମ୍ବିତ କେଶରାଶି ଦୋହଲାଇ ପାଖକୁ ଆସି ରଣସିଂହଙ୍କର ହାତ ଧରିଲା । ଝିଅଟିମାନେ ମିଶାମିଶି ହୋଇ ଏକାଠି ହେଲେ । ମମତାଙ୍କୁ ଘେରି-ଗଲେ । ସନ୍ଧ୍ୟା ରଣସିଂହଙ୍କୁ ସେମାନଙ୍କ ପାଇଁ କ'ଣ ମାଗିବ ଶୁଣିବାକୁ ଅଗ୍ରହରେ ଅନାଇଁ ରହିଲେ ।

ସନ୍ଧ୍ୟା ଗେହ୍ଲେଇ କହିଲା, ବାପା ମୋ' ବଢ଼ିଲାବେଳେ ଲୁଗା ନାହିଁ । ମୋ ଅଶୋକା ଘରେ ଖୁଆଇଲା ନାହିଁ । ସତେ ବାପା, ମୋ' ଦୁଇ ଭାଇ ବୋଉ ବେମାର, ଔଷଧ କିଣିବାକୁ ଧନ ନାହିଁ । ମୋ' ବଙ୍ଗେଲି କାଲି ଗଡ଼ରେ ଉପାସ ଥିଲା । ମୋ ଧାନ ଫୁଲର ଗୁଡ଼ ଉପରେ କାଲି ଗଡ଼ରେ ଗୋଟାଏ କାଳ ସାପ ଚଢ଼ି ଗୁଲିଗଲା

Digitized by PPRACHIN, SOA

ଖଣ୍ଡିଆ କାନ୍ଥର ଜଣା ଭିତରକୁ । ମୋ ଚମ୍ପାକଢ଼ିର ହାତରେ ଭାତ ନାହିଁ, ଦେଖ ସେ ଭଜାଧଡ଼ି ଘୁଡ଼େଇଛୁ । ମୋ ପିଉଣୀର — ।

ଆଉ କହୁ ପାରିଲା ନାହିଁ । କୋହ ଉଠିଲା, ରଣସିଂହଙ୍କର ଗ୍ରୀବାରେ ମୁହଁ ଗୁଞ୍ଜି କଇଁ ଭଇଁ କାନ୍ଦିଉଠିଲା ।

ସମସ୍ତେ ହେଲେ ନବାଭ୍ ।
ମମତା ଆଖିରୁ ପୋଛିଲେ ଲୁହ ।

ରଣସିଂହେ ଅକ୍କା ହୋଇ ଠିଆହେଲେ । ଆଗରେ ସେଇ ଝିଅଟିମାନେ । ମନଦୁଃଖରେ, କେଜାଣି ବା ଲଜ୍ଜାରେ ହସିଲା ମୁହଁ ମଇଳା କରିଛନ୍ତି । ହାତରେ ଫୁଲ-ମାଳ ଥର ଉଠୁଛି । କନ୍ୟାର ପିଠି ଆଉଁସିଲେ । ଦୁଇ ଆଖି ଛଳ ଛଳ ହେଲା ।

କହିଲା ବେଳକୁ ପାଟି ଖନ ବାଜି ଯାଉଥାଏ । ଯା ମା, ସମସ୍ତେ ଆଜ ଖୁସି-ଆନନ୍ଦରେ ଝୁଦୁରୁକୁଣୀ ଝେଷା ପାଳ । ଛୋଟ ପର ସେମାନେ ବ ମୋର ଝିଅ । ସମସ୍ତଙ୍କର ସବୁ ଅଭାବ ମୁଁ ଘୁଞ୍ଚେଇବାକୁ ଚେଷ୍ଟା କରିବ । ମା, ଧନ ନ ଅଣ୍ଟିଲେ ମୋ ମନଟାକୁ, ମୋ ଜୀବନଟାକୁ ମୋ' ପିଲାଙ୍କ ପାଇଁ ମୁଁ ସମର୍ପି ଦେବ ।

ପୁରୋହିତେ ତନ୍ମୟ ହୋଇ ଶୁଣିରହିଲେ । ମନ କହିଲା, ମୁଁ ବ ପଛେଇବ ନାହିଁ ।

ସଭାଳ ନଅଟା ।

ଜରୁରୀ ଡାକରା ପାଇ ଧରପର ହୋଇ ସତ୍ୟମଣି କାହା ଘରକୁ ଚାଲି ଯାଇଛନ୍ତି । କହିଗଲେ, ଔଷଧ ନେବାକୁ କେତେ ଲୋକ ଆସିବେ । ତୁ ସେମାନଙ୍କ କଥା ବୁଝିବୁ ।

ସାତଟାବେଳକୁ କେତେ ଲୋକ ଆସିଲେଣି । ଔଷଧ ନେଇ ଚାଲିଗଲେଣି । ଆହୁରି କେତେଜଣ ବାରଣ୍ଡାରେ ବସି ପାଟିତୁଣ୍ଡ କରୁଛନ୍ତି । ସୁଜନ ଜୋଠା ବିରକ୍ତ ହେଉଛୁ ।

ପୋଷ୍ଟପିଅନ ଚିଠି ଖଣ୍ଡେ ଦେଇଗଲା । ଔଷଧ ବଣ୍ଟା ଅଧା ରଖି ଆତୁରେ ଖୋଲିଲା ।

ଟୁନିଅପା —

ଶିହରଣ ଖେଳିଗଲା ସାରା ଶରୀରରେ । ଅକ୍ଷର ଦେଖି ସେ ଜାଣିପାରିଲା କିଏ ଲେଖିଛି । ଉପରେ ଆଖି ପକାଇଲା — ସନ୍ଧ୍ୟା ! ଆଖି ଆଗରେ ମୁହୂର୍ତ୍ତକରେ ଆସି ଠିଆହେଲା ରଣଗଡ଼ର ଅଲିଅଳୀ ରାଜଜେମା । ପନ୍ଦର ବର୍ଷର ଝିଅ । ସୁନ୍ଦରୀ

Digitized by PPRACHIN, SOA

ପ୍ରତିମା । ବସୁଛି । ସେଣ୍ଟ୍ରେଲ କହୁଛି, ଘର କପଟୀ ଛମେ ଟୁମାଅପା, ଆସିବ ବୋଲି କହିଗଲା, ଅସିଲ ନାହିଁ ।

ହାତରେ ଚଠି । ମୁହଁରେ ସ୍ମିତ । ଆଗରେ ରୋଗୀ । ଟେବୁଲ ଉପରେ ଔଷଧ ବାକ୍ସ ।

—ମା, ନାଉଟାର ଭାଲି ଗୁଡରୁ ଭାକ ଟଣୁକୁଛି । ବସେଇ ଉଠେଇ ଦେଉ ନାହିଁ । ଛଅ ପୁର ହାତ ଗ୍ଲାନି । ଗୁଡ଼ାଲେକ; ଭାଙ୍ଗକର ଆଣିବାକୁ ମୋର ବଳ ନାହିଁ । ସେ ଖାଲି ଛଟପଟ ହେଉଛି । ଅସିପାରନା ନାହିଁ । ରସୁଣ ସୋରଷତେଲ ଫୁଟେଇ କାନରେ ପକାଇଲି, କଛି ହେଲା ନାହିଁ ।

ହଅ । ଏ ଔଷଧ କାନରେ ପକାଇବ । ପ୍ରତି ଘଣ୍ଟାରେ ଥରେ । ଏ ଔଷଧ ପ୍ରତି ତନ ଘଣ୍ଟାରେ ଥରେ ଖାଇବାକୁ ଦେବ ।

ସୁହାସ୍ୟାର ଚଠି – ଦୁଇ ମାସରୁ ଅଧିକ ହେଲା । ଛମେ ଆସିଲ ନାହିଁ । ଚଠି ଖଣ୍ଡେ ବ ଲେଖିଲ ନାହିଁ । ଏତକ ଚାହେଁଇ ? ଗ୍ରାମସେବକ ଭଗବାନ ଭାଇ ପ୍ରଚ୍ଚର କରଛନ୍ତି, ତେମେ ଗୁଜର ଗ୍ରୁଡ଼ ଦେଇଛ, ଆଉ ଆସିବ ନାହିଁ । ସତେ ଟୁମାଅପା ?

—ବୋହୁଟା ଆଖିଖୋଲି ପାରୁ ନାହିଁ । ମଳ୍ଚ ମଳ୍ଚ ଆଖି ହଇଟା ନାଲି କଶ ସଂଗଲଣି । ଭ୍ରୁଆସୁଣିଟା କାନ୍ଦୁଛି, ଛଟପଟ ହେଉଛି ।

ଏଉ ଔଷଧ ଓ ପାନ ହଅ ।

ଅଖିରେ ପକେଇବ ?

ନାହିଁ । ପାନେ ଏହୁକ୍ଷଣି ଖାଇବାକୁ ଦେବ । ଆଉ ପାନକ ସଞ୍ଜବୁଡ୍ଡେ ଦେବ । ଆଖିରେ କ'ଣ ପକେଇଚ ?

ଗୋଲାପଜଳ ।

ଔଷଧ ନେବାକୁ ଆହୁର କେତେ ଲୋକ ଅପେକ୍ଷା କରଛନ୍ତି । ସେମାନଙ୍କୁ ବଦା ନ କଲେ କଣ୍ଟିନ୍ତ ମନରେ ସେ ଚଠି ଖଣ୍ଡି ପଢ଼ି ପାରବ ନାହିଁ । ଆଗ କାମ ଆଗ । ଚଠି ଖଣ୍ଡି ଲଫାପା ଭିତରେ ଭର ଡ଼ୁଅରେ ରଖିଲ ।

କାହାର ଦାନ୍ତ ବନ୍ଧୁଛି, କାହାର ହୋଇଛି ଗାଲୁଆ । ମୁଣ୍ଡ ଭମୁଛି, ଗ୍ରୁଡ ହେଉଛି ଧଡ଼ଧଡ଼, ହାତ ଫୁଲିଛି, ପେଟ ଫାମ୍ପିଛି, ଗୋଡ଼ରୁ ରକ୍ତ ଗଡ଼ିଲଣି । ଖାଲି ଅଇ ହଉଥାଉଛି । ପେଟରେ ପାଣି ଟୋପାଏ ରହୁ ନାହିଁ । କାହା ପୁଅକୁ ତନ ଦନ ହେଲା ଜର ସେ ଆଖି ଫିଟାଉ ନାହିଁ ।

ଔଷଧ ନେଇ ସେମାନେ ବଦା ହୋଇଗଲେ । ଅନ୍ଧୁର ଘଣ୍ଟାକୁ ଗ୍ରହିଁଲା । ଦଶଟା । ଏତେବେଳେ ଯାଏ ମା ଫେରିଲେ ନାହିଁ । ଟୁନାର ମଧ୍ୟ ଦେଖା ନାହିଁ ।

ଆହୁର ଦାଣ୍ଡ କବାଟ କଲଲା । ସୁହାସ୍ୟାର ପର୍ବଟି କାଢ଼ି ପଢ଼ିବାକୁ ଲାଗିଲ —

ବାପା ଗ୍ରାମସେବକ ସମାଜର ସଭ୍ୟ ହୋଇଛନ୍ତି । ଭିଟେସିଙ୍ଗି ଗସ୍ତାରର ସବୁଯାକ ଜମି ମୂଲିଆଙ୍କୁ ବାଣ୍ଟି ଦେଇଛନ୍ତି । ଖାଲି ସେତକ ନୁହେଁ ଟୁମାଅପା, ଆମ

Digitized by PPRACHIN, SOA

ହଆସ ସ୍ୱଂଶପଟେ ନଷ୍ଟବନ୍ଧ ଯାଉଛି ଆଉ ସେଠିଜ ଅନାବାଦୀ ଜମି ଥିଲା, ସେଗୁଡ଼ିକ ସେ ସୁରତ ସାଇଲୁ ଦେଇ କହୁଛନ୍ତି ଆଉ ଯାହାର ଜମି ନାହିଁ ସେମାନଙ୍କୁ ବାଣ୍ଟିଦିଅ । ରଣସିଙ୍ଗି ନାଳର ପାଣି ଆସି ସେଠି ମାଡ଼େ । ଲୋକେ ଫସଲ କରି ଖାଉନ୍ତୁ, ସୁଖରେ ରହନ୍ତୁ ।

—ବାପା ସତେ କି ପାଗଳ ହୋଇଛନ୍ତି ମ ଦମୟନ୍ତୀ, ବଡ଼ ହୋଇ ଘରେ ରହୁ ନାହାନ୍ତି । ପ୍ରତ୍ୟହ ଓ ଆଉ ଗାଁ ଲୋକଙ୍କ ସଙ୍ଗରେ ଯେନ ଘର ଘର ବୁଲି ଦୁଃଖସୁଖ ପଚାରି ଆସୁଛନ୍ତି । ଖିଆପିଆ କଥା ଭୁଲି ଯାଉଛନ୍ତି ସବୁ ! ଗାଡ଼ ଅଧଯାଏ ହଆସ ଭିତରେ ସଭା ଚାଲିଛି । କେମିତି କ'ଣ କଲେ ଗାଁର ଦୁଃଖ ଯିବ, ସେଇ କଥା ବିଚାରୁଛନ୍ତି ।

— ମୋ' କଥା ମିଛ ମଣିବ ନାହିଁ —ମା ହୋଇଲେ ସେବାଶ୍ରମର ସଭ୍ୟା । ଆଉ ସାଉଜ ଗ୍ରାଇ ପର ତାଙ୍କ ପଛେ ପଛେ ଅଛନ୍ତି । ମା' ଉଆସ ଭିତରୁ କେବେ ପଦାକୁ ପାଦ ଗୋଟେ କାଢ଼ି ନ ଥିଲେ; ଆସିଲ ଦେଖିବ ସେ କାହା ଘରେ କେଉଁଠି ବସିଛନ୍ତି । କାହାର ଝିଅପିଲାକୁ କୋଳରେ ଧରି କୋଳ ଦେଉଛନ୍ତି । ଛୁଆଙ୍କ କରି ମଠେ ଯାଉଛନ୍ତି । ଦେଖିବ ଆସ, ଗାଁ ମାଇପେ କେମିତି ସେଠି ରୁଣ୍ଡ ହୋଇ ହୁଳହୁଳି ଦେଉଛନ୍ତି, ମା'ଙ୍କ ମୁଣ୍ଡରେ ଚନ୍ଦନ-ସିନ୍ଦୁର ଦେଉଛନ୍ତି । ତା'ଙ୍କ ଉପରେ କେତେ ଫୁଲମାଳ ଗଡ଼ାଉଛନ୍ତି । ସେମାନେ ଖାଲି ମଠେ ଠାକୁରାଣୀଙ୍କୁ ପଚାରୁଛନ୍ତି ଲୋ, ସତେ ଯେମିତି ମୁଁ ସଭିଙ୍କର ଝିଅ !

—ଡଲ ଖଞ୍ଜାରେ ଗାଁ ଝିଅ ବୋହୂଙ୍କର ଭିଡ଼ । କାହାରକୁ ଆସିବାକୁ ମନା ନାହିଁ । ମାଳତୀ, ଚମ୍ପା, ଯମୁନା ବଜାଙ୍କ ପଛ ମୁହଁ ଗୁହାଁଗୁହିଁ ହେଉଛନ୍ତି । ଅଭିବୁଢ଼ୀ ନୂଆ ମା' କହୁ ପିନା ମୁହଁ ଖୋଲି କହୁ ନାହାନ୍ତି, ଖାଲି ରବେଇ ଖବେଇ ହେଉଛନ୍ତି ।

—ଏବେ ଧରାପଡ଼ିଲ ଯେ ! ଖୁଡ଼ୀଙ୍କ ଆଖିରେ କିଏ ଧୂଳି ପକେଇ ପାରିବ କି ? ଦେଖୁ ଦେଖୁ ସେ ଚିହ୍ନିଲେ । କହିଲେ, ଭ୍ରୂଲତା, ନାକ, ଗୁହାଣୀ, ହସ, ସବୁ ତ କହି ଦେଉଛି ଏଇ ତୋ'ର ଦମୟନ୍ତୀ । ସତେ ତ କେଡ଼େ ଓଲୁଟାଏ ମ ମୁଁ ! ଦମୟନ୍ତୀ ତମ ଛଡ଼ା ଆଉ କେହୁ ନୁହଁ । କେତେଥର ମୁଁ ପଚାରିଛି, କାହିଁକି ତମେ ମତେ କହିଲ ନାହିଁ, ଲୁଚେଇଲ ।

—ଫଟୋଟିକୁ ତମେ ଏଡ଼େ ସ୍ନେହ କରୁଥିଲ, ମତେ ମାଗୁଥିଲ । ମୁଁ ଓଲୁ ଜାଣିପାରିଲି ନାହିଁ । ଜାଣିଥିଲେ ନିଶ୍ଚେ ତମକୁ ଦେଇଥାନ୍ତି । ଭାଇ ପଛେ ଲାଗିଲେ ଲାଗିଥାନ୍ତେ । ତାଙ୍କର ଯେତେ ଯେଉଁଠି ପତ୍ରପତ୍ରିକା ଛବିବହି ଅଛି, ସବୁଥିରେ ସେ ତମ ନାମ କେତେଥର କରି ଲେଖିଛନ୍ତି । ଆସିଲେ ଦେଖେଇବି ।

—ଭାଇ କଟକରୁ ଚିଠି ଲେଖିଥିଲେ । ସେ କେବେଠୁଁ ଆସି ସେଇଠି ଅଛନ୍ତି । ଆମ ଗାଁ ଖବର ପାଇ ସେ ଭାରି ଖୁସି ହୋଇଛନ୍ତି । କେଉଁ କାମରେ କଟୁଦିନ ପାଇଁ

Digitized by PPRACHIN, SOA

ଆଉ କେବେ ଯିବେ ବୋଲି ଲେଖିଛନ୍ତି । ସେଠୁ ଫେରି ଗାଁକୁ ଆସିବେ । ତାଙ୍କ ଚିଠି ପାଇ ମା, ବାପା, ସାନଭାଇ, ଖୁଡ଼ୀ ସମସ୍ତେ କେଡ଼େ ଖୁସି । ତାଙ୍କୁ ପାଖେଇ ଆଣିବାକୁ ଧର୍ମନନା, ସୁରଭାଇ କଟକ ଯାଇଥିଲେ । କେଉଁଠି ସେ ଅଛନ୍ତି ଜାଣି ନ ପାରି ଫେରିଲେ । କେଜାଣି ବା ସେ କଟକରେ ନ ଥିବେ । ନୂଆଅପା, ତମେ ତାଙ୍କୁ ଦେଖିଲେ କହିଦେବ ଗାଁ ଲୋକେ ସମସ୍ତେ ତାଙ୍କୁ ଅନେଇ ବସିଛନ୍ତି ।

—କେବେ ତମେ ଆସିବ ନିଶ୍ଚେ ଆଗରୁ ଲେଖିବ । ରଜ ଗଲା । ସବୁ ଗାଁକୁ ସବୁ ଘରକୁ ଗଲି, ପିଠା ଖାଇଲି । ଆମକୁ ପର କରିଦେଲ । ଖୁଦୁରୁକୁଣୀ ଓଷା ଆଉ ମୋଟେ ଗୋଟିଏ ପାଳି ଅଛି । ଭଲ ଆଁ ହେବ । ଆମ ନାଗ୍ରକଲ୍ୟାଣ ମନ୍ଦିରରେ ସବୁଦିଅ ପଣି ଏକାଠି ପୂଜା କରିବୁଁ । ରଜକୁ ବାପ, ଭାଇ, ଦାଦ, ବଡ଼ବାପାଙ୍କ ଗା ଝିଅମାନେ ପିଠା ଖୋଇଥିଲେ । ଏଥର ଠିକ୍ କରିଛୁଁ ଆଇ, ମା, ଖୁଡ଼ୀ, ଭାଉଜମାନଙ୍କୁ ପିଠାକରି ଖାଇବାକୁ ଦେବୁଁ । ମା ମନିଛନ୍ତି । ସବୁ ସେ ବନ୍ଦୋବସ୍ତ କରିବେ । ସାନଭାଇ କହୁଛନ୍ତି ଦଶ ଭାର ଫଳ ଅଣିଦେବେ । ବଡ଼ଭାଇ ବି ଆସିଥିବେ ଯେ । ଆସ ଭାଉଜଙ୍କ ଦେହ ଭଲ ନାହିଁ । ବାନ୍ତି କରୁଛନ୍ତି । ତମେ ନିଶ୍ଚେ ଅସିବ ନୋହିଲେ—କାହା ଗ୍ରଣ ପକେଇବ କହିଲ ?

ବାଇଆଣୀ ପରି ଏ ଘର ସେ ଘର କାହିଁକି ହେଉଛ ନୂଆ, କ ଚିଠି ଆଇଚି କି ? ବାରଟା ବାଜିଲା । କେତେବେଳୁ ଯାଏ ଅପାଙ୍କୁ ଅନେଇ ବସିଥିବ ?

ଚକୋଖର କଥାରେ ଅଦ୍ଭୁତ ଚନ୍ଦ୍ରାଭ୍ୟଳ୍ୟରୁ ଓହ୍ଲାଇଲା । ଚିଠି ଖଣ୍ଡି ତକିଆ ତଳେ ରଖି କହିଲା, ସ୍କୁଳରେ ଯୋଗଦେବା କଥା ଲେଖୁଛି ।

ଗ୍ରଡ଼ଦେଉନ ।

ଯୋଗଦେବ ବୋଲି ଆଗରୁ ଲେଖିଦେଇଛି ।

ମନା କରିଦିଅ ।

ବୋଉ କହୁଥିଲା, ଏଥର ସେ ମୋ ସାଙ୍ଗରେ ଯିବ । ନୂନାର ଦାୟିତ୍ୱ ତମେ ମୁଣ୍ଡେଇବ ଖୁଡ଼ୀ ! ସୁଜନ ଢେଠା ତ ଅଛନ୍ତି । ସୋମନାଥ ବି ରହିବ । ଭଲ ପିଲାଟିଏ ସୋମନାଥ, ନାଇଁକି ଖୁଡ଼ୀ ?

ଖାସା ପିଲାଟିଏ । ସେ ନ ଥିଲେ ମୁଁ କ'ଣ କାମକୁ ପାରନ୍ତି ? ଦେଖିବ ଆସ, କ'ଣ ସେ କରୁଛି ।

କ'ଣ କରୁଛି ?

ସୁଜନର ପିଠି ଉପରେ ଠିଆ ହୋଇ କୁଦୁଛି ।

ଅଦ୍ଭୁତ ହସିଲା । କହିଲା, ସବୁଦିନେ ବୋଧହୁଏ ଡେଇଁ କରୁଛି । ଏଥିରେ ଦେହ ଖରାପ ହେବ ନାହିଁ ?

ସବୁଦିନେ ନୁହଁ, କେବେ କେମିତ । ଯେଉଁଦିନ ଆଜି ପରି ଅଧିକ ଡେଇଁହୁଏ, ଅପା ତେଣୁ ମୁହଁ ଶୁଖେଇ ଆସନ୍ତି ।

Digitized by PPRACHIN, SOA

ଚକୋରୀର କଥା ନ ସରୁଣୁ ଦାଣ୍ଡରେ ଶୁଭିଲା ମଟର ହର୍ଣ୍ଣ । ଆହୁତ କାନ ଡେରିଲା । ସତ୍ୟବତୀ କଡ଼ା ଖଡ଼୍ ଖଡ଼୍ କରି ସୋମନାଥର ନାମ ଧରି ଡାକୁଛନ୍ତି । ଚକୋରୀ କବାଟ ଖୋଲିବାକୁ ଗଲା । କେଉଁ ଅଶୁଭ ଖବର ଶୁଣିବ ବୋଲି ଆହୁତ ଗୁରୁ ଦମ୍ଭ କରି ବାରଣ୍ଡାକୁ ଆସିଲା ।

ସତ୍ୟବତୀ ହସ ହସ ହୋଇ ଆସୁଛନ୍ତି । କହୁଛନ୍ତି,— କି ସୁନ୍ଦର ଲବ କୁଶ ହଓଟି ଲୋ ଚକୋରୀ ! ଦିଅଟି ନାମ ବି ସୀତା ।

ପୁଣି ମାସଟିଏ ସ୍ୱର୍ଗରାଜ୍ୟରେ ବୁଲିବୁଲି ମର୍ତ୍ତ୍ୟପୁରକୁ, ଧନଞ୍ଜୟର ବସା ଘରକୁ ଫେରି ଆସିଛୁ ବଳିବାବୁ । ତିନି ହଜାର ଫୁଟ ଉଚ୍ଚ ପୂର୍ବଘାଟ, ପର୍ବତମାଳାର ଆର ପାଖରେ ସେ ରାଜ୍ୟ । କୋରାପୁଟ । ଛୋଟଛୋଟିଆ ପର୍ବତମାଳ । ଉପତ୍ୟକା-ମାନଙ୍କରେ ଗାଁ । କାହିଁ ଘୋର ଅରଣ୍ୟ, କାହିଁ ବା ଗଛବୃକ୍ଷର ଚିହ୍ନବର୍ଣ୍ଣ ନାହିଁ । ସୁଷକମିର ଅଗ୍ରବରୁ ଲମ୍ବା ପାହାଡ଼ଗୁଡ଼ିକର ତାଳୁରୁ ତଳପାଯାଏ ସୁଷ । ବଂଶଧାରା, ନାଗାବାଳୀ, ଇନ୍ଦ୍ରାବତୀ ନଦୀ ସେମାନଙ୍କର ଶାଖାନଦୀଗୁଡ଼ିକର ଦୁଇ କୂଳରେ ବିସ୍ତୀର୍ଣ୍ଣ ଧାନକ୍ଷେତ । ପାହାଡ଼ମାଳାର ମଝିରେ ମଝିରେ ଉପତ୍ୟକାମାନଙ୍କରେ ମଧ୍ୟ ବିସ୍ତୀର୍ଣ୍ଣ ଧାନକ୍ଷେତ । ଛୋଟବଡ଼ ଅସଂଖ୍ୟ ଝରଣା ଓ ଝୋଲା ।

ମନୋରମ ପ୍ରକୃତି !

ଏହି ଆମର ସ୍ୱର୍ଗରାଜ୍ୟ ! କନ୍ଧ, ପରଜା, ଶବର, ଗାଦବା, ଉତରା, ପନ୍ଖା, ବଣ୍ଡା, ଚଣ୍ଡାଳ ଓ ଅନ୍ୟ କେତେ ଜାତିର ଆଦିବାସୀ ଘର କରି ରହିଛନ୍ତି । ମାଲି, ଡଣା, ଶୁଣ୍ଢୀ ଓ ଡମମାନେ ସେମାନଙ୍କର ପାଖେ ପାଖେ ବା ପାଖ ଗାଁମାନଙ୍କରେ ବାସ କରନ୍ତି । ମେଲେରିଆ, ଯକ୍ଷ୍ମା ଓ ଅନ୍ୟାନ୍ୟ ରୋଗର ପ୍ରକୋପ । ଘୋର ଅରଣ୍ୟରେ ବାଘର ଉପଦ୍ରବ । ପାହାଡ଼ ସନ୍ଧିରେ ଅତି ଛୋଟ ଛୋଟ ଗାଁ ଗୁଡ଼ି ଲୋକେ ପଳାଉଛନ୍ତି । ତଥାପି, ଲୋକସଂଖ୍ୟା ଦ୍ରୁତ ଗତିରେ ବଢ଼ିଚାଲିଛି ।

ସେମାନେ ଯେଉଁ ଫସଲ ଉତ୍ପାଦନ କରନ୍ତି, ଅଳ୍ପ ମୂଲ୍ୟ ଦେଇ ସାହୁକାର-ମାନେ ନେଇ ପଳାନ୍ତି । ଏଥିପାଇଁ ସାଲୁର ଓ ବିଜୟନଗରମ୍‌ରୁ କତି ଶହ ଶହ ଲରି ଆସେ ଓ ଯାଏ । ସବୁ ଉତ୍ପନ୍ନ ଆସି ହାଟମାନଙ୍କରେ ଜମାହୁଏ । ସେଇଠୁ ହୁଏ ଲୁଣ୍ଠନ । ଫସଲ ସମୟର ଦୁଇ ମାସ ଯାଏ ଚହଲଚହଲ । ସେଇଠୁ ସବୁ ଶୂନ୍ୟ । ରନ୍ଧା ମଦ, ମାଣ୍ଡିଆ, ତେନ୍ତୁଳିମଞ୍ଜି, ଆମ୍ବଟାକୁଆ, ଶାଳପଟଛର ଅନ୍ତ ଗୁଣ୍ଡା କରି ପେଜ୍ କରି ଆଦିବାସୀ ଖାଏ । ବଳିଲା ଜାତିର କନ୍ଦା ଖୋଲି ସିଝାଇ ଖାଇ ମଧ୍ୟ ବେଳ କଟିଯାଏ । ଅତି ଛୋଟ ନୁଆଁଣିଆ ଧାଡ଼ଧାଡ଼ିକା କୁଡ଼ିଆମାନ ଭିତରେ

Digitized by PPRACHIN, SOA

ଏକାଠି ରହନ୍ତି ସ୍ୱର୍ଗର ସନ୍ତାନମାନେ—ଘୋଡ଼ା, ଗାଈ, ଘୁଷୁରି, ଛେଳି, ମେଣ୍ଢା, କୁକୁର, କୁକୁଡ଼ା, ଘାସ, ସାପ ଓ ଗଛ ! କେଉଁଠି ଅରଣ୍ୟ ଜଙ୍ଗଲ ଭିତରେ ତାମାନଙ୍କରେ ଗାଁ ଘରପାଖେ ବାଘମାମୁଁ ବେଶ୍ଙ୍କୁ ଗୁହଡ଼, ଘଇଲ୍ଳା ମାରେ । ନିମନ୍ତ୍ରଣ କରେ ।

ଫୁଲ, ମଦ, ଗୀତ, ନାଚ, ପ୍ରେମ, ବିବାହ ! ଅଭାବ ଓ ଅସୁବିଧା କ'ଣ ସେମାନେ ଅନୁଭବ କରିପାରନ୍ତି ନାହିଁ । କୌଣସି ମତେ ପେଟ ପୂରିଲେ ହେଲା— ପେଜ୍, ଶାଗ, ମୁଷା, ଡିମଣା, କାଇ, ହଇଟାଙ୍କୁ । ସବୁ ତାଙ୍କ ପାଟିକି ସୁଆଦିଆ ଲାଗେ ।

ଅଜ୍ଞତା ତାଙ୍କୁ କରିଛି ସରଳ, ସହଜ—ବିଶ୍ୱାସୀ, ଭୟାଳୁ ଓ ଭାଗ୍ୟବାଦୀ । ସେମାନେ ଦରିଦ୍ର । ଯାହା ଅର୍ଜନ କଲେ, ସାହୁକାରମାନଙ୍କର ଓଜନର ଫିକର୍ ଓ ହିସାବର ଫନ୍ଦି ଭିତରେ ସବୁ ହଜିଯାଏ । ସୁଖ ସୁଭର ହତାଶ ଓ କାରୁଣ୍ୟ ପରିଶ୍ରମର ପ୍ରେରଣା କମାଇ ଦେଇଛି । ହୁଏ ତ, ସେଥିପାଇଁ ସେମାନେ ସାଧାରଣତଃ ଅଳସୁଆ । ସୁଖ ପାଇଁ ଆନନ୍ଦ ପାଇଁ ଲୋଡ଼ା – ଫୁଲ, ଗୀତ, ଧାଙ୍ଗଡ଼ାଧାଙ୍ଗଡ଼ୀ ନାଚ, ପ୍ରଣୟ— ।

ଅଭିଜ୍ଞତା ଯେଉଁ ଫେରିଆସିଛି ବଜ୍ରବାହୁ । ମନର ଧାରଣା ବଖାଣିଛି ବନ୍ଧୁ ଧନଞ୍ଜୟ ଆଗରେ ।

ରାତି ଅଧ । ସବୁ ଶୁଣି ଧନଞ୍ଜୟ କହିଲା, ତୋ'ର ଅନୁଭୂତି ଅତି ମୂଲ୍ୟବାନ୍ ବଜ୍ରବାହୁ, ଦୂର ମୋଫସଲର ଦରିଦ୍ର, ଅଜ୍ଞ, ଅସ୍ୱାସ୍ଥ୍ୟ ଲୋକଙ୍କର ସବୁଦିଗରୁ ଉନ୍ନତି ହେଲେ ଯାଇଁ ଦେଶର ଉନ୍ନତି ହେଲା ବୋଲି ବୁଝିବାକୁ ହେବ ।

ସତକଥା ରେ ଧନଞ୍ଜୟ, ଗ୍ରାମର ଅଭାବ ଅସୁବିଧା ଦୂର କରି ପାରିଲେ, ଗ୍ରାମକୁ ନୂଆ ଗ୍ରାଞ୍ଚରେ ଗଢ଼ିପାରିଲେ ଯାଇ ଦେଶ ଆଗେଇ ଯିବ । ଅନୁନ୍ନତ ଅଞ୍ଚଳର ଅନୁନ୍ନତ ଲୋକଙ୍କ ଭିତରେ କାମ କରି ସେମାନଙ୍କୁ ଉନ୍ନତ କରିବା ଅତି ବଡ଼ କଥା । ସେହିମାନଙ୍କ ଭିତରେ କାମ କରି ସାରାଜୀବନ କଟାଇ ଦେବାକୁ ମନ ତାକ ଗୁଡ଼ିଛୁ । ତା' ଆଗରୁ ରଣଗଡ଼ର ପରିବର୍ତ୍ତନ ଟିକେ ଦେଖି ଆସେ । ରଣଗଡ଼ର ଉତ୍ସାହୀ ଗ୍ରାମସେବକମାନଙ୍କର ହାତରେ ହାତ ମିଳାଇ ଗ୍ରାମ ପ୍ରତି ମୋ'ର କର୍ତ୍ତବ୍ୟ ମୁଁ ସମାପନ କରେ ।

ଧନଞ୍ଜୟ ସ୍ୱିଚ୍ ଟିପି ଆଲୁଅ ଲିଭାଇଲା । ଜଙ୍ଗଲ ଖଟକୁ ଆସି ଅନ୍ଧାରରେ ମଶାରି ପକାଇଲା । ବିଛଣା ଉପରେ ଅବଶ କ୍ଳାନ୍ତ ଦେହ ଲମ୍ବାଇ ଦେଇ କହିଲା, ଏବେର ତୁ ଶୋଇପଡ଼ । ଖବର କାଗଜ ଦେଖିଥିବୁ ତ ତୋ'ର ଜନ୍ମଭୂମି ରଣଗଡ଼, ତୋ'ଠେ ଗୃହିଁ ବର୍ଷ ନାହିଁ । ତୋ'ର ପିତା—ରଣସିଂହ, ସେବକ ସମାଜର ସଭ୍ୟ ହୋଇଛନ୍ତି । ତୋ'ର ମାତା ମମତାଦେବୀ ଉଆସ ଛାଡ଼ି ରଣଗଡ଼ର ଦାଣ୍ଡକୁ ଓହ୍ଲାଇ-ଛନ୍ତି, ସେ ବି ସେବିକାଦଳରେ ଯୋଗ ଦେଇଛନ୍ତି ।

Digitized by PPRACHIN, SOA

ପାଖ ଖଟରେ ସୁବ୍ରତ ଶୋଇଥିଲା । ଚଉଁ କିପି ସେ ମଧ୍ୟ ମଶାଣ ସଜାଡ଼ିଲା । ଆଲୁଅ ଲିଭାଇ କହିଲା, ଆଗରୁ ଧର୍ମାନନ୍ଦ ଯେଉଁ ଚିଠି ଲେଖିଥିଲା ସେଥିରୁ ମୁଁ ଜାଣି ପାରିଥିଲି ଯେ ଶୀଘ୍ର ଦିନେ ଏପରି ଘଟିବ । ଏଥିପାଇଁ ଦାୟୀ ମୋର ସାନଭାଇ ସୁବ୍ରତ, ବନ୍ଧୁ ଧର୍ମାନନ୍ଦ !

ସୁବ୍ରତ ତୁଣ୍ଡରେ ଉଚ୍ଚାରି ପାରିଲା ନାହିଁ ଆଉ ଗୋଟିଏ ନାମ । ମନରେ ଓଲଟପାଲଟ ହେଲା— ଆହୁତ, ଅହୁତ — ଦମୟନ୍ତୀ — ।

ଆହୁତର ରୂପ ଉଭା ହେଲା ଆଗରେ । ହସୁଛି । କହୁଛି, ଦେଖିଲ ତ, ତୁମେ ଯାହା କରି ପାରି ନ ଥିଲ, ଯେଉଁଥିପାଇଁ ଅଭିମାନ କରି ଘର ଛାଡ଼ିଥିଲ, ସେତେକ ମୁଁ କରି ପାରିଛି ।

ଧର୍ମାନନ୍ଦ ତା' କଥା ମଧ୍ୟ ଲେଖିଥିଲା । ସମାଜସେବା କାମ ଅନେକେ କରନ୍ତି, କିନ୍ତୁ କର୍ମଯଜ୍ଞରେ ନିଜକୁ କେତେଜଣ ଆହୁତି ଦେଇ ପାରନ୍ତି ? ଅକ୍ଳାନ୍ତ ପରିଶ୍ରମ କରି, ପର ଆପଣା ବଡ଼ ସାନ ଭେଦ ଭୁଲି କେବଳ ଶ୍ୟାମଗଡ଼ କି ଚଣ୍ଡୀଗଡ଼ ନୁହେଁ, ତା'ର କର୍ମକ୍ଷେତ୍ରର ପରିଧି ଭିତରେ ଯେତେ ଗ୍ରାମ ଅଛି ସବୁଠି ସେ ବିପ୍ଳବ ସୃଷ୍ଟି କରିପାରିଛି । ଆବାଳବୃଦ୍ଧବନିତା ତା'ର ଆଡ଼କୁ ଟାଣିହୋଇ ଆସିଛନ୍ତି । ତାଆରି ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି । ଉତଦେଶ ଭ୍ରମଣ କରି ଆସେଇ ଆସିଛନ୍ତି । ନିନ୍ଦା ପ୍ରଶଂସା କି ମାନାପମାନକୁ ସେ ଭ୍ରୂକ୍ଷେପ କରି ନାହିଁ । କେବଳ ତା'ରି ପାଇଁ ରଣସିଂହେ ଆଭିଜାତ୍ୟକୁ ପଛରେ ପକାଇ ହସି ହସି ରଣଗଡ଼ର ଗାଁ ଦାଣ୍ଡକୁ ଓହ୍ଲାଇ ପଡ଼ିଛନ୍ତି । ରଣଗଡ଼ର ରାଜରାଣୀ ସବୁ ଅହମିକା ମନରୁ ପୋଛି ଉଆସ ଛାଡ଼ି ଠିଆ ହୋଇଛନ୍ତି ଦରିଦ୍ର ଗ୍ରାମବାସୀଙ୍କ ଅଗଣାରେ ।

ଦିଶିଯାଉଛି ଆଖି ଆଗରେ - ଯୁଗ ଯୁଗ ଧରି ଯେଉଁମାନଙ୍କ ଉପରେ ତାଆରି ପୂର୍ବପୁରୁଷେ ଅତ୍ୟାଚାର କରିଥିଲେ, ଯେଉଁ ଗ୍ରାମବାସୀଙ୍କୁ ହେୟ ଓ ଘୃଣ୍ୟ ବୋଲି ମଣିଥିଲେ, ଛଳବଳ କରି ରକ୍ତ ଶୋଷି ପିଉଥିଲେ, ତାଙ୍କରି ଅଗଣାରେ ଠିଆ ହୋଇଛନ୍ତି ତା'ର ଜନକଜନନୀ !

ଯୁଗ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଜମିଦାରୀ ଉଚ୍ଛେଦ ହେଲା । ସେମାନେ ତ ପ୍ରତିଶୋଧ ନେଇଥିଲେ, ଅପମାନ ଦେବାକୁ ଅବଜ୍ଞା ଓ ଉପହାସ କରୁଥିଲେ । ଆଜି ସେମାନେ ରଣସିଂହ ଓ ମମତାଦେବୀଙ୍କୁ ଆପଣାର କରିଛନ୍ତି । ପିତାମାତା କ'ଣ ଫେରାଇ ଦେଇଛନ୍ତି ଗ୍ରାମବାସୀଙ୍କୁ ? କେତେ ମାଣ ଅନାବାଦୀ ଅବନା ଭୂମି ଅଥବା ସେଇ ପ୍ରଜାମାନଙ୍କଠାରୁ ଅପହରଣ କରିଥିବା ଧନକୁ ଅପବ୍ୟୟ କରି ଦଳି ପଡ଼ିଥିବା ଓ ସଞ୍ଚିତ ଥିବା ସୁନାରୁପାରୁ କେଇ ଭରି ? ଏଇଥିପାଇଁ କ'ଣ ମନ ଗହନରେ ସଞ୍ଚିତ

Digitized by PPRACHIN, SOA

ଯୁଗ ଯୁଗର ଘୃଣା ଅବିଶ୍ୱାସ ଭାବକୁ ସେମାନେ ଦୂର କରିପାରିଲେ ? ପିତାମାତାଙ୍କୁ ଆପଣାର କରିପାରିଲେ ?

ସେମାନେ ଉଦାର, ସେମାନେ କ୍ଷମାଶୀଳ ।

କର୍ମ-ଯଜ୍ଞର ପବିତ୍ର ଅନଳ ଜଳୁଛି, ଅତୀତର ସବୁ କୁସଂସ୍କାର, ସାନ ବଡ଼ ଭେଦଭାବ ଜଳିପୋଡ଼ି ଭସ୍ମ ହେଉଛି । ତାଆରି ଭିତରେ ମଣିଷହମାନଙ୍କର ଶୁଦ୍ଧ, ନିର୍ମଳ ମନ ଆଉଟି ହୋଇ ଏକାଠି ହୋଇ ଉଜ୍ଜ୍ୱଳ ସୁବର୍ଣ୍ଣ ପରି ଜ୍ୟୋତିଃ ବିକୀରଣ କରୁଛି । ସେଇ ପବିତ୍ର ଯଜ୍ଞର ପ୍ରଥମ ଇନ୍ଧନ ହୋଇଛି ସୁବ୍ରତ ରଣରଙ୍ଗୀ ।

ସେଇ କରିପାରିଛି ହୃଦୟର ପରିବର୍ତ୍ତନ ।

ହୃଦୟ ହୃଦୟକୁ ଚିହ୍ନେ । ଧନ ଦଉଲତ, ମାନ ଅଭିମାନ, ହିଂସା, ଦ୍ୱେଷ, ଘୃଣା ସବୁ ପଡ଼ି ରହେ ପଛରେ । ହୃଦୟ ବଦଳିଲେ ଅତୀତର ସବୁ ଦୁଃଖ-ସ୍ମୃତି ଅତୀତ ଗର୍ଭରେ ସମାଧି ନିଏ ।

ହୃଦୟ ବଦଳିଛି । ଉଜ୍ଜ୍ୱଳ ଜଳୁଛି କର୍ମଯଜ୍ଞର ପବିତ୍ର ଶିଖା । ନିଜେ ଇନ୍ଧନ ହୋଇ ସବୁ ଗ୍ରାମବାସୀଙ୍କୁ ଇନ୍ଧନ କରିପାରିଛି ସୁବ୍ରତ ରଣରଙ୍ଗୀ । ଦିଶିଯାଉଛି— ହସ ହସ ମୁହଁ । ଉଜ୍ଜ୍ୱଳ ସ୍ନେହାଳୁକାତର ଆଖିଯୋଡ଼ିକ । ମୁଣ୍ଡର ବାଳ ଫୁରୁଫୁରୁ ଉଡ଼ୁଛି । ଦେହରେ ଲାଗିଛି ମାଟି କାଦୁଅ । ଡାହାଣ ହାତରେ କୋଦାଳ । ବାଁ ହାତରେ ଟୋକେଇ । ବିସ୍ତୀର୍ଣ୍ଣ ଲଲାଟରୁ ଝରିପଡ଼ୁଛି ସ୍ୱେଦ ବାରି । ଆଗେଇ ଚାଲିଛି । ତା' ପଛରେ ହରି ପଟ୍ଟନାୟକ, ଅଜିମ୍ ଖାଁ, ସର ସୋରି, ଛକଡ଼ି ବାହେରା, ଗୋବିନ୍ଦ ମିଶ୍ର, ସାମୁଏଲ୍ ଦାସ, ନେହାଲ ସଉରା, ରଥ ଦଳେଇ— ଲମ୍ବିଯାଇଛି ।

ସେ ପାଖରୁ ଚାଲି ଚାଲି ଅସୁଛନ୍ତି ଅଭିନବ ରଣସିଂହେ । ପଛେ ପଛେ ମମତାଦେବୀ, ଭାରତୀଦେବୀ, ସୁସନ୍ଧ୍ୟା । ନୂଆ ଯୁଗର ସୈନିକମାନଙ୍କୁ ନିରେଖି ଚାହୁଁଛନ୍ତି । ଆଖିରେ ପ୍ରଶ୍ନ—

କାହିଁ ସୁବ୍ରତ ବଜ୍ରବାହୁ ?

ଦୂରରେ, ଗହୀର ମଝି ମାଟିକୁଦ ଉପରେ କିଏ ସେ ଠିଆ ହୋଇଛି ? ହାତରେ କୋଦାଳ । ସଜ ସକାଳର କଅଁଳ ସୁନେଲି ସୂର୍ଯ୍ୟରଶ୍ମିରେ ମୁହଁଟି ଦିଶୁଛି ଉଜ୍ଜ୍ୱଳ । ଡାକ ଶୁଭୁଛି—ଏଇ ବାଟେ ନୂଆ ଗହୀରକୁ ନୂଆ କେନାଲଟି ଖୋଲା ହେବ । ଆସ ସମସ୍ତେ ।

କୋଦାଳ ଟେକି ମାଟି ହାଣୁଛି ।

ସେ ବଜ୍ରବାହୁ ନୁହେଁ ।

ନୂଆ ଯୁଗର ନୂଆ ପୁରୋହିତ ଧର୍ମାନନ୍ଦ । ବଡ଼ ପାଟି କରି ମନ୍ତ୍ର ଉଚ୍ଚାରୁଛି— ଶରୀରଂ ବା ପାତୟେତ୍, କର୍ମଂ ବା ସାଧୟେତ୍ ।

ରଣଗଡ଼ ଡାକ ଶୁଭୁଛି ।

Digitized by PPRACHIN, SOA

ବଜ୍ରବାହୁର ଆଖିକୁ ନିଦ ଆସୁ ନାହିଁ । ଆର ଖଟରୁ ଧନଞ୍ଜୟର ଘୁଙ୍ଗୁଡ଼ି ଶୁଭୁଛି । ଆଖି ବୁଜିଲେ ତା'କୁ ନିଦ ଘୋଟିଯାଏ ।

ସୁବ୍ରତ ସବୁ ଚିନ୍ତା ମନରୁ ଦୂରକରି ଶାନ୍ତିରେ ଶୋଇବାକୁ ଚେଷ୍ଟା କଲା । ଅଜାଣତରେ ମନ ଅଧିକାର କଲା ଭାବନା । ଆଗରେ ଠିଆ ହୋଇଛି ଅହଲ୍ୟା ! ଅଭିମାନ କରି କହୁଛି, ଏତେଦିନ ପରେ ଫେରିଆସିଛ, ଦମୟନ୍ତୀ ମନେ ପଡ଼ୁନାହିଁ ?

ଦମୟନ୍ତୀ ମନେପଡ଼ୁନାହିଁ ?

ଆଖିରୁ ଦୁଇ ଧାର ଲୋତକ ଗଡ଼ିଆସିଲା । ଲୁହର ବାଦଲ ଭିତରେ ଅକ୍ଷର-ଗୁଡ଼ିକ ଝଲ୍ ଝଲ୍ ଦିଶିଲା । କଅଣ ସେ ଲେଖିପକାଇଛି ମନେ ପଡ଼ୁନାହିଁ । ଅମାନିଆ ଲୋହ ଗୁହାଳ ଗୁହାଳ ଆସୁଛି । ଗ୍ଲାନି ଅସ୍ୱସ୍ତି । ଅଜଣା ଦୁଃଖ ଓ ନୈରାଶ୍ୟ ମନକୁ କରିଛି ଆଲୋଡ଼ିତ, ବିଚଳିତ । ତାହା ଆଗରେ ମନର କଥା ସେ କହିପାରିବ ? ସମସ୍ତଙ୍କ ମଝିରେ ଥାଇ ମଧ୍ୟ ସେ ଏକୁଟିଆ । କାର୍ଯ୍ୟବ୍ୟସ୍ତତା, ହସଖୁସିର ଅନ୍ତରାଳରେ ତା'ର ଏକୁଟିଆପଣ ବାହାରି ଉଠେ । ଦୁନିଆର ଆଉ କେହି ଶୁଣିପାରନ୍ତି ନାହିଁ, ଜାଣନ୍ତି ନାହିଁ । ସମସ୍ତେ ଜାଣନ୍ତି, ଆହୁରି ସୁଖଶାନ୍ତିରେ ଅଛି । ମନରେ ତା'ର ଚିନ୍ତା ପଶେ ନାହିଁ । ସେ କର୍ମରତା, ସେ ହାସ୍ୟମୟୀ । ଯୌବନର ତୋଫାନ ତା'ର ଦେହ ଛୁଇଁ ଚାଲିଯାଏ, ତା'ର ଲୋମ ମଧ୍ୟ ଅସ୍ତାଇପାରେ ନାହିଁ । ସେ ସାତତ୍ୱ ।

କେହି ଜାଣନ୍ତି ନାହିଁ, ତା'ର ତାରୁଣ୍ୟ ମନର ଅଦମ୍ୟ କାମନାକୁ କପରି ଆଲୋଡ଼ିତ କରେ । ମନ ଖୋଜେ ସାଥି ଯାହାର ପାଦ ତଳେ ନିଜକୁ ସେ ଅଜାଡ଼ି-ଦେବ । ସେ ଉଲୁପୀ, ସେ ଗୌରୀ, ହେଲେନା, ଦମୟନ୍ତୀ, ପଦ୍ମାବତୀ । ସେ ଆହୁରି କେତେ ନାୟିକା । ବାସ୍ତବ ଜୀବନ ସବୁ ଅଭିନୟକୁ ପଛରେ ପକାଇ ଧାଇଁଲେ ମଧ୍ୟ ସତେ କି ଗୋଟିଏ ଅଭିନୟକୁ ସତ୍ୟ କରିଛି । ନିଜକୁ ସେ ଦମୟନ୍ତୀ ବୋଲି ଗ୍ରହଣ କରିଛି । ମନ ଆଉଜି ପଡ଼ିଛି ଅବାସ୍ତବ ଅବଲମ୍ବନକୁ—ନଳଗ୍ରାମ-ସୁବ୍ରତ ବଜ୍ରବାହୁ !

ସେ ବିରହିଣୀ ।

ବିଚ୍ଛେଦ ଚିରକାଳୀ ହେଉ । ଦମୟନ୍ତୀ ମନେ ନ ପଡ଼ୁ । ଆଦର୍ଶ ଅହଲ୍ୟ ଆଗକୁ ଟାଣିନେଉ । ବର୍ଷ ପରେ ବର୍ଷ କଟିଯାଉ । ତାରୁଣ୍ୟର ଉତ୍ତେଜନା କର୍ମଯଜ୍ଞର ଅନଳ ଶିଖାରେ ପୋଡ଼ିହୋଇ ମରୁ । ବୟସ ଆଗେଇ ଚାଲୁ । କେଶ ହେଉ ଧଳା । ଆଖିରେ ପରଳ ମାଡ଼ୁ । ଦାନ୍ତଗୁଡ଼ିକ ଖସିପଡ଼ୁ । ଯୌବନ ମଥା ନୋଉଁ । ଦେହର ଚମ ଶିଥିଳ ହେଉ ।

Digitized by PPRACHIN, SOA

ବୁଢ଼ୀଆଈର ଶୁକ୍ଳ କେଶକୁ ହାତରେ ଆଉଁଷି ଔଷଧ ପାନେ ପାଟିରେ ଦେଲେ କୁତକୁତାରେ ପାକୁଆ ପାଟି ଖୋଲି ସେ କହୁଚନ୍ତି, ନା' କଲ୍ୟାଣ ହଉ କରବ ଲୋ ନାତୁଣୀ ଟୋକୀ, କହୁଛ କି ଭଜାପୁଅର ହାତଧରି

ରକ୍ଷାପଦ ଲୋପ ହେଲାଣି ଆଈ ।

ତେବେ, କ'ଣ କହୁଛ ? ଅଜାବୁଢ଼ାର ହାତ ଧରୁ ?

ସଉତୁଣୀ ଖୋଜୁଛ ଯେବେ— ।

ନାହିଁ ଲୋ ମା ।

ସେଇ ଆଈବୁଢ଼ୀ କହନ୍ତୁ, କାଳ କେମିତି ବଦଳିଲା ଲୋ ଭଉଣି ! ଆମ ଅମଳରେ ଝିଅବୋହୂମାନେ ଓଢ଼ଣା ଟେକି ପଦାକୁ ଟିକେ ଚାହିଁବାକୁ ସାହସ କରୁ ନ ଥିଲେ ।

ମେ ବୋହୂଟି କହୁଛି, ଶୁଣ ମ ଝିଅ! — । ସେ ଝିଅଟି କହୁଛି, ଗୀତ ଶିଖେଇ ଦେବ ଘର କମଳନାନୀ । ସେମିତକା ବୋହୂଟିଏ ଲଢେଇ ଜଳେଇ କହୁବେ ଶୁଣିଲଣି ନୂଆମାଉସୀ – ସେ ପୁଣି ଆଈ ତାକୁ ଶୁଣିବ । ତଥାପି ମନଟା ତାର ରହୁଥିବ ଦମୟନ୍ତୀ, ବଜ୍ରହୁଣୀ, ପୁରନ୍ଦିଳକାନୀ – । ନ ଆସନ୍ତୁ ସେ । ଚିନ୍ତା ନାହିଁ ।

ଆଜ୍ଞା ଅନୁଭବ କଲା, ସତେ ଯେପରି ସେ ଆଈବୁଢ଼ୀ ହୋଇଛି । ଶେଷ ନିଶ୍ୱାସ କେବେ ଗ୍ରହଣ ସେଇ କଥା ହିଁ ଚିନ୍ତା କରୁଛି । ତା' ପରେ ସେ ହୋଇ ରହିବ ସେଇ କାନ୍ଥରେ ଛବି —ନଳ-ଦମୟନ୍ତୀ ! ଆଜ୍ଞା ସ୍ତବ୍ଧ ରହିଲା ।

ବଲ୍‌ବ ଆଲୁଅରେ ରଙ୍ଗୀନ ଛବିଟି ଝଲସି ଉଠୁଛି । ଦମୟନ୍ତୀ ନିଦ୍ରାରେ ଅଚେତନ । ନଳରାଜା ଛାଡ଼ି ପଳାଉଛନ୍ତି । ସେ ଚଉକି ଘୁଞ୍ଚାଇ ଟେବୁଲ ପାଖରୁ ଉଠି ଆସିଲା । ଅନାଇ ରହିଲା ଛବିଟିକୁ । ଦୃଷ୍ଟି ବୁଲାଇଲା । ଆହୁରି ଅନେକ ସୁନ୍ଦର ସୁନ୍ଦର ଛବି କାଚ ବନ୍ଧା ହୋଇ କାନ୍ଥରେ ଟଙ୍ଗା ହୋଇଛି । ବିସର୍ଜିତା ଜନକତନୟା — ଭାଗୀରଥୀ ତପୋବନ । ଦଶମସ୍ତକ ଅଗ୍ରଜ ଆଜ୍ଞାବହ ସୌମିତ୍ରୀ । ଅକ୍ରୂରର ରଥରେ ବସିଲେ ରାମକୃଷ୍ଣ ବେଶ ଭାଇ । ଯଶୋଦା, ରାଧା ଓ ଅନ୍ୟ ଗୋପଗୁଆଳୀଙ୍କର ରୋଦନ । ଚାଲିଯାଉଛନ୍ତି ସିଦ୍ଧାର୍ଥ, ନିଦ୍ରାରେ ଅଚେତନ ଗୋପା ।

ଏ ସବୁ ଛବି । ପୁରାଣ ଓ ଇତିହାସର କଥା । ଚିତ୍ରକର ଆଖିରେ ସେମାନଙ୍କୁ ଦେଖି ନାହିଁ । ତା'ର ଅନ୍ତର୍ଦୃଷ୍ଟି ସେମାନଙ୍କୁ ଅତି ନିକଟରେ ଦେଖିଛି । ଭୂତ ଅତୀତ ଜୀବନ୍ତ ହୋଇଛି । ବିରହର ଛବି ଅଙ୍କିଛି ସେ ଚିତ୍ରକର । ବିରହରେ ଆଗରେ ଓ ପଛରେ ଲମ୍ବି ରହିଛି ଯେଉଁ ଇତିହାସ ସେ ତାକୁ ଦର୍ଶକର କଳ୍ପନାରେ ଛାଡ଼ିଛି । ଚିତ୍ରକରର ସେଥିରେ ସମ୍ପର୍କ ନାହିଁ । ତା' ଚକ୍ଷୁରେ ବିରହ ହିଁ ମନୋରମ, ପ୍ରାଣଅସ୍ଥିର ମଧୁର ସଙ୍ଗୀତ, ଜୀବନ୍ତ ଓ ଚିରନ୍ତନ । ସେମାନେ ଚିରକାଳ ତରୁଣ-ତରୁଣୀ । ସେମାନେ ପୁରାଣ । ସେମାନେ ଇତିହାସ ।

Digitized by PPRACHIN, SOA

ଆହୁତ ପୁରାଣ ନୁହେଁ । ସେ ଅଜଯାତ ହେଉଥିବା ଶିଶୁ, କଶୋଣ, ଯୁବତୀ,— । ସେଇଠୁ ? ଅଶ ଉଠିଲ ସାଗ ଦେହ । ଟଳି ଟଳି ଭାନୁ ପାଖରୁ ପଛେଇ ଆସିଲ । ଆଲମାରୀ ଖୋଲିଲ । ମଝି ଥାକର ପୁସ୍ତକ ଗହଳରେ କେତେଗୁଡ଼ାଏ ଆଲବମ୍ ରଖାହୋଇଛି । ବାଛି ବାଛି ଟାଣିନେଲ ଗୋଟାଏ । ଚଉକରେ ବସି ପୃଷ୍ଠା ଓଲଟାଇଲ । ଏଇ ଆଲବମ୍ରେ ସେ ସଜାଇ ରଖିଛି ନଜର ଫଟୋଗୁଡ଼ାକ ।

ଏଇ ତା'ର ମା । କ ସୁନ୍ଦର ରୂପ ! ସତେ କ ଓହ୍ଲାଇ ଆସିଛନ୍ତି ଅଳକା-ପୁରରୁ । ପାଖରେ ହସ ହସ ହୋଇ ଠିଆ ହୋଇଛନ୍ତି ଯେଉଁ ସୁନ୍ଦର ବଳିଷ୍ଠ ପୁରୁଷ ସେଇ ତା'ର ପିତା, ଯାହାଙ୍କୁ ସେ କେବେହେଲେ ଆଖିରେ ଦେଖିନାହିଁ । ଶୁଣିଛି, ସେତେବେଳେ ସେ ଥିଲ ଜନନଙ୍କ ଜଠରରେ ।

ଦୁଇ ବର୍ଷର ଆକୁଳ ଆକୁଳ ଚନାକଣ୍ଠେର ଫର ଝିଅଟି ମାଆଙ୍କର କୋଳରେ ଝୁଲୁଛି । ହାତରେ ଧରିଛି ଗୋଟା ପାର୍ଟିର କଣ୍ଠେର ପୁଅ, ବର୍ଷକର ପିଲଟି ପର ହେବ ।

ଫ୍ରକ୍ ପିନ୍ଧି ସାତ ବର୍ଷର ଝିଅଟିଏ ଯାନ ସ୍କୁଲଟିର ହାତଧର ଗୋଲାପ କୁଣ୍ଡର ଅର୍ଦ୍ଧବୃତ୍ତ ଭିତରେ ଠିଆହୋଇଛି ।

ଚଉଦ ବର୍ଷର ତରୁଣୀ ପଞ୍ଜାବୀ ଝିଅଟି ପରି ।

ସାଇକେଲ ଉପରେ ବସି, ପଥର ଉପରେ ଗୋଡ଼ଭର ଦେଇଛି । ହାତରେ ଟେନସ୍ ରକେଟ୍ ।

ପଦକର ମାଳ ଝୁଲୁଛି ସେଇ ଯୁବତୀର ବେକରେ । ସେ ଉର୍ବଶୀ, ହେଲେନ୍, ଦମୟନ୍ତୀ— ।

କନ୍‌ଭୋକେସନ୍ । ଡ଼ିଗ୍ରୀ ଆଣିବାକୁ ଯିବ ।

ଗ୍ରାଜୁଏଟମାନଙ୍କ ମଝିରେ ଶିକ୍ଷୟିତ୍ରୀ ।

ରୋଗଶଯ୍ୟା ପାଖରେ ଉପବିଷ୍ଟା ସେବିକା —ଦରିଦ୍ରର ଦରଭଙ୍ଗା କୁଟୀର, କେଉଁ ଦୂର ମୋଫସଲରେ ।

ସବୁ ସେ, ଆହୁତ ।

ଶେଷଚନ୍ଦ— ମଶାଣିରେ ଫୁଲମାଳରେ ମଣ୍ଡିତ ତା'ର ଅଚଳ, ଜୀବନହୀନ ଶୀର୍ଣ୍ଣ ବୃଦ୍ଧଶରୀର ।

ସେ ଜଣେ ସେବିକା ଥିଲେ । ଲୋକଙ୍କୁ ଭଲ ପାଉଥିଲେ । କାହାରି ସେ ଧାରୁଆ ହୋଇ ଯାଇ ନାହାନ୍ତି । ଆହା, ଚାଲିଗଲେଟି ଆମର, ଭଲ ଲୋକଟି ।

ମୁଠିଏ ପାଉଁଶ । ସେ ଉଡ଼ିବ ପବନରେ । ଧୋଇ ହୋଇଯିବ ପାଣିରେ ନଷ୍ଟ ହେବ—ଦେହ ଓ ନାମ ।

ଯେମିତ ନଷ୍ଟ ହୁଅନ୍ତି ତ ଦୁନିଆର ଲୋକେ, ନୂଆ ଲୋକଙ୍କ ପାଇଁ ସ୍ଥାନ, କର୍ମ ଓ ଅଭିଜ୍ଞତା ଛାଡ଼ି ଯାଆନ୍ତି ।

Digitized by PPRACHIN, SOA

ମଣିଷ-ସମାଜ ସୃଷ୍ଟି ହେଲା ଦିନରୁ ସେହିପରି କେତେ ନରନାରୀ କେତେ ଦେଶରେ ଆତ୍ମବଳି ଦେଇ ଭସ୍ମୀଭୂତ ହୋଇ ଯାଇଛନ୍ତି । କେହି ସେମାନଙ୍କୁ ମନେରଖି ନାହିଁ । ମନେରଖିବେ ବୋଲି ସେମାନେ କର୍ମରତ ହୋଇ ନ ଥିଲେ କି ଆତ୍ମତ୍ୟାଗ କରି ନ ଥିଲେ । କର୍ମ ପାଇଁ ହିଁ କର୍ମରେ ବ୍ରତୀ ହୋଇଥିଲେ । କର୍ମସାଧନ ହିଁ ଥିଲା ସେମାନଙ୍କ ଜୀବନର ପରମ ଆନନ୍ଦ । ଚଳନ୍ତି-ଦୁନିଆର ଲୋକଙ୍କର ଅନୁମୋଦନ କି ସମାଲୋଚନା ପ୍ରତି ସେମାନେ ଭ୍ରୂକ୍ଷେପ କରି ନ ଥିଲେ ।

ସେବା ଓ କର୍ମଦ୍ୱାରା ଯଦି ରଣଗଡ଼ର ମନ ବଦଳାଇ ପାରିଥାଏ କି ରଣଗଡ଼କୁ ନୂଆ ଯୁଗର ନୂଆ ଆଦର୍ଶରେ ଅନୁପ୍ରାଣିତ କରି ପାରିଥାଏ, ଆହୁତି ନିଜକୁ ଧନ୍ୟବାଦ ଦେବ ନାହିଁ । ଯେଉଁମାନେ ଅଜ୍ଞାତର ଅନ୍ଧାରକୁ ଦୂର କରି ସୁନ୍ଦର, ସୁଖର ଓ ଆଲୋକର ଦୁନିଆ ସର୍ଜନା କରିବାକୁ ଦୃଢ଼ ପରିକର ହୋଇ ଆଗେଇ ଚାଲିଛନ୍ତି, ସେଇମାନେ ହିଁ ଧନ୍ୟବାଦର ପାତ୍ର ।

ସେ କର୍ମୀ । ତା' ଆଖିରେ ରଣଗଡ଼ ଯେପରି, ଅନ୍ୟ ଗ୍ରାମ ମଧ୍ୟ ସେପରି । ରଣସିଂହଙ୍କର ପରିବାର ଓ ଅନ୍ୟ ପରିବାର ମଧ୍ୟରେ ତଫାତ୍ ନାହିଁ । ସୁସନ୍ଧ୍ୟା ତା'ର ସାନ ଭଉଣୀ । ରମା, ଉମା, ଚମ୍ପା, ସାବିତ୍ରୀ ମଧ୍ୟ ସେହିପରି ତା'ର ସାନ ଭଉଣୀ । ସୁସନ୍ଧ୍ୟାର ପତ୍ରର ଉତ୍ତର ସେ ଦେବ ନାହିଁ । କର୍ମକ୍ଷେତ୍ରକୁ ଫେରିଯିବାକୁ ସେ ହେବ ତତ୍ପର । ମନରୁ ଦମୟନ୍ତୀକୁ ସେ ଦୂର କରିବ । ତାହା ଗୋଟାଏ ବିକାର, ଗୋଟାଏ ଉତ୍ତେଜନା । ଅଜ୍ଞାତର ଖେଳକୁ ବାହୁନ ହେବା ଗୋଟାଏ ବଡ଼ମୂନା ।

ବିରହର ଧାରଣା ଓ ଅନିଶ୍ଚିତ ଭବିଷ୍ୟତରେ ପୁନର୍ମିଳନର ଉତ୍ତେଜନା ଆଣୁଛି ସେଇ ଛବିଟା । କର୍ମଯଜ୍ଞରେ ନିଜକୁ ଆହୁତି ଦେବାକୁ ସେ ପଣ କରିଛି । ତା' ମନରେ ଏପରି ଉତ୍ତେଜନା ପାଇଁ ସ୍ଥାନ ନାହିଁ । ବଜ୍ରବାହୁର ଆଦର୍ଶ ଦିନେ ତାକୁ କର୍ମର ପ୍ରେରଣା ଦେଇଥିଲା, କର୍ମଭୂମିକୁ ଟାଣି ନେଇଥିଲା । ସେ ସମୟ ଗଡ଼ିଯାଇଛି ।

ନଳରାଜା ଏବଂ ଦମୟନ୍ତୀଙ୍କର ପ୍ରେମ ଓ ବିଚ୍ଛେଦ ଅମର ହୋଇ ରହିଥାଉ । ପ୍ରେମିକପ୍ରେମିକାଙ୍କୁ ଆନନ୍ଦ ଓ ଦୁଃଖରେ ଅଭିଭୂତ କରୁଥାଉ । ଆହୁତି ପ୍ରେମିକା ନୁହେଁ, ଆହୁତି – କନ୍ୟା, ଭଗିନୀ, ଜନନୀ, ବୁଢ଼ୀଆଈ । ତା'ର ଜନନୀ, ଭଗିନୀ, କନ୍ୟା ଓ ନାତୁଣୀମାନେ ଚାହିଁ ବସିଛନ୍ତି, ଡାକ ଛାଡ଼ୁଛନ୍ତି ।

ସେ ଯିବ । ସୋମଗଡ଼ରେ କର୍ମକ୍ଷେତ୍ରରେ ଯୋଗଦେବ ।

ରାତି ଗୋଟାଏ । ଆହୁତି ମଣିଲା, ସେ ତା'ର ଉତ୍ତେଜନାକୁ ସୀମିତ କରି ପାରିଛି । ଲେଖିଥିବା ଚିଠି ଖଣ୍ଡି ଛିଣ୍ଡାଇଲା । ସୁସନ୍ଧ୍ୟା ପତ୍ରଟି ରଖିଲା ଟ୍ରଙ୍କରେ ।

Digitized by PPRACHIN, SOA

କାନ୍ଥ ପାଖକୁ ଉଠିଯାଇ ନଳଦମୟନ୍ତୀ ଛବିଟି ଓହ୍ଲାଇ ଆଣିଲା । ମୁହଁ ମଡ଼ାଇ ଟେବୁଲ ଉପରେ ରଖିଲା । ଆଉ ସେ ଯେଉଁଠି, କାଲି ସକାଳେ ଆଲମାରି ତଳେ ରହିବ ।

ପଲଙ୍କ ଉପରେ ବିଛଣା ଝାଡ଼ି ସଜାଡ଼ି ଦେଲା । ମଶାରି ଟଣାଇଲା । କାନ୍ଥ ପାଖକୁ ଯାଇ ସ୍ୱିଚ୍ ଟିପି ଆଲୁଅ ଲିଭାଇ ଫେରିଆସିଲା ପଲଙ୍କ ପାଖକୁ । ରାତି ଅଧିକ ହେଲାଣି । ଏଥର୍ ସେ ଶୋଇବ । ଘର ଭିତରେ ଟିଲ୍‌ବିଲ୍ ଅନ୍ଧାର । ଝରକା ବାଟେ ବାହାରକୁ ଚାହିଁଲେ ପର୍ଦ୍ଦା କଡ଼ରେ ଅଧା ଅସ୍ପଷ୍ଟ ପାତଳ ଅନ୍ଧାର ଦିଶୁଛି । ସବୁ ଶୂନ୍‌ଶାନ୍ । କେବଳ କାନ୍ଥଘଡ଼ିଟିର ଟିକ୍ ଟିକ୍ ଶବ୍ଦ କାନରେ ବାଜୁଛି । ନିଜ ଚିନ୍ତା ମନରେ ଆଣୁଛି କରୁଣଭାବ । ନିଃସହାୟତାର ଦାରୁଣ ଧାରଣା ମାରଣା ଅରଣା ମଇଁଷି ପରି ଗୋଜା ଗୋଜା ଶିଙ୍ଘ ନୁଆଁଇ ଆଖି ତରାଟି ଅନାଇଁ ରହିଛି । କେବେ ସେ ଗୋଡ଼ାଇ ଆସିବ । ଭୁଷିବ । ପିଠି ଉପରେ ବସିଛି ତା'ର ସମସ୍ୟା — ନିଷ୍ଠୁର କର୍କଶ ଚୁହାଁଣୀ । ମୁହଁଆଡ଼େ ଚାହିଁଲେ ଦିଶୁଛି ।

ନିଃସହାୟତା ଓ ମରଣ ! କେଉଁଠି ତା'ର ଦେହ, ମନ ଓ ଉତ୍ତେଜନା ଆଶ୍ରା ନେବ ? ମା ଓ ଭାଇ ଦିଶୁ ନାହାନ୍ତି ଆଗରେ । କେବଳ ସେମାନେ ନୁହନ୍ତି, ଦୁନିଆର ସମସ୍ତେ ହଜି ଯାଇଛନ୍ତି ଅନ୍ଧାର ଭିତରେ । କିଏ ତା'ର ଆଶ୍ରୟ, କିଏ ତା'ର ଅବଲମ୍ବନ ?

କିଏ ? କିଏ ?

ଡାକ ଶୁଭୁଛି ଆହତ । ଅସ୍ମାର ଡାକ କାନରେ ଶୁଭୁଛି କିଳିକିଳା ରଡ଼ି । ନିଜେ ସେ ବୁଝିଛି । ଦୁନିଆର ଆଉ କେହି ବୁଝିବେ ନାହିଁ ।

ଆଖିର ଲୁହ ପୋଛୁଲା ନାହିଁ । ମଶାରି ଟେକି ପଲଙ୍କ ଉପରେ ବସିଲା । ଗୋଡ଼ ଦିଓଟି ଲମ୍ବି ରହିଲା ତଳେ । ଥରୁଛି ଦେହଟା । ମନେ ହେଉଛି ଯେପରି ଗୋଟାଏ ଅଜଣା ଭୟଙ୍କର ଜୀବ ଛପି ଛପି ଖଟ ତଳକୁ ଆସିଲାଣି । ଗୋଡ଼ଧରି ଟାଣିବ । ସେ ଗୋଡ଼ ଉଠାଇଲା । ଏଥର ନିଶ୍ଚିନ୍ତ । ଏଇ ପଲଙ୍କଟି ତା'ର ଦୁର୍ଗ । ମଶାରି ତା'ର ପ୍ରାଚୀର । ଆଉ ଭୟ ନାହିଁ । ସେ ଏଥର ଶୋଇବ । ରାତି ପାହିଲେ କର୍ମକ୍ଷେତ୍ରକୁ ଫେରିଯିବ ।

ଆଖିରୁ ଲୁହ ପୋଛିଲା । ଅଶକ୍ତ ଦେହ ଲମ୍ବାଇଦେଲା ପଲଙ୍କ ଉପରେ । ସବୁ ଭାବନା ଦୂରେଇ ଯାଉ ମନରୁ । ସେ ନିର୍ବୋଧ । କିଏ ତା'ର ମନର ଭାବନା ଜାଣୁଛି ? ତା'ର ଅବାନ୍ତର ଚିନ୍ତା, କୋହ, ଅଭିମାନ, ଲୋତକ କାହାରି ଆଖିରେ ପଡ଼ୁନାହିଁ । ଲଫାପା ଭିତରେ ବନ୍ଦ ହୋଇଥିବା ଝଣ୍ଡିଏ ଚିଠିପରି ସେ । କେତେ ଚିଠି ଧରି ବୁଲୁଛି ପୋଷ୍ଟମ୍ୟାନ୍ । ସବୁ ସେ ବାଣ୍ଟିବ । କାଲି ପରି ସେ ବାଣ୍ଟୁଥିବ । ଚିଠି ଦେଇଗଲା—କେଉଁଠି ହସ, କେଉଁଠି କାନ୍ଦ, କେଉଁଠି ବିସ୍ମୟ, ବିରକ୍ତି, ମାନାଭିମାନ, ଆଶା, ଉତ୍ତେଜନା, ଲଜ୍ଜା, ଜିଜ୍ଞାସା, ପ୍ରତୀକ୍ଷା —, ମିଶାମିଶି । ପୋଷ୍ଟମ୍ୟାନ୍ ଜାଣେ

Digitized by PPRACHIN, SOA

ନାହିଁ । ଜାଣିବାକୁ ଆଗ୍ରହ ନାହିଁ । ଜାଣନ୍ତି କେବଳ ସେଇମାନେ ଯେଉଁମାନଙ୍କ ପାଖକୁ ଅସିଥାଏ ଚିଠାଉ ।

କିଏ ତାକୁ ପଢ଼ିବ ? କାହା ପାଇଁ ନିଜ ଭିତରେ ହସ କାନ୍ଦ, ବସ୍ତୁସ୍ୱ-ଚରିତ୍ର, ମାନଭିମାନ ଭରି ତା'ର ନାଗିନ୍ତୁ ଚିଠାଉ ଲେଖିଛୁ ? ସେ ତରୁଣ ଲେଖକ, ତରୁଣ କବି । ନିଜ ପାଇଁ ସେ ଲେଖେ । ନିଜର ସର୍ଜନାରେ ସେ ହଜିଯାଏ । ପ୍ରିଏ ତା'ର ପ୍ରେରଣା, ତାଆରି ପାଖରେ ଉତ୍ସର୍ଗ କରେ । ଅପାର ଆନନ୍ଦ ଅନୁଭବ କରେ ।

କିଏ ତା'ର ପ୍ରେରଣା ? ଆଉ ଅନ୍ୟ ନାହିଁ, ଏତେ କବିତା ରଚନା କରିଛି ନିଜ ଭିତରେ କାହା ପାଇଁ ? ସବୁ ତା'ଙ୍କୁ ହିଁ ସେ ଉତ୍ସର୍ଗ କରିବ ।

ଉତ୍ତେଜିତ ହୋଇ ଉଠି ବସିଲା ଆହୁତ । ଅଧା-ପାଗଳ ପରି ପଲଙ୍କ ଉପରୁ ଓହ୍ଲାଇଲା । ଟେବୁଲ୍ ଉପରୁ ଛବିଟି ଉଠାଇଲା । ଫେରିଗଲା । ମନ ଡାକ ଛାଡ଼ିଲା— ସବୁ କବିତା ଲୁଚାଇ ରଖିଛି ଏଇ ଛୁରି ଭିତରେ । ଶୁଣ ତମେ ଶୁଣ ! ଆଖି ବୁଜିଲା ।

ଆଗରେ ଠିଆ ବଜ୍ରବାହୁ । ପାଖରେ ହସହସ ସୁହାସିନୀ ! ଗେହ୍ଲେଇ କହୁଛି, ଘର ବାହୋଇଥା ସେ ଟୁମ୍ପାଅପା, ଠକ, ମିଛୁଆ । ତମେ ତା'କୁ କେବେ କଥା କହିବ ନାହିଁ, ମୋ' ଘଣ ।

ବୁଜିଲା ଆଖିକୋଣରୁ ଲୁହଧାର ଗଡ଼ିଆସିଲା ।

ସୁବ୍ରତ ମନେ ମନେ ପଦଟି ପଢ଼ିବାକୁ ଲାଗିଲା —

—ଏଥି ସହ ଥିବା ଚିଠିଟି ଦସ୍ତାବିଜ ଆପଣ ସୁବ୍ରତବାବୁଙ୍କୁ ଫେରାଇ-ଦେବେ । କହିବେ, ସଂସାରରେ ଯେତେ ସବୁ ଜିଅ ସବୁ ପୁଅଙ୍କ ଭିତରେ କେବଳ ଭ୍ରାତୃତ୍ୱ ଅନୁଭବ କରୁଥାନ୍ତେ ସୃଷ୍ଟି ଅଟକି ରହନ୍ତା, ଅଚଳ ହୁଅନ୍ତା । କହିବେ, କର୍ମ, ଯଜ୍ଞ, ଆହୁତ, ଏସବୁ କଥା ମୁଁ ବୁଝେ ନାହିଁ । ତିନି ବର୍ଷରୁ ଅଧିକ ହେବ ମୁଁ କେବଳ ତାଙ୍କର ଆଦେଶ ପାଳନ କରିଛି !

ହାତ ଗୋଡ଼ରେ ଶକ୍ତିଥିବା ଯାଏ କାହାରି ସାହାଯ୍ୟ ଲୋଡ଼ିବ ନାହିଁ । ଯେଉଁ ଦିନ ଜେଲ୍ ଭିତରୁ ପଦାକୁ ବାହାରିବ, ମୋ'ର ବାଟ ମୁଁ ସହଜରେ ଖୋଜିନେବି । ବନ୍ଧୁପୁର ଫେରିଗଲେ ମା, ଭାଇ ଓ ଅନ୍ୟ ସାଙ୍ଗସାଥୀମାନେ ମୋତେ ଫୋପାଡ଼ି ଦେବେ ନାହିଁ ।

Digitized by PPRACHIN, SOA

କହିଦେବେ ବଜ୍ରବାହୁଙ୍କୁ, ତାହାର ଉପରେ ମୋ'ର ରାଗ ଦ୍ୱେଷ ନା ମନ୍ଦ ଅଭିମାନ ନାହିଁ । ମୁଁ ତାହାରଠାରୁ କିଛି ଧାରି ନାହିଁ କି ତାହାରଠୁଁ କିଛି କେବେ ପାଇବାକୁ ଆଶା କରି ନାହିଁ ।—

ବଜ୍ରବାହୁ ବିସ୍ମିତ ହେଲା ନାହିଁ । ଯେଉଁ ପତ୍ରଟି ସେ ବହୁଦିନ ପୂର୍ବେ ଫୁଲଦାମୀକୁ ଲେଖିଥିଲା ସେଇଟି ସେ ଫେରାଇ ଦେଇଛି । ନିଜର ପତ୍ରକୁ ନିଜେ ପଢ଼ି ପଢ଼ି ସେ ଲଜ୍ଜିତ ହେଲା । ଇତିହାସ ଭୁଲିଥାଏ । ଯୁବଜୀବନରେ ଏମିତି ଖଣ୍ଡିଏ ପତ୍ର ସେ ଲେଖିଥିଲା ଆଉ ଜଣକୁ । କ'ଣ ସେ ଲେଖିଥିଲା ଆଜି ତା'ର ମନେ ନାହିଁ । କେବଳ ଏତିକି ମନେ ପଡ଼ୁଛି ଯେ ପତ୍ରଖଣ୍ଡି ଫେରି ପାଇଥିଲା । ଯିଏ ତାକୁ ଫେରାଇ ଦେଇଥିଲେ, କେଡ଼େ ସ୍ନେହରେ ବୁଝାଇଥିଲେ, ଛି, ଏପରି କେବେ ଆଉ ଲେଖିବ ନାହିଁ ବାପ, ଯୁବଜୀବନରେ ଏପରି ସ୍ୱଭାବ ଶୋଭନ ନୁହେଁ । ଏକା ସଙ୍ଗେ ପାଠ ପଢ଼ୁଛ ପରା, ଆହୁରି ତୁମର ଭଉଣୀ ।

ମୁଣ୍ଡ ନୁଆଁଇ ଘର୍ମାକ୍ତ ହୋଇ ସେ ଫେରିଆସିଥିଲା । ପତ୍ରଖଣ୍ଡି ଟିକି ଟିକି କରି ରାସ୍ତା କଡ଼ର ନର୍ଦ୍ଦମା ଭିତରକୁ ଫିଙ୍ଗି ଦେଇଥିଲା । ଆଗକୁ ଓ ପଛକୁ ଅନାଇଁ ବାରେଇ ହୋଇ କାନ ମୋଡ଼ି ହୋଇ ନିଜକୁ ସେ ଶାସନ କରିଥିଲା । ଦୁର୍ବଳ ମୁହୂର୍ତ୍ତର କର୍ମ । ଦୁର୍ବଳତା ଆଣିଥିଲା ମୁହୂର୍ତ୍ତିକର ଉତ୍ତେଜନା – ନିଜ ଭିତରେ ବିବସ୍ତ୍ର ନଗ୍ନତ୍ୱର ଉପଲବ୍ଧି ।

ଏ ପତ୍ରଟି ମଧ୍ୟ ଗୋଟାଏ ଉତ୍ତେଜନାର ଫଳ । ମନଗହନରେ ଲୁଚି ରହିଥିବା ଲଗାମ ଲଗା ଆକର୍ଷଣର ବିଳାପ । ତିନି ବର୍ଷର ସାନ୍ନିଧ୍ୟ ଏବଂ ଅଟକଳ-ଆଗ୍ରହର ମୁଖାପିନ୍ଧା ତରଳ-ଅତରଳ ବିକାଶ । ଆଦର୍ଶର ବନ୍ଧନରେ ବନ୍ଧାହୋଇ ଛଟପଟ ହେଉଥିବା କାମନାର ଓଢ଼ଣା ତଳର କଟାକ୍ଷ । ନିଜର ରୂପ ପ୍ରତିଫଳିତ ହୋଇଛି ସେହି ପତ୍ର ଖଣ୍ଡିକରେ । ବହୁଦିନ ପରେ ନିଜର ସେଦିନର ରୂପ ଦେଖି ସେ ଆଜି ଚମକି ଉଠୁଛି । ଫୁଲଦାମୀର ଉତ୍ତର ହିଁ କହିଦେଉଛି, ବଜ୍ରବାହୁର ଦୁର୍ବଳତା ସେ ଅନୁଭବ କରିଛି । ସେଇଥିପାଇଁ ଗୋଟିଏ ଦୁର୍ବଳ ମଣିଷର ସହାନୁଭୂତି ସେ ଲୋଡ଼େ ନାହିଁ ।

ସୁବ୍ରତ ପତ୍ର ଦୁଇଖଣ୍ଡି ପକେଟ୍‌ରେ ରଖିଲା । ଧନଞ୍ଜୟକୁ ଚାହିଁଲା । ଆଉ ଟେବୁଲ ପାଖରେ ବସି ସେ 'ଦାଗୀ' ପତ୍ରିକାର ଗୋଟିଏ ଫର୍ମାର ଫାଇନାଲ ପ୍ରୁଫ୍ ଦେଖୁଛି । ଏକାଥରେ ତନ୍ମୟ । ଆଜି ରାତିରେ ସବୁ ସେ ଶେଷ କରିବ । 'ଦାଗୀ' ଦୁଇ ଦିନ ପରେ ପଦାକୁ ବାହାରିବ । ଧନଞ୍ଜୟ କାର୍ଯ୍ୟବ୍ୟସ୍ତ । ଅନ୍ୟର ଭଲମନ୍ଦ କଥା ବିଚାର କରିବାକୁ ତା'ର ସମୟ ନାହିଁ ।

ରାତି ଆଠ ହେଲା । ପ୍ରେସର କାମ ବନ୍ଦ କରି ଦୁଇ ବନ୍ଧୁ ବସାକୁ ଫେରି-ଥିଲେ । ନିତ୍ୟକର୍ମ ସାରି ଧନଞ୍ଜୟ ପୁଣି ପ୍ରୁଫ୍‌ଧରି ବସିପଡ଼ିଲା । ଆଶା କରିଥିଲା, ବଜ୍ରବାହୁ ନିଜେ ଆସି ତା'କୁ ସାହାଯ୍ୟ କରିବ । ମନେ ପଡ଼ିଗଲା, ବନ୍ଧୁର

Digitized by PPRACHIN, SOA

ଅନୁପସ୍ଥିତରେ ସୁନ୍ଦରଗଡ଼ ଜେଲ୍‌ରୁ ପତ୍ରଖଣ୍ଡେ ତା'ର ଆସିଥିଲା । ଅରହିଏ ଆଖି ବୁଲାଇ ସେ ଖଣ୍ଡି ସେ ହାତ ବାକ୍‌ସରେ ସାଇତି ରଖିଥିଲା । ପତ୍ରଟି କାଢ଼ି ସୁବ୍ରତଙ୍କୁ ଦେଇ ସେ ତା'ର କର୍ତ୍ତବ୍ୟ ଶେଷ କଲା ।

ସୁବ୍ରତ ପାଖ ଚଉକିରେ ବସିଲା । ପଚାରିଲା, ଫୁଲଦାମ ଜଣେ ପରିଚିତ ନାହିଁ ସେ ?

ଧନଞ୍ଜୟ ମୁହଁ ଟେକିଲା, ହସିଲା । କହିଲା, ମୁଁ ଜାଣେ, ସେ ଖୁନୀ, ସେ ଦାଗୀ । ସେ ଦୁଇ ଜଣଙ୍କୁ ଖୁନ୍ କରିଛି । ଜଣଙ୍କୁ ବାହାରେ ଓ ଜଣଙ୍କୁ ଭିତରେ । ସେ ଦୁଇ ଜାଗାରେ ଜେଲ୍‌ଦଣ୍ଡ ଭୋଗ କରୁଛି—ସୁନ୍ଦରଗଡ଼ ଜେଲ୍‌ରେ ଓ ମୋ'ର ବନ୍ଧୁ ସୁବ୍ରତର ମନରେ । କେତେ ଦିନ ପରେ ସେ ଗୋଟିଏ ଜେଲ୍‌ରୁ ଖଲାସ ହେବ । ଆଉ ଜେଲ୍‌ରୁ ସେ କେବେ ମୁକ୍ତି ଲାଭ କରିବ, ମତେ ଜଣା ନାହିଁ ।

ବନ୍ଧୁବାନ୍ଧୁ ପକେଟରୁ ପତ୍ର ଦୁଇ ଖଣ୍ଡି କାଢ଼ିଲା । କିଛିଏ ଉତ୍ତେଜିତ ହୋଇ କହିଲା, ଆଉ ଜେଲ୍‌ରୁ ସେ ଆଜ ମୁକ୍ତିଲାଭ କରିବ । ଏଇ ଦେଖ୍ ।

ପତ୍ର ଦୁଇଟି ଚିରିଦେଇ ବାସ୍କେଟ୍‌ରେ ପକାଇଲା । ଧନଞ୍ଜୟ ବାଧା ଦେଲା ନାହିଁ । କହିଲା, ପତ୍ର ଭିତରେ ସେ ଲୁଚିରହି ନ ଥିଲା, ଲୁଚି ରହିଛି ସେ ତୋ'ର ଛାତି ଭିତରେ ଯେଉଁଠି ସେ ଖୁନ୍ କରିଥିଲା । କ୍ଷତଟା ନାଲିଆଲି ହୋଇ ପୋଡ଼ୁଛି । ହୃଦୟ ଗୋଟାଏ ନୁହେଁ, ଏମିତି କେତେ କ୍ଷତ । ସେ ସବୁ ଆପେ ଆପେ ଦିନେ ଭଲ ହୋଇଯିବ । ରହିବ ଶୁଖିଲା ଦାଗ । ମଣିଦାଘାଏ ମନେ ପଡ଼ୁଥିବ । ସେମାନେ ଆସୁଥିବେ, ପୁଣି ମୁହଁ ମୋଡ଼ି ହସିହସିକା ଚାଲିଯାଉଥିବେ । ଆଶା, ବ୍ୟର୍ଥତା ଓ ଅନୁଶୋଚନାରେ ବାନ୍ଧି ରହିଥିବୁ । ଛଟପଟ ହେଉଥିବୁ । କର୍ତ୍ତବ୍ୟ ପଥରେ ଆଗେଇ ଆଗେଇ ଅଟକି ରହିବୁ । ବିଚଳିତ ହେବୁ । ଅତୀତକୁ ବର୍ତ୍ତମାନ ଭିତରେ ଉପଲବ୍‌ଧି କରିବୁ । ପୁଣି ଗୋଟାଏ ଦାଗ, ପୁଣି ଗୋଟାଏ ସ୍ମୃତି । ଅତି ଅପ୍ରିୟ ହେଲେ ବି ନଗ୍ନ ସତ୍ୟ କଥା ଏ ବନ୍ଧୁବାନ୍ଧୁ ।

ସୁବ୍ରତ ରୁଦ୍ଧ ହୋଇ ଶୁଣିଲା । ଅନୁଭବ କଲା, ସେ ଗୋଟାଏ ବିରାଟ ଜେଲଖାନା, କେତେ ଫୁଲଦାମଙ୍କୁ ସେ ବନ୍ଦୀ କରି ରଖିଛି । ନାମଗୋତ୍ରଭିନ୍ନ ହେଲେ ବି ପ୍ରତିମାଗୁଡ଼ିକ ଏକା ଭଳି । କାହାର କେତେବେଳେ କାହିଁକି କିପରି ଆବିର୍ଭାବ ଓ ପ୍ରସ୍ଥାନ ସବୁ ଇତିହାସ ମନରେ ଲେଖାହୋଇ ରହିଛି । ପୃଷ୍ଠା ଓଲଟାଇଲେ ବନ୍ଦୀ ଆସି ଆଗରେ ଠିଆହୁଏ । ଘୃଣା ହୁଏ ନାହିଁ ମୁହଁକୁ ।

ସୁବ୍ରତ କହିଲା, ଶୁଣିବୁ କି ଫୁଲଦାମର ଇତିହାସ ? ମନରେ ତୋ'ର ଦୟା ହେବ ।

ଧନଞ୍ଜୟ କହିଲା, ମୁଁ ଅନୁମାନ କରିପାରୁଛି । ଜେଲ୍‌ରୁ ସେ ଯେତେବେଳେ ମୁକ୍ତ ହୋଇ ପଦାକୁ ଆସିବ, ଲଦିଥିବା ଇତିହାସକୁ ପଛ କରି ସେ ଚାଲିଯିବ । ଅତୀତ ଇତିହାସକୁ ଖୋଳି ତାଡ଼ି ପଦାକୁ କାଢ଼ିଲେ ତା'ର କିଛି ଲାଭ ହେବ ନାହିଁ । ନଆ ଓ

Digitized by PPRACHIN, SOA

ଉଜ୍ଜ୍ୱଳ ଇତିହାସ ସୃଷ୍ଟି କରିବାକୁ ସମସ୍ତଙ୍କର ଆଗ୍ରହ ହୁଏ । କିଏ ତା'ର ସେ ଆଗ୍ରହ ପୂରଣ କରିବ ? କିଏ ତା'କୁ ଜୀବନର ସାଥୀ କରି ଗ୍ରହଣ କରିବ ? ଅତୀତକୁ ପୋଡ଼ି ନୂଆ ଜୀବନ ଗଢ଼ିବାରେ ସାହାଯ୍ୟ କରିବ ? ମୁଁ ଜାଣେ, ତୁ ପାରିବୁ ନାହିଁ । ଏ ସବୁ ବିଷୟରେ ଉତ୍ତେଜନା ବି ଭଲ ନୁହେଁ । ଫୁଲଦାନୀ ନିଜର ସାଥୀ ନିଜେ ଖୋଜି ବାହାର କରିବ । ତା' ବିଷୟରେ ତୋ'ର ନିଶ୍ଚିନ୍ତ ହେବା ହିଁ ଶ୍ରେୟସ୍କର ।

ସୁବ୍ରତ କହିଲା, ବନ୍ଦୀପୁର ଗ୍ରୁଡ଼ବା ଆଡ଼ରୁ ସେଇ ପତ୍ରଖଣ୍ଡିକ ମୁଁ ଲେଖିଥିଲି । ତା' ପରେ ତା' ବିଷୟରେ କେବେ ମୁଁ ଚିନ୍ତା କରି ନ ଥିଲି । ନିଜର ପତ୍ର ପଢ଼ି ମୁଁ ବୁଝିପାରୁଛି କେତେ ନିର୍ବୋଧତା ଓ ନିର୍ବୁଦ୍ଧିତାର କାମ ମୁଁ କରିଥିଲି । ବୁଦ୍ଧିମତୀ ଫୁଲଦାନୀ ସେ କଥା ଜାଣିପାରିଛି । ମୋ'ର ଉତ୍ତେଜନା-ଜର୍ଜରିତ ପତ୍ରର ଉତ୍ତର ଯଦି ସେ ଲେଖିଥାନ୍ତା—ଜେଲ୍‌ରୁ ମୁକ୍ତ ହୋଇ ପଦାକୁ ଆସିଲେ ଅବଶ୍ୟ ଦେଖିବ ସୁବ୍ରତ ଭାଇ ହାତଧରି କର୍ମକ୍ଷେତ୍ରକୁ ଆଗେଇ ନେବାକୁ ଠିଆ ହୋଇଛନ୍ତି । ହାତ ଧରି ମୁଁ ପଛେ ପଛେ ଯିବି । କୁଆଡ଼େ ଯାଉଛୁ ପ୍ରଶ୍ନ ପଚାରିବି ନାହିଁ । କେଉଁ କର୍ମଯଜ୍ଞରେ ଆହୁତି ଦେବାକୁ ବାଟ ବଢ଼ାଇ ନେଉଛ ନିଅ, କଅଣ ମୁଁ କରିଥାନ୍ତି ଆଜି ଚିନ୍ତା କରି ପାରୁ ନି ।

ଧନଞ୍ଜୟ ପୁଣି କହିଲା, ଏପରି ଉତ୍ତର ଯଦି ସେ ଲେଖିଥାନ୍ତା, ତା'କୁ ମୁଁ ନିର୍ବୋଧ ଆଖ୍ୟା ଦେଇଥାନ୍ତି । ତଥାପି, ଆପେ ଆପେ ସମାଧାନର ଉପାୟ ତୋ' ମନକୁ ଆସିଥାନ୍ତା । ନ ଆସିଥିଲେ ତୋ' ପାଇଁ ତୋର ବନ୍ଧୁ ଧନଞ୍ଜୟ ତା'ର ସମାଧାନ କରିଥାନ୍ତା ।

ମହାରଥୀ ପଦାରେ ଠିଆ ହୋଇ ସବୁ ଶୁଣୁଥିଲା । ଧୀରେ ଧୀରେ ଭିତରକୁ ପଶିଲା । ଦୁଇ ହାତ ଯୋଡ଼ି କହିଲା, କେବେ ସେ ଖଲାସ ହେବ ବାବୁ ? ବର୍ଷକୁ କେତେ ଦିନ କାଟି ଯାଏ ସେ । ଜେଲ୍‌ର ବାବୁଙ୍କୁ ଲେଖିଲେ ସେ ଛଡ଼ାଇଦେବେ । ଫୁଲଦାନୀ ହେଉ କି ପିକ୍‌ଦାନୀ ହେଉ ଜଣେ ସ୍ତ୍ରୀ ଲୋକ ଆସିଲେ ରୋଷେଇ କାମଟା ଆଦରି ନିଅନ୍ତା । ମୁଁ ଅନ୍ୟ କାମ ଦେଖନ୍ତି ।

ବନ୍ଧୁ ଦୁହେଁ ମହାରଥୀଙ୍କ ମୁହଁକୁ ଚାହିଁ ହସିବାକୁ ଲାଗିଲେ । ଧନଞ୍ଜୟ କହିଲା, ମହାରଥୀ ଜଣେ ସହକର୍ମିଣୀ ଖୋଜିଲେଣି ! ସତେ ତା'ଙ୍କୁ ଅଧିକ କାମ ପଡ଼ୁଛି, ନିଶ୍ୱାସ ମାରିବାକୁ ବେଳ ନାହିଁ ।

ଅର୍ଜୁନ ଲାଜ ଲାଜ ହୋଇ ପଦାକୁ ବାହାରିଗଲା । କହିଲା, ଗୁଣ୍ଡୁଗୁଣ୍ଡୁ ହୋଇ, ନିଜେ ତ ତମେ ହଇରାଣ ହେଉଛ ବାବା, କାଲି କହିଲ ଆଜି ପୋଟଳ ଝୋଳରେ ନଡ଼ିଆ ପକା । କଷେଇଲି, ହାଣ୍ଡିଏ ପାଣି ଦେଇ ସିଝେଇଲି । ସବୁ ସିଝି ପଣା ହୋଇଗଲା, ନଡ଼ିଆ ଖଣ୍ଡ ଯେଉଁ ଟାଣକୁ ସେଇ ଟାଣ ।

ବନ୍ଧୁ ଦୁହେଁ ହସିଉଠିଲେ ।

Digitized by PPRACHIN, SOA

ଧନଞ୍ଜୟ କହିଲା, ସେ କଥାର ଆଲୋଚନା କରି ସମୟ ନଷ୍ଟ କରିବାର ଦରକାର ନାହିଁ । ବହୁ ବର୍ଷ ପରର ଚଳାପରି ବାର ଆଡ଼େ ବୁଲି ବୁଲି କେତେ ଅଭିଜ୍ଞତା ଯେନ ଫେରିଆସିଛୁ । ଅଭିଜ୍ଞତା ହିଁ ସାର । ବ୍ୟକ୍ତିବିଶେଷ ଅଭିଜ୍ଞତାର ପରିପୋଷକ । ସେମାନଙ୍କ ସମ୍ବନ୍ଧରେ ଚିନ୍ତା କରିବା କି ସେମାନଙ୍କର ସୁଖ ଦୁଃଖ, ଅବସ୍ଥା ଓ ଚଳନ ବିଷୟ ଭାବିବାକୁ କର୍ମୀର ଅବସର ନାହିଁ । ନିଜର ଭଲ ମନ୍ଦ କଥା ସେମାନେ ନିଜେ ବିଚାରିବେ । ଯେତିକି ସାହାଯ୍ୟ ଓ ଶିକ୍ଷା ଦିଆଗଲା ସେତିକି ଯଥେଷ୍ଟ । ଆଜିକାର କର୍ମୀର ପରିଧି ଭିତରେ ଯାହା କରିବା କର୍ତ୍ତବ୍ୟ ବୋଲି ମଣୁଛୁ ସେତିକି କର । ରଣଗଡ଼ ତୋ'ତେ ଅପେକ୍ଷା କରି ନାହିଁ; କିନ୍ତୁ ତୋ'ର ପିତାମାତା, ଭାଇଭଉଣୀ ହୁଏ ତ ଅନେଇଁ ରହିଛନ୍ତି । ଫେରି ଯା— ।

ସୁବ୍ରତ କହିଲା, ଫେରିବା ଆଗରୁ ଆଉ ଜଣଙ୍କ ସଙ୍ଗେ ସାକ୍ଷାତ କରି ଯିବାକୁ ଆଗ୍ରହ ହେଉଛି ।

ତେବେ ସେ ଅନାଇଁ ବସି ନାହାନ୍ତି !

ଆହୁତ ଦେବୀ ?

ଅନାହୁତ କହିଗଲା, ସେ ଦୁଇ ଦିନ ହେଲା ସୋମଗଡ଼ ବୁଲି ଗଲେଣି । ବୃକରି ଗ୍ରୁଡ଼ କଟକରେ ରହି କ'ଣ ଗୋଟାଏ କରିବେ ବୋଲି ଅନେକ ଦିନ ଯାଏ ଚିନ୍ତା କରୁଥିଲେ । ଶେଷକୁ ଫେରିଯିବାକୁ ହିଁ ମନକଲେ । ଯାଆନ୍ତୁ, ଭଲ ହୋଇଛି । ଯେତେଦିନ ଯାଏ ଉତ୍ସାହ ଅଛି କାମ କରନ୍ତୁ । ଶୁଣିଛି, ସେ ଲୋକପ୍ରିୟ ହୋଇ ପାରିଛନ୍ତି— ।

ଦେଖା ହୋଇ ନାହିଁ ?

କେହି ଆମେ ଆବଶ୍ୟକ ମଣି ନାହୁଁ ।

'ଦାବୀ' ପତ୍ରିକାରେ ଯଥାମତ ତାଙ୍କର ପ୍ରବନ୍ଧ ଓ ଗଳ୍ପ ପ୍ରକାଶ ପାଉଛି ଯେ— ।

ତାଙ୍କର ଗଳ୍ପ ଓ ପ୍ରବନ୍ଧ ସଙ୍ଗେ ମୋର ଯଥାମତ ସାକ୍ଷାତ ହୁଏ । ସୋମଗଡ଼ ଯିବା ଆଗରୁ ଯେଉଁ ଲେଖାଟି ସେ ପଠାଇ ଦେଇଥିଲେ, ତାଆରି ଫାଇନାଲ୍ ପ୍ରୁଫ୍ ମୋ ହାତରେ ଅଛି । ଠିକ୍ ତୋ'ରି ଲେଖାର ପରେ ସେଇଟି ଛପା ହେଉଛି । ତୋ' ପରି ସେ ମଧ୍ୟ ସାଧାରଣ ଜୀବନ କଥା ଲେଖନ୍ତି । ସବୁବେଳେ ଆଶାବାଦୀ । ଏ ପ୍ରବନ୍ଧଟି କିପରି ଅଲଗା ଢଙ୍ଗର । ଲୁଚିଲି ଲୁଚିଲି ଏଥିରେ ନିଜକୁ ସେ ପ୍ରକାଶ କଲା ପରି ଲାଗୁଛି ।

ସବୁଥିରେ ସେ ନିଜକୁ ପ୍ରକାଶ କରନ୍ତି ।

ତୁ ବି । ଅନ୍ୟମାନେ ବି । ଆଗରୁ ଜାଣିବାକୁ ଆଗ୍ରହ ହେଉଛି ତ ଧର୍ ଏ ପ୍ରୁଫ୍‌ଟା । ମୁଁ ଫାଇନାଲ୍ ପ୍ରୁଫ୍ ଧରୁଛି । ତୁ ପଢ଼ିବୁ— ।

ସୁବ୍ରତ ପ୍ରୁଫ୍ ଧରିଲା । ସେ ଜାଣେ ଧନଞ୍ଜୟ କୌଣସି କାମ ଅଧା ରଖେ ନାହିଁ ।

Digitized by PPRACHIN, SOA

ଝୁନୁଅପା ସୋମଗଡ଼ରୁ ପତ୍ର ଲେଖିଛନ୍ତି—ତମ ଚିଠି ଖଣ୍ଡି ମୁଁ କଟକରେ ପାଇଥିଲି ଗୋ ସନ୍ଧ୍ୟାରାଣୀ, କିନ୍ତୁ ଉତ୍ତର ଦେବି ଠିକ୍ କରି ପାରିଲି ନାହିଁ । ସେଇଥିପାଇଁ ତ ଡେରି ହେଲା । ବୃକଗ ଛାଡ଼ି କଟକରେ ରହିବାକୁ ମା ମତେ କହିଲେ । ମୁଁ ବି ଭାବୁଥିଲି ସେଇଆ କରିବି । କିନ୍ତୁ, ତମମାନଙ୍କର ନିର୍ମଳ ପବିତ୍ର ସ୍ନେହର ଡୋରି ପୁଣି ତମରମାନଙ୍କର ସେବା କରିବାକୁ ମତେ ଟାଣିଆଣିଲା । ମୁଁ କାମରେ ଯୋଗଦେଲିଣି । ଏତେ କାମ ବାକି ପଡ଼ିଛି ଯେ, ନିଃଶ୍ୱାସ ମାରିବାକୁ ବେଳ ନାହିଁ । ମୋ ସଙ୍ଗେ ମୋ' ମା ମଧ୍ୟ ସୋମଗଡ଼ ଆସିଛନ୍ତି । ତମ ଭାଇଙ୍କ ସଙ୍ଗେ କଟକରେ ଦେଖା ହୋଇନାହିଁ । ଖାଲି କାହାଠୁଁ ଶୁଣିଥିଲି, ସେ କଟକରେ ଅଛନ୍ତି । ତାଙ୍କୁ ଦେଖା କରିବାକୁ ମୁଁ କେବେ ଚେଷ୍ଟା କରିନାହିଁ । ତମର ବାପା ଓ ମା ଯେ ସମସ୍ତଙ୍କୁ ଆପଣାର କରିନେବେ ଏ କଥା ମୁଁ କେବେଠୁଁ ଜାଣିପାରିଥିଲି । ସେମାନଙ୍କର ମନର ମହତ୍ତ୍ୱ ମୁଁ ଅନୁଭବ କରିଥିଲି । ଯେଉଁଦିନ ମୁଁ ରଣକ୍ଷେତ୍ର ଯିବି, ଆଗ ସେମାନଙ୍କର ଗୋଡ଼ଧୂଳି ମୁଣ୍ଡରେ ମାରିବି ।

—ଖୁଡ଼ୀ ମୋ'ର ଫଟୋଟି ଚାହିଁପାରନ୍ତି ଏହା ମୁଁ କେବେ ଭାବିପାରି ନ ଥିଲି । ପିଲାଦିନର ଫଟୋ । ମୁଁ ସେତେବେଳେ କଲେଜ୍‌ରେ ପାଠ ପଢ଼ୁଥିଲି । ଥିଏଟରରେ ଯୋଗଦେବାକୁ ଖୁସି ଲାଗୁଥିଲା । ମୁଁ କେବଳ ଦମୟନ୍ତୀ ତ ହୋଇ ନ ଥିଲି, କେବେ କ'ଣ ହୋଇ ଷ୍ଟେଜ୍ ଉପରକୁ ବାହାରିଥିଲି ତା'ର ତାଲିକା ଦେଲେ ଅତି ଲମ୍ବା ହେବ । କଲେଜ ପାଠ ସରିଲା ଦିନରୁ ଆଉ ମୁଁ କେବେ ଜାଲ୍ ରୂପ ଧରିନାହିଁ । ଯେଉଁଠି ପହଞ୍ଚିଛି, ମୁଁ ଅକୃତ୍ରିମ ରୂପରେ ପହଞ୍ଚିଛି । ମୋ ଫଟୋଟି କାହିଁକି ଅନ୍ୟ ଘରେ ରହିବ ସେଇଥିପାଇଁ ତମକୁ ମୁଁ ସେଇଟି ମାଗୁଥିଲି । ଏଥର ଯେଉଁଦିନ ଯିବି ନିଶ୍ଚେ ମୋତେ ଦେବ ।

—ମୋ' ପାଇଁ ଆଉ ପିଠା ଖଣ୍ଡା କରିବ ନାହିଁ । ଯେଉଁ ଦରବ ମୁଁ ଖାଇବାକୁ ମାଗେ ତମ ଘରେ ସେ ଅପୂର୍ବ । ଦେଖିବ ବନ୍ଧୁ, ଦେଇପାରିବ କି ନାହିଁ । କଷ୍ଟୁରୀର ମା ଝରଣା ଭଉଣୀମାନେ 'ନାଗାକଲ୍ୟାଣ-ମନ୍ଦିର' ଖୋଲୁଛନ୍ତି ଯେ ସେମାନଙ୍କ ସଙ୍ଗେ ଯୋଗଦେବାକୁ କାଲି ମୁଁ ଯାଉଛି । ତମମାନଙ୍କ ପରି ସେମାନେ ମଧ୍ୟ ନାଗାଜାତିର କଲ୍ୟାଣ ପାଇଁ ବ୍ୟାକୁଳ ହେଲେଣି । ସବୁ ଗାରେ ତ ଆମର ମା' ଝରଣା ଭଉଣୀମାନେ ବୁଝି ସାରିଲେଣି—ଅଳସ, ଅନ୍ଧବିଶ୍ୱାସ, ଅଶିକ୍ଷା, କୁଶିକ୍ଷା, କୁସଂସ୍କାର ଓ ବାଦଚ୍ଛେଦ, ଭେଦର ଫଳ । ସେମାନେ କ'ଣ ଆଉ ପଛେଇ ରହିବେ କି ? ନାଇଁ ସୁସନ୍ଧ୍ୟା, ଆମେ ସମସ୍ତେ ଆଗେଇ ଚାଲିବା ।

Digitized by PPRACHIN, SOA

—କେବେ ଦେଶ ପାଇଁ ଯୁଦ୍ଧକୁ ଯିବି, ଦେଖିବ, ରଣଗଡ଼ର ପିଲା ସବୁ ତମେ ଆଉ କ କ କାମ ଶିଖି ସାରିଲଣି। ପୁଣି କହୁଛୁ, ସଂସାରରେ କୌଣସି କାମ ସାନ ନୁହେଁ କି ମନ୍ଦ ନୁହେଁ। ସବୁ ଆମେ କରିବାକୁ ପ୍ରସ୍ତୁତ ହେବା। ଯାହା କରିବା, ଉପକାର ପାଇଁ କରିବା, ମନ ପ୍ରାଣ ଦେଇ ଯତ୍ନକରି କରିବା।

ତମେ ସମସ୍ତେ ମୋ'ର ସ୍ନେହ ନେବ। ମୋ'ର ଅଈ, ମା ଭଉଜ, ଅପା-ମାନଙ୍କୁ ପ୍ରଣାମ ଜଣାଇଦେବ।—

ଗ୍ରାମସେବକ ଭଗବାନ ଭାଇ ସୋମଗଡ଼ ଯାଇଥିଲେ। ସେଇଟି ବ୍ଲକ୍ ଅଫିସ। ସବୁ ବଡ଼ ବଡ଼ କର୍ମଚାରୀମାନେ ସେଇଟି ରହନ୍ତି। ଗାଁଗଣ୍ଡା ବୁଲି ଲୋକଙ୍କର ସୁବିଧା-ଅସୁବିଧା କଥା ବୁଝନ୍ତି। ଲୋକଙ୍କୁ ନୂଆ ନୂଆ କାମ କରିବାକୁ କହନ୍ତି। ନିଜେ ସେମାନେ ସାହାଯ୍ୟ କରନ୍ତି। ବେଳ ପଡ଼ିଲେ ନିଜେ କାନ୍ଧ ଲଗେଇ ଦିଅନ୍ତି।

ନୂନିଅପା ଭଗବାନ ଭାଇଙ୍କ ହାତରେ ପତ୍ରଖଣ୍ଡି ପଠାଇ ଦେଇଛନ୍ତି। ଆସିବେ ବୋଲି ତ ଲେଖିଛନ୍ତି।

ଦ' ପହର। ବୁଢ଼ୀ ନୂଆମା ପଲଙ୍କ ଉପରେ ଶୋଇଛନ୍ତି। ଚମ୍ପା ଗୋଡ଼ ଘଷିଦେଉଛି। ହନ୍ଧ୍ୟା ଡୋଡାଳ ଉପରୁ ଧାଇଁ ଆସି ଆଗ ଚିଠିଖଣ୍ଡି ବୁଢ଼ୀଆଈଙ୍କ ଆଗରେ ଥୋଇଲା। ଖୁସି ହୋଇ କହିଲା, ବନ୍ଦ, ଏଥର କୁଆଡ଼େ ଯିବୁ, ନୂନିଅପା ଆସିଲେ ନିଶ୍ଚେ ତତେ ସୂତା କଟେଇବ, ପାଠ ପଢ଼ିବାକୁ କହିବ। କେମିତି ମୋ' ଉପରେ ରଗେଇଖଦେଇ ହେଉଥିଲୁ, ଦେଖିବ।

ନୂଆମା ଚହଁକି ଉଠିଲେ। ଆଦୁଡ଼କୁ ସେ ଶତ୍ରୁ ବୋଲି ମଣନ୍ତି। ତା ଢଙ୍ଗ ବୁଢ଼ୀଙ୍କ ଆଖିକୁ ସୁଖ ଲାଗେ ନାହିଁ। ସେଇ ଆସି ଏ ଗାଁରେ ଗୋଡ଼ଦେଲାରୁ ସବୁ ଉତ୍ପାତ ସୃଷ୍ଟିହେଲା। ପୁରୁଣା କଥା, ବାପ ଅଜାଙ୍କ ଅମଳର ସଣୁଶା ହଜିଗଲା। ବଡ଼ ସାନ ଜାତି ମିଶି ଏକାକାର ହେଲେ। ଦେଖ ତ ଢଙ୍ଗ, ଛୁଆଁ ଅଛୁଆଁ ଉଠିଗଲାରୁ ପିନା ହାଡ଼ି, ବାଉରି, କୋଣ୍ଡ, ସାନ୍ତାଳ ସମସ୍ତେ ଗୋପୀକୃଷ୍ଣଙ୍କ ମନ୍ଦିରରେ ପଶି ସେବାପୂଜା କଲେ। ସେମାନେ ସଫାସୁତୁରା ହେଲେ। କିନ୍ତୁ, ଦେଖ ତ ବହପ, ଠାକୁରଙ୍କ ମନ୍ଦିର ଭିତରେ ମୁସଲ୍‌ମାନ, ଖ୍ରୀଷ୍ଟାନ ପଶି ପୂଜା ଦେଖିଲେ। ପ୍ରସାଦ ପାଇଲେ! ଏଇଟା କି ଧର୍ମ ହେଲା?

ବୁଢ଼ୀ ନାକ ଟେକିଲେ। ଅଜିମ୍ ଖାଁ ଓ ସାମୁଏଲ୍ ସାହୁ ଆସିଥିଲେ ଯେ ନିଜେ ବୁଢ଼ୀ ପଚାରିଥିଲେ, ଏ କି ଅଧର୍ମ କାମ କଲ ରେ ପିଲାଏ?

ଅଜିମ୍ କହିଲେ, ଠାକୁର ମୂର୍ତ୍ତି ପୂଜା କରିବା ଆମ ଧର୍ମରେ ନାହିଁ ମା। ଠାକୁରଙ୍କ ଉପରେ ଦୃଢ଼ବିଶ୍ୱାସ ଯେ ସବୁ ଧର୍ମର ମୂଳକଥା। ଆମ ହିନ୍ଦୁ ଭାଇମାନେ ସେଇ ବିଶ୍ୱାସକୁ ମୂର୍ତ୍ତି କରିଆରେ ପୂଜା କରୁଛନ୍ତି। ଆମ ଭାଇମାନଙ୍କର ବିଶ୍ୱାସ

Digitized by PPRACHIN, SOA

ଉପରେ ଆମର ବିଶ୍ୱାସ ଅଛି । ଭଗବାନ୍ ସମସ୍ତଙ୍କର—ସେ ଜଣେ, ସେ ସମସ୍ତଙ୍କର ପିତା ।

ବୁଢ଼ୀଙ୍କର ମନ ମାନିଲା ନାହିଁ । ମୁହଁ ମୋଡ଼ି ଦେଇ ସେ ଚାଲି ଆସିଲେ । ଯେଉଁଦିନ ପୁଣି ଶୁଣିଲେ, ଗାଁ ପିଲାଏ ଇଦ ପର୍ବକୁ ମୁସଲମାନ୍‌ମାନଙ୍କର ଧର୍ମମନ୍ଦିର ମସ୍‌ଜିଦ ଭିତରେ ପଶି ସେମାନଙ୍କ ସଙ୍ଗେ ପ୍ରାର୍ଥନା କଲେ, ବୁଢ଼ୀଙ୍କର ମନ ମରିଗଲା । ପଚାରିଲେ, ଅଭିନବ ରଣସିଂହଙ୍କୁ, ଆରେ ଧନସମ୍ପତ୍ତି ଜମିବାଡ଼ି ସିନା ଦେଲ, ନିଜର ଧର୍ମକୁ ଦେଇ କ'ଣ ପଠାଣ, ଖ୍ରୀଷ୍ଟାନ ହେବ କିରେ !

ରଣସିଂହେ କହିଲେ, ପୁରୁଣା କାଳ ଓ ପୁରୁଣା ଧାରଣ ଗଲାଣି ନୂଆମା । ଧନସମ୍ପତ୍ତି କି ଜମିବାଡ଼ି ଗାଁ ଛାଡ଼ି କୁଆଡ଼େ ପଳେଇ ଯାଉ ନାହିଁ । ସେଗୁଡ଼ା ସବୁ ଅକାମୀ କରି ଅଟକାଇ ରଖା ହୋଇଥିଲା । ଏବେ ସେ ସବୁ କାମରେ ଲାଗୁଛି । ସମସ୍ତେ ଭୋଗ କରୁଛନ୍ତି । ସୁବ୍ରତ, ସୁବ୍ରତ ଓ ତାଙ୍କର ପୁଅନାତିମାନେ, ଗାଁର ସବୁ ପୁଅନାତିଙ୍କ ସଙ୍ଗେ ମିଳିମିଶି ଭୋଗ କରିବେ । ସୁଖରେ ରହିବେ । ମନ୍ଦିର ଆମର, ମସ୍‌ଜିଦ୍ ଓ ଗୀର୍ଜା ବି ଆମର । ଯା'ର ଯେପରି ବିଶ୍ୱାସ, ସେ ସେପରି ପୂଜା କରୁଛି । ଆମ ସମସ୍ତଙ୍କ ବିଶ୍ୱାସକୁ ଆମେ ସମସ୍ତେ ସମ୍ମାନ କରୁଛୁ । ନୂଆମା, ଗୋଟିଏ କୁଟୁମ୍ବରେ ଯେତେ ଲୋକ ରହନ୍ତି, ସମସ୍ତଙ୍କର ରୁଚି ତ ଗୋଟିଏ ନୁହେଁ, ସମସ୍ତେ କିପରି ମିଳିମିଶି ଚଳନ୍ତି । ସମସ୍ତଙ୍କର ସୁବିଧା ଅସୁବିଧା ସମସ୍ତେ ଉଦାରଭାବ ସହିତ ବୁଝନ୍ତି ! ସେମିତି ଆମର ଗାଁ, ସେମିତି ଆମର ଦେଶ ।

ହାତ କ'ଣ ଗୋଡ଼ ହେବ, ଆଖି କ'ଣ କାନ ହେବ କି ବାପ ? ପୁଣି ଡାହାଣ ହାତ, ବାଁ ହାତର କାମ ବି ଅଲଗା । ଗୋଟାଏ ହାତ ଅମୃତ ଧରେ, ଆଉ ହାତଟା ନରକ ଧରେ । ନୁହେଁ କି ବାପ ?

ସତ ନୂଆମା, ହେଲେ ଦେହର ଯେଉଁ ଅଙ୍ଗ ଯାହା କରୁ ସବୁ ତ ଏଇ ଶରୀର ପାଇଁ, ମଣିଷର ଜୀବନ ପାଇଁ, ଜୀବନର ସୁଖସ୍ୱଚ୍ଛନ୍ଦତା ପାଇଁ, ଆନନ୍ଦ ପାଇଁ । ଦେହର ପ୍ରତ୍ୟେକ ଅଙ୍ଗ, ଅନ୍ୟ ସବୁ ଅଙ୍ଗର ଉପକାର ପାଇଁ କାମ କରନ୍ତି । ସେମିତି ଆମର ଗାଁ, ସେମିତି ଆମର ଦେଶ । ମୋ'ର ସୁବ୍ରତ, ମୋ'ର ସୁବ୍ରତ, ପୁଣି ଧର୍ମାନନ୍ଦ ଆହୁରି ଏ କଥା ଭଲ କରି ବୁଝିଥିଲେ । ଆମକୁ ବୁଝିବାକୁ ଡେରି ଲାଗିଲା । ତମକୁ ବୁଝିବାକୁ ଆଉ ଟିକେ ଡେରି ଲାଗିବ ।—

ନୂଆମାଙ୍କର ମନ କହିଲା, ମରିକରି ଆଉ ଥରେ ଜନମ ଲଭିଲେ କେଜାଣି ବା ସେ ଏସବୁ ବାଇଆ କଥା ବୁଝିବେ । ଏ ଜନ୍ମରେ ସେ ଖାଲି ଏତିକି ବୁଝିଲେ ଯେ—ଧନସମ୍ପତ୍ତି ଜୁର ହେଲା । ମାନମହତ ଯୋଡ଼ି ପାଉଁଶ ହେଲା, ତା'ସାଙ୍ଗକୁ ଧର୍ମ ବି ଉଡ଼ିଗଲା । ଏଥିପାଇଁ ଆଗ ଦାୟୀ—କୁଳାଙ୍ଗାର ସୁବ୍ରତ, ଧର୍ମଛଡ଼ା ଧର୍ମାନନ୍ଦ, କୁଳର କଳଙ୍କ ସେଇ ସୁବ୍ରତ—ଗାଁ ଓ ଘର ଛାଡ଼ି ବିଦେଶକୁ ପଳେଇ, ରଜାପୁଅ ହୋଇ ନ କଲା କାମ ସିଏ କରୁଛି, ଦୁବରେ ଆଉଁ ନଆଁବାଣ ସବୁ ଛଟି ଖଣ୍ଡେ ଖଣ୍ଡେ

Digitized by PPRACHIN, SOA

ଲେଖି ଗୋ ଲୋକଙ୍କ ମନେଇ ଦେଉଛୁ, ଗାଁକୁ ପକାଉଛୁ ଉଠାଉଛୁ ତ ! କାହିଁ ଆଇଲର ସେଇ ସତ୍ୟାନାଶୀ ଟୋକୀ—ଚନ୍ଦନାମା ନା ଚନ୍ଦନାମା— ।

ହଁ, ଚନ୍ଦନାମା ସେଇଟା । ଜନ୍ମରୁ ନାଁ ପଡ଼ି ଥରକୁ ଥର ଆଉଚ, ସବୁ ଘୃଣା କଥା, ଭଲ କଥା, ନାରୀସୁଲଭ ସମ୍ମାନ କଥା ପୋଡ଼ି ଦେଇଯାଉଛୁ । କି ରୂପ ଲୋ ମା, ସତେ କି ଜନ୍ମୁଛୁ ତ । ସତେ ସେଇଟା ଆଦୃତ । ଗାଁର ଝିଅ-ବୋହୂ, ବୁଢ଼ୀ ଦଦବୁଢ଼ୀ, ଟୋକୀ. ପିଲା ସମସ୍ତେ ତା' ନାଁରେ ପୋକ ପତଙ୍ଗ ପରି ଜଳି ହୋଇ ମଲେଣି । ତା'ଆଖି ଦ'ଟା କେଡେ ତେଜଆ ! ସତେ କି ହସୁଛି. ସତେ କି କଥା କହୁଛି । ମୋହନମଣକୁ ରଖିଛୁ ଲୋ ମା— !

ଯଇଥିଲା ଭଲ ହୋଇଥିଲା. ବେଶିଛୁ. ପୁଣି ଆଇଲାଣି । ଲେଖିଛୁ, ପୁଣି ଏଠିକି ଆସିବ । ସରଗଲା କଥା । ଅଟୋଘାରଦୂଆସ୍ତି ହାଟୁଆ ବାଟୁଆ ସବୁଘର ଝିଅ ବୋହୂ, ଚଢ଼ା ଗୁମ୍ଫ ସୁନ୍ଦା ପକେଇଲେ, କାନରେ ଖଣ୍ଡେ ଖଣ୍ଡେ କି ବେକରେ ଗୋଟାଏ ହାର କି ସୂତା ଛଡ଼ା ସବୁ ଗହଣା ଉଚାଲେ । ଦେହରେ ଜାମା ଅଣ୍ଟାରେ ଜାମା । ଚହୁଣି ଯାକେ ସେଉଁ କଂସା ପିତଳର ଗହଣା, ସେ କୁଆଡ଼େ ଗଲା । ହାତରେ ପିନ୍ଧିଲେଣି ସୁନା କି ରୂପାର ସରୁସରୁ କାଚ । ଆଗେ ଲୁଗାରେ ନାଁ ଲଗାଇଲେ ନାଁ ଧରୁ ନ ଥିଲା, ଯୂଲଯାଉଥିଲେ ଭଣଭଣ ଗନ୍ଧ ଗୁଡ଼ୁଥିଲା । ଏବେ ସମସ୍ତେ ପିନ୍ଧିଲେ ସଫା ଲୁଗା । ଧୋବା ହାତକୁ ଅନେଇଁ ବସି ନାହାନ୍ତି । ଗାଁରେ ମହଣ ମହଣ ସାବୁନ୍ ସେଇମାନେ କରୁଛନ୍ତି । ସିଲେଇ କଳରେ କଜେ ସିଲେଇ କରି ପକାଉଛନ୍ତି । ଚରଖା ଧରି କଜେ କଜେ ସୂତା କାଟୁଛନ୍ତି । ଓଢ଼ଣା ଗୁଡ଼ିଲେ । ପାଠ ପଢ଼ିଲେ, ଗୀତ ବୋଲିଲେ । ନାଚିଲେ । ପୁଣି ସଭା ସମିତି କଲେଣି ।

ଲେଖିଛୁ ଯେ ସତ୍ୟାନାଶୀ, ସଂସାରରେ କୌଣସି କାମ ଶ୍ରେଷ୍ଠ ନୁହେଁ କି ମନ୍ଦ ନୁହେ । ପଢ଼ୁଛୁ, କି କି ନୂଆ କାମ ଶିଖିଲଣି । ଆସିବ, ପୁଣି କେଉଁ କାମ କରିବାକୁ ମନେଇବ । ରଜାର ଝିଅ, ରଜାର ରାଣୀ ଦଦବୁଢ଼ୀ ମମତା ଯାହାଙ୍କ ଦେହରେ ସୂର୍ଯ୍ୟକିରଣ ପଡ଼ୁ ନ ଥିଲା, ସେ ଘର ଘର ବୁଲୁଛନ୍ତି । ଯାହାଙ୍କ ଦେହରେ ଅଗରୁ ଚନ୍ଦନ ବୋଳା ହେଉଥିଲା, ସେ ପୁଣି ଧୂଳି ବୋଳିହୋଇ ଆସି ଭଲେଇ ହେଇ କହୁଛନ୍ତି, ନକୁଳ ସାହୁଙ୍କର ନାତିଟି ମ ନୂଆମା, କେଡ଼େ ସୁନ୍ଦର ହେଇଛି । କୋଳକୁ ନେଲି ଯେ ମୋ ନାକକାନ ଓଟାରି ପକେଇଲା—

ଛି— ।

ସେମିତି କହ ନା । ମୋ ପୁ ବ୍ରତର ପୁଅ ହେଲେ ସେ ବି ସେଇଆ କରିବ । ଚନ୍ଦନ ଅଗରୁ ପଙ୍କରେ ପଡ଼ିବ ।

ବୋହୂ ବାଛିଲଣି ?

ସେ ବାଛୁଛନ୍ତି । କହୁଛନ୍ତି—ଏମିତିକା ବୋହୂ ମୋ'ର ଲୋଡ଼ା । ଦେଖିବ ? କହ—

Digitized by PPRACHIN, SOA

କେଡ଼େ ଖୁସି । କେଡ଼େ ତରତର । ଲୁଗା ବଦଳା ହୋଇ ନାହିଁ । ଧାଇଁ ଯାଇ ଫଟୋ ଖଣ୍ଡେ କେଉଁଠୁ ଟାଣିଆଣିଲେ । ନୂଆମାଙ୍କୁ ଦେଖାଇ ପଚାରିଲେ, ଦେଖ ତ ସ୍ନେହ କିଏ ?

ସୁବ୍ରତଙ୍କୁ ମୁଁ ଚହ୍ନିପାରିବି ନାହିଁ ଯେ ପଚାରୁଛ ?

ଆଉ, ସ୍ନେହ, କେମିତି ଝିଅଟି କହୁଲ ?

ଖୁବ ସୁନ୍ଦର । ଭ୍ରୂଲତା ଦିଓଟି ଯେତେ କି କିଏ ତୂଳୀରେ ଆଙ୍କିଛି । ଆଖି ଦିଓଟି ଆହୁରି ସୁନ୍ଦର ।

ମନକୁ ପାଉଛି ?

ଏ କଥା ପୁଣି ପଚାରୁଛ ? ଠିକ୍ ହେଲଣି ? ବେଶି ଗୁଡ଼ାଏ ଟୀକ୍‌କା ଖୋଜିଲେ ତା' ବାପ ଦେଇ ପାରିଲେ ତ ହେବ ? ସୁବ୍ରତ ତ କଟକ ଆଇଲଣି । ଶୀଘ୍ର ଗାଁକୁ ଆସିବ ବୋଲି ପତ୍ର ଲେଖିଛି ? ଏବକାଳର ପିଲା । ତା ଆଖିକି କେମିତି ଦିଶୁଛି ମୁଁ ପଚାରେ ।

ମୁଁ ଯଦି ବୋହୂ ଠିକ୍ କରିବି ମୋ ପୁଅ କେବେ ମନାକରିବ ନାହିଁ । ମୋ ଅଧିକାରଟା ମୁଁ କାହିଁକି ଛାଡ଼ିଦେବି ? ତମ ମନକୁ ଆସିଲଣି, ମୋର ଏତିକି ଜାଣିଲେ ହେଲା ।

ଭାବୁ ଝିଅ ମ ଯେ, କେଉଁଠି ତାର ଘର ?

ଜାଣେ ନାହିଁ ।

ଜାଣ ନାହିଁ, ବୋହୂ କରିବାକୁ ଯାଉଛ ? ତା ନାମଟି କ'ଣ କହିଲ ?

ଆହୁତ ।

ଭଲ ନାଆଁଟିଏ ।

ମମତା ହସି ହସି କହିଲେ, ତାକୁ ଟୁନି ବୋଲି ଡାକନ୍ତି ।

ବୁଢ଼ୀ ଚମକି ଉଠିଲେ । ଘୃଣାରେ ନାକ ଟେକି କହିଲେ ଟୁନି—ଟୁନିନାନୀ ? ସେଇ ସର୍ବନାଶୀ, ଡହଳୀ, ମାନମହତହରା ଟୋକୀ ଖଣ୍ଡିକ କି ? ଛି, ଛି, ଏ କଥା ତମେ ତୁଣ୍ଡରେ ଧରୁଛ ? ଜାତିଗୋତ୍ର, ଗ୍ରାମ ବଂଶ ଜଣା ନାହିଁ । ରୂପ ଖଣ୍ଡେ ପାଇଛି ସତ, ଏମିତି ରୂପ ହାଡ଼ି ଘରେ ବି ଜନମ ହୁଏ । ଏମିତି କେତେ କେତେ ରୂପ ଏଇ ହଅସରେ ଦେଖିଛି ଗୋ । ତମେ ବି ପିଲାଦିନେ ତମ ବାପଘର ହଅସରେ ଦେଖିଥିବ । ଆସନ୍ତି କିଏ କେଉଁଠୁ । ସଫାସୁତୁରା ହୋଇ ମୁଣ୍ଡରେ ଫୁଲ ଖୋସନ୍ତି । ଦିନେ ପୁଣି ପିଠିରେ ବୁଧା ଗୋଇଠା ବରଷେ । ସେଇମାନେ ପୁଣି ନାନା ଗୁହାଳ

Digitized by PPRACHIN, SOA

ପାଲ ମଲ ସଫା କରନ୍ତୁ । ତେବେ ବ ବେଳ କଟେ ନାହିଁ । କଏ ଛୁଆ କାଖେଇ ଯାଏ, କଏ ଛୁଆ କାଖ କରିବାକୁ ଲୁଚଛପି ପଳାଏ । ଛି, ଛି,—ରୂପରୁ କଅଣ ମିଳିବ ? ଆଗୋ, ମୋ'ର ବ ଦିନେ ରୂପ ଥିଲା । ଯାଇ ନାହିଁ, ରହି ଯାଇଛି । ଜାଣିକି, ଏ କଥାର ଜବାବ ଦେବ ଓସ୍ତ ମୁକର ମଶାଣି । ରୂପ ବଡ଼ ନୁହେଁ ଘଣୀ, ଗୁଣ ବଡ଼ । ସବୁ ରୂପ ଜଳି ପୋଡ଼ିଯାଏ । ଗୁଣ ସେ ସବୁ ଦିନକୁ ଫୁଟିଥାଏ । ସେଇଟି ଏ ନରକ ଦେହର ଅଲଗା ଦରବ । ତମେ ତ ସବୁ ଜାଣିଛ, ମୁଁ ତୁମର କି ବୁଝି ବଢେଇ ପାରିବି ?

ମମତାଙ୍କର ମୁହଁ ଶୁଖିଗଲା । ତୁଣ୍ଡରୁ ବଚନ ବାହାରିଲା ନାହିଁ । ସବୁ ଆଗ୍ରହ ମନରେ ମାରି ଫଟୋଖଣ୍ଡି ଧରି ଧୀରେ ଧୀରେ ସେ ଚାଲିଗଲେ । ଏ ପ୍ରସ୍ତାବ ସେ ଆଉ କେବେ ଉଠାଇ ନାହାନ୍ତି ।

ସନ୍ଧ୍ୟା କହୁଛି, ସେଇ ଅଳକ୍ଷୁଣୀ, ପୁଣି ଆସିବ । ଆଖିରେ ତା'ର ମୋହିନୀ-ଶକ୍ତି ଅଛି । କାମରେ ଅଛି କମିଆଁ । ରଣସିଂହଙ୍କୁ ସେ ବଦଳେଇ ଦେଲା । ମମତାକୁ କିଣିନେଲା । ସରସ୍ୱତୀ ଯେ ତା' ପାଖରେ ପୋଷାବଳେଇ । ପିଲା ବଳଟେ ସନ୍ଧ୍ୟା, ତା'କୁ ଯେ କରିଛି ବଳେଇଛୁଆ । ଅସୁରୁ । କି ବିଭ୍ରାଟ ସେ ସୃଷ୍ଟି କରିବ ?

ବୁଢ଼ୀ କଡ଼ ବୁଲେଇ କହିଲେ; ଲେଖି ଦେ ତାକୁ ସନ୍ଧ୍ୟା, ଏ ଉଆସ ଭିତରେ ଗୋଡ଼ ଦେଲେ, ଆଗ ତା ଗୋଡ଼ ଭ୍ରେଷ୍ଟା କରିବ, ତେଣିକି ଯାହାହେବ—।

ସନ୍ଧ୍ୟା ତର୍କ କଲା ନାହିଁ । ମନ ମାରି ଚିଠିକି ଧରି ଧୀରେ ଧୀରେ ନୂଆ ମା'ଙ୍କ ପାଖକୁ ଚାଲି ଆସିଲା ।

ବଜ୍ରବାହୁ ଫେରିଆସିଛି । ଛ'ବର୍ଷରୁ ଅଧିକ ହେବ ସେ ଗାଁ' ଛାଡ଼ି, ଘରବନ୍ଧୁ କୁଟୁମ୍ବ ଛାଡ଼ି ବିଦେଶରେ ବୁଲୁଥିଲା । ସତେ କି ଏଥର ଏକା ଏକା ରାମ ବନବାସ କରିବାକୁ ଚାଲି ଯାଇଥିଲେ । ଏକା ଏକା ଫେରି ଆସିଛନ୍ତି । ପିତାଙ୍କର ସତ୍ୟରକ୍ଷା କରିବାକୁ ସେ ଯାଇ ନ ଥିଲେ, ଯାଇଥିଲେ ପିତାଙ୍କର ଅସ୍ୱାଭିମାନ, ମାତାଙ୍କର ଅହଂଭାବ ବିରୁଦ୍ଧରେ ସଂଗ୍ରାମ କରିବାକୁ । ପୁଣି ନିଜର ବଡ଼ପଣିଆକୁ ଚଳ ଚଳ କରି କର୍ମଯଜ୍ଞରେ ଆହୁତି ଦେବାକୁ; ଶୁଦ୍ଧ, ନିର୍ମଳ ହୋଇ ସେବାକା ସମାଜର ଜଣେ ସାଧାରଣ ସଭ୍ୟ ହେବାର ଉପଯୁକ୍ତତା ଅର୍ଜନ କରିବାକୁ ।

ଫେରି ଆସିଛି ବଜ୍ରବାହୁ ! ଅତ୍ୟାଚାରୀ ଜମିଦାର ବଂଶର ଉତ୍ତରାଧିକାରୀ ସେ ନୁହେଁ । ଦେଶର କୋଟି କୋଟି ସ୍ୱାଧୀନ ନାଗରିକମାନଙ୍କ ମଧ୍ୟରେ ସେ ଜଣେ । ଏଇ ତା'ର ଗାଁ-ଜନ୍ମମାଟି । ହସି ଉଠୁଛି । ଅଭିନନ୍ଦନ ଜଣାଉଛି । କହି ଉଠୁଛି

Digitized by PPRACHIN, SOA

ଦେଖିଲୁ ରେ ପୁଅ, କ'ଣ ମୁଁ ଥିଲି, କ'ଣ ହୋଇଛୁ ? ଏଥିପାଇଁ ମନ୍ତ୍ର ଲୋଡ଼ା ହୋଇ ନାହିଁ, ଲୁଆଁସ୍ତ ଜାତି ବ୍ୟବହାର ହୋଇନାହିଁ, ପରର ଧନ ମୁଁ ଦାନ ଗ୍ରହଣ କରିନାହିଁ । ମୋ'ର ରୂପ, ମୋ'ର ଗୁଣ, ସମ୍ମାନ ବଢ଼ାଇଛନ୍ତି ମୋର ପିଲାଙ୍କମାନେ—ଏକ ମନ, ଏକ ଧ୍ୟାନ ହୋଇ, ବଡ଼-ସାନ ଭେଦଭାବ ଭୁଲି, ସହସ୍ର ମନ ଏକ ହୋଇ ଅଦ୍ୟମ ଉତ୍ସାହ, ଉନ୍ନତ ପ୍ରେରଣା ସୃଷ୍ଟି କରିଛୁ । ସହସ୍ର ସହସ୍ର ହାତକର୍ମ କରିବାକୁ ଉଦ୍‌ବୁଦ୍ଧ ହୋଇ ବ୍ୟାକୁଳ ହୋଇ ଉପରକୁ ଉଠୁଛି—କର୍ମ କରିଛନ୍ତି ମୋ'ର ପୁତ୍ର-କନ୍ୟା ନାତିନାତୁଣୀମାନେ ।

ଜନ୍ମମାଟିର ହସଖୁସି କଥା କାନରେ ବାଜୁଛି—ସବୁ ପୁଅଝିଅ ନାତିନାତୁଣୀ ମୋ'ର କୋଳରେ ଜନମ । ସମସ୍ତେ ମୋ'ର ପ୍ରିୟ, ସମସ୍ତେ ମୋ'ର ହୃଦର ସ୍ପନ୍ଦନ । କାହାର ଦୁଃଖରେ ମୋର ହୃଦ ଥର ଉଠେ । କାହା ପ୍ରତି ଅନ୍ୟାୟ ହେଲେ ମୋ ଆଖିରେ ଲୁହ ଆସେ । ସେଇ ଦୁଃଖର ଛାପ ଚହଟେ ମୋ'ର ସାରା ଶରୀରରେ । ମୁଁ ହୁଏ ରୁଗ୍‌ଣ । ଛଟପଟ, ହତଶ୍ରୀ । ସବୁ ପିଲା ମୋ'ର ଦୁଃଖ ପାଆନ୍ତି । କାହାର ଦୁଃଖ କାହାରେ, କାହାର ମନରେ, କାହାର ବା ଭୟ ସନ୍ଦେହରେ ।

—ସବୁ ପିଲା ମୋ'ର ଏକମନ ହୋଇଛନ୍ତି । ଦେଖ, ଆଖି ପୂରାଇ, ମନ ପୂରାଇ ଦେଖ— ମୋ' ହୃଦରେ ଲମ୍ବି ଯାଇଛି ସବୁଜ ଧାନକ୍ଷେତ, ହଜିଯାଇଛି ଦଗ, କୁଳୁକୁଳୁ ହୋଇ ନାଳରେ ପାଣି ମାଡ଼ୁଛି । ରାସ୍ତା ଘାଟ ଝଟକୁଛି ? ଗୋଡ଼ରେ କାଦୁଅ ଲାଗିବ ନାହିଁ, କଣ୍ଟା ଭୁଜିବ ନାହିଁ । ଏ ସବୁ ଗ୍ରାମର ପୋଖରୀ । କାଚକେନ୍ଦୁ ପରି ନିର୍ମଳ ଜଳ । ରୋହି ଭାକୁଡ଼ି ମନ ଖୁସିରେ ଖେଳୁଛନ୍ତି । କି ସୁନ୍ଦର କଦଳୀ କାନ୍ଦି-ମାନ ପଡ଼ିଛି ଗଛମାନଙ୍କରେ । ଆବୋରି ହୋଇଛି । ନଡ଼ିଆଗଛଟିମାନଙ୍କରେ ଚଁର ପଡ଼ିଲାଣି । ଗୃହକଡ଼ରେ ବଗିଚା । ଗୋ'ଲାପର ଗନ୍ଧ ବାଜୁଛି ନାକରେ ? ହଁ, ସେ କାଳର ଅସନା ଖୋଳ ପୁରୁଡ଼ିଲେଣି ।

ନେଣ୍ଟିକ ଯାଅନା । ସେଇ ପୋଖରୀରେ ତୋ'ର ମା ମାଉସୀ, ଅପା ଖୁଡ଼ୀମାନେ ସ୍ନାନ କରନ୍ତି । ତୋ'ର ସାନ ଭଉଣୀଟିମାନେ ପହଁରି ଶିଖନ୍ତି । କି ସୁନ୍ଦର ଛୋଟ ଡଙ୍ଗାଟିଏ ବାପ ଭାଇମାନେ କରି ଦେଇଛନ୍ତି । ଛୋଟ ଛୋଟ ଝିଅଟି ଆହୁରି । ସେମାନେ ମନ ଖୁସିରେ ଖେଳନ୍ତି । ଗୀତ ବୋଲନ୍ତି । ଗଛ ଗହଳ ଉପରେ କଅଁଳ ଛପନ ମୁହଁ ଦେଖାଇଲଣି । ଏଥର ସେମାନେ ଉଠିବେ ।

ଆଜି ପରା ରବିବାର ! ସ୍କୁଲ ବନ୍ଦ । ସେମାନଙ୍କର ଆଜି ଖୁସି ଆନନ୍ଦର ଦିନ । ଗାମ ସାରି ନାରୀ-କଲ୍ୟାଣ ମନ୍ଦିରକୁ ଯିବେ । ସେଇଠି ସେମାନେ ଖେଳିବେ । ନୂଆ ନୂଆ କାମ ଶିଖିବେ । କେତେ ଜାତିର ସାବୁନ ତିଆରି, ସୂତା କେମିତି ରଙ୍ଗେଇବାକୁ ହୁଏ, କାଗଜ ତିଆରି, କଣ୍ଢେଇ ତିଆରି—ଭଙ୍ଗା କଣ୍ଢେଇ, ଅଭଙ୍ଗା କଣ୍ଢେଇ, କେତେ ଜାତିର ବୁଣାବୁଣି ନକ୍ସା କାମ—ଉଲ୍, ସୂତା, ବେତ, ବାଉଁଶ ପାତିଆ, କାଇଁଷ, ଘାସ— । ବଡ଼ ମାଛ କାତି ପକା ହୁଏ ନାହିଁ, ବାଡ଼ୁଲି କାଇଁଚ

Digitized by PPRACHIN, SOA

ଝୁଣ୍ଡ଼ ମାଟିରେ ମିଶେ ନାହିଁ । ସବୁ ସେଠି କାମରେ ଲାଗେ । ଆନନ୍ଦ ମଝିରେ କାମ, କାମ ମଝିରେ ଆନନ୍ଦ— ।

ଆଗକୁ ଚାଲିଛି ବଜ୍ରବାହୁ । ବଳିଷ୍ଠ ଦେହ । ଦେହରେ ଖଦଡ଼ଜାମା । ମୁଣ୍ଡର ବାବୁରି ବାଳ ଉପରେ ଖଦଡ଼ ଟୋପିଟି । ନିଶଦାଢ଼ି ବଢ଼ି ମୁହଁରୁ ଯଥେ ଘୋଡ଼ାଇ ପକାଇଛି । କାନ୍ଧରେ ଝୁଲୁଛି କନାର ବଡ଼ ବ୍ୟାଗ୍‌ଟିଏ । ତା'ର ଭିତରେ ରହିଛି ତା'ର ଅତି ଦରକାରୀ ପଦାର୍ଥଗୁଡ଼ିକ । ଛାତି ପକେଟରେ ଛୋଟ ଘଣ୍ଟାଟିଏ । ଚାଲିଛି ବଜ୍ରବାହୁ । ଯେତେ ଜଣ ରଣଗଡ଼ର ଛାତି ଦୁଲୁକି ଉଠୁଛି । ଯେତେ ଜଣ ରଣଗଡ଼ କହୁଉଠୁଛି, ତୋ'ର ପରି ପିଲା ମୋର ଲୋଡ଼ାରେ, ଚାଲିଯାଉଥିଲେ ବୁଝି ପାରୁଥିବା ପିଲା ପରି ପିଲା ଖଣ୍ଡେ ମୋ'ର ଅଛି, ହାତ ଯୋଡ଼ ତା'ର ବଜ୍ର, ମନଟି ତା'ର ଉଦାର । ସେଇ ମୋ'ର ଦୁଃଖ ଦୂର କରିବ । ଅଭାବ ଅସୁବିଧା ଶତ୍ରୁଗୁଡ଼ାଙ୍କର ବେକ ମୋଡ଼ିବ ।

ସବୁ ପିଲା ମୋର ଏମିତି ହେବେ ।

ବଜ୍ରବାହୁ ନିରେଖିଲା ସେମାନଙ୍କୁ । ସେମାନେ ବି ଚାହିଁ ଚାହିଁ ଗର୍ବଦର୍ପରେ ଆଗେଇ ଚାଲିଛନ୍ତି । ମୁହଁରେ ବିମର୍ଷତା ନାହିଁ । ଚାହାଣୀରୁ ଦୂର ହୋଇଛି ଭୟଭୀତ ଭାବ, ହତାଶାର ଛାୟା । ଚାହାଣୀରେ ଉଦ୍ଦୀପ୍ତ ହୋଇଛି ଉତ୍ସାହ ଓ ନିଷ୍ଠା । ଦୃଢ଼ସଙ୍କଳ୍ପ ପଦକ୍ଷେପ । କେଉଁ କର୍ମସୂଚୀ ଆଗରେ ରଖାହୋଇଛି । ଚାଲିଛନ୍ତି ରଣଗଡ଼ର ପୁଏ । ପ୍ରତି ପଦକ୍ଷେପ ସଙ୍କଳ୍ପର ତାଳ, ସୁନିଶ୍ଚିତ ବିଜୟର ଅଗ୍ରଗତି । ହାତରେ ଆୟୁଧ – କୋଡ଼ି, କଙ୍କି, ଶାବଳ, ଟୋକେଇ । ବାଟରେ ଅଟକି ସମୟ ନଷ୍ଟକରି ଅଗନ୍ତୁକକୁ ପଦଟିଏ ପଚାରିବାକୁ ବେଳ ନାହିଁ । ଚାଲିଯାଉଛନ୍ତି ରଣଗଡ଼ର ରଣସିଂହମାନେ, ଯାହାଙ୍କର ବାହୁ ବଜ୍ର ହୋଇଛି । ସେମାନେ ବଜ୍ରବାହୁ, ସେମାନେ ରଣରଙ୍ଗା — ରଥିଆ କେଉଟ, ଡନେଇ ଗୁଡ଼ିଆ, ଚକରା କୁମ୍ଭାର, ରଘୁଆ ଭଣ୍ଡାରୀ, ଛକଡ଼ି ବାହସା, ବାବନା ପଧାନ, ମଧବା ଚମାର, ଗୁଲା ସେଠୀ, ବଗି ପଟ୍ଟନାଏକ, ସୁକୁ ମାଳୀ, ମଧୁ ମିଶ୍ର, ହରି ତନ୍ତୀ, ଅହମଦ୍ ଖାଁ— ।

କେହି ତା'କୁ ଚିହ୍ନିଲେ ନାହିଁ । ଜାଣିବା ପାଇଁ ଆଗ୍ରହ ପ୍ରକାଶ କଲେ ନାହିଁ । ସେମାନଙ୍କ ମଧ୍ୟରେ ଧର୍ମୀନନ୍ଦ ନାହିଁ, ସୁରଥ ନାହିଁ । ସୁବ୍ରତର ଆଗ୍ରହ ହେଲା – ସେ ଧାଇଁ ଧାଇଁ ଜଣ ଜଣ କରି କୁଣ୍ଢାଇ ଧରିବ । କହିବ, ଚିହ୍ନିପାରୁ ନ ମତେ ? ମୁଁ ତମରି ଭିତରୁ ଜଣେ । ସେବକ ସମାଜର ସଭ୍ୟ ହେବାର ଦକ୍ଷତା ଅର୍ଜନକରି ଫେରିଆସିଛି । ନିଅ ମୋତେ, ସାଙ୍ଗକୁ ନିଅ । ପରୀକ୍ଷା କରି ଦେଖ । ମତେ ଆଉ ଅବୁଆଁ କରି ଦୂରେଇ ରଖ ନାହିଁ ରଥ ଦାଦା, ଛକଡ଼ି ମଉସା, ମଧବଭାଇ, ରଣଗଡ଼କୁ ନୂଆ ରୂପରେ ଗଢ଼ିଛ ତମେ, ମତେ ବି ସୁଯୋଗ ଦିଅ ।

ଚାଲିଗଲେ ସେମାନେ ।

Digitized by PPRACHIN, SOA

ପିଲମାନଙ୍କ ପାଇଁ ଖେଳବଗିଚ୍ଛ ଗାଁ ମୁଣ୍ଡରେ, ନୂଆ ହୋଇ ତୋଳା ହୋଇଥିବା ସ୍କୁଲ ଆଗରେ । ସୁରକ୍ଷିତ । କେତେ ହିଁଅପୁଅ ମନ ଆନନ୍ଦରେ ଖେଳୁଛନ୍ତି । ପାଟିଗୁଣ୍ଡ, ହସ୍ତଖୁସି, ଘୋଡ଼ାଆଗୋଡ଼ । ଦେଶୀ ବିଦେଶୀ ସବୁ ଖେଳ ଅଛି । ପାଖେ ପାଖେ ଜଗୁଆଳ ।

ଗାଁ ଦାଣ୍ଡ । କେତେ ନୂଆଘର ତୋଳାହେଲାଣି; କେତେ ପୁଣି ଅଧା ତୋଳା ହୋଇଛି । ବାକିତକ ବଜ୍ରବାହୁର ହାତକୁ ଅନାଇଁ ରହିଛି । ସବୁ ଘର ତା'ର ; ସବୁଟି ରହନ୍ତି ତା'ର ଗାଇବନ୍ଧୁ କୁଟୁମ୍ବ । ଗାଁ ରାସ୍ତାରେ ଗୋଟିଏ ବଗ୍ଧ ହୋଇ ଚଉକସ ହୋଇଛି । ପାଣି କାଦୁଅ ହେବ ନାହିଁ । ସଫାସୁତୁରା ।

ମା ଭଉଣୀମାନେ କଡ଼େଇ କଡ଼େଇ ନିଜ କାମରେ ଗ୍ଲଲିଯାଉଛନ୍ତି । କେଡ଼େ ପରିଷ୍କାର । ସମସ୍ତଙ୍କ ଦେହରେ ଜାମା । ହାତଗୋଡ଼ରେ ଅନାବଶ୍ୟକ କଂସା, ପିତ୍ତଳ, ଗିଲ୍‌ଟୀର ମୋଟା ମୋଟା ପୁରୁଣାକାଳିଆ ଗହଣା ନାହିଁ । ଦି'ଦି' ପଟି ସୁନା କି ରୂପାର କାଚ । ବେକରେ ସରୁ ସରୁ ହାର କି ମାଳି । କାନରେ ଫୁଲ । ଯାହାକୁ ଯାହା ମିଳିଛି । କେଡ଼େ ସରଳ, କେଡ଼େ ସୁନ୍ଦର ଦିଶୁଛନ୍ତି ତା'ର ମା' ଭଉଣୀମାନେ ।

କାମରେ ଗ୍ଲଲିଛନ୍ତି ସମସ୍ତେ । କା ହାତରେ ଦା' କାହା ହାତରେ ଦଉଡ଼ି । କିଏ ନେଇଛି ମୁଣ୍ଡରେ ଟୋକେଇ । କାହା ମୁଣ୍ଡରେ ତେଲଲୁଣର ପସରା, କାହା କାଖରେ ଖଜା, ପିଠା, ମୁଢ଼ି ଭଜାଭଜା ଟୋକେଇ । ପରିଷ୍କାର ଲୁଗା ଘୋଡ଼ା ହୋଇଛି । ମାଛ ପସରା ମୁଣ୍ଡରେ ଧରି ଗ୍ଲଲିଛନ୍ତି ସେ, ଆଉ କଣେକି ପନିପରିବା ବୋଝ । ସବୁ ସେମିତି ଆଗ ପରି ଅଛି, ବଦଳିଛି କେବଳ ରୁଚି ଓ ବ୍ୟବହାର । ଯେଉଁମାନେ ଶିକ୍ଷା ଦେଲେ, କୁସଂସ୍କାରକୁ ଦୂର କରିବାକୁ ଉପଦେଶ ଦେଲେ, ଆମର ମା' ଭଉଣୀମାନଙ୍କୁ ନୂଆଦୁନିଆର ଡାକରେ ଉଦ୍‌ବୁଦ୍ଧ କରିପାରିଲେ, ସେମାନେ ଧନ୍ୟ, ପ୍ରଶଂସାର ପାତ୍ର । କିନ୍ତୁ, ଯେଉଁମାନେ ଯୁଗ ଯୁଗର ଅନ୍ଧବିଶ୍ବାସ, କୁ-ଶିକ୍ଷା, କୁ-ରୁଚି ଓ କୁ-ସଂସ୍କାରକୁ ପାଦରେ ଦଳି ଆଗେଇ ଆସିଲେ, ସେଇ ମା, ମାଉସୀ, ଭାଉଜ, ଅପାଟିମାନେ କେବଳ ଧନ୍ୟ ନୁହନ୍ତି ତ, ସେମାନେ ନମସ୍ୟ ! ନେବ କି ତା'ଙ୍କର ପାଦର ଧୂଳି, ମାରିବ ମୁଣ୍ଡରେ ?

ଗ୍ଲଲି ଯାଉଛନ୍ତି ସେମାନେ । କେହି ଚିହ୍ନିପାରୁ ନାହାନ୍ତି ସୁବ୍ରତକୁ । ସେ ପଛରେ ପଡ଼ିଛି । ସେ ଋପ୍-ଭ୍ୟାନ୍-ୱିଇନ୍‌କଲ୍ । ଋଣଗଡ଼ ବଦଳିଛି, ବଦଳୁଛି—ନୂଆ ଧାନଗୋଲା, ପଞ୍ଚାୟତ ଘର, ସମବାୟସମାଜ, ସଦନ, ବନୋଦବହାର, ସମବାୟ ସମିତିମାନ—ବଉଳ ଉଦେଶ୍ୟ ଦେଇ ଗଢ଼ା; ତେଲକଳ, ଅଟାକଳ, ଧାନକଳ, ଏଁ, କେତେ କ'ଣ ହୋଇ ସାରିଲାଣି । ଆହୁରି ଅନେକ ବାକି ପଡ଼ିଛି, ବଜ୍ରବାହୁକୁ ଅପେକ୍ଷା କରି ରହିଛି ।

ଗୋପୀକୃଷ୍ଣଙ୍କର ମନ୍ଦିର । ଘଣ୍ଟା ବାଜୁଛି । ପୂଜା ହେଉଛି । ଲୋକେ ଯାଉଛନ୍ତି ଆସୁଛନ୍ତି । ଗ୍ରାମ ସୀମନ୍ତିନୀମାନେ ହାତରେ ପୂଜାର ଡାଲି ଧରି ପ୍ରବେଶ

Digitized by PPRACHIN, SOA

କରୁଛନ୍ତି । ସୂର୍ଯ୍ୟ ଆକାଶକୋଣକୁ ଉଠି ଆସିଲେଣି । ଯିବନି ଆମ ମନ୍ଦିର ଭିତରକୁ ? ଗୋପୀକୃଷ୍ଣଙ୍କର ପ୍ରସନ୍ନମୂର୍ତ୍ତି ଆଗରେ ମୁଣ୍ଡ ନୁଆଁଇ କହିବ, ସବୁ ତମର ଦୟା, ମଣିଷକୁ ସଦ୍‌ବୁଦ୍ଧି ଦିଅ ମହାପ୍ରଭୁ— !

ମନ ହେଲାଣି ଛଛନ୍ନ । ଆଗରେ ହୁଆସ । ସେଇଠି ଥିବେ ତା'ର ଜନକ-ଜନନୀ—ନରଦେହରେ ଆତସାତ ବିଷ୍ଣୁ ଓ ଲକ୍ଷ୍ମୀ । ତପସ୍ୱିନୀ ତା'ର ଖୁଡ଼ୀ—ପାଦର ଧୂଳି ମୁଣ୍ଡରେ ମାରିବ । ଅନୁଜ ତାର ରଣବଙ୍କା । ଆଲିଙ୍ଗନ କରିବ । ସ୍ନେହର ଭଉଣୀଟି ସନ୍ଧ୍ୟା — ଦୋଟିଏ ଚୁମ୍ବନ ।

ଛଅ ବର୍ଷର ବିଚ୍ଛେଦ କରିବ ଦୂର । ମନ ହେଉଛି ବ୍ୟାକୁଳ ।

ଆଗରେ ହୁଆସ । ନିମନ୍ତ୍ରଣ କରୁଛୁ ।

ସୋମଗଡ଼ । ସବକ'ଗ୍ର କ୍ୱାର୍ଟର୍ସ । ନୂଆ ବିଜୁଳି ଆଲୁଅ ଲାଗିଛି । ଗାଁ । ବସ୍ତି ପାଖରୁ ଦୂରରେ ସେମାନଙ୍କର କଲୋନି । ଘରଗୁଡ଼ିକ ଗୁଡ଼ ଗୁଡ଼ିକା । କଲୋନି ଆଗ ରାସ୍ତା ଆର ପାଖେ ପିଲାମାନଙ୍କ ଖେଳିବା ପାଇଁ ନୂଆ ପାର୍କ । ଟିକିଏ ଦୂରରେ ଗ୍ରେଟ ପାଡ଼ି ତଳେ ହାଇସ୍କୁଲ । ତେଣିକି ଗୁଡ଼ ଗୁଡ଼ିକା—ବିଭିନ୍ନ ଅଫିସ । ସୋମଗଡ଼ ବଡ଼ ଗାଁଟିଏ । ସେଇଠି ହୋଇଛି ବ୍ଲକ ଅଫିସ ପୁଣି ତହସିଲ ଅଫିସ । କେତେ କୋଠାବାଡ଼ି ତୋଳା ସରିଲାଣି, ଅଧିକ କେତେ ତୋଳା ଚାଲିଛି । ମୋଫସଲ ଗାଁଟି ଧୀରେ ଧୀରେ ସହରେଇ ଆସୁଛି । ସବୁ ପ୍ରକାର ଅଫିସର ଓ ଅନ୍ୟାନ୍ୟ କର୍ମଚାରୀ ଏ ଗାଁରେ ରହନ୍ତି । ରାସ୍ତାଟି ପକ୍କା ହେଲାଦିନୁ କଟକ ସହରକୁ ଘଣ୍ଟାମତେ ବସ୍ ଯାତାୟାତ କରୁଛି । ରାସ୍ତା କଡ଼ରେ ବିଜୁଳିଖମ୍ବ । ଆଖପାଖ ଗାଁମାନଙ୍କୁ ମଧ୍ୟ ବିଜୁଳି-ଶକ୍ତି ଯୋଗାଇ ଦିଆହେଉଛି ।

ସୋମଗଡ଼ କଲୋନି ଭିତରେ ଅଦ୍ଧୁଁଛର ଘର । ସ୍ୱଶଦନ କାଳ ଦୁଇ ମୋଫସଲରେ ବୁଲି ବୁଲି ଆସ୍ଥିତ ଫେରିଆସିଛି । ରାତି ଆଠଟା । ଛଡ଼ ଘର ଖଟ ଉପରେ ବସି ମନ ଖୁସିରେ ଦୁର ମୋଫସଲର ଅଭିଜ୍ଞତା ସେ ବର୍ଣ୍ଣନା କରୁଛି ତା'ର ଜନନୀ ଆଗରେ । ନେଲିଅ ବିଜୁଳି ଆଲୁଅ ଜଳୁଛି । ଝରକାଗୁଡ଼ିକରେ ଲାଗିଛି ନୀଳ କନାର ପରଦା । ଦୁଇ ପାଖ ଦରଜାରେ ସ୍କ୍ରିନ୍ । କଡ଼କ୍ୱାଟର୍ ସିଟି ଡାକ୍ତର ବାବୁଙ୍କର । ସେଇଆଡ଼ୁ ରେଡ଼ିଓ ସଙ୍ଗୀତ ଭାସିଆସୁଛି । ଶୁଣି ଶୁଣି ଅଭ୍ୟାସ ହୋଇ-ଗଲାଣି । ତେଣୁ, ସେ ସବୁ ସଙ୍ଗୀତ ବିରକ୍ତିକର ହେଉନାହିଁ କି ଆନନ୍ଦ ମଧ୍ୟ ଦେଉ ନାହିଁ ।

ଦିନ କେଇଟାରେ ସତ୍ୟବତୀଙ୍କର ଦକ୍ଷତା ଓ ଖ୍ୟାତି ମଧ୍ୟ ପ୍ରସୃତ ହୋଇ ଗଲାଣି । ଯାହା'ର ଯେଉଁ ଗୁଣ ଥାଏ, କେହି କାହାକୁ ନ କହିଲେ ମଧ୍ୟ ଆପେ

Digitized by PPRACHIN, SOA

ଆପେ ସେ ଲୋକଚକ୍ଷୁରେ ପଡ଼େ । ବିଶେଷତଃ, ରୋଗ ଯନ୍ତ୍ରଣାରେ କଷ୍ଟ ପାଉଥିବା ଲୋକ ସବୁବେଳେ ଖୋଜେ କପଣ କେଉଁ ମନ୍ତ୍ରବଳରେ ଯାଦୁ ଔଷଧ, ଟିକିଏ ପାଣି, ଲୁଆଏ ଲୁଣ କ ଗୋଟିଏ ଫୁଙ୍କରେ ଏକାଥରେ ଭଲ ହୋଇଯାଉ । ଲୋକଙ୍କର ଏଇ ବ୍ୟାକୁଳତା ଓ ଦୁର୍ବଳତା ପାଇଁ ଗ୍ରେଟ ବଡ଼ କେତେ ଚନ୍ଦ୍ରଲେଇ ଭାଳେ ଭାଳେ କେଇତନ ପାଇଁ ଚନ୍ଦ୍ରକ ପକାଇଛୁ । ପରିଣାମ କ'ଣ ହୁଏ ଲୋକେ ଦେଖନ୍ତି, ବୁଝନ୍ତି, ଘନାଚକରେ ହିଁଚ୍ଛି ଗ୍ରକର କରନ୍ତି, ଲଜ୍ଜିତ ହୋଇ ରହନ୍ତି, ପୁଣି ସବୁ କଥା ଭୁଲି ଯାଆନ୍ତି । ପଙ୍ଗପାଳ ଦଳ ପରି ପୁଣି ଛୁଟନ୍ତି ଆଉ କେଉଁ ନୂଆ ଚନ୍ଦ୍ରଲେଇର ମାଜିକ୍ ପୁରୁଷର ହାତ-ପଇଶ, ଗଛ ଛେଲିର ଗୁଣ୍ଡ, ଧୂନିର ପାଉଁଶ, କେଉଁ ସିଦ୍ଧା ପୋଖରୀର ପାଣି ପାଇଁ ।

ଆଶାୟୀ ମନର ବ୍ୟାକୁଳତା ।

ସୋମଗଡ଼ରୁ ଏବେ ବି ମନ୍ତ୍ରର ଲୁଣ, ପାଣି, ଫୁଙ୍କର ପ୍ରଭାବ ଲୋପ ହୋଇ ନାହିଁ । ମନ୍ତ୍ରବଳରେ ଓ ବିଶ୍ୱାସରେ ଯଦି ସବୁ ଭଲ ହୋଇଯିବ ତ ଡାକ୍ତର କବିରାଜ ନର୍ସ ଆଉ ଲୋଡ଼ା ହେବେ କାହିଁକି ? କଲୋନିର ଶିକ୍ଷିତ କର୍ମଚାରୀମାନଙ୍କ ଘରେ ଅତି ଅଶିକ୍ଷିତ ଅପରିଷ୍କାର ଗାଁ-ଗୁଣିଆଁ ର ଝଡ଼ାଫୁଙ୍କା ଦେଖି, ଗୟଳ ଧିଙ୍ଗ ଗୁଣ୍ଡା ଧୂପର ଗନ୍ଧ ଆଘ୍ରାଣ କରି ସତ୍ୟବତୀ ବ୍ୟଥିତ ହୋଇଥିଲେ ।

ପିଲାଟିକୁ କେଉଁ ଡାଆଣୀ କି ପିଶାଚୁଣୀ ଧରିଛି । ଜର ତାତିରେ ଦେହରେ ଖଇଫୁଟୁଛି । ଢେର ଦିନ ଡାକ୍ତରୀ ଔଷଧ ଖାଇ ଜର ଭଲ ହୋଇନାହିଁ । ଅଧୀର ଜନନୀ ଡାକ ପକାଇଛୁ ଗୁଣିଆଁ କୁ—ଯେଉଁ ଗୁଣିଆଁ ବୋତଲ ଭିତରେ ବନ୍ଦକରି ଡାଆଣୀ, ଚିରଗୁଣୀ କି ପିଶାଚୁଣୀକୁ ଅକ୍ଲେଶରେ ନେଇପାରେ । ପିଲା ଭଲ ହେବ । ଔଷଧ କାଟ କରିବ !

ପିଲାଟିର କଷ୍ଟ ମୁଁ ସହିପାରିଲି ନାହିଁ ଲେଟୁନ, ଆଖିରୁ ଲୁହ ଗଡ଼ିପଡ଼ିଲା । ଗୁଣିଆଁ ଟକଟାଳ ମୁଖଭଙ୍ଗୀ କରି ହଠାତ୍ କାନ ନାକ ମୋଡ଼ି ହୋଇ ଆପଡ଼ ମାରି ହେଉଥାଏ, ଝାଡ଼ୁଥାଏ । ଫୁଙ୍କୁଥାଏ । ପିଲାଟି ଆଖି ବୁଜି ଛଟପଟ ହେଉଥାଏ । ତ' ପହର । ଘରର ସବୁ ଝରକା ବନ୍ଦ । ଫୁରୁକୁଟିଆ ଧୂପ ଧୂଆଁ ରେ ଘର ଭିତରେ ଶ୍ୱାସରୋଧ ହୋଇ ଉଠୁଥାଏ । ପଲେ ମାଇପେ ଦ୍ୱାର ବନ୍ଧରେ ଠିଆ ହୋଇ ଡାହାଣୀ ଝଡ଼ା ଦେଖୁଥାନ୍ତି । କୋଡ଼ରେ ପିଲାକୁ ଧରି ପଦ୍ମଲ-ପୋଖରୀ ମା'ଟି କାନ୍ଦୁଥାଏ । ସ୍ୱାମୀ ତା'ର ଚାକିରି କରିବାକୁ ମୋଫସଲ ଯାଆନ୍ତି—

ବୁର୍ହିଲ ମା, ସେ ଷ୍ଟକ୍ୟାନ୍ ଙ୍କର ସ୍ତ୍ରୀ । ତା ନା ରୁକ୍ମଣୀ । ଅତି ସରଳ ଝିଅଟି । ପାଠ ପଢ଼ିନାହିଁ । ଯିଏ ଯାହା କହେ, ସେ ବିଶ୍ୱାସ କରେ । କଲୋନିର ମାଇପେ ତା'କୁ କୌତୁକର କଣ୍ଢେଇ କରି ମଜାକରନ୍ତି । ହସି ହସି ଗଡ଼ିଯାଆନ୍ତି ।

କ'ଣ ରୁ କଲୁ ଅଗ କହିଲୁ ?

Digitized by PPRACHIN, SOA

ଘର ଭିତରକୁ ପଶିଯାଇ ପିଲାଟିକୁ କୋଳରୁ ଉଠାଇ ଆଣିଲି । ମୁଣ୍ଡ ଧୋଇ ମୁହଁକୁ ପାଣିଛିଟା ମାରିଲି । ପିନ୍ଧା ଲୁଗା ଲୁଗୁ କରି ପୋଛିଲି । ମୋତେ ଅଚାନ୍ଧା ଚାହିଁ କାନ୍ଦିଉଠିଲା । ଗୁଣିଆଁଙ୍କୁ ବିଦାକରି ଦେଲି । ଡାକ୍ତରଙ୍କୁ ଡକାଇଲି । ତିନି ଦିନ ହେଲାଣି ମା, ଜର ତ ସେଇଦିନ ଛାଡ଼ିଗଲା । ମେଲେରିଆ । ଦେଖିଲି ମା, ପାପଭରା ଅନ୍ଧାର—

ଏଇସବୁ ଦେଖି ଦେଖି ମୁଁ ଥକିଆଁ ହେଲାଣି । ସବୁ ଗାଁରେ ଏଇ ପାପ ଅଲୋ ଚନ୍ଦ୍ରକଣ୍ଠ ଲାଗିଛି । ଆମର ମା-ଭଉଣୀମାନେ ଏବେ ବି ଅନ୍ଧବିଶ୍ୱାସକୁ ଆଣ୍ଠେଜାକି ଧରି ବସିଛନ୍ତି । ଅଶିକ୍ଷା ଓ ଅଜ୍ଞତା ପାଇଁ ପୁଅ, ପତି, ଭାଇ, ଭଉଣୀଙ୍କୁ ଦୁଃଖକଷ୍ଟ ଦେଉଛନ୍ତି, ଯମଘରକୁ ପଠାଉଛନ୍ତି । ନିଜେ ବି ମରୁଛନ୍ତି । ବୁଝାଇଲେ ବୁଝି ନାହାନ୍ତି । ଶିଖାଇଲେ ଶିଖି ନାହାନ୍ତି । ଆମକୁ ଅବିଶ୍ୱାସ କରୁଛନ୍ତି । ବାଧା ଗୋଇଠା ଭାଠ ଫାଳିଆ ବି ମାରୁଛନ୍ତି ।

ସତେ ଏ କଥା ?

ସବୁ ମୁଁ ସହୁଛି, ଦହୁଛି । ଅଣ୍ଟାପିଠିରୁ ଦରଜ ଭଲ ହେଉ ନାହିଁ । ସେ ଦରଜଠୁଁ ବଳି ପଡ଼ିଛି ମନର ଦରଜ । ଆଚ୍ଛା, କେବେ ଏମାନେ ମଣିଷ ହେବେ ? ଆମର ମା-ଭଉଣୀ ଭାଉଜମାନଙ୍କର ଅଶିକ୍ଷା ଅନ୍ଧବିଶ୍ୱାସ ଓ ସନ୍ଦେହ, ସମାଜ ଓ ଦେଶର ଅଗ୍ରଗତିକୁ ଅଟକାଇ ଦେଉଛି । ଆମ ପରି ଶହଶହ କର୍ମୀ କଷ୍ଟ ସହିବାକୁ, ନିନ୍ଦା ଅପମାନ ଓ କୁତ୍ସାକୁ ପଛକୁ ପକାଇ କର୍ମ କରିବାକୁ ପ୍ରସ୍ତୁତ ହେଲେ, ଏ ସବୁ ଅଳ୍ପଦିନ ମଧ୍ୟରେ ଦେଖାଯିବ ମା !

ହଁ, ସୋମପଡ଼ର ଘର ଘର ବୁଲି ମୁଁ ସେଇଆ ଦେଖୁଛି । ପାପଭରା ଅନ୍ଧାର । ମାଇପୀ ମହଲକୁ ଦେଖିଲେ ଦୁଃଖ ହେଉଛି, ଯେଉଁମାନେ ଆଗେଇ ଯାଇଛନ୍ତି, ସେମାନଙ୍କର ନିନ୍ଦା ରଟାଇବା, କୁତ୍ସା ରଟାଇବା କାମ ହୋଇଛି । ତୋ'ର ଅନୁପସ୍ଥିତିରେ ରୋଗୀର ସେବା କରିବାକୁ କେତେ ଘରେ ମୁଁ ପଶିଛି । କେତେ ତୋ'ର ପ୍ରଶଂସା କରୁଛନ୍ତି, କେତେ ପୁଣି ନିନ୍ଦା କରୁଛନ୍ତି । ନାକ ଟେକୁଛନ୍ତି ।

ହସି ହସି ଆଦୃତ କହିଲା, ମୁଁ ସେ କଥା ଜାଣେ । ଯେଉଁମାନେ ନିନ୍ଦା କରନ୍ତି, କୁତ୍ସା ରଟାନ୍ତି, ସେମାନେ ପୁଣି ଆପେ ଆପେ ନାରୀକଲ୍ୟାଣ ସମିତିରେ ଯୋଗଦେଉଛନ୍ତି । ସବୁ ସନ୍ଦେହ କୁସଂସ୍କାରକୁ ତ୍ୟାଗକରି ଘରକୋଣ ଛାଡ଼ି ଆଗେଇ ଆସୁଛନ୍ତି । ପ୍ରତି ଗାଁରେ ବିପ୍ଳବ ଜାଗିଉଠିଛି । ସୋମପଡ଼ ପଛେଇ ରହିବ ନାହିଁ । ବଣଗଡ଼ ପରି ସେ ବି ଆଗେଇ ଯିବ ।

ନିନ୍ଦା ଓ କୁତ୍ସା ଶୁଣି ମନ ଦବିଗଲା ମା ।

ଆଦୃତ କହିଲା—ସେଥିକି ଚିନ୍ତା କ'ଣ ? ସେଇତ କର୍ମୀର ପ୍ରାପ୍ୟ, କର୍ମୀର ଗୌରବ ଓ ଆନନ୍ଦ । ଯେଉଁ କର୍ମୀ ନିଜର ମନକୁ ଆୟତ୍ତରେ ରଖିପାରେ, ସାବଧାନ ହୋଇ ରହେ, ନିନ୍ଦୁକର ଆଖିରୁ ସେ ଦିନେ ଅନ୍ଧପୋଟଳି ଘୁଞ୍ଚାଇ ଦେଇପାରେ ।

Digitized by PPRACHIN, SOA

ସତ୍ୟବତୀ ମୁଗ୍ଧ ହେଲେ । ଆହୁତର ମୁହଁବେ ଦେଖିଲେ ଶିଶୁସୁଲଭ ସରଳତାର ଦୀପ୍ତି । ଗାଁ ମାଇପଙ୍କର ଅଣ୍ଟାଳିଆ ହସ, ଆଖିଠାର, ଭ୍ରୂଲତା ନଚ୍ଛ ମନେପଡ଼ି ଯାଉଛି । ଉପହାସିଆ ଭଉଣୀମାନେ କାନରେ ବାଜିଯାଉଛି, ଝିଅକୁ ଜମର କେତେ ବର୍ଷ ହେବ ? ମା' ଝିଅ ପର ଦଶ୍ଯୁନାହିଁ ତ, ସିଏ କହୁବ ତ' ଭଉଣୀ । ଆଜିଯାଏ ବାହା ଦେଇ ନ ଜାହିଁକି ? ବର ମିଳିଲା ନାହିଁ ? ଏତେ ଶୋଭାକାର ଝିଅ, ଏତେ ପାଠ ପଢ଼ିଛି ! ବାହାଘର ଠିକ୍ ହୋଇ ପାରିଲା ନାହିଁ ?

ଆହୁତ ହସିଲା ଦୃଷ୍ଟିରେ ପଚାରିଲା, କାହିଁକି ମୋ' ଆଡ଼କୁ ଏମିତ ଅନେଇଁ ରହିଛୁ ମା ?

ସତ୍ୟବତୀ ହସିବାକୁ ଚେଷ୍ଟା କଲେ । ଦୁଇ ଆଖି ଝଲସି ଉଠିଲା । କାନରେ ବାଜିଲା ଆହୁତର ଗୁଡ଼ାଏ କଥା, ଝିଅ ଓ ପିଅ ସମାନ ଗୋ । ଝିଅଜନମ ପରଘରକୁ । ଆଗୋ, ଏତେ ସୁନ୍ଦର ଯୁବତୀ ଝିଅକୁ କେଉଁ ସାହସରେ ଏକୁଟିଆ ଛାଡ଼ି ଦେଇଥିଲ ? ଆସିଲ ଭଲ କଲ । ବାଣ୍ଡରେ ବାପ, ଭାଇ, ମାମୁଁ, ମଉସା କ ଭାଇମାନେ ଆଜଯାଏ ହୁଅନ୍ତି ନାହିଁ । ସେଇ ସମ୍ବନ୍ଧ ସେମାନେ ପାଉନ୍ତି । ଆସିଲ ସେ ଭଲକଲ । ହେଲେ, ତମେ ତ ଆଉ ତା'କୁ ଅଣ୍ଟାରେ ବାନ୍ଧି ଗାଁ ଗସ୍ତା ବୁଲିବ ନାହିଁ ?—ଜମର ଜାତ ?

ସବୁ କଥାରେ ସିଧାସଳଖ ଉତ୍ତର ସତ୍ୟବତୀ ଦେଇପାରୁ ନାହାନ୍ତି । ମିଛ କହିବାକୁ ଇଚ୍ଛା ନ ଥିଲେ ବି କେଉଁଠି କେଉଁଠି ନରେ ବା କୁଞ୍ଜରେ ଅଶ୍ୱତ୍ଥାମା ବୋଲି ପ୍ରକାଶ କରୁଛନ୍ତି ।

ଗାଁ ଲୋକେ ଏମିତ । ସମସ୍ତଙ୍କ ବିଷୟରେ ସବୁକଥା ଜାଣିବାକୁ ଆଗ୍ରହ । ଗାଁ ମାଇପେ, ଚାରିପାଞ୍ଚ ମିଶିଲେ ଯଉଁଲା ପରଘରର ଚର୍ଚ୍ଚା, ଅନୁପସ୍ଥିତର ନିନ୍ଦା, କୁତ୍ସା । ସିଏ ଯେତେବେଳେ ଅନୁପସ୍ଥିତ, ଆଉ ସବୁ ତା'ର କେହୁ ଉପସ୍ଥିତ ନ ଥାନ୍ତି, ସେ ସବୁରେ, ସେଇ ଏକା ମନ୍ଦ । ଅନ୍ୟମାନେ ଲକ୍ଷ୍ମୀ, ସରସ୍ୱତୀ, ସାବିତ୍ରୀ ଓ ପାର୍ବତୀ । ତଥାପି ଚର୍ଚ୍ଚା କରୁ କରୁ ବାକ୍ୟ-ବାଣ୍ଟୁଳି ଅସାବଧାନତାରୁ ବାଜିଯାଏ କାହା ଦେହରେ । ଆରମ୍ଭ ହୁଏ କନ୍ଦଳ, ସପ୍ତପୁରୁଷଉଦ୍ଧାରକ, ଚୁଟି ଟଣାଟଣି । ସାବିତ୍ରୀ ଓ ପାର୍ବତୀମାନେ ଦ୍ରୌପଦୀ ଓ କୁନ୍ତୀ ପଦବାଚ୍ୟ ହୁଅନ୍ତି ।

ସହର । ଭଲ । ନିଜ ଧନ୍ଦାରେ ନିଜେ ବ୍ୟସ୍ତ । ସଭା, ଚର୍ଚ୍ଚା, କନ୍ଦଳ ସେ ନ ହୁଏ ଏପରି ନୁହେଁ । ତେବେ, ଜଣକୁ ଅଡ଼େଇ ଆଉ ଜଣେ ଅକ୍ଳେଶରେ ଚଳିପାରେ । ବନ୍ଧୁର ଅଭାବ ନାହିଁ କି, ଶତ୍ରୁର ଅଭାବ ନାହିଁ । ମୋଫସଲରେ କିପରି ଆହୁତ ଏତେ ବର୍ଷ କଟାଇ ପାରିଲା, କିପରି ସେ ଅନେକଙ୍କର ମନ ବଦଳେଇ ପାରିଲା । ସୃଷ୍ଟିକଲା ନାରୀକଲ୍ୟାଣ ସଙ୍ଘ ? ସମସ୍ତେ ସେମାନେ ଧନ୍ୟ ଧନ୍ୟ ପ୍ରଶଂସା କରୁଛନ୍ତି ।

Digitized by PPRACHIN, SOA

ପିଲାରୁ ବୁଢ଼ୀ ଯାଏ ସମସ୍ତେ କାର୍ଯ୍ୟବ୍ୟସ୍ତ । ଚର୍ଚ୍ଚା ହେଉଛି କାମ ସମ୍ବନ୍ଧରେ । ସବୁ ପ୍ରକାର କାମ ସେମାନେ ଶିଖୁଛନ୍ତି । ବଢ଼ାଉଛି ଆଗ୍ରହ ।

କପାଳେ ଥିଲେ ଝୁମ୍ପା ପଣକା ଝିଅ ଝଣ୍ଡେ ମିଳେ ଗୋ. ଏତେ ଭଲ କେମିତି ଶିଖେଇଲ ତାଙ୍କୁ ? ସବୁବେଳେ ହସ ହସ, ହେଲେ, ଜଳଜଳ ତପନଟାଏ ତ ! ଛୁଇଁବ କଏ, ଚାହିଁଲେ ତ ଆଖି ପୋଡ଼ିଯିବ । ନାଉ ନା କଥାରୁ ଯେ ବୟସ ବଢ଼ିଯିବ ? ପିଲା ବୟସରୁ ବାହା କରେଇଲେ, ପିଲାଟିଆ ପୁଞ୍ଜାଏ ପାଞ୍ଚଟା ହେଇ ପଚଶ ବର୍ଷକୁ ବୁଢ଼ୀ । ଆଉ ଏତେ ଛୁଆ ହେଲେ ସେମାନେ କ'ଣ ମଣିଷ ହେଇ ପାରିବେ ? କଏ କହିବ ଝୁମ୍ପାକୁ କତରରୁ ବେଶୀ ? ମନ ଯାହାର ନିଷ୍ପାପ, ଜୀବନ ଯାହାର ଧର୍ମମୟ, ଭାବନା ଯାହାର ଅନ୍ୟର ମଙ୍ଗଳ, ପରର ସେବା, ପରର ଉପକାର କରିବା କଥା ଯିଏ ସପନ ବି ଦେଖେ, ତା'ର ବୟସ ବଢ଼େ ନାହିଁ । କେଶ ଧଳା ହେଲେ ବି ସେ ପିଲା । ଦେବ, ଝୁମ୍ପାକୁ ମୁଁ ବୋହୂ କରିବି ।

ସୋମଗଡ଼ର ବୁଢ଼ା ମାନସିଂହଙ୍କର ପାକୁଆ ପାଟିଆ, ପାଚିଲା ଆମ୍ବ ପରି ଦେହ, ରୂପାମୁଣ୍ଡିଆ ଆଙ୍କୁଲୁ ଆକୁଳିଆ ଗେହ୍ଲଣୀ ବୁଢ଼ୀ କାନ୍ଧରେ ହାତଟା ବୁଣ୍ଡ ବୁଣ୍ଡ କହିଲେ, ମୋ'ପୁଅ ବିଶ୍ୱନାଥକୁ ଜୋଡ଼ିଏ ପୁରିଲା । କଟକ କଲେଜରେ ଏମ୍. ଏ. ପଢ଼ୁଛି ।

ଝୁମ୍ପାକୁ ମୋହର ଅଠେଇଶି ।

ତମ ଗଣ୍ଠିରେ ଅଠେଇଶି, ମୋ' ଗଣ୍ଠିରେ ଅଠର । ମୋ' ପୁଅକୁ ଦେଖିଛ କି ? ଛୁଟିରେ ଆସିଲେ ଦେଖିବ ଭଲ । ଝୁମ୍ପାଅପା ବୋଲି ସେ ପାଣି ପିଏ ନାହିଁ । ଝୁମ୍ପା ବି ତା'କୁ ସ୍ନେହ କରେ, ପାଠ ବତେଇ ଦିଏ । ବିଶ୍ୱନାଥ ପାଖରେ ଝୁମ୍ପା ଠିଆ ହେଲେ ମୋ' ଆଖି ପୁରିଉଠେ । ଯେତେ କି ରାମ ପାଖରେ ସୀତା, କି ବଳରାମଙ୍କ ପାଖରେ ରେବତୀ ! କହ, ରାଜି ତ ?

ମାନସିଂହଙ୍କର ସତର ବର୍ଷ ଝିଅ ଲାବଣ୍ୟପ୍ରତିମା ଲାବଣ୍ୟ, ସ୍ୱେଟର ବୁଣା ବନ୍ଦ ରଖି କେତେ ଖୁସିରେ, ପୁଣି ଲାଜେଇ ଲାଜେଇ ସତ୍ୟବତୀଙ୍କ ମୁହଁକୁ ଚାହିଁଲା । ଧୈର୍ଯ୍ୟ ରଖି ନ ପାରି ଅନୁନୟ କଲା, ହଁ କହ ମାଉସୀ, ତୁମକୁ ମୋ'ରାଣ । ଝୁମ୍ପାଅପା ମୋ'ର ନୂଆଉ ହେବ ।

ଲାବଣ୍ୟର ଓଠରେ ହାତ ଦେଇ ସତ୍ୟବତୀ କହିଲେ, ତୁ ତା'କୁ ପଚାରୁନୁ ?

ଏ କଥା ଝୁମ୍ପା ଅପାକୁ କିଏ ପଚାରିବ ? ଲାବଣ୍ୟ କହିଲା, ବାହା ନାମିତ୍ୟ କଥା ପଡ଼ିଲେ ଝୁମ୍ପାଅପା ବାଁରେଇ ହୋଇ ପଳାଏ । ବିଶିଭାଇଙ୍କୁ ତୁ ବାହା ହୁ କହିଲେ, ସେ ଆଉ ଆମ ଘର ମାଡ଼ିବେ ନାହିଁ । ଦିନେ ସେ କହିଲା, ଆରେ ମୋ'ର ଭଉଣୀମାନେ, ବାହା ନାମିତ୍ୟ କଥାରେ ଝିଅ ପୁଅଙ୍କର ମନ ବଳେଇବା ଭଲ ନୁହେଁ । ଯେଉଁମାନେ ଜନମ ଦେଇଛନ୍ତି ସେଇମାନଙ୍କର ଅଧିକାର ସେଇଟା । ଭଲକଥା ଶିଖିବା, ଭଲ ମଣିଷ ହେବା ଆମର ଦାୟିତ୍ୱ । ସର୍ବଂସହଣୀ ହୋଇ, ସବୁ କାମ କରି

Digitized by PPRACHIN, SOA

ହାତରେ କରି, ସୁଖ ଦୁଃଖକୁ ସମାନ ମଣି, ପର ଘରକୁ ହସଖୁସିରେ କିପରି ସମ୍ମାନ ପାଇବ, ସେଇ କଥା ଶିଖ । ବାପ ମା ପୁଅଝିଅଙ୍କର ଶୁଭ ମନାସନ୍ତି । ମନକଥା ବୁଝିବାକୁ ସେମାନେ ବଳେ ପଚାରିବେ । ଜୀବନ ସହଜ କଥା, ପଚାରିଲେ ନିଜ ମନକଥା ଲୁଚେଇବ ନାହିଁ ।

ବଉଳ କହିଲା, ଯଦି ନ ପଚାରନ୍ତି ?

ହଁ, ମାଅପା କହିଲା. ସେଇଟା ଅତି ଦୁର୍ଭାଗ୍ୟ କଥା । ମନକୁ ନ ପାଇଲେ ମନ ଖୋଲି ଦେଇ ଝିଅ ମା'କୁ କହିବା ଭଲ । ଏଥିରେ ଲାଜ ସରମ ନାହିଁ । ପରଘରେ ପରକୁ ଆପଣାର କରି ଚଳିବା ଦାୟିତ୍ୱ ଯେ ତୁମର ।

ସତ୍ୟବତୀ ଓ ରୋହିଣୀ ସ୍ନେହାପ୍ଲୁତ ଲୋଚନରେ ଲାବଣ୍ୟକୁ ଚାହିଁଲେ । ଘୁଲୁଘୁଲୁ କରି ବୁଢ଼ୀ ଘରଣୀ କଥା କହୁଛୁ । ଲୁଆ ବକଟେ । ଚାହିଁଦେଲାରୁ ଲାଜରେ ମୁହଁ ରଙ୍ଗ ହେଲା । ଉଠି ଚାଲି ଗଲା ସେ ।

ରୋହିଣୀ କହିଲେ, ରଣଗଡ଼ରେ ସମ୍ବନ୍ଧ ପଡ଼ିଛି ମୋ'ଝିଅର । ରଣସିଂହଙ୍କ ବଡ଼ପୁଅ ସୁବ୍ରତ ସଙ୍ଗରେ । ଫେରନ୍ତା ବେଉରା ଆସିନାହିଁ । ଖବର ପାଇଲୁ— ରଣସିଂହେ ସବୁ ସମ୍ପତ୍ତି ବ'ପୁଅଙ୍କ ହାତରେ ଦେଇ ଦେଇଛନ୍ତି । ପୁଅ ବଡ଼େ ନିଜର ଚଳିବା ମାନଅଁ କିଛି ରଖି ବାକିତକ ଗାଁ ଲୋକଙ୍କ ହାତକୁ ଟେକି ଦେଇଛନ୍ତି । ଏଇଟା ଭଲ କି ମନ୍ଦ ବିଶିବାପା ବିଚାରୁଛନ୍ତି— ।

ସତ୍ୟବତୀଙ୍କ ମନରେ ଆଶାର ପ୍ରଦୀପ ଧକ ଧକ ହୋଇ ଜଳିଲା । ସତେ ବ'ଣ ମାନସିଂହେ ଓ ରୋହିଣୀ ଆହୁତକୁ ବୋହୂ କରିବାକୁ ମନ ବଳେଇଛନ୍ତି ? କେଜାଣି ଏଇଟା ବି ଗୋଟାଏ ବିଦ୍ରୂପ ହୋଇପାରେ । ବିଶ୍ୱନାଥ ବୟସରେ ସାନ, ପାଠ ପଢ଼ୁଛି । ଜାତିଅଣ କଥା ଉଠି ନାହିଁ । ଉଠିଲେ ସେ କି ଉତ୍ତର ଦେବେ ? ତାଙ୍କର ବାପଘରର ସମ୍ବନ୍ଧ ଧରି ସେ ପରିତ୍ରାଣ ପାଇବାକୁ ଚେଷ୍ଟା କରିବେ ? ବାପଘର ଛାଡ଼ିଲା ଦିନୁ ସେ ମରିଛନ୍ତି । କାହାରି ସଙ୍ଗେ ତାଙ୍କର ସମ୍ବନ୍ଧ ନାହିଁ । ଦେଖାସାକ୍ଷାତ୍ ତ ଦୂରର କଥା, ସକାଳେ ସକାଳେ ଚିଠି ଖଣ୍ଡେ କେହି କାହାକୁ ଦେଇ ନାହାନ୍ତି ।

ଆଖିରୁ ଲୁହ ଝରିଲା । ମନେପଡ଼ିଲା ସେକାଳର କଥା । ଅତୀତ ମରେନାହିଁ । ଭୂତର ଧାରଣା ଚିରଦିନ ପଛରେ ଗୋଡ଼ାଇ ଭୟ ଦେଖାଏ । ଜାତିଆଣ ଟାଣ ଭାଙ୍ଗିପଡ଼ୁଛି । ପ୍ରଗତିର ଡାକର ଜବାବ୍ ଦେଉଛନ୍ତି ଯେଉଁ ଆଗୁଆମାନେ, ସେମାନେ ଜାତିଆଣର ବଡ଼ ସାନ ଭେଦଭାବକୁ ପାଦରେ ଦଳି ଆଗକୁ ମାଡ଼ି ଚାଲିଛନ୍ତି । ସୋମଗଡ଼ ପଛେଇ ରହେ ନାହିଁ । କିନ୍ତୁ ପୁରୁଣାକାଳିଆ ରକ୍ଷଣଶୀଳ ଅଛନ୍ତି କେତେଜଣ

Digitized by PPRACHIN, SOA

ସେମାନେ ନିହତ ହେଉଛନ୍ତି। ବାଟରେ ଟିଆହୋଇ ପଛକୁ ଅସ୍ତାଚଳକୁ ଫେରି-ଚାହୁଁଛନ୍ତି। ମାନସିଂହ ଓ ରୋହିଣୀ କ'ଣ ଚାହାନ୍ତି ?

ଅଦ୍ଭୁତ ମନ ଦେଇ ଚିଠିଖଣ୍ଡେ ପଢ଼ୁଛି। ମୁହଁରେ ହସ ଲାଗି ରହିଛି। ଡାକିଲେ, ଶୁଣ—

ଅଦ୍ଭୁତ ମୁହଁ ଟେକିଲା।

କାହାର ଚିଠି ପଢ଼ୁଛ ?

ମଙ୍ଗଳପୁରରୁ ବୋହୂଟିଏ ଲେଖିଛି। କେଡ଼େ ସରଳ ଝିଅଟିଏ। ଶୁଣିବୁ ? ଲେଖିଛି, ଯେତେ ଯାହା କଲେ ଶାଶୁବୁଢ଼ୀ ସବୁବେଳେ ଖାଲି ଚିଡ଼ି ଚିଡ଼ି ହେଉଛନ୍ତି। ଉପରକୁ ଗୁଞ୍ଜୁଣୀ ଫୋପାଡ଼ୁଛନ୍ତି। ତାଙ୍କର ନାତି ନ ହୋଇ ନାତୁଣୀ ହାଉଁଳା ହେଲା ସେଥିପାଇଁ ମୋ' ଦୋଷ ଦେଉଛନ୍ତି। ବେଳେ ବେଳେ ତନ ଦୋଷ ଦେଉଛନ୍ତି। ପିଲା ପେଟରେ ନ ରହୁଣୁ ନାହାକ କହିଥିଲା ପ୍ରଥମ ସନ୍ତାନ ପୁଅ ହେବ। ପିଲା ପେଟରେ ରହିଲାରୁ ନାଡ଼ି ଦେଖି ବେଇ ନାହାକ କହିଲା ପୁଅ ହେବ ତ। ଶାଶୁଙ୍କୁ ମଙ୍ଗଳା ଠାକୁରାଣୀ ପୁଅ ହେବ ବୋଲି ସପନେଇ ଥିଲେ। ତମର ଔଷଧ ଖାଇଲାରୁ ଢନା କଷ୍ଟରେ ସୁ ବୁଝୁରୁରେ ପିଲାଟା ସିନା ପଦାକୁ ଆସିଲା, ପୁଅଟା ଝିଅ ହୋଇଗଲା। ନାହାକ କହିଲେ, କଷ୍ଟ ନ ସହିଲେ ପୁଅ କପର ହେବ ? ସେଇଥିପାଇଁ ବୁଆଡ଼େ ଝିଅ ହେଲା। ଶୁଣିନାନି, ଏଥର ଆଇଲା ବେଳକୁ ଦୁ'ଟା ଔଷଧ ଆଣିବ। ଯେଉଁ ଔଷଧ ଝିଅକୁ ଦେଲେ ପୁଅ ହେଇଯିବ, ପୁଣି ଯେଉଁ ଔଷଧ ବୁଢ଼ୀଙ୍କୁ ଦେଲେ ତା'ଙ୍କ ଚିଡ଼ାରୋଗ ଛାଡ଼ିବ। ମୋ' ଗୁଣ—

ଅଦ୍ଭୁତ ହସିଉଠିଲା। ସତ୍ୟବତୀ ଗମ୍ଭୀର ଅଜଣା କେଉଁ ବୋହୂଟିର ଭୋଳୁଆ ଚିଠି ଖଣ୍ଡେ ପଢ଼ି ଅଦ୍ଭୁତ କେଡ଼େ ଖୁସି ହୋଇପାରେ, ସେଇଆ ସେ ଲକ୍ଷ୍ୟ କରୁଛନ୍ତି।

ଅଦ୍ଭୁତର ହସ ବନ୍ଦ ହେଲା। ସତ୍ୟବତୀ ଗେହ୍ଲେଇ ପଚାରିଲେ, ମାନସିଂହଙ୍କର ସ୍ତ୍ରୀ ରୋହିଣୀ କପରି ଲୋକ ଶୁଣ ?

ଖୁବ ଭଲ ଲୋକ। ପର ଆପଣା, ଛନ୍ଦ ମନ୍ଦ ଜାଣନ୍ତି ନାହିଁ। ନିଜର ପୁଅ ଝିଅ ପରି ପର ଘରର ପୁଅ ଝିଅଙ୍କୁ ସେ ଭଲ ପାଆନ୍ତି। ନୂଆ କଥା ଜାଣିବାକୁ, ନୂଆ କଥା ଶିଖିବାକୁ ବଡ଼ ଆଗ୍ରହ—।

ଯାଇଥିଲି ତା'ଙ୍କ ଘରକୁ ସେ ସେ କହୁଥିଲେ—। ସତ୍ୟବତୀ ଟିକିଏ ରହି ପୁଣି କହିଲେ, ତା'ଙ୍କ ଝିଅର ବାହାଘର କରିବାକୁ ସେ ମନ କଲେଣି—

ଲବଙ୍ଗର ? ଅଛି ପିଲାଟା। ଗେହ୍ଲାରେ ବଢ଼ିଛି। କଥା କହି ଶିଖି ନାହିଁ। ମୁଁ ତା'ଙ୍କୁ ବୁଝାଇ କହିବି, ଯାଉ ଆଉ ଦନା କେତେ।

ନାହିଁ ମା ଶୁଣ, ବାହାନପିତ୍ୟ କଥାରେ ବାଧା ଦେବା ଉଚିତ ନୁହେଁ। ଲୋକେ ଅବଗୁଣ ପାଇବେ। ଝିଅର ସମ୍ବନ୍ଧ ସେ ପକାଇ ସାରିଲେଣି ରଣଗଡ଼ରେ।

Digitized by PPRACHIN, SOA

ନିଦୁଆ ଲୋକକୁ ହଠାତ୍ କିଏ ହଲାଇ ଉଠାଇ ଦେଲା ପରି ସେ ମଣିଲା । ପଚାରିଲା, ରଣଗଡ଼ରେ ?

ହିଁ, ରଣସିଂହଙ୍କର ବଡ଼ ପୁଅ ସୁବ୍ରତ ସଙ୍ଗରେ । ରଣସିଂହଙ୍କର ଉତ୍ତରକୁ ଅପେକ୍ଷା କରିଛନ୍ତି ।

ସ୍ମିତ ଉଚ୍ଛୁଳି ଉଠି ଆସୁଥିବା ଲୋତକୁ ଅଟକାଇ ରଖି ଆହ୍ଲାଦ କହିଲା, ହେଉ — ।

ଧୀରେ ଧୀରେ ସେ ପଲଙ୍କ ଉପରୁ ଉଠି ଠିଆହେଲା । ମୁହଁ ଫେରାଇ କହିଲା, ଦେଖେଁ ସେ ପିଲାଟା ରୋଷେଇଘରେ କ'ଣ କରୁଛି । ଝୁନା ପାଖକୁ ଚିଠି ଲେଖିବୁ ପରା କହୁଥିଲୁ, ତୁ ବସି ଚିଠି ଲେଖୁ ଥା— ।

ବଜ୍ରବାହୁଙ୍କର ବାହାଘର ହେବ, ବାହା ହେବ ଲାବଣ୍ୟ । କେଡ଼େ ଭଲ କଥା । ସତେ, କେଡ଼େ ଭଲ ହେବ । ଲାବଣ୍ୟର ବାହାଘର, ବାହାହେବେ ସୁବ୍ରତ ବଜ୍ରବାହୁ । ନଳରାଜ ! ଫେରି ଆସିଛନ୍ତି ଆଦର୍ଶ ପୁରୁଷ, ଆଦର୍ଶ କର୍ମୀ । ରଣଗଡ଼ରେ ସୃଷ୍ଟି କରିଛନ୍ତି ବିପ୍ଳବ ! କାର୍ଯ୍ୟ ଉପଲକ୍ଷରେ ଧାଇଁଯାଇ ଦେଖି ଆସିବାକୁ ମନ ଉଚ୍ଛନ୍ନ ହୋଇଛି । କ'ଣ ତା'ର ପାଦ ଦୁଇଟିକୁ ଅଟକାଇ ରଖିଛି ?

ଅଜଣା ସଙ୍କୋଚ ।

ଦୁଇ ଅଗଷ୍ଟରେ କଲେଜ୍ ଡ୍ରାମାରେ ଗୋଟିଏ ଖେଳ । ସାମାନ୍ୟ ଉତ୍ତେଜନା । ଖଣ୍ଡିଏ ପଦ । ଡରି ଡରି ଆଗମନ । ମନ ମାରି ଥରି ଥରି ପ୍ରସ୍ଥାନ । ସେତିକି । କଲେଜରେ କେବେ କପରି ଦେଖା—କ୍ଲାସ୍‌ରୁମ୍, ବାରଣ୍ଡା, ଖେଳପଡ଼ିଆ । ଆଖି ଆଖିର ମିଳନ । ଫିକା-ପାହାନ୍ତିର ଅସ୍ପଷ୍ଟ ଆଲୁଅ ପରି ନୀରବ ସ୍ମିତ । ରହି ରହି ପ୍ରସ୍ଥାନ ।

କେବେ କେମିତି ହସଖୁସିଆ ଢଙ୍ଗରେ, ନମସ୍କାର, ଆହ୍ଲାଦଦେବୀ ।

ପ୍ରତି ନମସ୍କାର । ଓଠରେ ହସ । ମୁହଁରେ ଭାଷା ନାହିଁ । ମନ ପଚାରୁଛି ଅନେକ ପ୍ରଶ୍ନ । ଉତ୍ତର ପାଉଛି ।

ଭଲ ଅଛନ୍ତି ଆହ୍ଲାଦଦେବୀ ?

ଧନ୍ୟବାଦ, ଭଲ ଅଛି । ଆପଣ ?

ଜାଣନ୍ତି ତ ମୁଁ ଫେଲ୍ ହୋଇଛି । ମନ ବିଚଳିତ ।

ଇତିହାସରେ ସିନା ଫେଲ୍ ହେଲେ, ଗେମ୍‌ସରେ ଆପଣ ଚମ୍ପିଅନ୍ ହୋ'ଇଛନ୍ତି । କଲେଜରେ ନାମ ରଖିଛନ୍ତି । ମନ ସ୍ଥିର କରନ୍ତୁ, ଇତିହାସ ମଧ୍ୟ ଆୟତ୍ତ ହେବ ।

Digitized by PPRACHIN, SOA

କଲେଜ୍ ଜୀବନ ସରିଗଲା । ଫେରି ଚାହିଁଲେ ଅତୀତରେ କେବଳ ବଜ୍ରବାହୁ ପଡ଼େ ନାହିଁ, ଜଣା ଅଜଣା ଅନେକ ବନ୍ଧୁ ଦିଶିଯାଆନ୍ତି, ଯିଏ ବସ୍ତୁସରେ ସ୍ଥାନ ନିଏ ବଡ଼ । ଧନୀ, ମଧ୍ୟବିତ୍ତ, ନିର୍ଦ୍ଧନ, ଦୁର୍ବଳ, ସବଳ, ଭଲ ଗ୍ରୁପ୍, ମନ୍ଦ ଗ୍ରୁପ୍, ଖୋଲାମନ, ଚୁପ୍-ସଇତାନ ।

ସେମାନେ ପ୍ରେମିକ ନୁହନ୍ତି, ସେମାନେ ବୃହନ୍ନଳୀ । ପର ଜୀବନରେ ଆସିଥିଲେ ଯେଉଁମାନେ ପ୍ରେମିକ ସାଜି, ସେମାନେ ରୂପଲୋଭୀ, ସମ୍ଭୋଗଲାଳସୀ । ଦାୟିତ୍ୱ ବହନ କରିବାକୁ ପାଶ୍ଚାତ୍‌ପଦ । ଫେରିଗଲେ ପଛକୁ ଚାହିଁ ଚାହିଁ ।

ଧୂମକେତୁ ପରି ତାଙ୍କର ଆଗମନ ଓ ପ୍ରସ୍ଥାନ । ରୂପର ମୋହରେ ଆସି ନ ଥିଲେ, ପ୍ରେମ ନିବେଦନ କରି ନ ଥିଲେ । ହାଣିଥିଲେ ବଜ୍ର ପରି ବାକ୍ୟବାଣ । ଥରଟିଏ ଫେରି ଚାହିଁଥିଲେ । ନଳରାଜ, ପ୍ରସ୍ଥାନ । ଦମୟନ୍ତୀର ବୀଜବପନ । ଖଣ୍ଡିଏ ପତ୍ର ସେ ଲେଖିଥିଲା ଆଗ । ଅଙ୍କୁରର ଆଲୋକ-ସ୍ପର୍ଶର ଉଦ୍‌ବିଗ୍ନତା । ଖଣ୍ଡିଏ ଉତ୍ତର । ଆଲୋକପାତ । ଦମୟନ୍ତୀର ହୃଦୟ ଭିତରେ ପତ୍ର ମେଲିଲା । ଦେଖାସାକ୍ଷାତ ହୋଇ ନାହିଁ । ପତ୍ରବିନିମୟ ନାହିଁ । ଭାବର ବିନିମୟ । ଆଦର୍ଶର ସମତା । କର୍ମ ସାଧନାର କମ୍ପିଟିସନ୍ । ବାଦରୁଦିଆ ପଣ । ଧନଞ୍ଜୟ ହିଁ ଦୂତାଳୀ । "ଢାଲୀ" ପତ୍ରିକା ହଂସଦୂତ ।

କର୍ମପଥରେ ରଣଗଡ଼ ସଙ୍ଗେ ପରିଚୟ । ସୁକନ୍ୟା, ମମତା, ରଣସିଂହ, ସୁରତ । ମନର ଦୁର୍ବଳତା ସେମାନଙ୍କୁ ଅତି ଆପଣାର କରି ଦେଇଥିଲା । ଘନିଷ୍ଠତା ବଢ଼ାଇଥିଲା । ଦୁର୍ବଳତା ହିଁ କର୍ମୀର ପରାଜୟ ସଙ୍କେତ ।

ବଜ୍ରବାହୁ ବିଜୟୀ । ଦୁର୍ବଳତାକୁ ମନରେ ସ୍ଥାନ ଦେଇ ନାହାନ୍ତି । କଟକରେ ଥାଇ ମଧ୍ୟ ବନ୍ଧୁ ଆହୁତର ଭଲମନ୍ଦ ବୁଝିବାକୁ କେବେ ଆସି ନାହାନ୍ତି । ରଣଗଡ଼କୁ ଫେରି କାର୍ଯ୍ୟରେ ମନପ୍ରାଣ ଢାଳି ଦେଇଛନ୍ତି । ଆହୁତ ଗୋମଗଡ଼ର ମୋଟେ ଆଠ ମାଇଲ ଦୂରରେ ଅଛି । ଏ କଥା ତାଙ୍କୁ ଅବିଦିତ ନାହିଁ । ହୁଏ ତ, ଆହୁତର ଦମୟନ୍ତୀର ସ୍ମୃତି ମନରୁ କେବେଠୁଁ ପୋଛି ଦେଇଥିବେ ।

କେଡ଼େ ନିର୍ବୋଧ ସେ ଆହୁତ ! ଛଅ ବର୍ଷ ପୂର୍ବେ ଗୋଟିଏ ସନ୍ଧ୍ୟାର ସାମାନ୍ୟ ଘଟଣା ଓ ପରିହାସରେ ଲେଖିଥିବା ଖଣ୍ଡିଏ ପତ୍ରକୁ ଅବଲମ୍ବନ କରି ଲାବଣ୍ୟର ବିଭାଘର କଥା ଶୁଣି ଦୁଃଖ କରୁଛି । ଈର୍ଷାର ଅନଳ ଜଳାଉଛି ମନରେ । ଛି, ଛି— । ଲାବଣ୍ୟ ବିବାହ କରୁ ବଜ୍ରବାହୁଙ୍କୁ । ସୁଖରେ ସେମାନେ ସଂସାର କରନ୍ତୁ । ସବୁ ଦୁର୍ବଳତା ପୋଡ଼ିଜାଳି ଭସ୍ମ କରିବ । ଦମୟନ୍ତୀ ପୋଡ଼ିଜଳି ପାଉଁଶ ହେବ । ମନ ହେବ ନିର୍ମଳ, ଚିନ୍ତା କଳୁଷଶୂନ୍ୟ, କର୍ମ ନିର୍ଦ୍ୱନ୍ଦ୍ୱ ।

କାନ୍ଦୁଛି କାହିଁକି ଟୁନିଅପା ?

ବାର ବର୍ଷର ଅନାଥ ପିଲାଟି ସୋମନାଥ । ସତ୍ୟବତୀ ଘରେ ଆଶ୍ରା ଦେଇଥିଲେ । ସମସ୍ତେ ତା'କୁ ଆଦର କରନ୍ତି, ସ୍ନେହ କରନ୍ତି । ସମସ୍ତଙ୍କର ସେ

Digitized by PPRACHIN, SOA

ହାତବାରସି । ପରଘରର ଧାରଣା ମନରୁ ଦୂର ହେଲାଣି । କାମ ସଙ୍ଗେ ସଙ୍ଗେ ଲେଖାପଢ଼ା ଶିଖିବାକୁ ଚେଷ୍ଟା କରୁଛୁ । ସେଇ ପଚାରିଲା ।

ଚମକି ଉଠିଲେ ଆହ୍ଲାଦ । ଆଖିରୁ ଲୁହ ପୋଛି ସୋମନାଥର ପୂଚୁକା ଗାଲରେ ସରୁ ଚାପୁଡ଼ା ମାରି ହସି ହସି ପଚାରିଲା, କଅଣ କରୁଛୁ ?

ହସୁଛି ତ ଏବେ ।

କାନ୍ଦୁ କାନ୍ଦୁ ତୁ କେବେ ହସିଲୁ କି ସୋମନାଥ ?

ଥରେ ଟ୍ରେନଅପା ଶୋଇଥିଲି । ସପନ ଦେଖିଲି, ଗୋଟିଏ ଭୂତ ମୋ'ର ଗୋଡ଼ ଧରି ଟାଣୁଛି । କି ବିକଟାଳ ରୂପ ! କେଡ଼େ ବଡ଼ ଆଁ ! କାନ୍ଦିଲି । କିଏ ମତେ ହଲଇ ଉଠାଇଲେ । ନିଦ ଭାଙ୍ଗିଲା । ଦେଖିଲି ଆଲୁଅ ଜଳୁଛି । ବୋଉ ମୋ' ପାଖରେ ବସିଛି । ପଚାରିଲା, କାଳେ କାନ୍ଦୁଛୁ କାହିଁକି ? ଅନେଇଲି, ଭୂତଫୁତ କେହି ନାହିଁ । ଉଠିବସିଲି । ବୋଉ ମୁହଁକୁ ଚାହିଁଲି । ଲାଜ ମାଡ଼ିଲା । ଖାଲି ହସିଲି ତ, ହସି ହସି ନୟାନ୍ତ ହେଲି ।

ଆହ୍ଲାଦ ମୁହଁକୁ ଚାହିଁ ରହିଲା । ସତେ କି ନିଜକୁ ସେ ନିଜେ କହିଲା, ଭୂତ ଧରିଲେ ମଣିଷ କାନ୍ଦେ, ଭୂତ ଛାଡ଼ି ପଳାଇଲେ ସେ ପୁଣି ହସେ । ଚୁଲି ଉପରେ କଅଣ ବସେଇଛୁ କି ରେ ?

ଡାଲି ।

ତୁ ଏଥର ଯା, ମୁଁ ରୋଷେଇ କରିବ ।

ସତ୍ୟବ୍ରତ ଆସି ପାଖରେ ଠିଆହେଲେ । କହିଲେ, କିଏ ଜଣେ ଭଦ୍ରଲୋକ ଆସିଲେଣି ଲୋ ଆହ୍ଲାଦ, ଦାଣ୍ଡଘରେ ତାଙ୍କୁ ବସାଇ ଦେଇ ଆସିଛି । ତୁ ଯା ।

ଉତ୍ତର ନ ଦେଇ ଆହ୍ଲାଦ ଛୁଟିଆସିଲା । ପରଦା ଫାଙ୍କରେ ଆଖି ପଡ଼ିଲା ଯାହାଙ୍କ ଉପରେ ସେ କେବେ ଏପରି ଅସମୟରେ ଆସିବେ ବୋଲି ସ୍ୱପ୍ନରେ ସୁଦ୍ଧା ଭାବିପାରି ନ ଥିଲା ।

ନୂଆ ଯୁଗର ଡାକରେ ରଣଗଡ଼ ଆଗେଇ ଚାଲିଛି । ରଣଗଡ଼ ନିଜକୁ ନିଜେ ଗଢ଼ୁଛି । ଉତ୍ସାହର ଢେଉ ଖେଳିଯାଇଛି ସମସ୍ତଙ୍କ ମନରେ । ସମସ୍ତେ ଅନୁଭବ କରଛନ୍ତି, କୌଣସି କର୍ମ ସମ୍ପାଦନ କରିବା ଅସମ୍ଭବ ନୁହେଁ । ଚନ୍ଦ୍ର ଓ ମଙ୍ଗଳଗ୍ରହକୁ ଯିବାର ଆକାଙ୍କ୍ଷା ଫଳବତୀ ହେବାକୁ ବସିଛି । ଆଉ କେଉଁ କଥା ଅସମ୍ଭବ ? ପୃଥିବୀ ଚାରିପାଖେ ଯେଉଁମାନେ ନୂଆ ଚନ୍ଦ୍ର ବୁଲେଇ ପାରିଲେଣି, ସେମାନେ ବି ମଣିଷ । ଜଣେ ମଣିଷ କି ଗୋଟିଏ ଜାତି ପକ୍ଷରେ ଯାହା ସମ୍ଭବ, ଅନ୍ୟ ଦେଶର ମଣିଷ ପକ୍ଷରେ ତାହା ଅସମ୍ଭବ ହେବ ନାହିଁ । ସୁବିଧା ଓ ସୁଯୋଗ କରିପାରିଲେ ହେଲା ।

Digitized by PPRACHIN, SOA

ବିନା ଚିନ୍ତା ଓ ଉଦ୍ୟମରେ ସୁବିଧା ଓ ସୁଯୋଗ ମିଳେ ନାହିଁ । ରଣଗଡ଼ର ସମସ୍ତେ ଏହା ବୁଝି ସାରିଲେଣି ।

ବଜ୍ରବାହୁ ଏହି କଥା ହିଁ ଅନୁଭବ କଲା । ସେବକ ସଙ୍ଘ ଆଗ୍ରହରେ ତାକୁ କେବଳ ସଭ୍ୟରୂପେ ଗ୍ରହଣ କଲା ନାହିଁ ତ, ଆପଣାର ରୂପେ ବରଣ କରି ନେଲା । ରଣସିଂହେ ସବୁ ଧନସମ୍ପତ୍ତି ଦୁଇ ପୁଅଙ୍କ ହାତକୁ ଟେକିଦେଇ କହିଲେ, ଏ ସବୁ ଥିଲା ତମର ପାଇଁ ବାପ, ଯାହା ନଷ୍ଟ ହୋଇଛି କି ଧ୍ୱଂସ ହୋଇଛି, ସେ କଥା ଭାବି ଆଉ ଲାଭ ନାହିଁ । ସମ୍ପତ୍ତିର ବୋଝ ମୁଣ୍ଡେଇ ବୁଲିବାର ବୟସ, ଶକ୍ତି କି ବୁଦ୍ଧି ଆମର ନାହିଁ । କିପରି ବ୍ୟୟ କରାଯାଏ, ସେ ବିଷୟ ମଧ୍ୟ ଆମକୁ ଜଣା ନାହିଁ । ଆମ ଯୁଗରେ ସମ୍ପତ୍ତିର ମୂଲ୍ୟ ଓ ବ୍ୟବହାର ଥିଲା ଅଲଗା । ଏ ଯୁଗରେ ତା'ର ମୂଲ୍ୟ ବଦଳିଛି ।

ପୁରୋହିତେ କହିଲେ, ପୁଅ ନାତିଙ୍କ ପାଇଁ ସମ୍ପତ୍ତି !

ନେଉନ୍ତୁ ସେମାନେ ପୁରୋହିତେ, ସେମାନେ ଭଲରେ ଓ ସୁଖରେ ଚଳିଲେ ଆମର ଆନନ୍ଦ । ଅମୂଲ୍ୟ କିପରି ଚଳାଇବେ, କେଉଁ କାମରେ ଲଗାଇବେ ସେ ଦାୟିତ୍ୱ ତାଙ୍କର ।

ଦୁଇ ଭାଇ ନିଜର ଚଳିବାମାନଅଁ ଭୂମି ହାତରେ ଚାଷ କରିବାପାଇଁ ରଖି ବାକିତକ ଭୂମିହୀନଙ୍କୁ ବାଣ୍ଟିଦେବାକୁ ଗ୍ରାମବାସୀଙ୍କ ହାତରେ ଅର୍ପଣ କରିଛନ୍ତି । ଧର୍ମାନନ୍ଦ ପିତାଙ୍କର ଉପଦେଶକ୍ରମେ ସେଇଆ କରିଛନ୍ତି । ଗ୍ରାମର ଅନ୍ୟ ବଡ଼ ଚାଷୀମାନେ ଆଗେଇ ଆସିଲେଣି । ଭୂମି ବଣ୍ଟନର ଦାୟିତ୍ୱ ପଡ଼ିଛି ରଣସିଂହ, ପୁରୋହିତ ଓ ଆଉ କେତେଜଣ ମୁଖିଆ ଲୋକଙ୍କ ଉପରେ । ଏ ସବୁ ମଧ୍ୟ କୋଠଚାଷ ହେବ ବୋଲି ସ୍ଥିର କରାହୋଇଛି । ଚାଷୀମାନେ ଯେଉଁ ଭୂମି ହାତଚାଷ ପାଇଁ ନିଜର କରି ରଖିଥିଲେ, ସେ ସବୁ ମଧ୍ୟ କୋଠଚାଷ କରିବାକୁ ଯୋଜନା କଲେଣି । ଘନଘଡ଼ି ଏଇ ଚର୍ଚ୍ଚା ଚାଲିଛି ।

ମମତା ନାରୀକଲ୍ୟାଣ-ସଙ୍ଘର ଦାୟିତ୍ୱ ବହନ କଲା ପରେ ନୂଆ ଉତ୍ସାହ ଖେଳିଯାଇଛି ନାରୀମାନଙ୍କ ମନରେ । ସତେ କି ସେମାନେ ନୂତନ ଜୀବନ ଲାଭ କରିଛନ୍ତି । ଜାତିଅଜାତି ଛୁଆଁ ଅଛୁଆଁ ଭେଦଭାବ ସିନା ଦୂର କରି ହେଲା, ସେମାନଙ୍କର ସ୍ୱଭାବ ପ୍ରକୃତି ଆର୍ଥିକ ଅବସ୍ଥା ଏତେ ଶୀଘ୍ର ବଦଳି ପାରୁନାହିଁ । କେବଳ ଆଗକୁ ସାଥୀରୂପେ ପାଇ ସେ ସନ୍ତୁଷ୍ଟ ହୋଇ ପାରିନାହାନ୍ତି । ଅନେକ ବିଷୟ ସେମାନେ ଜାଣନ୍ତି ନାହିଁ । ଖାଲି ସ୍ନେହ ଶରଧାରେ ପରସ୍ପରକୁ ବାନ୍ଧିରଖିଲେ ଅବସ୍ଥା ସୁଧୁରିବ ନାହିଁ । ଶିଖାଇବାକୁ ଓ କର୍ମ କରାଇବାକୁ କର୍ମୀ ଲୋଡ଼ା ।—ଅବିକଳ ଆହୁତ ପରି ।

କାହିଁ ସେ ? ସମସ୍ତେ ଏହି ପ୍ରଶ୍ନ ପଚାରୁଛନ୍ତି । ସୋମଗଡ଼ରୁ ବେଳେ ବେଳେ କେତେ କର୍ମୀଭାଇ ଆସି ନୂଆ କଥା ଶିଖାଉଛନ୍ତି, ଛବି ଦେଖାଇ ବୁଝାଇ ଦେଉଛନ୍ତି

Digitized by PPRACHIN, SOA

ଅପରିଷ୍କାର ହେଲେ ମଣିଷକୁ ନାନା ରୋଗ ଆକ୍ରମଣ କରେ, ଆଳସ୍ୟରେ ସମୟ କଟାଇଲେ ଜୀବନ ନଷ୍ଟ ହୁଏ, ଅଳ୍ପ ବୟସରେ ପିଲାଙ୍କୁ ବାହା କରାଇଲେ ଅକାଳ-ବାର୍ଦ୍ଧକ୍ୟ ଘୋଟିଆସେ ଓ ବେଶିଗୁଡ଼ାଏ ଛୁଆପିଲା ହୋଇ ଦୁଃଖ ଦରିଦ୍ରତାରେ ବେଳ କଟେ —, ଏମିତ କେତେ ବିଷୟ ।

ସବୁ କଥା ବୁଝିହୁଏ ନାହିଁ । ବୁଝିଲେ ବି ମନେ ରହେ ନାହିଁ । ଯେଉଁ ପାଞ୍ଚ କଥା ମନେ ରହେ, ସେତକ ବି କରି ଆସେ ନାହିଁ । ହଁ, ହୃନାନୀ ସବୁ ଜାଣେ । ଘର ଘର ପଶି, ଆଗ୍ରହରେ, ଯତ୍ନରେ ସଫାସୁତୁରା କରେ, ଶିଖାଏ, ଦେଖାଏ । ପିଲାଙ୍କୁଅଙ୍କର କପଡ଼ ଯତ୍ନ ନେବାକୁ ହେବ, କେତେବେଳେ କଅଣ କପଡ଼ ଖାଇବାକୁ ଦେବ, ରୋଗ ହେଲେ ଡାକ୍ତର ବଇଦଙ୍କ ହାତକୁ ଛାଡ଼ି ନ ବସି କି ଔଷଧ ଦେବ, ତାକୁ ସବୁ ଜଣା, ସବୁ ସେ କରେ, ପୁଣି ଶିଖାଇ ଦିଏ ।

କେତେ ଗାଁ ସେ ବୁଲୁଛି । ଏଇ ଗାଁକୁ ଆସୁନାହିଁ । କେତେ ଦିନ କଟି-ଗଲାଣି । ଏମିତ ପର କରଦେଲା କାହିଁକି ? ହୃନାନୀର ସବୁ ଗୁଣ, ସବୁ କାମ, ପଦ ପଦ କରି ସୁବ୍ରତ ଆଗରେ କହି ସନ୍ଧ୍ୟା ପୁଣି କହିଲା, ଫଟୋ ଖଣ୍ଡି ନେବାକୁ କେତେଥର ସେ ମାଗିଲା । ଦେଲ ନାହିଁ ବୋଲି ରାଗ କଲା କି ?

ସୁବ୍ରତ ଭଉଣୀର ମୁହଁକୁ ଚାହିଁଲା ସ୍ନେହଭରା ଆଖିରେ । ସନ୍ଧ୍ୟା କେଡ଼େଟିଏ ହେଲାଣି । ଆହୁରି ସୁନ୍ଦର ଦିଶୁଛି ତା'କୁ ସାଧାରଣ ବେଶ । ସବୁ ବିଷୟରେ ସେ ହୋଇଛି ବିଚକ୍ଷଣ, ବୁଦ୍ଧିମତୀ । କେତେ ପାଠ ପଢ଼ିଛି । କେତେ କାଠର କାମ ଶିଖିଛି । ଯେଉଁ ମାଳାଟି ଆଣି ସେ ସୁବ୍ରତକୁ ଦେଖାଉଥିଲା, କେଡ଼େ ଚମତ୍କାର ହୋଇଛି ସେଇଟି । ଗରଗଡ଼, ଧଳା କଳା କାଇଁଚ, ଧାନ, ମୁଗ, ହରଡ଼, କଖାରୁ ମଞ୍ଜିରେ ତିଆରି କରିଛି ।

ମାଳାଟିକୁ ଡକାଇ ସୁବ୍ରତ କହିଲା, ଏଇଟି ମତେ ଦେବୁ କି ସନ୍ଧ୍ୟା ?

ମୁଣ୍ଡ ହଲାଇ ସନ୍ଧ୍ୟା କହିଲା, ନାଇଁ । ଏଇଟି ହୃନାଅପା ପାଇଁ କରିଛି । ସେ ଆସିଲେ ତା' ବେକରେ ମୁଁ ଝୁଲାଇଦେବି । ତମ ପାଇଁ ଆଉ କାଠର ଗୋଟିଏ କରିଦେବି ।

ଫଟୋଟି ଦେଇ ଦେଲୁ ନାହିଁ ତାକୁ ?

ତେମେ ତା'କୁ ଶରଧା କର ।

କେଉଁଠି ରଖିଛୁ ?

ମା' ନେଇ ବାପାଙ୍କୁ ଦେଖାଇଲେ । ସେଇଠୁ ଆଣି ନଇଦରେ ଟାଙ୍ଗିଲେ । ହୃନାଅପା ପିନ୍ଧା ଲଗାଉଥିଲା ତମ ପାଖରେ ଦମୟନ୍ତୀ ହୋଇ କିଏ ଠିଆ ହୋଇଛି । ତନେ ଖୁଡ଼ୀ ଚହିଲା— ।

ସତେ ?

Digitized by PPRACHIN, SOA

ହଁ, ଭାଇ । ନୂଆଅପାକୁ ମୁଁ ସେ କଥା ଲେଖିଦେଲି । ସେ ମାନିଛି । ଚିଠି ଲେଖିଛି ।

ସୁବ୍ରତ କହିଲା, ଓ ! ସେଇଥିପାଇଁ ସେ ଏ ଗାଁକୁ ଆସୁ ନାହିଁ । ଆସିବ ବି ନାହିଁ ଲଜ୍ଜିତ ହୋଇଛି ।

ସୁକନ୍ୟା ମୁହଁ ଶୁଖାଇଲା ।

ଆହ୍ଲାଦର ରୂପ ଅଖି ଆଗରେ ଠିଆ ହେଲା । ସତେ କି ବିଦ୍ରୂପ କରି କହି ଉଠିଲା, ତୁମେ ଯାହା କରିବାକୁ ସକ୍ଷମ ହୋଇ ନ ଥିଲ, ମୁଁ ତାହା କରି ପାରିଛି ନନ୍ଦରାଜ ! ଦେଖ, ଚାରିଆଡ଼କୁ ଚାହିଁ ଦେଖ ।

ଯୁଆଡ଼େ ଗଲେ ଶୁଣୁଛି ଆହ୍ଲାଦର ପ୍ରଶଂସା । ସେ କେମିତି ଆସେ, ଘରେ ଘରେ ପଶି କ'ଣ କହେ, କଅଣ କରେ । ବଡ଼ସାନ ଭେଦ ରଖେ ନାହିଁ । କାହାରିକୁ ଅସୁଖ ପାଏ ନାହିଁ । ମୁହଁ ଶୁଖାଏ ନାହିଁ । ସବୁବେଳେ ହସ, ସବୁବେଳେ ଖୁସି । ନିଜେ କାମ କରି ଅନ୍ୟମାନଙ୍କୁ କାମ ଶିଖାଏ । ଗାଳିମନ୍ଦ କଲେ ତୁନି ହୋଇ ଶୁଣେ । ସବୁ ଶୁଣି ଛଳ ନ କରି ନ ଜାଣିଲା ପରି ପ୍ରଶ୍ନ ପଚାରି ଉତ୍ତର କାଢ଼େ । କଥା କହୁ କହୁ ଗାଳିଦେବା ଲୋକ ନିଜର ଭୁଲ୍ ବୁଝି ଲଜ୍ଜିତ ହୁଏ ।

ସମସ୍ତେ ସେମାନେ ଝୁର ହେଉଛନ୍ତି ।

ଯୁଆଡ଼େ ଚାହିଁଲେ ଆହ୍ଲାଦର ଚିନ୍ତା, ଶିକ୍ଷା ଓ କର୍ମ ଦିଶିଯାଉଛି । ସବୁ କାର୍ଯ୍ୟ ଓ ଉଦ୍ୟମ ଭିତରେ ଯେପରି ସେ ଉଭା ହୋଇଛି । କହୁଛି, ଦମ୍ଭ ଟଙ୍କରେ ନକ୍ଷତ୍ର ହୋଇ, ବିଭିନ୍ନ ରୋଲ୍‌ରେ ବିଭିନ୍ନ ଡ୍ରାମାରେ ନାୟିକା ହୋଇ ନାଚି ନାହିଁ, ତୁମରି ଆଦର୍ଶ ନେଇ ସବୁ ଗାଁରେ ସବୁଘରେ ସାଧାରଣ ସେବିକା ହୋଇ ଉପସ୍ଥିତ ହୋଇଛି । ନିଜକୁ ତିଳ ତିଳ କରି ଆହୁତି ଦେଇଛି, ପ୍ରତି ଘରେ କର୍ମର ପବିତ୍ର ହୋମଶିଖା ଜଳାଇଛି । ଜଳୁଛି ମୁଁ ସବୁଦିନ, ଅନ୍ଧକାର ଦୂର କରିଛି । ଅଜ୍ଞତା, ଅନ୍ଧତ୍ୱ, ଅଶିକ୍ଷା, କୁଶିକ୍ଷା, କୁସଂସ୍କାର ଜଳିଛି, ଜଳୁଛି । ଆହୁରି ଜଳିବ, ପୋଡ଼ିପାଡ଼ି ଧ୍ୱଂସ ହେବ । ଦେଖ— ।

ଜିତିବାର ଅହଂଭାବ ନାହିଁ ମୋ'ଠାରେ । ହାରିବାର ଦୁଃଖ, ଲଜ୍ଜା, ସଙ୍କୋଚ କି ଭୟର ଧାରଣା ମନକୁ ଆସେ ନାହିଁ । ମୁଁ କର୍ମୀ, ମୁଁ ନିଜକୁ ଆହୁତି ଦିଏ, ଜଳେ, ଉଜ୍ଜ୍ୱଳ କରେ, ଅନୁପ୍ରାଣିତ କରେ ଦୁନିଆ ଲୋକଙ୍କୁ—ନୂଆ ଦୁନିଆ ଗଢ଼, ଅସମତା ଦୂର କର, ସୁଖରେ ରହିବାକୁ ପଣକରି ଆଗେଇ ଚାଲ, ଆଳସ୍ୟ ପରିହର । ମୁଁ ସ୍ଫୁଲିଙ୍ଗ—

Digitized by PPRACHIN, SOA

ଆନୁଭବକୁ ଦେଖିବାକୁ ମନ ହେଉଛି ଭକନ । ସେ ପାଖରେ ଅଛୁ । ଗୃହଆଡ଼େ ଯାଉଛୁ, ରଣଦଉଡ଼କୁ ଆସୁ ନାହିଁ କାହିଁକି ? ଯେତେ ଯାହା କଲେ ଦାସତ୍ୱର ବନ୍ଧନରେ ସେ ନିଜକୁ ବାନ୍ଧୁଛୁ । ସ୍ୱାଧୀନତା ହରାଇଛୁ । ଅନ୍ୟର ଆଦେଶ ପାଳନ କରିବା ଆଗ୍ରହକୁ ଦମନ କରୁଛୁ ।

ଅଭିମାନ କରୁଛୁ କି ?

ଯାଉଛୁ ବଜ୍ରବାହୁ, ଯିବ କି ଥରେ, ଦେଖି ଆସିବ, କହୁ ଆସିବ, ଏଥର ବି ଛେମେ କାତଳ ଆହୁତ, ବଦାସ୍ତ ନେଉଛୁ । ବରହ ଚିରଙ୍ଗୀ ହେଉ ।

ଯିବ କି ଥରେ ?

ଦନ ଦୁଇ ପହର । ଦାଣ୍ଡଘର ପଲଙ୍କ ଉପରେ ରଣସିଂହ କ୍ଳାନ୍ତ ଦେହ ଲମ୍ବାଇ ଦେଇଛନ୍ତି । ଉପରକୁ ଚାହିଁ କାଠ ଦେହରେ ଖୋଳା ହୋଇଥିବା ଚିତ୍ରଗୁଡ଼କୁ ତନ୍ମୟ ହୋଇ ଚାହିଁରହିଛନ୍ତି । ଯେତେବେଳେ ଶହେ କି ଦେଢ଼ଶ ବର୍ଷ ପୂର୍ବେ ଏ ଘର ନୂଆ ହୋଇ ତୋଳା ହେଲା ଓସ୍ତଗୁଡ଼କର ତଳପାଖେ ସେ କାଳର ବନ୍ଧାଣି-ମାନେ ନିହାଣ ମୁନରେ ଚିତ୍ର ଅଙ୍କିଥିଲେ । ଯେଉଁମାନେ ଅଙ୍କାଇଥିଲେ ଓ ଯେଉଁମାନେ ଅଙ୍କିଥିଲେ, କେବଠୁଁ ସେମାନେ କରାଳ କାଳର ଅତଳ ଗହ୍ୱରରେ ଲୁଚି ଯାଇଛନ୍ତି । ସେମାନଙ୍କର ନାମ, ବୟସ, ରୂପରେଖ ଆଜ କାହାର ମନେ ନାହିଁ । ଯେଉଁ ଯନ୍ତ୍ର-ଗୁଡ଼କ ସାହାଯ୍ୟରେ ଖୋଦିତ ହୋଇଥିଲା, ସେ ସବୁ ମାଟି ଭିତରେ କଲଙ୍କ ଲାଗି ପୋତି ହୋଇଥିବ । କେଜାଣି ବା, କେତେ ଅବତାର ଲଭି ଆଜ ଧ୍ୱଂସକାରୀ କମାଣ ହୋଇ ସଭ୍ୟତାକୁ ଧ୍ୱଂସ କରିବାକୁ କେଉଁଠି ଅନାଇଁ ରହିଥିବ । ଯେଉଁମାନେ ଅଙ୍କାଇଥିଲେ, ସେମାନଙ୍କର ଇଚ୍ଛା, ଆଗ୍ରହ ଓ ଆନନ୍ଦ ପୁଣି ଯେଉଁମାନେ ଅଙ୍କିଥିଲେ ସେମାନଙ୍କର କଳ୍ପନା, ବୁଦ୍ଧି, ଧୈର୍ଯ୍ୟ ଓ ନିପୁଣତା ଏବେ ବି ଜୀବନ୍ତ ଅଛୁ ! ଅସରନ୍ତି ନିର୍ଝର ପରି ଝରି ଆସୁଛୁ ସେହି ଚିତ୍ରଗୁଡ଼କରୁ ।

ଲତା, ପତ୍ର, ପୁଷ୍ପ, ଫଳ । କୃଷ୍ଣର ଜାମ । ସୁନ୍ଦର ! ଏତକ ବଞ୍ଚି ରହେ । ଆନନ୍ଦ ଦଏ । ଜଗନ୍ନାଥ ମନ୍ଦର, ଲିଙ୍ଗରାଜ ମନ୍ଦର, କୋଣାର୍କ, କଟକର ପଥର ବନ୍ଧ । ସବୁ କାରୁକାର୍ଯ୍ୟ । ଯେଉଁମାନେ କରାଇଥିଲେ ଓ ଯେଉଁମାନେ କରିଥିଲେ, ସେମାନେ ଲୁଚିଛପି ଗଲେଣି । ଦୁନିଆ ସେମାନଙ୍କୁ ଭୁଲିଛୁ, କନ୍ତୁ ସେମାନଙ୍କର କର୍ମକୁ ଭୁଲି ନାହିଁ, ଭୁଲିପାରିବ ନାହିଁ ।

ନୂଆ ଦୁନିଆରେ ଯେଉଁ ମନ୍ଦର ତୋଳାହେଉଛୁ, କାନ୍ଥରଖା ଯାଉଛୁ, କାରୁକାର୍ଯ୍ୟ ଗଢ଼ାହେଉଛୁ, ସେ ସବୁ ନୂଆ ପ୍ରକାର, ଆହୁରି ସୁନ୍ଦର, ଜୀବନ୍ତ, ଚିରନ୍ତନ ।

Digitized by PPRACHIN, SOA

ବଜ୍ରବାହୁର ବଜ୍ରଗମ୍ଭୀର ସ୍ୱର କାନରେ ବାଜୁଛି—ଦେଖ ଆମର ମନ୍ଦିର, ମସ୍‌ଜିଦ୍ ଓ ଗୀର୍ଜା—ରଣସିଂହ-ନାଳ, ନାଗରିକକଲ୍ୟାଣ-ମନ୍ଦିର, ସେବକସମାଜ-ସଦନ, ବିଦ୍ୟାଳୟ, ଚିକିତ୍ସାଳୟ । ଦେଖ ଆମର କୃଷିସମିତି, ବହୁମୁଖୀ ସମବାୟ ଯୋଜନା, କୁଟୀରଶିଳ୍ପ, ଗ୍ରେଟ୍ ଗ୍ରେଟ ମିଲ୍ । ଦେଖ ଆମର ରାସ୍ତାଘାଟ, ପୋଖରୀ, ବଗିଚା— ।

ଏଇସବୁ ଆମର ମନ୍ଦିର । ଆମେ ଶିଳ୍ପୀ । ସବୁ ମନ୍ଦିରରେ ଗୋଟିଏ ଦେବତା ପୂଜା ପାଉଛନ୍ତି । ସେ ଦେବତା ଆମର ଆତ୍ମା ! ସମବେତ ଇଚ୍ଛା ହିଁ ପବିତ୍ର ହୋମ-ଶିଖା, ଆହୁତି; ଉଦ୍ୟମ ସେଇ ଚିରନ୍ତନ ଦେବତାର ନୈବେଦ୍ୟ । ଯେଉଁଦିନ ଇଚ୍ଛାର ଆଲୋକ ଲିଭିବ, ସବୁ ମନ୍ଦିର ହେବ ଅନ୍ଧାର । ଯେଉଁଦିନ ଉଦ୍ୟମ ମଥା ନୋଇଁବ, ନୈବେଦ୍ୟର ସାମଗ୍ରୀ ଆଉ ମିଳିବ ନାହିଁ । ଦେବତା ରହିବେ ଉପାସ । ଦେବତା ଯିବେ । ଘର ଭାଙ୍ଗିବ । ହେବ କୋଣାର୍କ ପରି—ବାଲି ପନ୍ଦାର । ଦୂରରୁ କାଳସିନ୍ଧୁ ଗର୍ଜୁଥିବ । ଅଟ୍ଟହାସ କରୁଥିବ ।

ଧର୍ମାନନ୍ଦ, ନୂଆ ଯୁଗର ନୂଆ ପୁରୋହିତ । ସେ ମଧ୍ୟ ବଜ୍ରଗମ୍ଭୀର ସ୍ୱରରେ ମନ୍ତ୍ର ଉଚ୍ଚାରୁଛି, ସ୍ତୁତି ଅର୍ପିଉଛି, କାନରେ ବାଜି ଯାଉଛି, କର୍ମଂ ବା ସାଧୟେତ୍, ଶରୀରଂ ବା ପାତୟେତ୍ ।

ଭାଷାଭେଦ, ଧର୍ମଭେଦ, ବର୍ଣ୍ଣଭେଦ ସ୍ୱାହା,
ସ୍ପୃଶ୍ୟାସ୍ପୃଶ୍ୟ ଭେଦ, ଜାତିଭେଦ, ଶ୍ରେଣୀଭେଦ ସ୍ୱାହା,
ଅଶିକ୍ଷା, କୁଶିକ୍ଷା, କୁସଂସ୍କାର ସ୍ୱାହା,
ଆମୋଦ, ଆଳସ୍ୟ, ଆତ୍ମାଭିମାନ ସ୍ୱାହା,
ଭୟ, ସଙ୍କୋଚ, ସନ୍ଦେହ ସ୍ୱାହା,
ଦାରିଦ୍ର୍ୟ, ଅସମତା ସ୍ୱାହା,
ସ୍ନେହ, ମମତା, ଭ୍ରାତୃଭାବ ଅକ୍ଷାଗଚ୍ଛ,
ସମଭାବ, ସହନଶୀଳତା ଅବାଗଚ୍ଛ,
ଓଁ, ସର୍ବେ ସୁଖୀନୋ ଭବନ୍ତୁ— ।
ରଣସିଂହଙ୍କର କ୍ଲାନ୍ତ ଆଖିପତା ମାଡ଼ି ମାଡ଼ି ପଡ଼ୁଛି ।

ପାଦ ମଞ୍ଚାଳୁଛନ୍ତି ମମତା । ଭାବୁଛନ୍ତି, ଅଧୂସ କରିବାର ଆଗ୍ରହ ଥିଲା ଯେତେବେଳେ ଯୌବନରେ, ସୂର୍ଯ୍ୟ ଚନ୍ଦ୍ର ଆଖିକୁ ଦୃଶ୍ୟ ନ ଥିଲେ । ମଣିଷଗୁଡ଼ା କାଠ ପଥର ପରି ମଣୁଥିଲେ । ଯେତେବେଳେ ପୁଣି ରଣସିଂହ ମାଳା ଧରିଲେ, ଜପ କରିବାକୁ

Digitized by PPRACHIN, SOA

ଵିନସ୍ଥିତ ଅର୍ଣ୍ଣିଳ ନାହିଁ । ସେଇଠୁ, ସୁରୁଆତ । ସେଥିରେ ସେ ପହଁରିବାକୁ ଲାଗିଲେ । ସେ ଅଭ୍ୟାସ ବି ଗଲା । ଓହ୍ଲାଇ ପଡ଼ିଲେ ଗାଁ ଦାଣ୍ଡିକୁ । ଦାମାକର୍ଣ୍ଣ ପାଲଟିଲେ ସ୍ତ୍ରୀ । ସବୁ ସମସ୍ତଙ୍କ ହାତକୁ ଟେକି ଦେବାକୁ ଚାହାନ୍ତି । ପିଲା ଦୁଇଟାଙ୍କ ସଙ୍ଗରେ ମିଶି ସବୁ ତ ଦୂର କରି ଦେବେ, ଭବିଷ୍ୟତରେ ହେବ କ'ଣ ? ଏ ବିଷୟ ପଚାରିବାକୁ ମମତା ସଂକୋଚବୋଧ କରନ୍ତି ।

ମନ ହେଉଛି, ଦୁଇ ପୁଅଙ୍କୁ ବାହା କରେଇ ଘରକୁ ବୋହୂ ଆଣିବେ । ଝିଅଟିକୁ ପଠାଇବେ ପର ଘରକୁ । ରଣସିଂହେ ମନଦେଉ ନାହାନ୍ତି । ପଚାରିଲେ କହୁଛନ୍ତି ଓଲଟି, ତେମେ ବୋହୂ ସ୍ଥିର କର, କର୍ତ୍ତା ହୋଇ ମୁଁ ବାହା କରେଇବି ।

କେଉଁଠି ପଡ଼ିଛନ୍ତି କି ?

ଖୋଜି ବାହାର କରିବାକୁ ହେବ ମମତା ।

କେଉଁଠିକି ଯିବି ?

ଆଗ ତମ ପୁଅମାନଙ୍କ ମନ ଭିତରେ ଖୋଜ ।

ସୁବ୍ରତ କ'ଣ ଚାହେଁ, ମମତାଙ୍କୁ ଅବିଦିତ ନାହିଁ । ସେ ଯେଉଁ ପିଲାଟିର ହାତ ଧରିବ, ଯିଏ ଖାଲି ଖେଳ କଣ୍ଢେଇଟିଏ ପରି ସଜବାଜ ହୋଇ ଗ୍ଲଇତଳେ ଦୋଳିରେ ଝୁଲିବ ନାହିଁ । ସେ ହୋଇଥିବ ସମଦରଶୀ, ସର୍ବସହଣୀ, କର୍ମକୁଶଳା । ସେ ହୋଇଥିବ ଶିକ୍ଷିତା, ବୁଦ୍ଧିମତୀ, କଷ୍ଟସହିଷ୍ଣୁ । ବଡ଼ ସାନ, ଜାତି ଅଜାତି, ପର ଆପଣା ଭେଦ ନ ଥିବ ତା'ଠାରେ । କେଉଁଠୁ ପାଇବେ ଏପରି ବୋହୂ ? ସେଇଟି ଏକା ରୂପରେ ସୁନ୍ଦର ହୋଇଥିବ । ଦେଖିଲେ ଆଖି ପୂରି ଉଠିବ, ମନ ହେବ ସରସ ।

ଆଖି ଲାଖିଲା କାନ୍ଥରେ ଟଙ୍ଗା ହୋଇଥିବା ଫଟୋଟି ଉପରେ । ସେହିପରି ବୋହୂଟିଏ ଲୋଡ଼ା । ଲକ୍ଷ୍ମୀ-ନୃସିଂହ ପରି ଦିଶିବେ । କିଏ ପଚାରୁଛି ଜାତି ଗୋତ୍ର କଥା ? ମାନସିଂହଙ୍କର ଝିଅ ଅଛି ସୁନ୍ଦର । ଅଳ୍ପ ବୟସର । ରାଜଯୋଟକ ପଡ଼ିଛି । ଦଶ ହଜାର ଟଙ୍କା ଯୌତୁକ ଦେବାକୁ ସ୍ୱୀକାର କରିଛନ୍ତି । ହେଲେ; ସେ ସୁବ୍ରତର ମନଲାଖି ନୁହେଁ । ଟଙ୍କା କଥା ଉଠିଲେ ସୁବ୍ରତ ନାହିଁ କରିଦେବ ।

ରଣସିଂହଙ୍କର ପାଦ ଆଉଁସୁଣି ମମତା ପଚାରିଲେ; ଶୋଇଲ କି ?

ରଣସିଂହେ ଆଖି ମଳି କହିଲେ, ନା । ଟିକିଏ ଅବଶ ଲାଗୁଛି । ସକାଳ ଆଠଟାରୁ ଦି'ପହର ଗୋଟାଏ ଯାଏ ଗହୀର ବିଲରେ ବୁଲି ବୁଲି ଧାନକଟା ଦେଖୁଥିଲି । ଗାଁ ଖଳାରେ ଧାନ ବେଙ୍ଗଳା ପଡ଼ିଥିଲା । ସେଠି ମଧ୍ୟ ବରାଦ କରି ଧାନ ସବୁ ସମିତି ଘରକୁ ଅଣେଇଲି । ଅଭ୍ୟାସ ହୋଇଗଲେ ଆଉ କଷ୍ଟ ହେବ ନାହିଁ ଯେ ! ଅନ୍ୟମାନଙ୍କର କର୍ମଦକ୍ଷତା ଆଉ ଉତ୍ସାହ ଦେଖି ମୁଁ କାବା ହେଲି ମମତା । ଜଗତରେ ଏକା ସେଇମାନେ ହିଁ ଧନ୍ୟ । ସେମାନଙ୍କ ଦେହରେ ଶକ୍ତି ଅଛି, ଜୀବନ ପରିପୂର୍ଣ୍ଣ ହୋଇ ଉଛୁଳି ଉଠୁଛି । ବୟସ ଶରୀର ସଙ୍ଗେ ଅବିରତ ସଂଗ୍ରାମ କରି

Digitized by PPRACHIN, SOA

ଛତ୍ରବିଛତ୍ର ହେଲେ ବି ମନକୁ ଛୁଇଁପାରୁ ନାହିଁ । ଜୀବନ ମହାକାଳକୁ ଉପହାସ କରୁଛି । ମୋ'ର ଈର୍ଷା ହେଉଛି ମମତା !

ସେମାନେ ବି ଦିନେ ଚାଲିବେ ତ !

ସମସ୍ତେ ଚାଲି ପଡ଼ିବେ । ସମସ୍ତଙ୍କର ଜୀବନ ମହାଶୂନ୍ୟରେ ମିଶିଯିବ । କିନ୍ତୁ ସେମାନଙ୍କର ଜୀବନ ଅନୁଶୋଚନାରେ ଛଟପଟ ହୋଇଯିବ ନାହିଁ । କର୍ମ କରିଛନ୍ତି, ଜୀବନକୁ ପୂର୍ଣ୍ଣମାତ୍ରାରେ ଉପଭୋଗ କରିଛନ୍ତି । କାହାରି ଅନିଷ୍ଟ କରି ନାହାନ୍ତି । ଅନିଷ୍ଟ କରିବାର କାମନା ମଧ୍ୟ ମନରେ ପୋଷି ନାହାନ୍ତି । ଅନ୍ୟର କ୍ଷତି କରି ନିଜକୁ ପରିପୁଷ୍ଟ କରିବାର ଧାରଣା ମନରେ ଆଣି ନାହାନ୍ତି । ସେମାନଙ୍କର ମନ ସରଳ, ଜୀବନ ନିରାଡ଼ମ୍ବର, ଆତ୍ମା କଳୁଷହୀନ । ତେଣୁ ଚାଲିପଡ଼ିଲାବେଳେ ମଧ୍ୟ ମନରେ ଅନୁତାପ ନ ଥିବ । ସେମାନେ ସୁଖୀ ।

ରଣସିଂହେ ଉଠି ବସିଲେ । ତନ୍ମୟ ହୋଇ ଚାହିଁ ରହିଥିବା ମମତାକୁ କହିଲେ, ଆମର ପୁରୁଣା ଧାରଣା ଥିଲା ଲକ୍ଷ୍ମୀ ଆଉ ସରସ୍ୱତୀ ଦୁଇ ସଉତୁଣୀ । କେହି କାହାର ବଢ଼େଇ ସହି ପାରନ୍ତି ନାହିଁ । ମିଛ କଥା । ଦେଖ ଆମର ରଣଗଡ଼କୁ । କେଉଁଠି ହାତେ ଭୂଇଁ ଅକର୍ମୀ ହୋଇ ପଡ଼ି ନାହିଁ । ସମସ୍ତଙ୍କର ମନ ଉତ୍ସାହ ଓ ଉଦ୍ୟମ ଏକାଠି ହେଲାରୁ ଅକର୍ମୀ ଭୂଇଁ ସୁନାଥାଳି ହୋଇଛି । ଯେଉଁ ଭୂମିରେ ମାଣକୁ ପନର ମହଣ ଫଳୁଥିଲା, ସେଥିରେ ଫଳୁଛି ସତୁରି ମହଣ । ଯେଉଁ ଗ୍ରାମରେ ଲୋକେ ନ ବୁଝି ନ ସୁଝି ସାଧା କାଗଜରେ ଟିପଚିହ୍ନ ଦେଇ ସାରା ଜୀବନ ଦୁଃଖ ସହୁଥିଲେ, ସେଇ ଗାଁରେ ହୁଡ଼ମୁଣ୍ଡାରେ ବସି କର୍ମୀ ଖବର କାଗଜ ପଢ଼ୁଛି । ଦୁଇଟା ସ୍କୁଲ, ଦିନରାତି କାମ ଚାଲିଛି ।

ମମତା ହସିଲେ । କହିଲେ, ଲକ୍ଷ୍ମୀ-ସରସ୍ୱତୀଙ୍କ ବାଦ ଚିରଦିନ ଥିଲା । ପୁଣି ଚିରଦିନ ରହିବ । ନୂଆ ଯୁଗର ଲକ୍ଷ୍ମୀ-ସରସ୍ୱତୀଙ୍କ ବାଦ ନୂଆ ପ୍ରକାରରେ । ଜଣେ କହୁଛନ୍ତି, ମୋ' ପିଲାଙ୍କୁ ମୁଁ ଧନଧାନ୍ୟ ଗୋପାଲକ୍ଷ୍ମୀରେ ବଡ଼ କରିବି । ଆଉଜଣେ କହୁଛନ୍ତି, ସତେ, ସେମାନେ କ'ଣ ମୋ' ପିଲା ନୁହନ୍ତି କି ? ତମକୁ ସ୍ନେହ କରିବେ, ଭକ୍ତି କରିବେ, ମୋ ଆଡ଼କୁ ଅନେଇବେ ନାହିଁ ? କାହାକୁ ନେଇ ମୁଁ ଖେଳିବି ? ଦେଖିବ ରହ, ମୋ' ପିଲାକୁ କେମିତି ମୁଁ ବିଦ୍ୟା, ବୁଦ୍ଧି, ବିବେକ, ଦକ୍ଷତା ଦେଇ ବଡ଼ କରିବି ।

ରଣସିଂହେ ତନ୍ମୟ ହୋଇ ଚାହିଁଲେ । ଚନ୍ଦ୍ରରେ କଳଙ୍କ ପରି ମମତାଙ୍କର କପାଳ ଉପରେ ଦାଗଟି ମନେ ପକାଇ ଦେଉଛି ସୁରାପାନ କରି କପରି ଦିନେ ସେ ତାଙ୍କୁ ଏଇ ଘରେ ଠେଲି ଦେଇଥିଲେ । କବାଟ ବାଜି ମୁଣ୍ଡ କଣା ହୋଇ ରକ୍ତ ବହିଥିଲା ।

Digitized by PPRACHIN, SOA

କ୍ଷତ କେତେଠି ଶୁଖିଛି । ଦାଗ ବସି ରହିଛି । ମନେପଡ଼ୁଛି ବେଇଛି, ତବେ ରଣସିଂହେ ନରକର ଜମ୍ଭତମ ପାତ୍ୱାଡ଼ଲୁ ଓହ୍ଲାଇ ଯାଇଥିଲେ । କିଏ ପୁଣି ତାଙ୍କର ହାତ ଧରି ଉପରକୁ ଉଠାଇ ଆଣିଲା ?

ରଣସିଂହେ ଗୃହ ଆଡ଼କୁ ଗ୍ରହିଁଲେ । ଦିଶିଯାଉଛି ସେ ଆଗରେ । ହସହସ ସୁନ୍ଦର ପ୍ରତିମା । ନକ୍ଷତ୍ର ପରି ଆଖି ଝଲସି ଉଠୁଛି । ବଳ୍କଳ ପରି ଛଅଳ । ଚନ୍ଦ୍ରାଲୋକ ପରି ଉଜ୍ଜ୍ୱଳ । ଦିଶିଯାଉଛି ଆଗରେ—ଜନନୀ ପରି କପାଳରେ ହାତ ରଖିଛି । ଘାଟିରେ ଦେଇଛି ଔଷଧ, ପୁଣି ଆହାର । କନ୍ୟା ପରି ପାଦ ଚପିଛି । ଭଗ୍ନୀ ପରି ଉପଦେଶ ଦେଇଛି । ଜଂଯକୋଟରେ ତାଙ୍କରୁ ବାହାରିଛି ଅଶ୍ଳୀଳ ଶବ୍ଦଗୁଡ଼ାକ—ଜାବକେଳୀ, ବସ୍ତ୍ରହରଣ— । କହୁଛି, ଏଗୁଡ଼ାକ ଅଧମ ସ୍ତରର ରୁଚି । ମଣିଷ-ସମାଜ ଜନ୍ମତା ଗୁଡ଼ାକ କେତେ ଦୂରକୁ ଆଗେଇ ଆସିଲାଣି ।

ଦୃଷ୍ଟି ଫେରାଇଲେ ମମତାଙ୍କ ମୁହଁ ଉପରକୁ ।

ମମତା ପଚାରିଲେ, କଅଣ ଏତେ ଭାବୁଛ ?

ରଣସିଂହ ହସିଲେ । ଜଣ ଦାଢ଼ି ସେ କେବେଠୁଁ ପୁଣି କାଟି ସାରିଲେଣି । ମୁହଁଟି ସୁନ୍ଦର ଦିଶୁଛି । କହିଲେ, ଭାବୁଛି ଏଥର ପୁଣି ମଦ ଖାଇବ—ସୁରା ! ନୋହିଲେ ଜୀବନଟା ବେସୁରା ହୋଇ ପଡ଼ୁଛି ।

ମଦ ଖାଇବ ?

ମମତାଙ୍କ ମୁହଁ ବିବର୍ଣ୍ଣ ହେଲା । ଆଖିରେ ଭୟ-ଭୀତ ଭାବ । ରଣସିଂହେ ହସୁଛନ୍ତି । ଚାହିଁ ହେଉଛନ୍ତି ତାଙ୍କର ଆଡ଼କୁ । ବିକ୍ରମାଟିଏ ରାଜକେମା ସେ, ରଣଗଡ଼ର ରାଣୀ । ରାଜ୍ୟ ଗଲେ ବି ଡାକଟା ତୁଣ୍ଡରୁ ତୁଣ୍ଡ ଡେଇଁ ବୁଲୁଛି । ଗ୍ରାମର ଆଉ ଦଶଟି ବୋହୂଙ୍କ ସଙ୍ଗେ ମିଶି ଭାରବାର ହୋଇ ନିଜକୁ ସେ ସେଇମାନଙ୍କ ପରି ହେବାକୁ ଚେଷ୍ଟା କରୁଛନ୍ତି । ସାଧାରଣ ଶାଢ଼ୀ ବ୍ଲାଉଜ । ଦେହରେ ଅଧିକ ଗହଣା ନାହିଁ, ତଥାପି ଯେତିକ ନାଇଛନ୍ତି, ସବୁ ସୁନାର । ମଧ୍ୟବିତ୍ତର ଘରଣୀର ଦେହରେ ଯେତେ ଟଙ୍କାର ଗହଣା ଥାଏ, ତାଆର ଦଶ କ ଦେର ଗୁଣ ମୂଲ୍ୟର ହେବ । ତାଆର ଉପରେ ରଣସିଂହଙ୍କର ଆଖି । ଯେତିକ ଯାହ ସେ ବାଣ୍ଟି ଦେଇଥାନ୍ତେ କ ରଖି ଦେଇଥାନ୍ତେ ମଦ ଖିଆ କଥା ତୁଣ୍ଡରେ ଧରିବା ଆଗରୁ ଧନ କାହୁଁ ପାଇବେ ସେ କଥା ରଣସିଂହେ ଭାବୁଥାନ୍ତେ ।

ସେ ପୁଣି ପଚାରିଲେ, ସତେ ତମେ ମଦ ଖାଇବ ?

ରଣସିଂହେ କହିଲେ, ସତେ, କିନ୍ତୁ ସେ ବିଲାତି ମଦ ନୁହେଁ କି ତାଳ, ଖଜୁରି, ମହୁଲ ମଦ ନୁହେଁ ।

ରଣସିଂହେ ଦୁଇ ହାତ ବଢ଼ାଇ ମମତାଙ୍କର ଅଶ୍ରୁ-ସିକ୍ତ ମୁହଁଟି ଧରିଲେ । ଧୀରେ ଧୀରେ ନିଜ ଆଡ଼କୁ ଓହଳାଇ ଆଣି କପାଳରେ ମୁହଁ ଲଗାଇଲେ । ହାତଗୁଡ଼ କହିଲେ, ଏଇ ସେ ମଦ । ଏ ମଦର ଆସ୍ୱାଦ ପାଇଛି ଯେଉଁ ଭାଗ୍ୟବାନ୍, ଅନ୍ୟ ମଦ

Digitized by PPRACHIN, SOA

ସେ ଖୋଜିବ କାହାଁକୁ ମମତା ? ଯେଉଁଦିନ ପ୍ରଥମେ ଏ ହଜୁରସେ ପ୍ରଥମେ ପଦ ଦେଇଥିଲ, ସେଦିନ ତ ଏପରି ସୁନ୍ଦର ଦଶ୍ୟ ନ ଥିଲ । ମୂଲ୍ୟବାନ୍ ଶାଢ଼ୀ, କ ଗହଣା, ବେଶଭୂଷାର ପରିପାଟୀ ଦେହକୁ କେବଳ ସୁନ୍ଦର କରେ । ମନକୁ କ'ଣ ସୁନ୍ଦର କରେ କଥାରେ ମୁଁ ପ୍ରକାଶ କରିପାରୁ ନାହିଁ । ମନ ସୁନ୍ଦର ହେଲେ ଦେହର ସୌନ୍ଦର୍ଯ୍ୟ ତା'ରି ଭିତରେ ବୁଡ଼ିଯାଏ ।

ମମତାଙ୍କର ମୁହଁରେ ରଙ୍ଗ ଚଢ଼ିଥିଲା । ସେ ମଥା ପୋତିଲେ । ମନର କେଉଁ କନ୍ଦରେ ଆସି ଲୁଚି ହୋଇ ଯାଇଥିବ, ଯାହାର ଉଜ୍ଜ୍ୱଳ ଦୃଷ୍ଟିର ଆଲୋକ ରଣସିଂହଙ୍କର ମନ ଭିତରେ ପବିତ୍ର ହୋମଶିଖା ପ୍ରଜ୍ଜ୍ୱଳିତ କରି ପାରିଛି ।

ସେ ଆଦୃତ !

ସୁ ବ୍ରତର ଫଟୋଟିଏ ଟଙ୍ଗା ହୋଇଛି । ତା'ପାଖରେ ଠିଆ ହୋଇଛି ଆଦୃତ, କଲେଜ ଖେଳର ଦମୟନ୍ତୀ । ଏମିତ ବୋହୂଟିଏ ଯଦି ସେ ପାଆନ୍ତେ, ମନ ପୁରି ଉଠନ୍ତା, ଘର ହସି ଉଠନ୍ତା, କେତେ ଖୁସି ହୁଅନ୍ତା ସୁ ବ୍ରତ ଆଉ, ଗ୍ରାମବାସୀମାନେ !

ଲାଜେଇ ଲାଜେଇ ମମତା ପଲଙ୍କ ଉପରୁ ଓହ୍ଲାଇଲେ । ଫଟୋଟି କାନ୍ଥରୁ କାଢ଼ି ରଣସିଂହଙ୍କ ହାତକୁ ବଢ଼ାଇଦେଲେ । ବାହାର ପଟର ଝରକା ଖୋଲି ଗୋଲପୀ-ପରଦାଗୁଡ଼ିକ ସାମାନ୍ୟ ଘୁଞ୍ଚାଇଦେଲେ । ବାହାରର ଆଲୋକ ପଡ଼ିଲା ଭିତରେ । ପାଟକୁ ଆସି ଠିଆହେଲେ । କହିଲେ, ଏମିତ ବୋହୂଟିଏ ମୋ'ର ଲୋଡ଼ା ।

ଆଦୃତ ପରି ?

ପୁଅ ଏଇ ଫଟୋଟିକୁ କେତେ ସ୍ନେହ କରେ ତେମେ ଜାଣ ନାହିଁ । ଛଅ ବର୍ଷ ପରେ ଘରକୁ ଫେରି ସେ ଆଗେ ଏଇ ଫଟୋଟି ଖୋଜୁଛି । ନ ପାଇଲାରୁ ସନ୍ଧ୍ୟାକୁ ପଚାରୁଛି । ଶୁଣିଲି ଯେପରି ଫଟୋଟି ଏଇ ଘରେ ଟଙ୍ଗା ହୋଇଛି, ତୁନି ରହିଲା । ସେ ଆଦୃତକୁ ଭଲପାଏ ।

ମୁହିଁ ଟେକି ରଣସିଂହେ ପଚାରିଲେ, ସତେ ?

ହଁ, ସେଇଥିପାଇଁ ସେ ଆରତକୁ ବାହାହେବାକୁ ମନାକଲା । ମୋ'ର ମନେ ହେଉଛି, ସେଇଥିପାଇଁ ସେ ଘର ଛାଡ଼ି ଚାଲିଯାଇଥିଲା ।

କୁଳାଙ୍ଗାର !

କୁଳାଙ୍ଗାର ସେ ନୁହେଁ । ଜାଣ କି ଛଅ ବର୍ଷ ଭିତରେ ଅଦୃତ ସଙ୍ଗେ ଥରଟିଏ ତା'ର ଦେଖାହୋଇ ନାହିଁ । କେହି କାହାର ପାଖକୁ କଣ୍ଡେ ଚିଠି ପତ୍ର ଦେଇ ନାହାନ୍ତି ।

Digitized by PPRACHIN, SOA

ତଥାପି କହୁଛ ସୁବ୍ରତ ତାକୁ ଭଲପାଏ ?

ହଁ । ମନରୁ ଦୂରେଇ ଦେବାକୁ କେହି କାହାର ପାଖକୁ ପଥ ଦେଇ ନାହାନ୍ତି । ସେମାନେ ଜାଣନ୍ତି, ଜାତିଆଣ ଓ ପଦମର୍ଯ୍ୟାଦାର ଭେଦ ସେମାନଙ୍କ ମଝିରେ ଠିଆ ହେବ । ତୁମେ ଓ ମୁଁ ଏପରି ସମ୍ବନ୍ଧରେ ସମ୍ମତ ହେବୁ ନାହିଁ । ପରସ୍ପର ପାଖରୁ ଦୂରେଇ ରହିଲେ ବି ଉଭୟେ ଉଭୟଙ୍କୁ ମନ ଭିତରେ ବାନ୍ଧି ରଖିଛନ୍ତି ।

ଆହ୍ଲାଦର ମନକଥା ତେମେ କପରି ଜାଣିଲ ?

ଦେଖୁନ, ସୁବ୍ରତ ଫେରିଆସିବା ଖବର ପାଇଲା ଦିନରୁ ସେ ଏ ଗ୍ରାମକୁ ଆସି ନାହିଁ । ସନ୍ଧ୍ୟାକୁ ସେ କେଡ଼େ ଭଲପାଏ । କେତେଥର ସନ୍ଧ୍ୟା ତାକୁ ଲେଖିଲଣି । ତଥାପି ସେ ଆସୁ ନାହିଁ । ଜାତିଆଣ ପ୍ରଥା ତ ଦୂର କଲ । ବଡ଼ ସାନ ଭେଦଭାବ ଉଠାଇ ଦେଲ । ଯାହାକୁ ମୋ'ର ପୁଅ ଭଲ ପାଏ, ଯିଏ ମନ ଭିତରେ କେବେଠୁଁ ମୋର ବୋହୂ ହୋଇ ସାରିଛି, ଯିଏ ଘୁଁ ଘୁଁ ଆସି ଏ ଘରେ ବୋହୂପଣ କରିଯାଉଛି, ତା'କୁ କେଇ ରଖିବ କାହିଁକି ? ମୁଁ ଜାଣେ, ତା'ଛଡ଼ା ମୋ' ପୁଅ ଆଉ କାହାର ହାତ ଧରିବ ନାହିଁ ।

ଦୁଇ ଧାର ଅଶ୍ରୁ ଗଡ଼ି ଆସିଲା ମମତାଙ୍କ ଆଖିରୁ ।

ରଣସିଂହେ ପଚାରିଲେ, ସୁବ୍ରତ କହୁଥିଲା କି ?

ଆଖିରୁ ଲୁହପୋଛି ମମତା କହିଲେ, ସେ ମୁହଁଖୋଲି କହିବା ଆଗରୁ ମୋ'ର ମରଣ ହେବା ଉଚିତ । ମା ହୋଇ ପୁଅର ମନ ଯଦି ଜାଣି ନ ପାରିବି, ତେବେ ମୋ ଜନମ ଧିକ ସିନା ! ଭୁଲିଗଲ ଏଡ଼େ ଜଲଦି ? ମୋ'ର ସୁବ୍ରତର ମନ ଆହ୍ଲାଦ । ସେଇ ମନଟା ତ ତମୁକୁ ଓ ମତେ ନରକ ବାଟରୁ ଫେରାଇ ଆଣିଛି । ନୂଆ ଜୀବନ ଦେଇଛି । ସବୁ ରାତିରେ ମୁଁ ତା'କୁ ସପନ ଦେଖୁଛି । ତା'ର ମା' ଡାକ ମୋ'ର କାନରେ ବାଜଯାଉଛି ।

ପୁଣି ଆଖିରୁ ଲୁହ ଗଡ଼ିଲା ।

ରଣସିଂହେ କହିଲେ, ତମେ ଭୁଲ୍ ବୁଝିଛ । ଆହ୍ଲାଦ ଏକା ତମର ନୁହେଁ, ସେ ସମସ୍ତଙ୍କର । ଯାହାର ସମ୍ପର୍କରେ ସେ ଆସିଛି, ସେବା କରିଛି, ଭଲ କଥା, ଭଲ କାମ ଶିଖେଇଛି, ସେ ତା'କୁ ଭଲପାଇଛି । ସେ ମଣିଛି, ଆହ୍ଲାଦଟି ଗୋଟିଗ୍ରାମ ତା'ର ।

ସେମିତ ବୋହୂଟିଏ ମୋ'ର ଲୋଡ଼ା ।

ହସିଉଠିଲେ ରଣସିଂହେ । କହିଲେ, ତମେ ପାଗଳ । ସତରେ ଯଦି ସୁବ୍ରତ ଆହ୍ଲାଦକୁ ବିବାହ କରିବାକୁ ମନ କରିଥାଏ, ସେ ବାଇଆ । ଯେଉଁ ଝିଅଟି ଦୁନିଆର ସବୁ ଘରେ ଅଡ଼ଯାତ ସେ ତା'ର ସ୍ୱାଧୀନତା ଛାଡ଼ି ତମ କାନରେ ବାନ୍ଧିହୋଇ ରହିବାକୁ ମନ କରିବ ନାହିଁ ।

Digitized by PPRACHIN, SOA

ବାଘ ରଖିବାକୁ ମୁଁ ଚାହୁଁ ନାହିଁ । ସଂସାରର ଦାୟିତ୍ୱ ତା' ହାତକୁ ଟେକିଦେଲେ ତା'ର ସଂସାର କପରି ଚଳାଇବ ସେ ବୁଝିବ । ବୋହୂ ହୋଇ ଏ ଘରକୁ ଆସିବାକୁ ଯଦି ସେ ମନା କରେ ତ ସୁବ୍ରତର ଆଖିରୁ ଓ ମନରୁ ଭେଲକି ଦୂର ହେବ । ତା' ପରେ ଯେଉଁଠି ଭଲ ଝିଅ ଦେଖି ତମେ ସମ୍ବନ୍ଧ ସ୍ଥିର କରିବ, ସୁବ୍ରତ କେବେ ନାହିଁ କରିବ ନାହିଁ । ଅଦ୍ଭୁତକୁ ବୋହୂ କରିବାକୁ ତମର ଅନୁମତି ଚାହୁଁଛି ।

ରଣସିଂହେ କହିଲେ, ଆପତ୍ତି ତ ଦୂରର କଥା, ମୋ'ର ମନେ ହେଉଛି, ନଚେ ଆଦ୍ଭୁତ ମନା କରିବ ।

ଖୁସି ହୋଇ ମମତା ରଣସିଂହଙ୍କର ହାତକୁ ମୁଠାଇ ଧରିଲେ । ଉତ୍ତେଜିତ ହୋଇ କହିଲେ, ସତେ, ଆଦ୍ଭୁତ ମୋ'ର ବୋହୂ ହେବ ? କେମିତି ସେ ମନା କରିବ, ଦେଖିବ କହ ।

ମମତା କବାଟ ଖୋଲି ଝଟ୍ଟା ଭିତରକୁ ଚାଲିଗଲେ ।

ରଣସିଂହେ ଫଟୋଟି ଉଠାଇ ଦେଖିଲେ ।

ନଳ ଓ ଦମୟନ୍ତୀ—ସୁବ୍ରତ ଓ ଆଦ୍ଭୁତ । ଭଲ ଦିଶୁଛି । ଭଲ ମାନୁଛି । ମନ ଭିତରେ ପୂର୍ବପୁରୁଷଙ୍କର ଆତ୍ମାଗୁଡ଼ାକ ସତେ କି କଲବଲ ହେବାକୁ ଲାଗିଲେ । ସ୍ୱରୂପ ଧରି ଆଗକୁ ଆସି ପଚାରିବାର ଶକ୍ତି ନାହିଁ ତ, କେବଳ ମନ ଭିତରେ କୋଳାହଳ—

ଜାତିଗୋତ୍ର ଭଲମନ୍ଦ ଜଣା ନ ଥିବା ଝିଅଟିକୁ କୁଳବଧୂ କରିବାକୁ ସମ୍ମତି ଦେଲ କପରି ରଣସିଂହେ ? ଯେଉଁ ସନ୍ତାନଗୁଡ଼ିକ ସେ କୋଳକୁ ଆସିବେ, ସେମାନଙ୍କର ହାତରୁ ପାଣି ମଧ୍ୟ ତ ଗ୍ରହଣ କରି ପାରିବୁ ନାହିଁ ।

ଅତି ବୃଦ୍ଧ କିଏ ଜଣେ କ୍ଷୀଣ ସ୍ୱରରେ କହି ଉଠୁଛି, ସ୍ୱର୍ଗକୁ ଯାଉଁ ଯାଉଁ ଅଧାବାଟରେ ମୁଁ ଅଟକି ଯାଇଥିଲି ସେ ଦିନ, ଯେଉଁଦିନ ଦେଖିଲି ରଣଗଡ଼ର ରାଜଲକ୍ଷ୍ମୀ ମଦ୍ୟପାନ କରୁଛନ୍ତି । ଏଇ ଝିଅଟି ପୁଣି ମୋ'ର ପଥ ସୁଗମ କଲା । ମନ ତା'ର ଉଦାର, ଚରିତ୍ର ପବିତ୍ର । ସେଇ କୋଳରେ ଜନ୍ମିବ ଯେଉଁ ସନ୍ତାନ, ସେ ମଧ୍ୟ ପବିତ୍ର । ଚାହିଁ ଦେଖ ଆଗକୁ, ସେଇ ତ୍ରିଶୂଳର ଅମୋଘ ଆସ୍ଫାଳନକୁ, ସେମାନେ ସ୍ୱର୍ଗର ଦ୍ୱାର ଅବରୋଧ କରିଛନ୍ତି । ଏଠି ଖଡ୍‌ଗ, କମାଣ, ବାଣ ନାହିଁ । ଆଟମ୍ ବମ୍ କି ହାଇଡ୍ରୋଜେନ୍ ବମ୍ କାମ କରିବ ନାହିଁ ।

ବଜ୍ରବାହୁର କଥା ମନେ ପଡ଼ିଯାଉଛି । ସେତେବେଳେ ସେ ଥିଲା କଲେଜର ଛାତ୍ର । ମାନଚିତ୍ରଟିଏ ଆଗରେ ଖୋଲି କେଡ଼େ ଆଗ୍ରହରେ ସେ ବୁଝାଇ କହୁଥିଲା,—

Digitized by PPRACHIN, SOA

ଦେଖନ୍ତୁ, ଏଇ ନଦୀଟି ଦକ୍ଷିଣ-ବାହିନୀ ଭୁଲନ୍ନା ଆଉ ଏଇ ହ୍ରଦଟି କାଶ୍ୟପ। ଦଶ ପନ୍ଦର ହଜାର ବର୍ଷ ତଳେ ଏହି ଦେଶରୁ ଆର୍ଯ୍ୟମାନେ ଦଳ ଦଳ ହୋଇ ପୂର୍ବଆଡ଼କୁ ମାଡ଼ିଗଲେ। ସହସ୍ର ସହସ୍ର ବର୍ଷ ଧରି ଚାଲିଲା ସେ ସ୍ରୋତ। ସେତେବେଳେ ଜାତି-ଭେଦ ନ ଥିଲା। ସେ ଦେଶରେ ଜାତିଭେଦ ନାହିଁ। ଏଣିକି ଅନାନ୍ତୁ,—ସୁମାତ୍ରା, ଯବ, ବାଲି, କମ୍ବୋଜ, ଶ୍ୟାମ, ବ୍ରହ୍ମ। ଏଇସବୁ ଦେଶରେ ଆମରି ପୂର୍ବପୁରୁଷେ ବସତି ସ୍ଥାପନ କରିଥିଲେ। ସେମାନଙ୍କର ଅଂଶବଂଶ, ସେମାନଙ୍କର ରକ୍ତର ପିଲାଏ ଏବେ ବି ସେଠାରେ ରହନ୍ତି। ସେଠି ଜାତିଭେଦ ନାହିଁ।

ସେହି ପୂର୍ବପୁରୁଷଙ୍କର ଆତ୍ମାଗୁଡ଼ିକ ହସି ଉଠୁଛନ୍ତି ସ୍ୱର୍ଗପୁରରୁ। କହି ଉଠୁଛନ୍ତି ସମସ୍ୱରରେ—ସ୍ୱର୍ଗରେ ଜାତିଭେଦ ନାହିଁ ରଣସିଂହେ, ଭଗବାନ ଜାତିଭେଦ ସ୍ୱୀକାର କରନ୍ତି ନାହିଁ। କେବଳ ସେତିକି ନୁହେଁ, ସେ ଦେଶଭେଦ, ବର୍ଣ୍ଣଭେଦ କି ଭାଷାଭେଦ ଗ୍ରହଣ କରନ୍ତି ନାହିଁ। ଏସବୁ ସ୍ୱାର୍ଥପର ମଣିଷ ଗଢ଼ିଛି। ଭଗବାନ ସ୍ୱୟଂ ରହିଛନ୍ତି ଅତି ଆଗ୍ରହରେ, ତାଙ୍କର ସବୁ ସନ୍ତାନଙ୍କୁ। ଦେଖୁଛନ୍ତି, ପରଖୁଛନ୍ତି। ଯେଉଁ ଦେହ ଜୀବନ ଓ ମନ ସେ ଦେଇଛନ୍ତି, ବିଶ୍ୱର ମଙ୍ଗଳ ପାଇଁ, ତାଙ୍କର ଉଦ୍ଦେଶ୍ୟ ସାଧନ ପାଇଁ, ତା'କୁ କିଏ କିପରି କେତେ ପରିମାଣରେ ବ୍ୟୟ କରୁଛି। ଭଗବାନ ସ୍ୱୟଂ ରହିଛନ୍ତି।

ମନ ଭିତରୁ ସବୁ କୋଳାହଳ ଦୂର ହୋଇଗଲା। ରଣସିଂହେ ଦୀର୍ଘଶ୍ୱାସ ଛାଡ଼ି ଉଠିଲେ। କେବଳ ଆଳସ୍ୟ ବ୍ୟସନ ଓ ସ୍ୱାର୍ଥସାଧନାରେ ଜୀବନର ଅଧିକାଂଶ ସମୟ ନଷ୍ଟ ହୋଇଗଲାଣି। ଅତୀତ ଜୀବନଟା ବ୍ୟର୍ଥ ହୋଇଯାଇଛି। ସେ କେବଳ ମାୟାମୃଗର ପଛରେ ଧାଇଁ ଧାଇଁ ଆସି ଅପନ୍ତରାରେ ଠିଆହୋଇଛନ୍ତି। ଆଗରେ ରୁକ୍ଷ ଧୂସର ବାଲୁକା ପ୍ରାନ୍ତର। ଦୂରରେ ଦିଶୁଛି ମୃଗତୃଷ୍ଣାର ସୁନୀଳ ଶୀତଳ ଜଳପ୍ରବାହ। ସବୁ ପ୍ରହେଳିକା। ପଛକୁ ହିଁ ଫେରିବାକୁ ହେବ। ଆଉ ତ ସମୟ ନାହିଁ। ନୂଆ କରି ପ୍ରକୃତ ଜୀବନ ଆରମ୍ଭ କରିବାକୁ ହେବ।

ରଣଗଡ଼ରେ ଯେତେ ଅନାଥ ଓ ଅରକ୍ଷ ଅଛନ୍ତି, ସେମାନଙ୍କର ଆକୁଳ ଚିତ୍କାର କାନରେ ବାଜୁଛି। ସେମାନଙ୍କ ପାଇଁ ଆଶ୍ରମ ଖୋଲା ହେବ। ରଣଗଡ଼ର କୌଣସି ସନ୍ତାନ ପେଟ ପାଇଁ କି ଦେହ ଘୋଡ଼ାଇବାକୁ ଖଣ୍ଡିଏ ବସନ ପାଇଁ, ଅନ୍ୟ ଆଗରେ ହାତ ପାତିବେ ନାହିଁ। ଅନ୍ୟର ଦୟାର ପାତ୍ର ବୋଲି କାହାର ମନରେ ସେପରି ଗ୍ଲାନି ରହିବ ନାହିଁ।

ରଣସିଂହେ ସିଂହବିକ୍ରମରେ ଉଠିଲେ। ଅରକ୍ଷ ନିବାସ ଅବଶ୍ୟ ଖୋଲା ହେବ। ନାରାୟଣ ତାଙ୍କଠି ଥାଇ ଦୁନିଆର ଲୋକଙ୍କୁ ପରୀକ୍ଷା କରୁଛନ୍ତି। କହିଦେଇଛନ୍ତି, ସୁଖରେ ହେଉ କି ଦୁଃଖରେ ହେଉ, ସମସ୍ତ ସମସ୍ତଙ୍କର କଟେ। ରାତି ପାହିଲେ ସମସ୍ତଙ୍କର ବୟସ ବଢ଼େ ଗୋଟିଏ ଦିନ। କାହାର ଦିନ କିପରି କଟେ ତାହା ହିଁ ଉମର ବିଚାରର ବିଷୟ। ଚଳି ପଡ଼ିବ ତ ସମସ୍ତେ, କିଏ ଆଗ, କିଏ ପଛ। ଅତୀତର

Digitized by PPRACHIN, SOA

ଘନ ଅନ୍ଧାର ପେଟରେ ବିଳୟ ଭଜିବ । ଚନ୍ଦ୍ରସୂର୍ଯ୍ୟ ରହିବ ନାହିଁ । ହେବ ବିସ୍ଫୁଟ । ଶୁଦ୍ଧ ନିର୍ମଳ ମନରେ ଦୁନିଆର ମଙ୍ଗଳ ପାଇଁ ତୁମର କର୍ତ୍ତବ୍ୟ ସମାପନ କର,— ଗଢ଼ି ଯାଅ ନୂତନ ସ୍ୱପ୍ନ ସୃଷ୍ଟିରେ ତୁମର ଦେହ, ଜୀବନ ଓ ମନର କଣିକା— ଆଗତ ଓ ଅନାଗତ ବଂଶଧରମାନେ ଏବଂ ମୋ'ର ସନାତନ, ଅବିନଶ୍ୱର ଓ ଅନନ୍ତ ଆତ୍ମାର ସତ୍ତା, ଜୀବ ଓ ପରମ ସୁଖ ଆନନ୍ଦରେ ଜୀବନ କଟାଇବେ ।

ରଣସିଂହେ ହିଆସର ବାରଣ୍ଡା ଉପରୁ ତଳକୁ ଗାଁ ଦାଣ୍ଡକୁ ଓହ୍ଲାଇଲେ । ବଉଳ-ଗୁନ୍ଦାମୀ ପାଖରେ ଠିଆ ହୋଇ ଫେରିଚାହିଁଲେ ହିଆସକୁ । ପୂର୍ବରୁ ପଶ୍ଚିମ ଲମ୍ବିଯାଇଛି । ଏତେ ବଡ଼ ହତା, ଏତେ ଘର— ଗୋଟିଏ ଶ୍ରେଷ୍ଠ କୁଟୁମ୍ବର ହେବ କଅଣ ? ପଶ୍ଚିମ ପଟରୁ କେତେ ଗୁଳଘର ଭାଙ୍ଗିଗଲାଣି । ଖଣ୍ଡିଆ କାନ୍ଥମାନ ଠିଆ-ହୋଇଛି । ଆଉ କେତେ ଘର ଦଦରଭଙ୍ଗା ହେଲାଣି । ଧନାଭାବରୁ ମରାମତି ହୋଇପାରୁ ନାହିଁ । ଆବଶ୍ୟକ ବି ନାହିଁ । ଚେଣିକା ସିବାକୁ ଡର ମାଡୁଛି । କେବଳ ବଗ୍ଡ କି ସାପ ସଲବଲ ହେଉ ନାହାନ୍ତି ତ, ଅତୀତ କର୍ମଗୁଡ଼ିକର ପ୍ରେତପଲ ଭଙ୍ଗା ଦଦରଭଙ୍ଗା ଘର ଓ ଅଟମା, ପୁରୁଣା ବାମ୍ପି ଓ ଶ୍ରେଷ୍ଠ ବଡ଼ ଉଇହୁଙ୍କାଗୁଡ଼ିକର ଅନ୍ଧାନ୍ଧରେ କଲବଲ ହେଉଛନ୍ତି । ଅଟ୍ଟହାସ ଓ ବିକଳ ଚିତ୍କାର କରୁଛନ୍ତି ।

ସେମାନେ ମୁକ୍ତ ହେବେ । ଯେଉଁଠି ଥିଲା ସେମାନଙ୍କର ଆଶ୍ରମ, ସେଇଠି ଗଢ଼ି ଉଠିବ ନୂଆ ପ୍ରକାର ନାରାୟଣ ମନ୍ଦିର— ଅରକ୍ଷ-ନିବାସ । ଯେଉଁ ନରନାରାୟଣ-ମାନେ ଆଜି ପଥ ପ୍ରାନ୍ତରରେ ହା-ହାକାର ଶୁଭୁଛନ୍ତି, ସେଇମାନଙ୍କର ହାସ୍ୟରୋଳରେ ସେ ମନ୍ଦିର ମୁଖର ହୋଇ ଉଠିବ । ସେ ନିଜେ ହେବେ ପ୍ରଥମ ସେବକ । ଉପରର ବକୁଳ ଗଛରୁ — ଧୀର ସମୀରଣରେ ରଣସିଂହଙ୍କର ମୁଣ୍ଡ ଉପରେ ପୁଷ୍ପବୃଷ୍ଟି ହେଲା ।

ହିଆସର ପଶ୍ଚିମ ପଟରେ ଥିବା ଭଙ୍ଗା, ଦଦରଭଙ୍ଗା ଘରଗୁଡ଼ିକ ସମ୍ପୂର୍ଣ୍ଣ ଭାବରେ ଭଙ୍ଗା ହୋଇ ସମତୁଲ କରାହୋଇଛି । ରଣସିଂହଙ୍କର ରହୁଥିବା ଅଂଶରୁ ଅଲଗା କରା-ହୋଇଛି । ତୋଳାହୋଉଛି ଉଚ ପାଚେରି । ସେବକ-ସଙ୍ଘ ହୁଙ୍କାର କରି ଉଠିଲେ ଓ ହାତ ଟେକଲେ କୌଣସି କାମ ଅସାଧ୍ୟ ହୋଇ ରହେ ନାହିଁ । ସମତୁଲ କରା-ହୋଇଥିବା ସ୍ଥାନରେ ଅରକ୍ଷ ଅକ୍ଷମ ନିବାସ ତୋଳାହେବ । ହିଆସ ପଛକୁ ଲାଗି ନଦୀ ବନ୍ଧ ଯାଏ ଯେଉଁ ବିସ୍ତୀର୍ଣ୍ଣ ପଡ଼ିଆ ପଡ଼ିଥିଲା, ସେତକ ମଧ୍ୟ ଯୋଗ କରାଯାଇଛି । ଅରକ୍ଷ-ଅକ୍ଷମମାନଙ୍କୁ କର୍ମଶିକ୍ଷା ଦେଇ ସ୍ୱାବଲମ୍ବୀ କରାଇବାକୁ ହେଉଛି ତୋଳା ହେବ ବିଭିନ୍ନ ଅନୁଷ୍ଠାନ ।

ସମସ୍ତେ ସ୍ଥିର କରିଛନ୍ତି, ଏ କାମର ଶୁଭ ଦେବେ ଟୁମାନାମୀ । ଟୁମାନାମୀଙ୍କର ସମ୍ମତି ଆଣିବାକୁ ନିଜେ ଯିବେ ସୁବ୍ରତ-ବଜ୍ରବାହୁ । ପତ୍ର ଲେଖିଛନ୍ତି ସେବିକା-ସଙ୍ଘର

Digitized by PPRACHIN, SOA

ପରିଚାଳିକା ମମତାଦେବୀ । ସୁବ୍ରତ ହିଁ ହେବ ପରିଚାଳକ । ସଙ୍ଗରେ ରହିବେ ଧର୍ମାନନ୍ଦ । ସୋମଗଡ଼ର ବରିଷ୍ଠ ଭଦ୍ରଲୋକମାନଙ୍କୁ ମଧ୍ୟ ଆଗରୁ ନିମନ୍ତ୍ରଣ କରି ଆସିବେ । ସମସ୍ତଙ୍କର ସୁବିଧା ଅସୁବିଧା କଥା ବିଚାର କରି ଶୁଭଦେବାର ଦିନବାର ପରେ ସ୍ଥିର କରାହେବ ।

ନିର୍ବିକାର ମନରେ ମାତାଙ୍କର ଆଦେଶ ଓ ପରାମର୍ଶ ଗ୍ରହଣ କରିଛି ବଜ୍ରବାହୁ । ଅଦ୍ଭୁତକୁ ବୋହୂ କରିବାକୁ ପିତା ସମ୍ମତ ଜଣାଇଛନ୍ତି । ମାତା ଆଗ୍ରହ ପ୍ରକାଶ କରିଛନ୍ତି । ନିଃସଙ୍କୋଚରେ ମଥା ନୁଆଁଇ ନିରେଖାରେ ମାତାଙ୍କ ଆଗରେ ସେ ନିବେଦନ କରିଛି, ଆଦ୍ଭୁତ ପିଲା ନୁହେଁ ଯେ ଅନ୍ୟର ଆଗ୍ରହ ଓ ଇଚ୍ଛାରେ ପରି-ଚାଳିତ ହେବ । ବହୁ ବର୍ଷ ପୂର୍ବେ ସେ ମୋ ସାଙ୍ଗରେ ପାଠ ପଢ଼ୁଥିଲା । ମୋତେ ପଛରେ ପକାଇ ସେ ଆଗେଇ ଯାଇଥିଲା । ଛ' ସାତ ବର୍ଷ ତଳେ ମୋ' ସଙ୍ଗେ ଥରଟିଏ ତା'ର ଦେଖା ।

ମମତା ପୁଅର ମୁହଁକୁ ସ୍ନେହଶୀତଳ ଦୃଷ୍ଟିରେ ଚାହିଁଲେ । ମାତୃଦୃଷ୍ଟି ଆଗରେ ବଜ୍ରବାହୁର ମନ ସତେ କି ଉନ୍ମୁକ୍ତ ହୋଇ ପ୍ରତିଭାତ ହେଲା । ତା'ର ମନର ପରଦା ଉପରେ ଗୋଟିଏ ମାତ୍ର ଛବି ଅଙ୍କାହୋଇଛି । କାହିଁକି ସେ ଅସମ୍ଭବକୁ ମନରେ ଧରିବସିଛି ତେବେ ?

କହିଲେ, ମୁଁ ନିଜେ ଯାଇ ସତ୍ୟବତୀଙ୍କ ଆଗରେ ହାତ ପାତିବି । ମାଗିବି, ମତେ ସେଇ କଣ୍ଢେଇଟି ଖେଳିବାକୁ ଦିଅ ।

ମମତାଙ୍କର ଆଖିରେ ଲୁହ ।

ବଜ୍ରବାହୁ ହସିଲା । କହିଲା ବୋହୂଟିଏ ପାଇଁ ବ୍ୟାକୁଳ ହୋଇ ପଡ଼ିଛୁ ତୁ ନା ?

ହଁ, ବାପ । ତୁମକୁ ବୋହୂ କରିବାକୁ ।

ତା'କୁ ନ ପଚାରି ସତ୍ୟବତୀ ତୋତେ ଉତ୍ତର ଦେବେ ନାହିଁ । ସେ ଯଦି ମନାକରନ୍ତି, ତୋ' ମନରେ ଦୁଃଖ ହେବ ।

ତେବେ, ସିଧାସଳଖ ମୁଁ ତୁମକୁ ପଚାରିବି ।

ସେ ଯଦି ମନାକରେ ତ—

ବଜ୍ରବାହୁ ମନର କଥା ଶେଷ କରି ପାରିଲା ନାହିଁ । କହିବାକୁ ତା'ର ମନ ହେଉଥିଲା—ତୋ' ମନରେ ଅଧିକ ଦୁଃଖ ହେବ ।

ମନର କଥା ବୁଝିଁଲା ପରି ମମତା ସୁବ୍ରତର ଚିବୁକରେ ହାତ ଦେଇ କହିଲେ, ମନରେ ଦୁଃଖ ହେବ ନାହିଁ ବାପ । ମୁଁ ଜାଣେ, ମୋ'ର ପୁଅ ମୋ'ର ଅବାଧ୍ୟ ହେବ ନାହିଁ । ଆଉ ଯାହାକୁ ବୋହୂ କରି ଆଣିବି, ତା'କୁ ମୋ'ର ମନଲାଖୀ କରି ଗଢ଼ିବି ।

Digitized by PPRACHIN, SOA

ସୁବ୍ରତ ମଥା ନୋଇଁଲା । ତୁଣ୍ଡ ନ ଫିଟାଇ ସେ ଯେପରି ଉତ୍ତର ଦେଲା, ତୋ' ପୁଅ ତୋ'ର ସିଦ୍ଧାନ୍ତକୁ ଗ୍ରହଣ କରିବ । ଦୁନିଆର ବିଭିନ୍ନ ପରିସ୍ଥିତିରେ ଅଭିଘାତ ହୋଇ ସେ ଶିଖିଆସିଛି ସଂସାରର ସୁଖ, ରୂପ, ବିଦ୍ୟା, ବୁଦ୍ଧି, ଧନ ଓ ପ୍ରତିପତ୍ତି ଉପରେ ନିର୍ଭର କରେ ନାହିଁ । ନିର୍ଭର କରେ ମନ ଉପରେ । ଯେଉଁମାନେ ସ୍ୱାର୍ଥଶୂନ୍ୟ, ଯେଉଁମାନେ ସନ୍ତାନଙ୍କର ମଙ୍ଗଳକାମୀ, ସେମାନଙ୍କର ବିବେଚନା ଓ ସିଦ୍ଧାନ୍ତକୁ ବିନା ଦ୍ୱନ୍ଦ୍ୱରେ ଆନନ୍ଦ ମନରେ ଗ୍ରହଣ କରି ନେବା ହିଁ ସୁଖ ।

ଆହ୍ଲାଦକୁ ସେ ଭଲ ପାଏ, ତାକୁ ସେ ବିବାହ କରିବାକୁ ଚାହେଁ — ଏଇ ନଗ୍ନ ସତ୍ୟ କଥା ସେ ଆହ୍ଲାଦକୁ ଜଣାଇଦେବ । ସେଥିପାଇଁ ମଧ୍ୟସ୍ଥିର ସାହାଯ୍ୟ ଲୋଡ଼ା ହେବ ନାହିଁ । ଆହ୍ଲାଦ ମନା କରିଦେବ । ସେଥିନେଇ ଚିନ୍ତା ନାହିଁ । ବହୁ ବର୍ଷ ହେଲା ମନରେ ପୋଷଣ କରିଥିବା ଆଶା ଓ ଆଗ୍ରହ ଭାଙ୍ଗିଯିବ । ମୁହୂର୍ତ୍ତକ ପାଇଁ ଦୁଃଖ ହେବ । ସେ ଦୁଃଖରେ ପିତାମାତା କି ଅନ୍ୟ ଶୁଭାକାଙ୍କ୍ଷୀମାନଙ୍କୁ ସେ ଭାଗୀ କରିବ ନାହିଁ ।

ମନ ଆଗରେ ଉଭା ହେଲା ଫୁଲଦାନୀ । ସେ ବି ଭଲ ପାଉଥିଲା । ସେଇଥିପାଇଁ ହୁଏତ ସତ୍ୟପାଳକୁ ଖଣ୍ଡ କରିଥିଲା । ମନର ମୋହକୁ ଦମନ କରି ଫୁଲ୍‌ଦାନୀକୁ ସେ ଦୂରେଇ ରଖିଥିଲା । ଦୂରେଇ ଯାଇଛି ସେ ଚିରଦିନ ଲାଗି ।

ଭଲ ପାଇବାଟା ସଂସାର ଯାତ୍ରାର ପଥସୂଚକ ସିନା, ପଥ ନୁହେଁ । ଦୁନିଆରେ ଯିଏ ଯାହାକୁ ପ୍ରେମ କରେ ତାକୁ ନେଇ ସଂସାର କରିବା କେତେ ଜଣଙ୍କ ଭାଗ୍ୟରେ ବା ଘଟେ ? ସଂସାର ଯାତ୍ରାରେ ଦୁଇ ଅପରିଚିତଙ୍କର ମିଳନ, ଯାତ୍ରାପଥରେ ପରସ୍ପରକୁ ଚିହ୍ନିବାର ଉଦ୍ୟମ, ନିଜର କରିବାର ଅଦମ୍ୟ କାମନା, ନିଜର ରୁଚି ପ୍ରଭାବରେ ପରସ୍ପରକୁ ଗଢ଼ିବାର ଆଗ୍ରହ ଏବଂ ଅନ୍ୟର ରୁଚିକୁ ବୁଝି ପରସ୍ପରକୁ ନୂଆଁଇ ଦୁଇଟି ରୁଚିକୁ ଏକାକାର କରିବାର ଉତ୍କଣ୍ଠା ଜୀବନକୁ ସୁନ୍ଦର କରେ, ଉପଭୋଗ୍ୟ କରେ, ପ୍ରେମମୟ କରେ; ପ୍ରେମର ସମାପ୍ତି ନ ଥାଏ ସେ ଜୀବନରେ । ପ୍ରେମ ଚିରନ୍ତନ ଜୀବନ୍ତ ହୋଇ ରହିଥାଏ । ବିଚ୍ଛେଦର ପ୍ରଶ୍ନ ଉଠେ ନାହିଁ ।

ଭଞ୍ଜଗଡ଼ର ଅତୀତ କି ବର୍ତ୍ତମାନ ପ୍ରେମରେ ପଡ଼ି ବିବାହ କରି ନାହିଁ, ବିବାହ କରି ପ୍ରେମରେ ପଡ଼ିଛି ।

ଭଲ ପାଏ ସେ ଆହ୍ଲାଦକୁ । ଏ କୁଳର ବଧୂ ହେଲେ ପିତାମାତା ସୁଖୀ ହେବେ । ସେ ମଧ୍ୟ ସୁଖୀ ହେବ । ଆହ୍ଲାଦ ଅସମ୍ମତ ହେଲେ, ସେ ଦୁଃଖ କରିବ ନାହିଁ । ଏ କୁଳର ବଧୂ ହୋଇ ଯିଏ ଆସିବ, ତା'କୁ ସେ ଆପଣାର କରିନେବ ।

ବୋଉ—

କ'ଣ ବାପ ?

ତୋ'ର ଓ ବାପାଙ୍କର ଆଦେଶ ମୁଁ ମଥା ନୋଇଁ ଗ୍ରହଣ କରିବି । ତମର ଇଚ୍ଛା ହିଁ ମୋ'ର ଆଶୀର୍ବାଦ । ସେଇ ଆଶୀର୍ବାଦର ସମ୍ମାନ ମୁଁ ରଖିବି ବୋଉ, ସେତିକି ମୋ' ଜୀବନର ଶ୍ରେଷ୍ଠ ଧନ, ଶ୍ରେଷ୍ଠ ଆନନ୍ଦ ।

Digitized by PPRACHIN, SOA

ସୁବ୍ରତ ତା'ର ସ୍ନେହମୟୀ ଜନନୀର ହସିଲା ମୁହଁକୁ ଚାହିଁଲା । ସବୁ ତୀର୍ଥର ସମନ୍ୱୟ ତା'ର ଜନନୀ, ଯାହାର କୋଳରେ ମଥା ରଖିଲେ ସେ ପବିତ୍ର ହୁଏ, ସରଗର କଳ୍ପିତ ଆନନ୍ଦକୁ ମଣେ ତୁଚ୍ଛ ।

ମମତା ସୁବ୍ରତର ମୁହଁରେ ହାତ ବୁଲାଇ ଗଦ୍‌ଗଦ୍ କଣ୍ଠରେ କହିଲେ, ମୁଁ ସେ କଥା ଜାଣେ ।

ସୁବ୍ରତ କହିଲା, ତମର ଇଚ୍ଛା ମୁଁ ଆହୁତିକୁ ଜଣାଇଦେବି । ତା'ର ଇଚ୍ଛା ଉପରେ ତାର ହିଁ ଅଧିକାର । ତୋର ବୋହୂ ହେବାକୁ ସେ ମନା କରିପାରେ । ସେଥିପାଇଁ ଚିନ୍ତା ନାହିଁ । ତୋ ପ୍ରଶଂସା ଚିରଦିନ ତୋ'ର । ସେ କେବେ ତୋ'ର ଅବାଧ୍ୟ ହେବ ନାହିଁ ।

ଜାଣେ ରେ !

ମମତାଙ୍କର ଆଖିକୋଣରୁ ଆନନ୍ଦାଶ୍ରୁ ଗଡ଼ିଆସିଲା ।

ପରଦା ଆଡ଼େଇ ସତ୍ୟବତୀ ମଝିଘରକୁ ଚାହିଁଲେ । ଭଦ୍ରଲୋକଟି ଟେବୁଲ୍ ପାଖରେ ରୁଜୁ ହୋଇ ବସିଛନ୍ତି । ଅନ୍ୟମନସ୍କ ହୋଇ ଘରର ଚାରିଆଡ଼କୁ ଚାହିଁଛନ୍ତି । ଡାଣ୍ଡି କବାଟ ମୁକୁଳା । ଡାଣ୍ଡି ଦରଜାରେ ଝୁଲୁ ହୋଇଥିବା ପରଦା ଅଧାଟଣା ହୋଇଛି । କେହି ପାଖରେ ନାହିଁ । ଆହୁତି ଗଲା କୁଆଡ଼େ ? ଭଦ୍ରଲୋକଙ୍କୁ ବିଦାୟ ଦେଲା ନାହିଁ କି ସ୍ୱ ଜଳଖିଆ ବସ୍ୱଦ୍ ଦେଲା ନାହିଁ । ଚୁଲି ଉପରେ ସେ ଗରମ ପାଣି ବସାଇ ଦେଇ ଆସିଛନ୍ତି ।

କେଉଁଠି ଦେଖିଲା ଦେଖିଲା ପରି ମନେହେଉଛି ।

ସତ୍ୟବତୀ ଏ ପାଖ ଘରକୁ ଆସିଲେ । ଆହୁତି ନାହିଁ । ପଲଙ୍କ ଉପରେ ଅଜଣା ବୋହୂଟିର ପତ୍ରଖଣ୍ଡି ପଡ଼ିରହିଛି । ମଝି ଘରକୁ ଲାଗିଥିବା କବାଟ ବନ୍ଦ ଅଛି । ଆହୁତି ତ ଏଇ ଘରକୁ ଆସିଲା ।

ଫେରି ଆସିଲେ ବାରଣ୍ଡାକୁ । ଆଉ ଘରେ ବଙ୍କୁଲି ଅଳୁଅ ଜଳୁଛି । ସେ ଘରେ କେହି ଥିଲା ପରି ମନେ ହେଉ ନାହିଁ । ମଝିଘର ଆଗ ଦେଇ ସେ ଚାଲି ଆସିଥିଲେ । ଚାହିଁଲେ ଜଣେଇଁ । ଭଦ୍ରଲୋକଟି ଉଠି ଠିଆ ହେଲେଣି । ଡାଣ୍ଡିଦରଜାର ପରଦା ଆଡ଼େଇ ବାଟକୁ ଚାହୁଁଛନ୍ତି । ବାହାରେ ଉଜ୍ଜ୍ୱଳ ଜହ୍ନଆଲୁଅ । ହୁଏତ ଆଉ କାହାକୁ ଅପେକ୍ଷା କରୁଛନ୍ତି । କେଜାଣି ବା ଚାଲିଯିବାକୁ ମନ କରୁଛନ୍ତି ।

କର୍ଣ୍ଣ ନେଇ ଡାକିଲେ, ଟୁନ୍ନି !

କଡ଼ଘରୁ ଉତ୍ତର ଆସିଲା, ମା !

Digitized by PPRACHIN, SOA

ସତ୍ୟବତୀ ଘର ଭିତରକୁ ଗଲେ । ସେ ଘର ପଲଙ୍କ ପାଖ ଆଲମାରୀକୁ ଆଉଜି ଠିଆ ହୋଇଛି ଆଦୃତ । ସତ୍ୟବତୀଙ୍କୁ ଦେଖି ସେ ଆଗେଇ ଆସିଲା । ପାଲଟା ଶାଢ଼ୀ ପଲଙ୍କ ଉପରେ ପଡ଼ିଛି ।

କୁଆଡ଼େ ଯିବୁ କି ଟୁନି ?

ଆଦୃତ ମଥା ନୋଇଁଲା । ନିଜ ପାଖରେ ନିଜେ ହେଲା ଲଜ୍ଜିତା । କେଉଁ ଅଜଣା ମୋହ ନିଜର ଟିକିଏ ଯତ୍ନ ନେବାକୁ ତା'କୁ ଇଙ୍ଗିତ ଦେଇଥିଲା । ସେତକ ବି ଧରା ପଡ଼ିଯାଇଛି । କହିଲା, ତା'ଙ୍କ ପାଇଁ ବ୍ୟସ୍ତ କଲୁ କି ? ଅଲ୍‌ମାରି ଭିତରେ ବସ୍ତ୍ରଟି ଚିଣ ଅଛି ।

ଚିହ୍ନିବ ପତ୍ର ଲଗୁଛି ତ, ସେ କିଏ ଲେ ?

ସୁବ୍ରତ ବଜ୍ରବାହୁ ।

ରଣଗଡ଼ ରଣସିଂହଙ୍କ ପୁଅ କି ?

ହଁ ।

ଦେଖିଛୁ ତ ! ପଢୁଥିଲା କି ତୋ ସଙ୍ଗରେ ?

ହଁ ।

ଟିକିଏ ଚିନ୍ତା କରି ସତ୍ୟବତୀ କହିଲେ, ମନେ ପଡ଼ିଲା । ବହୁବର୍ଷ ତଳେ, ସେତେବେଳେ ତୁ ନୂଆ ନୂଆ କଲେଜରେ ନାମ ଲେଖେଇଥିଲୁ,— ।

ଆଦୃତର ଦୁଇ ଆଖିରୁ ଲୁହଧାର ଝରିଆସିଲା । ବାଷ୍ପରୁଦ୍ଧ କଣ୍ଠରେ କହିଲା, ଆଉ ତୁ କହ ନା । ଅତୀତ ଅତୀତରେ ହଜିଯାଇଛି । ସୁବ୍ରତ ନଳରାଜ ନୁହନ୍ତି କି ତୋ'ର ଟୁନି ଦମୟନ୍ତୀ ନୁହେଁ । ଜୀବନଟା ରଙ୍ଗମଞ୍ଚର ଖେଳ ନୁହେଁ । ଜୀବନ ବାସ୍ତବ !

ସତେ ଲୋ ଟୁନି !

ସେଇ କଥା ମୁଁ ଚିନ୍ତା କରୁଥିଲି । ଟୁନି ତୋର ବଡ଼ ହୋଇଛୁ । ସଂସାରକୁ ଚିହ୍ନିଛୁ । ବଜ୍ରବାହୁଙ୍କୁ କ'ଣ କହି ବିଦାୟ ଦେବାକୁ ହେବ, ସେ କଥା ମୁଁ ଜାଣେ ।

ପୁଣି ସେ ପତ୍ର ଲେଖୁଛି ।

ନିଜେ ସେ ପତ୍ର ହୋଇ ଆସିଛନ୍ତି !

କନ୍ୟାର ଚିବୁକରେ ହାତ ଦେଇ ଝରିଲା ଆଖିରେ ସତ୍ୟବତୀ କହିଲେ, ବିଦାୟ ଦେବୁ କାହିଁକି ? ମଣିଷ ଜୀବନଟା ଖେଳଘର ନୁହେଁ ବୋଲି ତୁ କହିଲୁ । ମୁଁ କହୁଛି, ଜୀବନଟା ଖାଲି ଉତ୍ତେଜନା ନୁହେଁ । ନିଜର ସଂସାରକୁ ଯିଏ ସୁନ୍ଦର ଓ ସୁଖର କରିବାକୁ ନ ଶିଖିଛି, ପରର ସଂସାରକୁ କି ଦୁନିଆକୁ ସେ ତ ବୁଝିପାରିବ ନାହିଁ ।

Digitized by PPRACHIN, SOA

ଅମୃତ ଉତ୍ତର ଦେଲା ନାହିଁ । ଶିଶୁଟି ପରି ମୁହୂର୍ତ୍ତେ ତା'ର ସ୍ନେହମୟୀ ଜନନୀର ଦୁଇ ଆଖିକୁ ଅନାଇଁ ରହିଲା । ବେକକୁ କୁଣ୍ଢାଇ ଧରି ମୁଣ୍ଡ ନୁଆଁଇ କହିଁ କହିଁ ହୋଇ କାନ୍ଦିଉଠିଲା । ସେ ବୁଝିଲା, ଯେଉଁ ଦେହଟିକୁ ସେ ଆଲିଙ୍ଗନ କରିଛି, ତା'ର ପାଖରୁ ଦୂରେଇ ଦେବାକୁ ଦେହ ଭିତରର ଆତ୍ମାଟା ଉଦ୍‌ବିଗ୍ନ ହୋଇ ଉଠିଛି । ଅମୃତର ହାତମୁଠା ଭିତରର ମମତା ଓ ସନ୍ଧ୍ୟାଙ୍କର ପଦ୍ମଦର୍ପଣଟି ତଳେ ଖସିପଡ଼ିଲା ।

ପିଠି ଆଉଁସି ସତ୍ୟବତୀ କହିଲେ, ଛି, ଏମିତି ପିଲାଙ୍କ ପରି ହେଉଛୁ କ'ଣ ? ସେ ଘରେ ସେ ଏକା ବସିଛି ! ଯା ସେଠିକି । ମୁଁ ଚା' କରି ଆଣେ ।

ଅମୃତକୁ ବୁଝାଇଦେଲେ । କହିଲେ ପୁଣି, ଖୋଲି ଦେଉନୁ ମଝି କବାଟଟା ।

ନିଜେ ଖୋଲିଲେ ।

ତରତର ହୋଇ ରୋଷଘରକୁ ଗଲେ ।

ଧୀର ପବନରେ ମଝିଘରର ପରଦାଟି ଏପାଖ ସେପାଖ ହେଉଛି । କଣେଇଁ ଚାହିଁଲା ଅମୃତ । ବଜ୍ରବାହୁ ବସିଛନ୍ତି । ପରଦା ଆଡ଼କୁ ଚାହିଁଛନ୍ତି । ସୁନ୍ଦର ବଳିଷ୍ଠ ମୁହଁଟି ବଲ୍‌ବର ଆଲୁଅରେ ଝଲସି ଉଠୁଛି । ସେ ମୁହଁରେ ଚିନ୍ତା, ନୈରାଶ୍ୟ, କି ଉଦ୍‌ବିଗ୍ନତାର ରେଖାପାତ ହୋଇନାହିଁ । ସେ ନିର୍ବିକାର । ଟେବୁଲ ଉପରେ ସୁହାସ ପଠାଇଥିବା ଉପହାର ଦର୍ପଣଟି ରଖାହୋଇଛି ।

ବଜ୍ରବାହୁ ଫଟୋଟିକୁ ଉଠାଇ ଧରିଲେ । ନିରେଖି ଚାହିଁଲେ । ସ୍ୱୟମ୍ବରର ଫଟୋ । ତହିଁରେ ପାଖାପାଖି ହୋଇ ଠିଆ ହୋଇଛନ୍ତି ନଳ ଓ ଦମୟନ୍ତୀ । ସୁବ୍ରତ ଓ ଅମୃତ । ଆହୁରି କେତେ ବନ୍ଧୁ ପାଖରେ ଓ ପଛରେ ଉଭା । ରତ୍ନାକର, ଅରବିନ୍ଦ, ରତିକାନ୍ତ ଓ ଧନଞ୍ଜୟ, ମୃଦୁଳା, ଭାର୍ଗବୀ, ସୋମା ଓ ସୁଜାତା । ପିଲାଦିନର ମଧୁର ସ୍ମୃତି । କିଏ କେଉଁ ରାସ୍ତା ଧରି ଚାଲିଗଲେଣି । ଗୋଟିଏ ପଥରେ ଚାଲିଛନ୍ତି ସୁବ୍ରତ ଓ ଅମୃତ । ସେବାଧର୍ମ ହିଁ କରିଛନ୍ତି ଜୀବନର ବ୍ରତ ।

ଦୁହେଁ ଆଜି ମୁହାଁମୁହିଁ ।

ସୁବ୍ରତର ମୁହଁରେ ସତେ କି ପୁଲକର ଆଭା ଖେଳିଗଲା । ଅମୃତ ଆଖିରୁ ପୋଛିଲା ଲୋତକ । ପୁଣି ଚାହିଁଲା । ସୁବ୍ରତ ମାଳାଟିକୁ ଟେକି ଧରିଛନ୍ତି । ରେଶମ ସୂତାର ଗୁନ୍ଥା ପାଞ୍ଚସରିଆ ମାଳା—ଧଳା, ନାଲି ଓ କଳା କାଇଁଚ, ଗରଗଡ଼ା, ଛରକୁଳ, କାକୁଡ଼ିମଞ୍ଜି, ଧାନ, ଗହମ, ବରି—ସବୁ ମିଶାଇ ସନ୍ଧ୍ୟା ରଚିଛି ହାର । ସୁନ୍ଦର ହୋଇଛି । ସୁବ୍ରତ ମାଳାଟିକୁ ପୁଣି ରଖିଲା ଟେବୁଲ ଉପରେ ।

Digitized by PPRACHIN, SOA

ଉତ୍ତର ନେବାକୁ, ଉତ୍ତର ଶୁଣିବାକୁ ସେ ଅପେକ୍ଷା କରି ବସିଛନ୍ତି ।

ମମତା ଲେଖିଛନ୍ତି ନିଜ ହାତରେ—କେତେ ଶୀଘ୍ର ତୋର ବୁଢ଼ା ପୁଅ ଝିଅଙ୍କୁ ଭୁଲିଗଲୁ ରେ ସୁନା ! ତୋ'ର ରୂପ ସିନା ସବୁବେଳେ ଆଖିରେ ଦିଶିଯାଉଛି, ମା' ଡାକ କାନରେ ବାଜିଯାଉଛି, ହାତର ପରଶ ତ ଦେହରେ ଲାଗୁନାହିଁ । ରଣଗଡ଼ରେ ଥିବା ତୋର ମା', ଖୁଡ଼ୀ, ଭାଉଜ, ଭଉଣୀମାନେ ଅନେଇ ବସିଛନ୍ତି । ସମସ୍ତେ ସେମାନେ ସ୍ଥିର କରିଛନ୍ତି, ରଣଗଡ଼ର ସବୁ ଅନାଥ ଅକ୍ଷମ ନିରାଶ୍ରା ପିଲାଙ୍କ ପାଇଁ ଯେଉଁ ଆଶ୍ରମ ଖୋଲାହେବ, ତାର ଶୁଭ ତୋ'ରି ହାତରେ ପଡ଼ିବ । ତେଣେ ମୁଁ ନିଜେ ଆଣିବାକୁ ଧାଇଁ ଯାଇଥାନ୍ତି । ଜୀବନରୁ ଅଧିକ ମୋ'ର ସୁବ୍ରତ, ତା'କୁ ହିଁ ପଠାଇଲି । ବେହରା ପାଇଲେ, ନିଜେ ଯିବ । ହାତଧରି ଆଣିବ । ଆଣିବ ସଙ୍ଗରେ ତୋ'ର ମା'ଙ୍କୁ । ସେ ଖାଲି ଦେଖିବେ, ନିଜ ମନକୁ ପଚାରିବେ—ସୁନା କ'ଣ ସତେ ତାଙ୍କର ଝିଅ ?

ଲେଖିଛି ସୁହାସ୍ୟା—ଏତିକ ବାଦୋଇ ତମେ ସୁନାଅପା ? ନ ଆସିବ ଯେବେ, ତମୁକୁ ଧରି ଆଣିବାକୁ ମା' ସଙ୍ଗେ ମୁଁ ବି ଯିବି । ଅଭା ଭାଉଜ ଯାଇ ପାରିବେ ନାହିଁ । ଦିନ ଦିନ ହେଲା ତାଙ୍କର ଝିଅ ହୋଇଛି । ଯେଉଁ ଫଟୋ ଫ୍ରେମରେ ତମର ଏତେ ସ୍ନେହ, ତାକୁ ମୁଁ ପଠାଇଲି । ଭାଇ ଅତି ସ୍ନେହ କରୁଥିଲେ ବୋଲି ତମୁକୁ ଦେବାକୁ ମନା କରୁଥିଲି ସିନା । ତା'ଙ୍କୁ କହିଲାରୁ ସେ କହିଲେ, ଦେଲୁ ନାହିଁ କାହିଁକି ? ମା ତାକୁ ନେଇ ବାପାଙ୍କ ଘରେ ଟାଙ୍ଗିଥିଲେ । କାଢ଼ିଆଣି ପଠାଇଲି । ତମେ ରଖିବ । ହଁ ସୁନାଅପା, ତମେ ଯେମିତି ଶିଖେଇଥିଲ ସେମିତିକା ମାଳାଟିଏ ମୁଁ ତମ ପାଇଁ ବୁଣିଛି । ଭଲ ହୋଇଛି କି ମନ୍ଦ ହୋଇଛି ତମେ କହିବ । ମାଳାଟିକୁ ମତେ ଭାଇ ମାଗୁଥିଲେ । ତମ ପାଇଁ ବୁଣିଛି କହିବାରୁ ଚୁପ ହେଲେ । କଥାଟିଏ କହିବି କି ? ନା, ତମେ ଆସିଲେ କାନରେ କହିବି । —

ଦୁଇଟି ଲଫାପାରେ ବନ୍ଦ ଥିଲା ଚିଠି ଦୁଇ ଖଣ୍ଡି । ଫଟୋ ଓ ମାଳା ଖବରକାଗଜ ଗୁଡ଼ା ହୋଇଥିଲା । ନିଜେ ସେ ଖୋଲିଲା । ଟେବୁଲ ସେପାଖେ ଆଗରେ ବସିଛନ୍ତି ସୁବ୍ରତ । ଚାହିଁ ରହିଛନ୍ତି । ଭଲ କରି ମୁହଁକୁ ଅନାଇଁ ହେଉ ନାହିଁ । ସହପାଠୀ ବନ୍ଧୁ ଥିଲେ । ନିଃସଙ୍କୋଚରେ ଗ୍ରାମୋଫୋନ୍ 'ରେକର୍ଡ଼' ବାଜିଲା ପରି ଗପି ଯାଉଥିଲେ । କିଏ କ'ଣ ମନେ କରିବ ସେ କଥା ବିଚାର କରୁ ନ ଥିଲେ । ଆଜି ସେ ଗମ୍ଭୀର ।

ପର ଦୁଇଟି ହାତରେ ଧରି ଆହୃତ ମୁହଁ ଟେକି ଚାହିଁଲା । ଅବୋଧ ସଙ୍କୋଚ ଲୁଚି ପଡ଼ୁଛି । ଅସ୍ୱାଭାବିକ ଲଜ୍ଜା ଦେଉଛି ଆଣ୍ଠୁରୁ ମୃଦୁ କମ୍ପନ । ଅଭ୍ୟାସଗତ ସ୍ମିତ ଅଧର ମଣ୍ଡିଛି । ଚାହିଁ ରହିଛି ସେ ସୁବ୍ରତଙ୍କୁ ।

ବଜ୍ରବାହୁ କହିଲା, ଆପଣଙ୍କ ଉତ୍ତରକୁ ମା ଅପେକ୍ଷା କରିଛନ୍ତି ।

Digitized by PPRACHIN, SOA

ବଜ୍ରବାହୁର ମୁହଁ ସ୍ମିତ । ଗବୃଛନ୍ତି ସେ, ଅଦ୍ଭୁତ ବଦଳିଛି । କର୍ମମୟ ଜୀବନ ତା'ଙ୍କୁ କରିଛି ଦୁର୍ବଳ, ଗମ୍ଭୀର ଓ ସଙ୍କୁଚିତ ।

ଆହୁତ ଉତ୍ତର ଦେଲା, ମୋ' ଉପରେ ମା'ଙ୍କର ଅସୀମ ସ୍ନେହ । କିନ୍ତୁ, ମୁଁ ପରାଧୀନ । ଏତେ ବଡ଼ ଅନୁଷ୍ଠାନର ଶୁଭ ଦେବାକୁ ମୁଁ ଅଯୋଗ୍ୟ । ଯିଏ ପ୍ରକୃତରେ ଯୋଗ୍ୟ, ତାଙ୍କର ରୂପ ମୋ'ର ଆଖି ଆଗରେ ନାଚଯାଉଛି । ସେ ତପସ୍ୱିନୀ; ସେ ସେବିକା !

ଆଗ୍ରହରେ ସୁବ୍ରତ ପଚାରିଲା, କିଏ ସେ ?

ଆହୁତ ଉତ୍ତର ଦେଲା, ଆପଣଙ୍କର ଖୁଡ଼ୀ ସାବିତ୍ରୀ ଦେବୀ । ମା'ଙ୍କୁ ମୋ'ର ଏଇ କଥା ଜଣାଇଦେବେ । ହଁ ଆଁ ଲେଖିଛନ୍ତି—ଏଇ ମାଳାଟି ଉପରେ ଆପଣଙ୍କର ସ୍ନେହ । ପ୍ରକୃତରେ ଅତି ସୁନ୍ଦର ହୋଇଛି !

ମାଳାଟି ହାତରେ ଧରି ନିରେଖି ଦେଖିଲା । କହିଲା, ଏଇଟି ଆପଣ ନିଅନ୍ତୁ ।

ମାଳାଟି ବଢ଼ାଇ ଦେଉଁଣ୍ତି ଦୃଷ୍ଟି ଅଟକିଗଲା ସୁବ୍ରତର ଆଗ୍ରହ ଉଜ୍ଜ୍ୱଳ ଆଖି ଉପରେ । ମୁହୂର୍ତ୍ତକରେ ଦୁହିଁଙ୍କର ଭାବନା ଫେରିଗଲା ଦୂର ଅତୀତକୁ । ବିଦାୟ ବେଳର ଶେଷ ଭାଷାଣି ।

ଏମିତିକା ସଞ୍ଜ । ଆକାଶରେ ଅଗଣନ ତାରା ମିଟି ମିଟି । ସୁବ୍ରତ ବିଦାୟ ନେଇ ଚାଲିଯାଉଛି । ଫେରି ଚାହିଁ ନାହିଁ । ମନ ଭିତରେ ବନ୍ଦୀ କରି ନେଇଛି ଜଣକର ସ୍ମୃତି । ସେଇ ସ୍ମୃତିଟି ମୂର୍ତ୍ତିମନ୍ତ ହୋଇ ଆଗରେ ବସିଛି ।

ଆହୁତର କାନରେ ବାଜିଯାଉଛି ସୁଜନ ଛୋଟାର ଗେହ୍ଲାଳିଆ ପ୍ରଶ୍ନ— ନଳବାବୁ ଚାଲିଗଲେ କି ମା ? ଅଟକେଇଲୁ ନାହିଁ ? ଅଟକେଇ ରଖିଛି ସେ ସ୍ମୃତିରେ । ସ୍ମୃତି ଭିତରୁ ବାହାରି ମୂର୍ତ୍ତିମାନ୍ ହୋଇ ଆଗରେ ବସିଛନ୍ତି ସେ ।

ଆହୁତ ଦୃଷ୍ଟି ଫେରାଇଲା ।

ମାଳାଟି ହାତରେ ଧରି ହସିହସି ସୁବ୍ରତ କହିଲା, ନା ଆହୁତୀ ଦେବୀ, ଏ ମାଳା ମୁଁ ଗ୍ରହଣ କରିବ ନାହିଁ । ଆପଣଙ୍କୁ ଉପହାର ଦେବାକୁ ମୁଁ ସନ୍ଧ୍ୟାକୁ ମାଗିଥିଲି । ନିଅନ୍ତୁ ।—

ଦୁଇ ହାତରେ ଧରି ଆହୁତ ଅଞ୍ଜଳି ବଢ଼ାଇଲା । ହସିବାକୁ ଲାଗିଲା । ଇଚ୍ଛା ହେଲା ବେକରେ ଲମ୍ବାଇ ଦେବ । ସାହସ ହେଲା ନାହିଁ । ଅବଶେଷ ମୁହଁକୁ ଅନାଇଁ ଆହୁତ ଆଖି ଫେରାଇଲା । ଆହୁରି ହେଲା ସୁନ୍ଦର ମୁହଁଟି । ଉଜ୍ଜ୍ୱଳ ଆଖି ଯୋଡ଼ିକ ଝଲସି ଉଠିଲା । ହାତବଢ଼ାଇ ସେ ମାଳାଟି ଧରିଲା ।

ମାଳା ନୁହେଁ ତ ବନ୍ଧନ ! ଦେବତାମାନେ କୃତ କପଟ କରି ନଳ ରୂପ ଧାରଣ କରିଥିଲେ । ହାତରେ ବରଣମାଳା—ପୁଷ୍ପମାଳା—ଦମୟନ୍ତୀ । ସେ ଦିନ ସେ ଭୁଲ୍ କରି ନ ଥିଲା । ତଥାପି ସେ ସୁଖୀ ହୋଇ ପାରି ନ ଥିଲା । ଆସିଲା ବିଚ୍ଛେଦ ।

Digitized by PPRACHIN, SOA

ଅତୀତର ଉପନ୍ୟାସ । ରଙ୍ଗମଞ୍ଚରେ ତା'ର ଅଭିନୟ । ଦୁହିଁଙ୍କ ଜୀବନରେ ସେଇ ଅଭିନୟଟି ଯେପରି ସତ ହୋଇଛି । ଅତୀତ ହଜିଯାଇଛି । ଅଭିନୟ ସରିଛି । ବର୍ତ୍ତମାନ ଆଜି ଜୀବନ୍ତ । ସତେ କ'ଣ ସୁବ୍ରତ ତାକୁ ବନ୍ଧନରେ ବାନ୍ଧିବାକୁ ମନ କରିଛନ୍ତି ?

ରଣଗଡ଼ର ରଣସିଂହଙ୍କର ପୁଅ । ଭକ୍ତମାଟିର ରାଜଜେମାଙ୍କର ପୁଅ । ସଂସାରରେ ଚହଳ ପଡ଼ିବ । ତାଙ୍କର ପିତାମାତା ହୁଙ୍କାର କରି ଉଠିବେ ।

ଆଭିଜାତ୍ୟର ଅହମିକା ଜାଗି ଉଠିବ । ନୂଆ ଯୁଗର ପରିବର୍ତ୍ତନ ଦେଖି ସେମାନେ ବିସ୍ମିତ ହେବାକୁ ଚାହାନ୍ତି । ଉତ୍ସାହିତ କରି ଉଲ୍ଲସିତ ହେବାକୁ ଭଲପାଆନ୍ତି । ନିଜ ସଂସାରକୁ ସ୍ୱାଗତ କରିବାକୁ ପ୍ରସ୍ତୁତ ନ ହେଲେ ସେ ସଂସାରରେ ଜଳିଉଠିବ ନିଆଁ । ସୁଖର ସଂସାରରେ ଅଗ୍ନି ସଂଯୋଗ କରିବାକୁ ସୁବ୍ରତର ସଙ୍କେତରେ ସେ କି ଉତ୍ତର ଦେବ ?

ବିଚଳିତ ହୋଇ ଆହୁତି କହିଲା, ଧନ୍ୟବାଦ ।

ମାଳାଟିକୁ ଟେବୁଲ ଉପରେ ରଖିଲା ।

ସୁବ୍ରତ ହସି ହସି କହିଲା, ଆପଣ ଯଦି ଦର୍ଶଟିର ଉତ୍ତର ଲେଖିଦେବେ । ଆହୁରି ଗୋଟିଏ ପ୍ରଶ୍ନ ପଚାରିବାକୁ ବାକୀ ରହିଗଲା । ଅନୁମତି ଦେଲେ ପଚାରିବି ।

ପ୍ରଶ୍ନ ପଚାରିବାକୁ କେହି କେବେ ମୋ'ର ଅନୁମତି ଲୋଡ଼େ ନାହିଁ । ସିଧାସଳଖ ପ୍ରଶ୍ନର ସିଧାସଳଖ ଉତ୍ତର ଦେବାକୁ ମୁଁ ଭଲପାଏ ।

ସେ କଥା ମୁଁ ଜାଣେ । ପ୍ରଶ୍ନଟିଏ ପଚାରିବାକୁ କାହାରି ଅନୁମତି ମୁଁ ଲୋଡ଼େ ନାହିଁ । ମୋ'ର ମନ ଭିତରର ସବୁ ପ୍ରଶ୍ନର ଉତ୍ତର ମୁଁ ପାଇସାରିଛି । ଯାହା ମୁଁ ପାଇଛି, ସେତକ ସମ୍ବଳକରି ମୁଁ ନୂଆ ଉତ୍ସାହରେ କର୍ମପଥରେ ଅତି ଆନନ୍ଦରେ ଆଗେଇ ଯାଇ ପାରିବି । ପ୍ରଶ୍ନଟି ହେଉଛି ମୋ'ର ମା'ଙ୍କର । ସେଥିରେ ବାପାଙ୍କର ବି ଅଂଶ ଅଛି । ସେମାନଙ୍କର ଆଗ୍ରହ ଆପଣଙ୍କୁ ତାଙ୍କର କୁଳବଧୂ କରିବେ । ମା ଆପଣଙ୍କର ମତାମତ ଜାଣିବାକୁ ଉଦ୍‌ବିଗ୍ନ ହୋଇ ରହିଁ ବସିଛନ୍ତି ।

କହି ଦେଇ ସୁବ୍ରତ ସଙ୍କୁଚିତ ହେଲା । ଦୀର୍ଘଶ୍ୱାସ ଛାଡ଼ି ଚଉକିକୁ ଆଉଜି ବସିଲା । ସରଳ. ସିଧାସଳଖ କଥାଟି କହିଦେଇ ସେ ଭଲ କରିଛି । ବାର ବର୍ଷରୁ ଅଧିକ ହେବ ଆଶାର ଦୀପଟି ସେ ଅନ୍ତର ଭିତରେ ଜଳାଇ ରଖିଛି । କ୍ଷୀଣ ଆଲୋକର ସତ୍ତା କାହାରିକୁ ବିଦିତ ନାହିଁ । ସେଇ ଆଲୋକକୁ ସେ ଆଜି ପଦାକୁ କାଢ଼ି ରଖିଛି ସେଇ ଦେବୀପ୍ରତିମା ଆଗରେ, ଯେ ଆଜି ଆଗରେ ଉଭା । ତା'ର ଅର୍ଘ୍ୟ ସେ ଗ୍ରହଣ କରୁ, ଅବା ଫୁଙ୍କି ଲିଭାଇ ଦେଉ । ଶେଷ ସମାଧାନ ହିଁ ହେବ ।

ଅଚଳ ପଥର ମୂର୍ତ୍ତିଟି ପରି ତଳକୁ ଚାହିଁ ରହିଛି ଆହୁତି । ମୁଣ୍ଡ ଭିତରେ କୌଣସି ଭାବନା ରହିପାରୁନାହିଁ । କି ଉତ୍ତର ସେ ଦେବ ? ଯେଉଁମାନେ ଏ ପ୍ରଶ୍ନ ପଚାରି ପଠେଇଛନ୍ତି, ଯିଏ ଏ ପ୍ରଶ୍ନ ବୋହି ଆଣିଛନ୍ତି, ସମସ୍ତଙ୍କୁ ଏହାର ଉତ୍ତର ଜଣା ।

Digitized by PPRACHIN, SOA

ଏ ପ୍ରଶ୍ନର ଉତ୍ତର ଦେବାର ଅଧିକାର କେବଳ ଜଣଙ୍କର ଅଛି— ତା'ର ଜନନୀ । ତା'ଙ୍କୁ ପବିତ୍ର ଜନନୀଙ୍କର ଅଧିକାରକୁ କ୍ଷୁଣ୍ଣ କରିଛନ୍ତି ସେମାନେ । ଏ କଥା ସେମାନେ ଅନୁଭବ କରନ୍ତୁ ।

ଆହ୍ଲାଦର ଅଖିରୁ ଗଡ଼ିପଡ଼ିଲା ଲୋତକଧାର । ପଇଁ ଡଉଟି ଧରି ସେ ଉଠି ଠିଆ ହେଲା । ସୁବ୍ରତଙ୍କ ମୁହଁକୁ ଚାହିଁପାରୁ ନାହିଁ । ଉତ୍ତର ଦେବାକୁ ତୁଣ୍ଡ ଖୋଲୁ ନାହିଁ । ଗ୍ରୀବା ଭିତରୁ କୋହ ଉଠୁଛି । ଧୀରେ ଧୀରେ ସେ ଚାଲିଆସିଲା ଏ ଘରକୁ । ସୁବ୍ରତ କ'ଣ ମନେ କରିବେ ସେ କଥା ବିଚାର କରିବାକୁ ତା'ର ଧୈର୍ଯ୍ୟ ରହିଲା ନାହିଁ । ମନରେ ଗୋଟିଏ ଭାବନା - ସେମାନେ ତା'ର ମାଆଙ୍କର ମତାମତ ନେବା ଆବଶ୍ୟକ ମଣି ନାହାନ୍ତି । ତା'ର ମା'ଙ୍କୁ ଅବହେଳା କରିଛନ୍ତି ।

ସନ୍ତୁଷ୍ଟି ଅନୁମତି ଦେଇଛନ୍ତି । ଝିଅକୁ ସୁଖୀ କରିବାର ଅଦମ୍ୟ ଆଗ୍ରହ ପାଇଁ ସେ ମାନାଭିମାନ କରି ନାହାନ୍ତି । ସେ ପ୍ରଶ୍ନ ମଧ୍ୟ ମନରେ ସ୍ଥାନ ପାଇ ନାହିଁ । ନିଜ ହାତରେ ସେ ଦ୍ୱାର ଖୋଲି ଚାଲି ଯାଇଛନ୍ତି । ପରଦା ହଲୁଛି । ବଜ୍ରବାହୁ ଅପେକ୍ଷା କରି ବସିଛନ୍ତି ।

ସେ ଘରକୁ ଯିବାକୁ ଗୋଡ଼ ଚଳୁ ନାହିଁ । ଅଜଣା ଭୟରେ ଗ୍ରୀବା ଥରି ଉଠୁଛି । ଆଲମାରୀକୁ ଆଉଜି ସେ ପୁତ୍ତଳି ପରି ଠିଆ ହୋଇ ରହିଲା । ସହାରଯାତ୍ରୀର ଲଜ୍ଜାସରମ ଘୋଟିଥିଲା ।

ମୁଣ୍ଡ ବଙ୍କେଇ ଚାହିଁଲା, ସୁବ୍ରତ ଯେପରି କ'ଣ ଲେଖୁଛନ୍ତି । ସେ ଉଠିଲେ । ଘରଆଡ଼କୁ ଥରେ ଚାହିଁଲେ । ରଥଟି ଘୁଞ୍ଚାଇ ବାହାର ବାରଣ୍ଡାକୁ ଗଲେ । ହୁଏ ତ ପୁଣି ଫେରିଆସିବେ ।

ମୁହୂର୍ତ୍ତିକ ପ୍ରତିଟିଏ ଯୁଗ ଲାଗୁଛି ।

ଫେରିଲେ ନାହିଁ କାହିଁକି ? ଉତ୍ତର ନ ପାଇ ନିଜକୁ ଅପମାନିତ ମଣିଲେ କି ? ଚାଲିଗଲେ ?

ଥରିଲା ପାଦରେ ଆଗ୍ରତି ପରଦା ପାଖକୁ ଆସିଲା । ପରଦା ଆଢ଼େଇ ଚାହିଁଲା । ସେ ନାହାନ୍ତି । ବିକଳ ହୋଇ ମଝିଘରକୁ ପଶିଆସିଲା । ଫଟୋ ଉପରେ ଗ୍ରେଟ କାଗଜ ଖଣ୍ଡେ ରଖାହୋଇଛି । ତା' ଉପରେ ଥୁଆ ହୋଇଛି ମାଳାଟି । କାଗଜ ଖଣ୍ଡି ଟାଣିନେଇ ସେ ଆଖି ପକାଇଲା । ପେନ୍‌ସିଲ୍‌ରେ ଲେଖା—

—ଆଦୃତ ଦେବୀ ! ଆପଣଙ୍କର ବହୁ ମୂଲ୍ୟ ସମୟ ନଷ୍ଟ କରିଛି । ଆପଣଙ୍କର ମନରେ ଦୁଃଖ ହେବ ଜାଣିଥିଲେ ମା'ଙ୍କର ଇଚ୍ଛା ମୁଁ ପ୍ରକାଶ କରି ନ ଥାନ୍ତି । ଆପଣଙ୍କ ଆଖିରେ ଲୁହ ଦେଖିବି, ଏହା ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି । ଛାତ୍ର-ଜୀବନର ବନ୍ଧୁତା ଓ ଆପଣଙ୍କର ଉଦାରତାର ସୁଯୋଗ ନେଇ ଗୋଟିଏ ଅଜଣା ଅଦମ୍ୟ ମୂର୍ଚ୍ଛନାରେ ଯେଉଁ ଭୁଲ ମୁଁ କରିଛି, ସେଥିପାଇଁ ଦୁଃଖ ପ୍ରକାଶ କରୁଛି, ଅନୁତାପ କରୁଛି, କ୍ଷମା ମାଗୁଛି ।—ବଜ୍ରବାହୁ ।

Digitized by PPRACHIN, SOA

ଆହତ ଚାଇଅଣୀ ଘର ପଡାକୁ ଛୁଟି ଆସିଲା । ସୁବ୍ରତ ନାହାନ୍ତି । ବାହାରେ ଝକ୍‌ଝକ୍ ଜହ୍ନଆଲୁଅ । ଶୀତୁଆ ଧୀର ପବନ । ଦୂରରୁ ଗସ୍ତା ମୋଡ ପାଖରୁ ଦିଶି- ଯାଉଛି ଗୋଟିଏ ଅସ୍ପଷ୍ଟ ଚଳନ୍ତ ପ୍ରତିମା । ସେଇ ସେ ଚକ୍ରବାକ । ଧାଇଁ ଯାଇ ବାଟ ଓଗାଳିବାକୁ ମନ ତ ହେଉଛି, ଅଥଚ ଗୋଡ ଚଳୁ ନାହିଁ । ବଡ ଘାଟିକର ପଛରୁ ଡାକ ଫେରିଆସ ବୋଲି କହିବାକୁ ଆତ୍ମା ନିର୍ଦ୍ଦେଶ ଦେଉଛି, ତୁଣ୍ଡ ଫିଟୁ ନାହିଁ ।

ରୁ' ନେଇ ସନ୍ଧ୍ୟାବତୀ ମଟି ଘରକୁ ଆସିଲେଣି । ହୃମାନଙ୍କୁ ପରି ଏତେ ବଡ ଆଶା ତା'ଙ୍କର ଭାଙ୍ଗିଦେବ କି ଦୁଇ ଧାର ଲୁହରେ ?

ଆହତ ଚଟିଟି ଗ୍ରହଣକଲେ ଲୁହର ଆଖି ପୋଛୁଲା । ଖବରି, ଏଥର ସେ ବୁଝିବାକୁ ଚେଷ୍ଟା କରିବ ।

ମମତାର ମନରେ କାଳେ ଦୁଃଖ ହେବ ସେଇ ଭୟରେ ସୁବ୍ରତ ହସହସ ହୋଇ ତା'ର ବ୍ୟର୍ଥ ଅଭିଯାନର କାହାଣୀ ଅଳ୍ପ କଥାରେ ବର୍ଣ୍ଣନା କଲା । ମନଟାଣ କରି କହିଲା, ଭଲ ହେଲା ମା, ସମସ୍ତଙ୍କ ମନରୁ ଗୋଟାଏ ଭୁଲ ଧାରଣା ଦୂର ହୋଇଗଲା । ଦେଶ ଓ ଦଶର ସେବା କରିବାକୁ ଜୀବନର ବ୍ରତ ବୋଲି ସେ ଗ୍ରହଣ କରିଛି । ଗୋଟିଏ କୁଟୁମ୍ବର ଜଣେ ହୋଇ କର୍ମକ୍ଷେତ୍ରର ପରିସରକୁ ସେ ସଙ୍କୁଚିତ କରିବ ନାହିଁ ।

ରାତି ଅଧ । ବାହାରେ ଜହ୍ନଆଲୁଅ ଝରିପଡି ହୋଇ ପଡୁଛି । ରାତି ପାହିଲେ ଅଗ୍ନି-ପୂର୍ଣ୍ଣିମା । ସୁବ୍ରତର ଫେରିଲା ବାଟକୁ ଚାହିଁ ରହିଥିଲେ ମମତା । କାର୍ଯ୍ୟରୁ ଫେରି ସୁବ୍ରତ ଅପେକ୍ଷା କରି ରହିଥିଲା । ଖାଇ ନ ଖାଇଲେ ସେ ମଧ୍ୟ ଉପାସ ବସିଥିବ । ଲୁହ ବନ୍ଦେଁ ଯାଇ ବସିଛନ୍ତି । ଆଗରେ ବସିଛନ୍ତି ମମତା । ଖଣ୍ଡୀ ପରସି ଦେଇଛନ୍ତି । ଅପେକ୍ଷା କରି କରି ସନ୍ଧ୍ୟାକୁ ନିଦ ହୋଇ ଯାଇଛି । ଜଣସିଂହେ କେତେବେଳୁ ଶୋଇ ସାରିଲେଣି ।

ମମତା ପଚାରିଲେ, କାହିଁକି ଆହତ ? ଗୁଳିଗଲା, ଫେରିଲା ନାହିଁ ? ଉତ୍ତର ଦେଲା ନାହିଁ ?

ସୁବ୍ରତ କହିଲା, ସେ କଥା ମୁଁ ଆଗରୁ ଅନୁମାନ କରିଥିଲି । ସେ ସେଇ ଜାତିର ସ୍ତ୍ରୀ । ସେଥିପାଇଁ ଦୁଃଖ ପ୍ରକାଶ କରି ଆସିଛି, କ୍ଷମା ମଧ୍ୟ ଚାହିଁଛି । ମୋ'ର ଚିଠି ପଢ଼ିଟି ସେ ଅବଶ୍ୟ ପଢ଼ିବ ।

ମୁଣ୍ଡ ହଲାଇ ମମତା କହିଲେ, ବଡ ଭୁଲ୍‌ଟାଏ ହୋଇଗଲା ସତେ ! ନୁହେଁ କି ଆରତୀ ?

ସେଥିକି ଚିନ୍ତା ନାହିଁ ଅପା ! ହେଲେ, ଏ ଘରକୁ ବୋହୂ ନ ଆଣିଲେ ତମକୁ ମୁଁ ବଳେଇ ଉଠେଇ ଦେବ ନାହିଁ କହୁଛି । ଆଉ ଗୋଟିଏ କଥା, ତମର ସେ ଅରକ୍ଷ କବାଟର ଶୁଭ ମୁଁ ଦେବ ନାହିଁ ।

Digitized by PPRACHIN, SOA

ଭରତୀ କଥା ଶେଷ କରିପାରିଲେ ନାହିଁ । ଆଖି ଛଳଛଳ କରି ଆଗେଇଗଲେ ।

ରଣଜିତ୍ କହିଲା, ଶୁଭ ଦେବ ଆମର ଜେମିଆଣ । ସେଇ ଏକା ଉପଯୁକ୍ତ । ବୁଢ଼ୀ ନର୍କ ପଡ଼ିଲାଣି । ତଥାପି, ତା ଗୁଣ୍ଡରେ ନାହିଁ ପଦ ନାହିଁ । ପଦେ କହିଲେ, ବାଙ୍କ ଧରି, ଥରଥରି ସେ ଆଗେଇ ଆସେ ।

ସୁବ୍ରତ କହିଲା, ମୋ'ର ସେଥିରେ ଏକମତ । ଜେମିଆଣ ଶୁଭ ଦେବ । ତା'ର ଆଶୀର୍ବାଦ ଅନୁଷ୍ଠାନକୁ ଅମର କରିବ । ଗ୍ରାମବାସୀ ଓ ସେବକସେବିକା ସମାଜର ସଭ୍ୟମାନେ ଏଦ୍ୱାରା ବିରୋଧ କରିବେ ନାହିଁ ବୋଲି ମୋ'ର ଆଶା ।

ମମତା ଉତ୍ତର ଦେଲେ ନାହିଁ । ସୁବ୍ରତର କଥାଗୁଡ଼ାକ ମନରେ ଓଲଟ ପାଲଟ ହେଲା । ଖାଇ ବସିଲେ ଖାଇବାର ଶୋଇବାକୁ ଗଲେ । ଜା ବସିଲେ ମଧ ଭୋଜନ ଶେଷ କଲେ ।

ଭରତୀ କହିଲେ, ଏଥର ବୁଝିଲି ଅପା, ସେ ଜାତର ଝିଅ ଯେତେ ଭଲ ହେଲେ ବି ଘରସଂସାର କରିବାକୁ ମନ ବଳେଇବେ ନାହିଁ । ସେମାନଙ୍କ ଦାୟିତ୍ୱ ମୁଣ୍ଡେଇବାକୁ ଡର ମାଡ଼େ । ମାନସିଂହଙ୍କ ଘରୁ ଯେଉଁ ସମ୍ବନ୍ଧ ଆସିଛି, ସେଥିରେ ରାଜି ହେବାକୁ ସାଁତଙ୍କୁ କହ ।

ମମତା ନିଜ କୋଠରୀକୁ ଆସିଲେ, ସଙ୍ଗରେ ଆସିଲେ ଭରତୀ । କାହାରି ଆଖିକୁ ଆଜ ନିଦ ଆସୁ ନାହିଁ ।

ମମତା ପଚାରିଲେ, ସେ କାନ୍ଦିଲା କାହିଁକି ? ଉତ୍ତର ଦେଲା ନାହିଁ । ଉଠି ଗ୍ଲଗଲା । ତୁ ତ ଜାଣୁ, ଅନୁତ କୌଣସି କଥାକୁ ଅବଗୁଣ ପାଏ ନାହିଁ । କେବେ ହେଲେ ସେ ମୁହଁ ଖୋଲେ ନାହିଁ । ମନର କଥା ଲୁଚେଏ ନାହିଁ । ଯାହା ସେ ଠିକ୍ ବୋଲି ଭାବେ, ସଫା ସଫା କହିଦଏ ।

ଭରତୀ କହିଲେ, ଯେତେ ଯାହା ହେଲେ ସେ ଝିଅ ତ । ବାହାହେବା କଥାରେ ମୁହଁକୁ ଅନେଇଁ ହଁ କି ନା, କେମିତି ଜବାବ୍ ଦେଇପାରନ୍ତା ? ପୁଣି, ସୁବ୍ରତ ପୁଅ ପିଲା । ଯେତେ ଭାଙ୍ଗ ହେଲେ ବି— ।

ଭୁଜ ହ ଭରତୀ, ଅଉ କହନା । ମମତାଙ୍କ ଆଖିରୁ ଲୁହ ଝରିଆସିଲା । ପୁଣି କହିଲେ, ଯେତେ ବଡ଼, ଯେତେ ବୁଦ୍ଧିଆ ହେଲେ ବି ସୁବ୍ରତ ଆମ ଆଖିରେ ଛୁଆ ପିଲା । ସମ୍ବାଦ କଥା ସେ କ'ଣ ଜାଣେ ଲୋ ? ତା'ର କଥାରେ ରାଜି ହୋଇ ତା'କୁ ପଠେଇବାଟା ଭୁଲ୍ ହୋଇଛି । ଭବିଲ ଦେଲକୁ ମନକୁ ଲଜ୍ଜମାଡ଼ୁଛି ।

ମମତା ଆଖିରୁ ଲୁହ ପୋଛୁଲେ । ଅବାଧ ଝରଣା ବାଧା ମାନୁ ନାହିଁ । କହିଲେ, ମୋ'ର ମରଣ ନ ହେଲା ଯାହା । ସୋମଗଡ଼ ତ ବେଶି ଦୂର ନୁହେଁ ।

ମମତାଙ୍କର ମନର ଦୁଃଖ ଭରତୀ ଅନୁଭବ କଲେ । ସାନ୍ତ୍ୱନା ଦେଇ କହିଲେ, ଯାହା ହୋଇଯାଇଛି ସେଥିକି ମନ ଦୁଃଖ କରିବା ଉଚିତ ନୁହେଁ ବୋଲି କେତେଥର ତମେ ବୁଝାଇ କହୁଛ । ନିଜେ ପୁଣି କାନ୍ଦୁଛ !

Digitized by PPRACHIN, SOA

ସରସ୍ୱତୀଙ୍କ ଓଠ ଥର ଥର ହୋଇଲା । ମମତା ବୁଝିଲେ । ଆଉ ଗୋଟାଏ ଦୁଃଖ ଆଉ ଗୋଟାଏ ଭୟ ଆସି ମନ ଅଧିକାର କଲା । ଆଖି ଆଗରେ ଠିଆହେଲା ପରି ଲାଗିଲା ନଶ୍ବର ଶଯ୍ୟାଶାୟୀ । ଦେଖୁଛି, ବଢ଼ିଯାଉଛି ହସ ; ହସ ଲାଜ ଲାଜ ମୁହଁଟି । ଭ୍ରମିଲା ଆଖି ଡୋଳା ଖୋଜୁଛି ସରସ୍ୱତୀଙ୍କୁ ।

ମନ ଦମ୍ଭ କରି କହିଲେ, ମୁଁ ଜାଣୁ ନାହିଁ ଲୋ, ମୋ' ଭିତରେ ପଶି ସତେ କି ସୁବ୍ରତ କାନ୍ଦୁଛି । ସତେ କି ଆହତ ଚିତ୍କାରୁଛି । ଦେଖିଲୁ ତ, ସୁବ୍ରତ କେମିତି ହସିଥିଲା ? ସେମିତି କେବେ ସେ ହସିଛି କି ମୋ' ଆଗରେ ? ତା'ର ହସ ଭିତରେ ମୁଁ ଦୁଃଖ, ନୈରାଶ୍ୟ ଆଉ କାତରର ଆଭାସ ପାଇଲି ।

କାହିଁକି ଅପା ?

କେମିତି ତତେ ବୁଝେଇ କହିବି ?

ନ କହି ପାରେ, ସୁବ୍ରତର ହାତକୁ ଦୁ'ହାତ କରି ଏ ଘରକୁ ବୋହୂ ଆଣ । ପୁଅ ଥିଲେ ଝିଅ ଥିଲେ କେତେ ସମ୍ବନ୍ଧ ପଡ଼ନ୍ତା ପୁଣି ସ୍ୱତଃ । ଯାହା ହାଣ୍ଡିରେ ଯିଏ ଚାଉଳ ଫୁଟେଇବ ସେଇ ତ ବୋହୂ ହୋଇ ଆସିବ । ଅନ୍ୟଥା କରିବ କିଏ ?

ମମତା ମୁହଁ ଟେକି ହସିଲେ । ସରସ୍ୱତୀଙ୍କର ଚିବୁକରେ ହାତ ଦେଇ କହିଲେ, ବୋହୂ କରିବାକୁ ଏତେ ଉଚ୍ଛନ୍ନ ହେଲୁଣି ତ ଆଉ ଡେରି କରିବ ନାହିଁ । ହେଲା ତ ?

ଆହତର ଢଙ୍ଗ ଦେଖି ସତ୍ୟବତୀ ପ୍ରମାଦ ଗଣିଲେ । ସବୁବେଳେ ସେ ଅନ୍ୟମନସ୍କ ରହୁଛି । ଅଜଣା ଦୁଃଖର ଛାୟା ସତେ ଯେମିତି ତା'ର ମୁହଁକୁ ଆଚ୍ଛାଦିତ କରି ରଖିଛି । ତିନି ଦିନ ହେଲା ସେ କାମ କରିବାକୁ ଯାଇ ନାହିଁ । ମୁଣ୍ଡ ବୁଲଉଛି ବୋଲି ଛୁଟି ନେଇଛି । ତା'ର ସହକର୍ମୀମାନେ ଜଣ ଜଣ କରି ଆସି ପଚାରି ଗଲେଣି । କିଏ କେତେ ଉପଦେଶ ଦେଇ ଗଲେଣି । ଡାକ୍ତରବାବୁ ମନକୁ ଆସି କହିଗଲେ, ଅଧିକ ପରିଶ୍ରମ କରିବା'ରୁ ସ୍ନାୟୁର ଶକ୍ତି ଦୁର୍ବଳ ହୋଇଛି । ଦିନା କେତେ ବିଶ୍ରାମ ଲୋଡ଼ା । ପ୍ରେସ୍‌କ୍ରିପସନ୍ ସଙ୍ଗେ ସଙ୍ଗେ ଔଷଧ ମଧ୍ୟ ପଠାଇ ଦେଇଛନ୍ତି । ଔଷଧ ସେମିତି ଥୁଆ ହୋଇଛି ।

ସତ୍ୟବତୀ ନିଜେ ନିଜେ ପରୀକ୍ଷା କରି ଦେଖିଛନ୍ତି । ହଁ, ଦୁର୍ବଳତା ଆସିଛି । ହଠାତ୍ ଏପରି ମୁଣ୍ଡ ବୁଲାଇବାର କାରଣ କ'ଣ ? ବିଛଣାରେ ପଡ଼ି ରହିବାକୁ ସମସ୍ତେ ଉପଦେଶ ଦେଇଛନ୍ତି । ତାଙ୍କର ମଧ୍ୟ ସେହି ପରାମର୍ଶ । ଆହତ ମାନୁ ନାହିଁ । ଏ ପାଖ ସେ ପାଖ ହେଉଛି । ଯେଉଁ କାମରେ ହାତ ଦେଉଛି, ସେଇଥିରେ ଲାଗି ରହୁଛି । ପଚାରିଲେ କେବଳ ମୁହଁ ଟେକି ହସୁଛି । କହୁଛି, କିଛି ନାହିଁ ମା, ମୁଣ୍ଡ ଟିକେ

Digitized by PPRACHIN, SOA

ବୁଲଉଛୁ ନ, ବଳେ ଭଲ ହୋଇଯିବ । ପରୀକ୍ଷା ଆଗରୁ ବେଶି ପଢ଼ାପଢ଼ି କଲେ, କେତେଥର ମୋ'ର ଏମିତି ହୋଇଛି, ତୁ ଜାଣୁ ।

ପରୀକ୍ଷା ତ କେବଳ୍ ସ୍କୁଲଶ୍ରେଣୀ ନୁହେଁ— ।

ଅଦ୍ଭୁତର ତୁଣ୍ଡରେ ଔଷଧ ଦେଇ ସତ୍ୟବତୀ ତା'ର କପାଳରେ ହାତ ବୁଲାଇ ଦେଲେ । ରାତି ଅଠଟା । ଅଦ୍ଭୁତ ଖଟ ଉପରେ ଶୋଇଛି । ନେଳିଆ ଲଣ୍ଠନ ଆଲୁଅରେ ଘରଟି ଉଜ୍ଜ୍ୱଳ ଦିଶୁଛି । ଡାକ୍ତରଙ୍କ ଘରଆଡ଼ୁ ଭାସି ଆସୁଛି ରେଡ଼ିଓ ସଙ୍ଗୀତ । ମଝି ଘରର କବାଟ ଖୋଲା । ଦ୍ୱାରରେ ପରଦା ଝୁଲୁଛି । ଘର ଭିତର ଅନ୍ଧାର ।

ଅଦ୍ଭୁତ ତେଣିକି ଚାହିଁଲା । ମନେ ହେଲା, ସେଇ ଅନ୍ଧାର ଘରେ ସୁବ୍ରତ ବଜ୍ରବାହୁ ବସିଛନ୍ତି । ହସୁଛନ୍ତି । କହୁଛନ୍ତି, ପରୀକ୍ଷା କେବେ ସରେ ନାହିଁ । ଛାତ୍ର ଜୀବନରେ ଯେଉଁ ସବୁ ପରୀକ୍ଷା ହୁଏ, ତା'ର ପରୀକ୍ଷକ କେତେଜଣ ଶିକ୍ଷକ । ବିଷୟ ନିର୍ଦ୍ଦିଷ୍ଟ । ସ୍କୁଲ-କଲେଜ ଗଣ୍ଡି ଦୁନିଆଦାରୀରୁ ଓହ୍ଲାଇ ପଡ଼ିଲେ ମଣିଷ ପ୍ରତି ପଦକ୍ଷେପରେ ପରୀକ୍ଷାର ସମ୍ମୁଖୀନ ହୁଏ । ବିଷୟ ଅନିର୍ଦ୍ଦିଷ୍ଟ । ପ୍ରଶ୍ନ ଅସୁମାରି । ସବୁ ବାଧ୍ୟତାମୂଳକ । ମଣିଷ ନିଜେ ନିଜର ପ୍ରଶ୍ନକର୍ତ୍ତା । ନିଜେ ନିଜର ପରୀକ୍ଷକ । ଫଳାଫଳକୁ କେବଳ ଦୁନିଆ ଅନେଇ ରହେ । ନିନ୍ଦା ବା ପ୍ରଶଂସା କରେ । କିନ୍ତୁ, କର୍ମଫଳ ଭୋଗ କରେ ନିଜେ କର୍ମୀ ।

ବଜ୍ରବାହୁ ନିର୍ବିକାର । ମନର କଥା ସେ ନିବେଦନ କରିବାକୁ ଅତି ଆଗ୍ରହରେ ଧାଇଁ ଆସିଲେ । ମନର କଥା ସେ ପ୍ରକାଶ କରିଥିଲେ । ବୁଝାଇ ଦେଇଥିଲେ, ପିତାମାତାଙ୍କ ଆଗ୍ରହ ଅଛି । ଉତ୍ତର ସେ ମାଗିଥିଲେ । ସେମାନଙ୍କର ଆଗ୍ରହ ଅଦ୍ଭୁତର ମନରେ ଜନ୍ମାଇଥିଲା ପ୍ରଶ୍ନ । ସେଇ ପ୍ରଶ୍ନର ଉତ୍ତର ସେ ମୁହଁଖୋଲି ଦେବ ନାହିଁ । ତା'ର ଝିଅର ମନ ଦେଇଛି, ଅତି ସ୍ପଷ୍ଟ, ଅତି ସରଳ । ସେ ଉତ୍ତରରେ ହେରଫେର ହେବ ନାହିଁ । କିମ୍ବା କିଛିର ପୁନଃପାତ ହୋଇନାହିଁ । ସେ ଉତ୍ତର ତା'କୁ ସମର୍ପି ଦେଇଛି ବଜ୍ରବାହୁର ହାତରେ ।

ବୁଝିଲେ ନାହିଁ ? ବୁଝିଲେ ବିପରୀତ । ଚାଲିଗଲେ । ଶେଷ ସମାଧାନ କରି ଚାଲିଗଲେ । ସେ ବା ଆଉ ଉତ୍ତର କାହିଁକି ? ନିଜକୁ ସେ ସମର୍ପଣ କରି ସାରିଛି । ତପସ୍ୟା ପୂର୍ଣ୍ଣ ହୋଇଛି । ସେମାନେ ତା'କୁ ଗ୍ରହଣ କରିଛନ୍ତି । ଦୁର୍ଭାଗ୍ୟ ଦୂରେଇ ଦେଇଛି । ଉପହାସ କରୁଛି ।

ଅଦ୍ଭୁତ ଉଠି ବସିଲା । ହସ ହସ ହୋଇ ସତ୍ୟବତୀଙ୍କ ମୁହଁକୁ ଚାହିଁଲା । ସ୍ଥିର ଚକ୍ଷୁରେ ଚାହିଁ ରହିଛନ୍ତି । କେଜାଣି କ'ଣ ଚିନ୍ତା କରୁଛନ୍ତି । ମୁହଁ ଖୋଲି ପଚାରି ପାରୁ ନାହାନ୍ତି ।

ଅଦ୍ଭୁତ ଅନୁମାନ କଲା । କହିଲା, ତୋ'ର ଔଷଧ ଖାଇବାକୁ ଆଜି ମତେ ଖୁବ ଭଲ ଲାଗୁଛି । ତେବେ, ବାର୍ଷରେ ଯୋଗଦେଲେ ପୁଣି ଗାଁ-ଗଣ୍ଡା ବୁଲିବାକୁ

Digitized by PPRACHIN, SOA

ପଡ଼ିବ । ଖରାଦିନ, ପରିଶ୍ରମ । ମୁଁ ଭାବୁଛି ଆମେ ସମସ୍ତେ କଟକ ଚାଲିଯିବା । ଦରକାର ହେଲେ ଅଧିକ ଛୁଟି ନେବ । ନୂଆ ଝିଅଟା ଏକୁଟିଆ ରହିବାରୁ ଆମ୍ଭକୁ ସବୁ ଭୁଲିଗଲାଣି । ଦେଖୁନୁ, ଚିଠି ଖଣ୍ଡେ ଦେବାକୁ ବି ତା'ର ବେଳ ହେଉ ନାହିଁ କି ମନ ହେଉ ନାହିଁ ।

ସତ୍ୟବତୀ ଖୁସି ହୋଇ କହିଲେ, ମୁଁ ବି ସେଇ କଥା ଭାବୁଥିଲି । ଛୁଟି ନେଇ ଯିବା ରହିଛୁ । ସକାଳୁ ସଞ୍ଜ ଯାଏ ତ ଦାଉଦଲେକ ଆସି ଉତେ ବ୍ୟସ୍ତ କରୁଛନ୍ତି । ସେମାନେ ତତେ ସ୍ନେହ କରନ୍ତି । ତୋ' ଦେହ କଥା ଶୁଣି ଦୁଃଖିତ । କାହାରିକୁ ମନା କରି ହେବ ନାହିଁ । କେଶି ଉଠ୍ ବସ୍ କଲେ କି ଗପିଲେ ଦେହ ଶୀଘ୍ର ଭଲ ହେବ ନାହିଁ । ତେଣେ ଦୁ' ଦିନ ମଧ୍ୟରେ କଟକ ଚାଲିଯିବା । ହଁ, ନୂଆ ଚିଠି ଦେଇଛି । ଆଜି ଖଣ୍ଡେ ନିମନ୍ତ୍ରଣ ପତ୍ର ବି ଏ ପଠାଇଛନ୍ତି ।

ସତ୍ୟବତୀ ଆର ଘରକୁ ଉଠି ଯାଇ ପତ୍ର ଦୁ' ଖଣ୍ଡି ଆଣି ଆହୁତ ହାତକୁ ବଢ଼ାଇଦେଲେ । ଆହୁତ ଆଲୁଅ ପାଖକୁ ଉଠି ଆସିଲା । ଅନାହୁତର ପତ୍ରଟି ଆଗ ପଢ଼ିଲା—ସମସ୍ତେ ଆମେ ଭଲ ଅଛୁଁ । ରୋଗୀମାନେ ଆସି ହତାଶ ହୋଇ ଫେରି ଯାଉଛନ୍ତି । ମା' କେବେ ଫେରିବେ ବୋଲି ପଚାରୁଛନ୍ତି । କେବେ କେମିତି ରାତି ଅଧରେ କେହି କେହି ଆସି ତାଙ୍କ ଗୁଡ଼ ନଦ ଖଙ୍ଗୁଛନ୍ତି । ମା' ନାହାନ୍ତି ଶୁଣି ମନ ଦୁଃଖରେ ଫେରୁଛନ୍ତି । ଅପା ମ, କେବେ କେବେ ଆଉନ୍ ବହି ଗୁଡ଼, ହୋମିଓପାଥି ଚିକିତ୍ସା ବହି ଓଲଟାଇ ମୁଁ ବି ପାନେ ପାନେ ଔଷଧ ଦେଉଛି । ବେଶ୍ ସେତିକି । ଯିଏ ଥରେ ନେଉଛି, ସେ ଆଉ ଫେରୁ ନାହିଁ । ମୁଁ କହୁଛି, ଏକା ପାନକେ ଭଲ ହୋଇଗଲା । ସୁଜନ କେଉଠା କହୁଛି, ରୋଗୀ ମୋ' ପାଖକୁ ନ ଆସି ଗୁଡ଼ିଆ ଦୋକାନକୁ କୋଉ କିଣିବାକୁ ଗଲା । ଯାଉ ସେ, ମୁଁ ତ ହସୁନ୍ତି ।

ଖୁସିର କଥାଟି ଶୁଣିବୁ ? ଧନଞ୍ଜୟବାବୁ ବିବାହ କରୁଛନ୍ତି । ନିଜେ ସେ କହିବାକୁ ଆସିଥିଲେ । ତାହାକୁ ଖୁନ୍ କରି କେଉଁଠିକାର ଝିଅଟିଏ ଜେଲ୍ ଦଣ୍ଡ ଭୋଗୁଥିଲା । ସେ ମୁକ୍ତ ଲଭିଛି । ତା'ର ବାକି ମିଆଦ କାଟି ଦିଆଯାଇଛି । ନିଜେ ଧନଞ୍ଜୟବାବୁ ଯାଇ ତା'କୁ ନେଇ ଆସିଛନ୍ତି । ଝିଅଟିକୁ ମୁଁ ଦେଖିବାକୁ ଯାଇଥିଲି । ଦେଖିଲେ ତୁ ଖୁସି ହେବୁ । ସୁନ୍ଦର, ସ୍ପଷ୍ଟବାଦିନୀ, କର୍ମକୁଶଳା । କାହିଁକି ସେ ଖୁନ୍ କରି ଜେଲ୍ ଦଣ୍ଡ ଭୋଗୁଥିଲା, ତୁ ଆସିଲେ ବୁଝିବୁ । ଗୁରୁବାର ଦିନ ଚଣ୍ଡୀ-ମନ୍ଦିରରେ ବାହାଘର ହେବ । ମୁଁ ଉଦ୍ୟୋଗ କରୁଛି । ଆସି ଯୋଗଦେବୁ ନା —

ଆହୁତ ପତ୍ର ଖଣ୍ଡି ସତ୍ୟବତୀଙ୍କ ହାତକୁ ବଢ଼ାଇଦେଲା । ଲଫାପା ଭିତରୁ ପୋଷ୍ଟକାର୍ଡ଼ରେ ଛାପା ହୋଇଥିବା ନିମନ୍ତ୍ରଣ ପତ୍ରଟି କାଢ଼ି ପଢ଼ିଲା,—ବନ୍ଧୁ, ଗୁରୁବାର ଜାଗର ଉଆଁସ ରାତି ଆଠଟା ବେଳେ କଟକଚଣ୍ଡୀ ମନ୍ଦିରରେ ଆମର ବାହାଘର ହେବ । ଆମେ ଦୁହେଁ ଜେଲ-ବାନ୍ଧବ । ମନରେ ଯଦି ଘୃଣା ନ ଆସେ, ଯଦି ସମୟ ଥାଏ, ଆସି ଯୋଗଦେବେ । ଆମେ ଦୁହେଁ ଖୁସି ହେବୁ । ଶୁଭେଚ୍ଛା ଛଡ଼ା ଅନ୍ୟ

Digitized by PPRACHIN, SOA

କୌଣସି ଉପହାର ଗ୍ରହଣ କରିବୁଁ ନାହିଁ । କୃତଜ୍ଞତା ଛଡ଼ା ଆଉ କାହିଁରେ ଆପଣଙ୍କୁ ଆପ୍ୟାୟିତ କରିପାରିବୁ ନାହିଁ । ଅନୁରୋଧ, ଆସି ଯୋଗଦେବ ।

ନିଜ ହାତରେ ସ୍ୱାକ୍ଷର କରିଛନ୍ତି ବନ୍ଧୁ ନନ୍ଦେହି । ଆଉ ଫୁଲଦାନୀ, ତା'ତଳେ ଧନଞ୍ଜୟ ।

ନାମ ଦୁଇଟି ଉପରେ ଆନୁଷର ଦୃଷ୍ଟି ନିବଦ୍ଧ ରହିଲା । ଖବରଟା ଆସରେ ଦେଖି ହେଲା ତ ବନ୍ଧୁ ଧନଞ୍ଜୟ, ହସ ହସ । ପାଖରେ ଲାଜ ଲାଜ ହୋଇ ଠିଆ ହୋଇଛି ସେଇ ଝିଅଟି, ତା'ର ରୂପରେଖ ବାରି ହେଉ ନାହିଁ । ପଚାରିବାକୁ ମନ ହେଉଛି, କାହିଁକି ତୁ କାହାକୁ କେବେ ଖଣ୍ଡିଏ କରିଥିଲୁ କହିବୁ କି ଫୁଲଦାନୀ ?

ଅସ୍ପଷ୍ଟ ସେ ମୂର୍ତ୍ତି । ଦୁଇ ବୁନ୍ଦା ଅଶ୍ରୁ ଝଲସି ଉଠୁଛି ନୟନରେ । ଉତ୍ତର ଦେଉଛି, କାହିଁକି ତମେ ଜାଣିବାକୁ ଆଗ୍ରହୀ ? ଅତୀତର ଭୁଲ୍ ବାଟରେ ଘଟିଥିବା ଘଟଣାବୃତ୍ତିକ ଅଘଟ କରିପାରିବ କି ?

ଶିହରି ଉଠିଲା ଆନୁଷ । ନିମନ୍ତ୍ରଣ ପତ୍ରଟି ମା'ଙ୍କ ହାତକୁ ବଢ଼ାଇ ଦେଇ ସେ ମନର କୋହକୁ ଦମନ କରି କହିଲା, ଏ ବାହାଘରର ଆମେ ଯୋଗଦେବା ମା, କଟକ ଯିବାର ଆୟୋଜନ କର ।

ଆନୁଷ ପଲଙ୍କ ଉପରକୁ ଫେରିଆସିଲା । କନ୍ୟାର ଉତ୍ତେଜନା ଲକ୍ଷ୍ୟ କରି ସତ୍ୟବତୀ ଆସି ପାଖରେ ବସିଲେ । କିଛିଏ ଅପେକ୍ଷା କରି ପଚାରିଲେ, ସେ କିଏ କି ତୁମ ?

ଧନଞ୍ଜୟ ବାବୁ ମୋର ଜଣେ ବନ୍ଧୁ । ବାର୍ତ୍ତା ପତ୍ରିକାର ସେ ସମ୍ପାଦକ । ଫୁଲଦାନୀଙ୍କୁ ମୁଁ ଚିହ୍ନେନା ନାହିଁ ।

ତା'ଙ୍କୁ ଆଶୀର୍ବାଦ କରିବାକୁ ମୋ'ର ମନ ହେଉଛି ।

ସେମାନେ କାହାର ଆଶୀର୍ବାଦ ଚାହୁଁ ନାହାନ୍ତି । ଶୁଭେଚ୍ଛା ଚାହୁଁଛନ୍ତି । ଫୁଲଦାନୀ ବ ମୋ'ର ଛୋଟିଏ ଝିଅ ଯେ, ଦେଖୁନୁ ଏ ବାହାଘରର ଆୟୋଜନ କରୁଛି ପରା ତୋ'ର ପୁଅ ନୂନା ।

ସତ୍ୟବତୀ ଉତ୍ତର ଦେଲେ ନାହିଁ । ଯେଉଁ କଥାଟି ପଚାରିବାକୁ ମନ ହେଉଥିଲା ତାହା ଅବାନ୍ତର ହେଉଛି, ସେ କଥା ସଞ୍ଚାରି ଦେବାକୁ ଜୀଭ ଛଟପଟ ହେଉଛି । ଝିଅ ତ ଭଲ ହୋଇ ଆସିଲାଣି; ପଚାରିଦେଲେ କିଛି କ୍ଷତି ହେବ ନାହିଁ । ଦୀର୍ଘଶ୍ୱାସ ଗୁଡ଼ିଏ କାଢ଼ିଲେ, ଧୀରେ ଧୀରେ ଆସି ଫେରିଗଲେ । କଥାଟା ସେ କହିଗଲେ ମୋ-ଆଗରେ ଅଜଣାଏ ଭାବୁନୁ । ତୋ'ର ମନକଥା ଖୋଲି କହିବୁ ନାହିଁକି ମତେ ?

ସବୁ ଜାଣିବାକୁ ସତ୍ୟବତୀ ଆଗ୍ରହ ପ୍ରକାଶ କରିଛନ୍ତି । ଯଦି ସେ ପଚାରିବେ, ଆନୁଷ ଏହା ଭଲକରି ଜାଣିଥିଲା । ଲୁଚାଇ ରଖିଲେ ସେ କେବଳ ଛଟପଟ ହେଉଥିବେ । ବୁଝିଥାଉ ଯେଉଁ ଜନନୀ ତା'ର ଏକମାତ୍ର ଆଶା, ଭରସା, କଲ୍ୟାଣ-କାମୀ, ଯାହାର ହୃଦୟଟା ତା'ର ଦୁର୍ଭେଦ୍ୟ ଦୁର୍ଗ, ତା' ପାଖରେ ନିଜକୁ ଅଧିକ ଲୁଚାଇ ରଖିବ ନାହିଁ । ମନଖୋଲି ସବୁ କହିବ ।

Digitized by PPRACHIN, SOA

କହୁଚ, ସୁବ୍ରତ ବଜ୍ରବାହୁ ଶେଷ ଉତ୍ତର ଦେଇ ଯାଇଛନ୍ତି । ସେ ଆଉ ଆସିବେ ନାହିଁ । କହୁଚ, ସେଥିକି ଚିନ୍ତା କରିବା ଅପ୍ରୟୋଜନ । ଟୁନି ତୋ'ର ଶ୍ରେଷ୍ଠ ଜୁଆ ନୁହେଁ । ପରର ସମ୍ବାଦ କରିବାକୁ ଆଉ ସେ ମନ ବଳାଉ ନାହିଁ ।

ନୂଆ ସଂସାର ସେ ଗଢ଼ିବ । ଟୁନାକୁ ବାହାରକର ଘରକୁ ବୋହୂ ଆଣିବ । ଯିଏ ଆସିବ, ସେଇ ହେବ ତା'ର ଶେଷକଣା । କୋଳରେ ବସାଇ ତା'ର ମୁହଁ ଅଣ୍ଡୁସି, ତା'ର ପିଲାଙ୍କୁ ଗ୍ରୁତରେ ଜାକ ମଶିଷ ଭରି ସମସ୍ତ ସେ କଟା'ଇଦେବ । ଆଉ କାହିଁକି ଉତ୍ତପ୍ତ ବିକଳ, ଆଉ କାହିଁକି ବ୍ୟର୍ଥ ଆଶା ଓ ଉତ୍ତେଜନା ?

ଟୁନି --
ସବୁ ତୋ' ଆଗରେ କହିବି ବୋଉ, କିଛି ଲୁଚାଇବି ନାହିଁ ।
ସତ୍ୟବତୀଙ୍କ ମୁହଁକୁ ଚାହିଁ ସେ ସାନ୍ତ୍ୱନା ଦେଲା ।

ଅରକ୍ଷ-ଅକ୍ଷମ ଅଶ୍ରମର ଶୁଭ ଦେଇଛନ୍ତି ଜେମିଆଇ । ବିନା ଆଡ଼ମ୍ବରରେ ସମ୍ପାଦିତ ହୋଇଛି ସେ ଉତ୍ସବ । ଗ୍ରାମର ଆବାଳବୃଦ୍ଧବନିତା ସମବେତ । ସେବକସଙ୍ଘର ଅଗ୍ରଣୀ ଅଭିନବ ରଣସିଂହେ ହାତରେ ତୋଡ଼ା ଧରି ଅଗ୍ରସର । ପଛକୁ ପଛ କର୍ମୀମାନେ— ହାତରେ ଆୟୁଧ କୋଡ଼ି, ଡାଙ୍ଗ, ଶାବଳ, ଦା, କତୁରି, କାଟୁରି । ଆଉ ଧାଡ଼ିର ଆଗରେ ସେବିକାସଙ୍ଘର ସମ୍ପାଦିକା ମମତାଦେବୀ । କାଖରେ ମାଟିର କଳସ— ଜଳ-ପୂର୍ଣ୍ଣ । ତାଙ୍କ ପଛରେ ଅନ୍ୟ କର୍ମୀଗଣ— କାହାର କାଖରେ କଳସ, କାହାର ମୁଣ୍ଡରେ ଟୋକେଇ, ହାତରେ ଗାଣ୍ଡୁଆ, ଦଉଡ଼ି, ବଡ଼ିଶା । ମଝିରେ ଜେମିଆଇ । ବେକରେ ଫୁଲମାଳ । ଗୋଟିଏ ହାତରେ ଜଳପୂର୍ଣ୍ଣ ଘଟିକା । ଆର ହାତରେ ଶ୍ରେଷ୍ଠ ଖଣ୍ଡା । ପାଖେ ପାଖେ ରାଜପୁରୋହିତ ତ୍ରିପାଠୀ । ମୁଖରେ ନୂଆ ଯୁଗର ମନ୍ତ୍ର :—
"କର୍ମଂ ବା ସାଧୟେତ୍, ଶରୀରଂ ବା ପାତୟେତ୍" ।

ଧର୍ମାନନ୍ଦ ଶୁଭଶଙ୍ଖ ବଜାଉଛନ୍ତି । ସୁବ୍ରତ ଓ ସୁଜିତ ଆୟୋଜନ କରିବାରେ ବ୍ୟସ୍ତ । ହୁଳହୁଳି ଧ୍ୱନିରେ, କର୍ମୀଙ୍କର ଜୟଗାନରେ ରଣଅଞ୍ଚଳର ପ୍ରାନ୍ତ ଦୋହଲି ଉଠୁଛି ।

ବୁଢ଼ୀଆ ତନ୍ତ୍ରବେଦ ଉପାଧ୍ୟାୟ ଜେମିଆଇ ଉପସ୍ଥିତ ହେଲେ । ଗୁରୁଆଡ଼କୁ ପ୍ରୀତିପୂର୍ଣ୍ଣ ଚକ୍ଷୁରେ ଚାହିଁଲେ । ଦୁଇ ଆଖିରୁ ଦୁଇ ଧାର ଆନନ୍ଦାଶ୍ରୁ ଝରିଆସୁଛି । କହିଲେ, ଆରେ 'ମୋ'ର ପୁଅ ନାତିମାନେ, ଆମେ ତମ'ର ବୋହୂ, ଝିଅ, ନାତୁଣୀମାନେ, ସମସ୍ତେ ତମେ ମୋର ଆଶିଷ ପାଅ, ସୁଖ ଆନନ୍ଦରେ ସମସ୍ତ କଟାଅ । ପରଆପଣା ଭେଦଭାବ ଭୁଲ ! ସମସ୍ତେ ସମସ୍ତଙ୍କୁ ସ୍ନେହସୂତ୍ରରେ ବାନ୍ଧିପକାଅ । ଏଇ ଆଶୀର୍ବାଦ ଛଡ଼ା ତମକୁ ଦେବାକୁ ମୋ'ର ଆଉ କିଛି ନାହିଁ ।

Digitized by PPRACHIN, SOA

ଦେହଟା ତ ସୁଇ ନିଆଁ ପାଇଁ । ପୋଡ଼ିଯିବ, ପାଉଁଶ ହେବ । ମନ କେବେ ମରେ ନାହିଁ । ସେତଣ ତମ ପାଖରେ ସମର୍ପି ଦେଇଯିବ ।

ଶଙ୍ଖ ଶବଦ, ହୁଳହୁଳି ଧ୍ୱନି, ହରିବୋଲ । କଅଁଳ ତପନ ହସି ଉଠୁଛନ୍ତି । ଶୀତଳ ପବନର ମୃଦୁ ଚଳନ । ବୃକ୍ଷଲତାର ମଧୁର ଆନ୍ଦୋଳନ ।

ପୁରୋହିତଙ୍କର ନିର୍ଦ୍ଦେଶକ୍ରମେ ଜେମିଆଈ ବେଦିକା ଉପରେ ପାଣି ଢାଳିଲେ । ଖଣ୍ଡିତରେ ସାମାନ୍ୟ ଖୋଳିଲେ । ଆହୁରି ପାଣି ଢାଳି ମାଟି ଚକଟିଲେ । ସେଇ ଚଟକା ପାଣିଆଁ ମାଟିକୁ ରଖିଲେ ଗୋଟିଏ ସସ୍ତରେ । ପୁରୋହିତେ ମନ୍ତ୍ର ପାଠ କରି ସେଇ ମାଟିପାତ୍ରରେ ଦେଲେ ଦୁବ, ବରକୋଳିପତ୍ର । ଜେମିଆଈ ଗୋଟିଏ ହାତରେ ପାତ୍ରଟି ଧରିଲେ । ବେଦୀରୁ ଓହ୍ଲାଇଲେ । ଡାହାଣ ହାତର ମଝି ଟିପରେ ମାଟିରୁ ଟିକେ ନେଇ ରଣସିଂହଙ୍କର ଲଲାଟରେ ଲଗାଇଲେ । ମୁହଁ ବୁଲାଇଲେ ମମତାଙ୍କ ଆଡ଼କୁ— !

କେହି ବାକି ରହିଲେ ନାହିଁ । ସମସ୍ତଙ୍କର ଲଲାଟରେ ପବିତ୍ର ଜନ୍ମଭୂମିର ସଙ୍କେତ । ଧରଣୀ ମାତାର ସ୍ୱରୂପ । ଏଇ ମାଟିର ସମ୍ମାନ ରଖ ରେ ମୋ'ର ପିଲାଟିମାନେ । ସେଇ ଏକା ତମକୁ ସୁଖ ଆନନ୍ଦ ଦେବ । ସର୍ବସହଣୀ ସେ । ପାଦ ତଳେ ଅଛି, ତା'କୁ ରଖ ତମ ଲଲାଟରେ । ମଣିଷଦେହ ଧରି ଯେତେ ଯେଉଁଠି ତା'ର ଗୁଡ଼ ଉପରେ ଆତଯାତ ହେଉଛନ୍ତି, ସମସ୍ତେ ତା'ର ଅତି ଆଦରରେ ସନ୍ତାନ । ସମସ୍ତେ ତା'ର ପ୍ରିୟ । ସମସ୍ତେ ତମେ ଭାଇ-ଭାଇ, ଭଉଣୀ-ଭଉଣୀ । ଅରକ୍ଷ, ଅନାଥ, ନିଆଶ୍ରା ହୋଇ କେହି ରହିବେ ନାହିଁ ଆମର ଧରଣୀମାତାର କୋଳରେ । ସମସ୍ତେ ରହିବେ ସୁଖରେ ।

ଯେମିଆଈଙ୍କ ପାଇଁ ଧର୍ମାନନ୍ଦ ଏଇ କଥା ବୁଝାଇ କହିଲେ । ଶଙ୍ଖଧ୍ୱନି କରି ପୁଣି କହିଲେ, ମନେ ରଖିଥା ସମସ୍ତେ, କର୍ମ ହିଁ ଜୀବନ ଆଉ ଆଳସ୍ୟ ହିଁ ମରଣ !

ଧନଞ୍ଜୟର ବାହାଘର । ଫୁଲଦାନୀ ହେବ ତା'ର ପତ୍ନୀ ! କେତେ ଅତୀତ ସ୍ମୃତି ମନେପଡ଼ୁଛି ଆଜି ସୁବ୍ରତର । ଅରକ୍ଷ-ଆଶ୍ରମର କାର୍ଯ୍ୟ ଦ୍ରୁତଗତିରେ ଆଗେଇ ଚାଲିଛି । କାମ କରୁ କରୁ ଅଟକି ଯାଉଛି ତା'ର ହାତ । ଅନ୍ୟମନସ୍କ ହୋଇ ଚାହିଁ ରହୁଛି—ଆଗରେ ଆସି ଠିଆ ହୋଇଛି ଯେପରି ଫୁଲଦାନୀ । ହସିହସିକା କହୁଛି, ମାଟିର ବୋଝଟି ଟେକିଦିଅ ମୋ'ର ମୁଣ୍ଡ ଉପରକୁ ବାବୁ । ହେମତ କାହିଁକି ଅନେଇଛ ?—ଛି—

ଆଖି ଛଳଛଳ !

Digitized by PPRACHIN, SOA

ମୋତେ ଖବର ଦେଲ ତାଳପାଣିରୁ ଫୁଲଦାମା ?

ନାହିଁ, ବାବୁ, ମୋ'ର ଖାଇଟିଏ ଅଛୁ ।

ଦୁଃଖରୁ ମୁହଁ ଶୁଖାଇ ରହିଛି ଆହ୍ଲାଦ । ମନ ତା'ର ଡାକ ଛାଡ଼ୁଛି— ନନ୍ଦଗଡ଼, ଲେଖିଥିଲ ପତ୍ର, କେତେ ଦିଗନ୍ତରେ କେତେ ଗ୍ରାମରେ ତମେ ଅଭିନନ୍ଦ ଜଣବ । କେତେ ତରୁଣ ଆସିବେ ଯିବେ, ତମେ ଚିରନ୍ତନ ଥିବ ସୁବ୍ରତ ବଜ୍ରବାହୁ-ନନ୍ଦଗଡ଼— !

ଆହ୍ଲାଦ ଦୁଃଖରେ ଯାଇଛି । ଫୁଲଦାମା ପାଖେଇ ଆସିଛି । ଖାଇ ବୋଲି ମୁକ୍ତକଣ୍ଠରେ ଥରେ କହେଁ, ସହସ୍ର ଥର ଡାକ ଛାଡ଼ିବାକୁ ଫୁଲଦାମା ଆଉ କୁଣ୍ଠିତ ହେବ ନାହିଁ । ଫୁଲଦାମା'ର ବାହାଘର । ବିବାହ କରିବ ବନ୍ଧୁ ଧନଞ୍ଜୟ । ଶୁଭ ଇଚ୍ଛା ଜଣାଇବାକୁ ସେ ଅବଶ୍ୟ ଯିବ । ଆଶୀର୍ବାଦ କରି ଆସିବ ସେଇ ଭଉଣୀକୁ ଯିଏ ତା'ର ସେବାକରି ବିନିମୟରେ ମୂଲ୍ୟ ମାଗିଥିଲା ସମ୍ମାନ । ଅକାତରରେ ଅର୍ପଣ କରି, ସବୁ ଦୁର୍ନାମ ସେ ହସି ହସି ହଜମ କରିଥିଲା. ସେଇ ଅପରିଚିତ ଭଉଣୀଟିକୁ ଦୁନିଆର ଲେଲିହାନ ଲାଳସା-ଅଗ୍ନିର କବଳରୁ ବଞ୍ଚାଇ ରଖିବାକୁ ।

କେବେ ପୁଣି ଫେରିଆସିବୁ କଟକରୁ ? ଭୟଖିଆ ସ୍ୱହାଁଣୀରେ ପୁଅର ମୁହଁକୁ ଚାହିଁ ମମତା ପଚାରିଲେ । କହିଲେ, ବନ୍ଧୁର ବାହାଘର । ନ ଗଲେ ସୁନ୍ଦର ଦିଶିବ ନାହିଁ । ହେଲେ, ତୋ'ର ଯେ ବାଇଆ ମନ ।

ଆଉ କୁଆଡ଼େ ପଳାଇବ ବୋଲି ଡରୁଛୁ କି ?

ନାହିଁ ଯେ, କାଲି ମୁଁ ସୋମଗଡ଼ ଯାଉଛୁ । ମାନସିଂହଙ୍କ ଝିଅ ଲାବଣ୍ୟଟି ସଙ୍ଗେ ସୁଜନର ଯାତକଟି କେଡ଼େ ଭଲ ଯୁଝିଛୁ । ଆସନ୍ତା ମାସରେ ଦୁଇଟା କର୍ତ୍ତବ୍ୟ କରିବାକୁ ମୋ'ର ମନ । ଶୁଣିଛୁ, ଲାବଣ୍ୟଟି ଖୁବ ସୁନ୍ଦର, କର୍ମକୁଶଳା । ନିଜ ଆଖିରେ ନ ଦେଖିଲେ ଯେତେ ଶୁଣିଲେ ମୁଁ ପରତେ ଯିବ ନାହିଁ ।

ସୁବ୍ରତ ମନେ ମନେ ଗଣିହେଲା—ଦୁଇଟା କର୍ତ୍ତବ୍ୟ ! ଜଣେ ଲାବଣ୍ୟ, ଆଉ ଜଣକ କିଏ ? ଜଣେ ସୁବ୍ରତ, ଆଉ ଆଉକ ? ଯେଉଁ ଉତ୍ତର ତା'ର ମନକୁ ଆସିଲା, ସେ ମନେ ମନେ ହସି ଉଠିଲା । ହଉ, ନିଜେ ଯାଇ ପରୀକ୍ଷା କରି, ହତାଶ ହୋଇ ଫେରିଆସନ୍ତୁ ।

କହିଲା, ମୋଟେ ଦୁଇ ଦିନ ରହି ଫେରିଆସିବ । ଦେଖନ୍ତୁ, ଜାମଟା ଅଧା ସଢ଼ୁଛି ।

ମମତା ମନା କଲେ ନାହିଁ । ଯେଉଁ ସୁନାର ହାରଟି ସେ ପଲଙ୍କ ଉପରେ ରଖିଥିଲେ, ସୁବ୍ରତ ସେଇଟି ହାତରେ ଉଠାଇ ଧରିଲା । ଓଜନିଆଁ ହାରଟି— ହଳଦୀବସନ୍ତ ପରି ରଙ୍ଗ । ଚନ୍ଦ୍ରସରଣ ଆମ୍ବକଷି ମାଳ । ତଳ ପଟରେ ଗୁଡ଼ା ଗୁଡ଼ାକ ତିନୋଟି ପଦକ ଝୁଲୁଛି । ଉପର ପଦକ ଦୁଇଟିରେ ଅଙ୍କା ହୋଇଛି ରାଧାକୃଷ୍ଣଙ୍କର ଯୁଗଳମୂର୍ତ୍ତି । ମଝି ପଦକଟି ବଡ଼—ଲମ୍ବି ଆସିଛି ତଳକୁ । ସେଥିରେ ଅଙ୍କା ହୋଇଛି ରାମାଭିଷେକ ଦୃଶ୍ୟ । ପଦକର ଗୋଟିଏ ପାଖ ସାମାନ୍ୟ ଚେପ୍ଟା ହୋଇଛି ।

Digitized by PPRACHIN, SOA

ସୁବ୍ରତ ତନ୍ମୟ ହୋଇ ନିରୀକ୍ଷଣ କଲା । ଦୋତାଲାର ଝରକା ପାଖକୁ ଘୁଞ୍ଚିଯାଇ ସକାଳ ସୂର୍ଯ୍ୟର କଅଁଳ ଆଲୁଅରେ ଦେଖିଲା । କେଡ଼େ ବିଚକ୍ଷଣ ସେ ଶିଳ୍ପୀ—ତୂଳିମୁନରେ ଜୀବନ୍ତ କରି ଫୁଟାଇଛି । ଉପର ସ୍ତରର ଆମ୍ବକପିଗୁଡ଼ିକରେ ଦଶାବତାର । ମଝି ସ୍ତରରେ ରାସଲୀଳାର ବିଭିନ୍ନ ଦୃଶ୍ୟ । ତଳ ସ୍ତରରେ ଗ୍ରାମାଞ୍ଚଳର ଦୃଶ୍ୟାବଳୀ । ଏଇ ହାରଟି କେବେ କେବେ ମା'ଙ୍କ ବେକରେ ସେ ଦେଖିଛି ।

ସୁବ୍ରତ ପଚାରିଲା, ଏଡ଼େ ସୁନ୍ଦର ହାରଟି ତ, ମଝି ପଦକଟି ଚେପ୍‌ଟା ହେଲା କିପରି ?

ମମତା ଲୁହାବାକ୍ସ ଭିତରୁ ଆଉ ଗୋଟାଏ ହାର କାଢ଼ି ହାତରେ ଧରିଲେଣି । ଏ ହାରଟି ବି ସୁନ୍ଦର । ତିନି ସରିଆ—ନାନା ରଙ୍ଗର ପଥର ବସିଛି । ଝଟକି ଉଠୁଛି । ବାକ୍ସ ବନ୍ଦ କରି ସୁବ୍ରତ ପାଖକୁ ଆସିଲେ । କହିଲେ, ଗ୍ରାମାଭିଷେକ ହାର ଏଇଟି । ରଣଗଡ଼ ଜମିଦାରବଂଶର ଶାଶୁମାନେ ଏଇ ହାରଟିକୁ ତାଙ୍କର ବୋହୂମାନଙ୍କ ବେକରେ ପିନ୍ଧାଇ ଦେଇ ବୋହୂ ମୁହଁ ଦେଖନ୍ତି । ଦିନେ ତୋ' ଅଈମା କହୁଥିଲେ, ଯେତେବେଳେ ତୋ'ର ବାପା ହୋଇଥିଲେ ତିନି ବରଷର, ସେ ତୋ' ଅଈମାଙ୍କ କୋଳରେ ବସି ଏଇ ପଦକଟି ଧରି ଖେଳୁ ଖେଳୁ ପାଟିରେ ପୂରାଇ କାମୁଡ଼ିଦେଲେ । ତାଙ୍କର ଦାନ୍ତର ଦାଗ ରହିଯାଇଛି ।

ମମତା ହସିଲେ । ସୁବ୍ରତ ହାତରୁ ସେଇ ହାରଟି ଆଣି ନିଜ ବେକରେ ପିନ୍ଧିଲେ । ଆଉ ହାରଟି ସୁବ୍ରତକୁ ଦେଇ କହିଲେ, ଦେଖିଲୁ, ଏ ହାରଟି କେମିତି ହୋଇଛି । ତୋ' ଅଜା ମତେ ଦେଇଥିଲେ । ଆହା, ସେମାନେ କେବେଠୁଁ ଚାଲିଗଲେଣି କିନ୍ତୁ, ସେମାନଙ୍କର ସ୍ନେହ ଏବେ ବି ଏଇ ହାର ଦିଓଟି ଭିତରେ ବଞ୍ଚିରହିଛି । ଉଜ୍ଜ୍ୱଳ ହୋଇ ଝଟକି ଉଠୁଛି । କେଡ଼େ କଷ୍ଟରେ ଏ ହାର ଦିଓଟି,—ପୂର୍ବପୁରୁଷର ସ୍ନେହ, ମମତା, ଆଶୀର୍ବାଦକୁ, ମୁଁ ରକ୍ଷା କରିପାରିଛି ତୋ'ତେ କେମିତି କହିବି ?

କ'ଣ ଚୋରି ହୋଇ ଯାଇଥାନ୍ତା ?

ହଁ,ରେ ବାପ । ଚୋର ତ ପଦାରୁ ଆସନ୍ତା ନାହିଁ । ଚୋର ମୋ'ର ନିଜର ମନ । ମଦ-ରାକ୍ଷସର କବଳରୁ ତୋ'ର ବାପାଙ୍କୁ ରକ୍ଷା କରିବାକୁ ଯାଇ ଯେତେବେଳେ ବ୍ୟର୍ଥ ହେଲି, ଅଭିମାନରେ, ଦୁଃଖରେ, ହତାଶରେ ସେଇ ରାକ୍ଷସ ପାଖରେ ଶରଣ ପଶିଲି । ସେଇ ରାକ୍ଷସ ଏକା ପୂର୍ବପୁରୁଷର ଏଇ ଅମୂଲ୍ୟ ନିଧିକୁ ଚୋରି କରି ନେଇଥା'ନ୍ତା ଦିନେ । ଯିଏ ତା'କୁ ଏ ପଥରୁ ଫେରା କଲା, ସେ ଆଜି ମୋ'ର ମନେ ପଡ଼ୁଛି ।

ମମତାଙ୍କ ଆଖି ଛଳ ଛଳ ହେଲା ।

ମା'ଙ୍କର ମନର କଥା ବୁଝିପାରି ମୁହୂର୍ତ୍ତେ ସୁବ୍ରତ ହେଲା ଚିନ୍ତାମଗ୍ନ । ଭାବିଲା, ଯେଉଁ ଆକାଶର ଚାନ୍ଦକୁ ସେ ଝୁରି ହେଉଛନ୍ତି ସେ ନୁହେଁ ହାତ ପାଖରେ । ଗୋଟିଏ ଶିଶୁର ଅଗଣାରେ ସେ ମୁହଁ ଦେଖାଏ ନାହିଁ । ଗୋଟିଏ କୁଟୁମ୍ବକୁ ସେ ଆଲୋକ ଦେଇ ଅମର୍ଷତା ଦୂର କରେ ନାହିଁ । ସେ ସମସ୍ତଙ୍କର ।

Digitized by PPRACHIN, SOA

ସୁବ୍ରତ ହସି ହସି ହାତରେ ଧରିଥିବା ରତ୍ନଖଚିତ ହାରଟି ଦେଖାଇ କହିଲା, ଏଇଟି ବି ଅତି ସୁନ୍ଦର ହୋଇଛି । ହେଲେ, ଏଥିରେ ଶିଳ୍ପୀର ହାତର କରାମତି ନାହିଁ କି ମୋ'ର ବାପ ଅଜାଙ୍କର ଦାନ୍ତର ଦାଗ ନାହିଁ ।

ସୁବ୍ରତ ନିଜ ହାତରେ ହାରଟିକୁ ମା'ଙ୍କ ବେକରେ ପିନ୍ଧାଇ ଦେଲା ।

ମୁଗ୍ଧ ଆଖିରେ ମମତା ପୁତ୍ରର ମୁହଁକୁ ଚାହିଁଲେ । ପରିପୂର୍ଣ୍ଣ ହୃଦୟରେ ତା'ର କପାଳରେ ଚୁମା ଦେଇ କହିଲେ, ତୋ'ର ବୋହୂ ହୋଇ ଯେବେ ମୁଁ ଫେରି ଆସିବ ରେ ସୁବ୍ରତ, ଦେଖିବୁ ସିନା ।

ପଛରୁ ହସିଉଠିଲା ସନ୍ଧ୍ୟା । କହିଲା, ନିଜ ନାଇଁକି ତମୁକୁ ଖାଇ, ସରମ ନାଇଁ ? ବୁଢ଼ା ପୁଅଟା ଗେଲ ହେଉଛି ?

ମମତା ବୃଦ୍ଧପଡ଼ି ସନ୍ଧ୍ୟାର ହାତ ଧରିଲେ । କହିଲେ, ତୋ'ର ଈର୍ଷା ହେଉଛି କି ? ଆ, ତତେ ବି ଗେଲ କରିବି ।

ସୁବ୍ରତ ଘର ଭିତରୁ ବାହାରି ଯାଉଁଣୁ ସନ୍ଧ୍ୟାର ଦୋହଲା ବେଣୀଟି ଟାଣି-ଦେଇଗଲା । ସନ୍ଧ୍ୟା ମୁହଁ ବୁଲାଇ ସପ ପରି ଗର୍ଜି ଉଠି କହିଲା, ରହ ଆ, ତମ ମଜା ଦେଖିବ ଯେ ଯେବେ ।

ଦେଖିଲୁ ବୋଉ, କେମିତି ସେ ଖଚେଇ ହେଇ ଚାଲିଯାଉଛି ।

ଛି; ଖାଇ ପଶ !

ଖାଇ ତ !

ସୁଜନ ଜେଠା ଖବର ପାଇ ଦୁଇ ଦିନ ହେଲା ଆସିଥିଲେ । ଜିନିଷପତ୍ର ବନ୍ଦୋବସ୍ତ କରି ସକାଳ ବସ୍‌ରେ ସବୁ ସେ ନେଇ ଚାଲିଯାଇଛନ୍ତି । ଦିନଟିଏ ଚଳିବା ପାଇଁ ବିଛଣା-ପତ୍ର ଓ ସୁଟ୍‌କେସ୍ ଦୁଇଟିଣ୍ଟି ଛାଡ଼ି ଯାଇଛନ୍ତି । ଚକୋଷ୍ଟ ଖୁଡ଼ୀ ବାଟ ଚାହିଁ ବସିଥିବେ । ଟୁନା ମଧ୍ୟ ଆଗ୍ରହରେ ଅପେକ୍ଷାକରି ବସିଥିବ, କେତେବେଳେ ବା ସୋମଗଡ଼ ଆସିବାକୁ ସଜ ହେଉଥିବ । ବନ୍ଧୁ ଧନଞ୍ଜୟର ଶୁଭ-ପରିଣୟର ଉଦ୍‌ଯୋକ୍ତା ସେ । ନୂଆ ଧରଣର ବାହାଘର । ଦୁଇ ମାଳ ଫୁଲ । ଗୋଟିଏ ଶଙ୍ଖ । ନିମନ୍ତ୍ରିତଙ୍କର ଚର୍ଚ୍ଚା — ଗୋଟିଏ ଲେଖା ନମସ୍କାର । ପଦଟିଏ କଥା — ଧନ୍ୟବାଦ !

ଆହ୍ଲାଦ ଝରକା ପାଖରେ ବସି ବାହାରକୁ ଚାହିଁ ରହିଥିଲା । ବଡ଼ ରାସ୍ତା ଘର ପାଖରୁ ପ୍ରାୟ ପାଞ୍ଚଶ ହାତ ଦୂରରେ । ଘର ଆଗରୁ ଲମ୍ବି ଯାଇଥିବା ଛୋଟ ରାସ୍ତାଟି ଯେଉଁଠି ବଡ଼ ରାସ୍ତାରେ ମିଶିଛି, ସେଇଠି ବସ୍‌ଷ୍ଟାଣ୍ଡ । ଫେରନ୍ତା ବସ୍ ଆସିବାର ବେଳ ହେଲାଣି । କେତେ ପାସେଞ୍ଜର ରୁଣ୍ଡ ହେଲେଣି । ବେଳ ହେଲାଣି ଏଗାରଟା । ଟୁନା କ'ଣ ଆସିବ କି ? ସୁଜନ ଜେଠା ହାତରେ ସେ ଖବର ପଠାଇଥିଲା । ଟୁନାକୁ

Digitized by PPRACHIN, SOA

ଅପେକ୍ଷା କରି ବସି ତା'ର କର୍ମ ସମ୍ବନ୍ଧରେ ସେ ଚିନ୍ତା କରୁଥିଲା । ମନ ଭିତରେ ଚାପ ଆଙ୍କୁଥିଲା ।

କାଲି ଯାଏ ଅପେକ୍ଷା କରିବାକୁ ଆଉ ତା'ର ଧୈର୍ଯ୍ୟ ନାହିଁ । ସାତ ଦିନର ଛୁଟି ମଞ୍ଜୁର ହୋଇଛି । ସମନ୍ତଙ୍କ ପାଖରୁ ସେ ବି ବିଦାୟ ନେଇ ସାରିଛି । ଶେଷ-ସଙ୍କଳ୍ପ ସେ କରିସାରିଛି - ପରାଧୀନ ଜୀବନରେ ସେ ପୂର୍ଣ୍ଣଚ୍ଛେଦ ଟାଣିବ । ନୂତନ ସ୍ୱାଧୀନ ଜୀବନ ଆରମ୍ଭ କରିବ । ସେଇ ସ୍ୱାଧୀନ ଜୀବନର ସ୍ୱରୂପ କ'ଣ ସେ ଭଲକରି ଚିନ୍ତା କରିପାରି ନାହିଁ । ଅପେ ଆପେ ସେ ସ୍ଥିର ହେବ ।

ସୋମଗଡ଼ରେ ଆଉ ମୁହୂର୍ତ୍ତେ ଅପେକ୍ଷା କରିବାକୁ ତା'ର ମନ ହେଉନାହିଁ । ପୁଣି କେତେ ଆସିବେ, କେତେ କଥା ପଚାରିବେ । ବୃଥା ଉତ୍ତେଜନା, ସମୟ ନଷ୍ଟ । ଯେଉଁ ବନ୍ଧନରେ ସମନ୍ତଙ୍କୁ ସେ ବାନ୍ଧି ରଖିଥିଲା, ସେ ବନ୍ଧନ ଛିନ୍ନ କରି ଚାଲିଯିବାକୁ ହୃଦରେ ଲାଗୁଛି ଆଘାତ ।

ମାନସିଂହଙ୍କର ପତ୍ନୀ ରୋହୁଣୀଦେବୀ ବିଦାୟ ଦେବାକୁ ଆସିଛନ୍ତି । ସଙ୍ଗରେ ଆଣିଛି ଲାବଣ୍ୟ । ଭିତର ଘରେ ସତ୍ୟବତୀଙ୍କ ପାଖରେ ବସି ରୋହୁଣୀଦେବୀ କଥାଭାଷା ହେଉଛନ୍ତି । ଯେଉଁଠି ବସିଲେ ସେ ଏକାନ୍ତ ଆଗ ବିଶ୍ୱନାଥର କଥା । ଗୋଟିଏ ବୋଲି ପୁଅ । କଲେଜରେ ପାଠ ପଢ଼ୁଛି । ପାଠ ସରିଲେ ପୁଅକୁ ବାହା କରେଇବେ । ସୁନାମୁଖୀ ବୋହୂ ଆଣିବେ ଘରକୁ । ଯେଉଁଠି ସେ ସୁନ୍ଦର ଝିଅଟିଏ ଦେଖନ୍ତି, ଯାହାର ଢଙ୍ଗ, ଯାହାର ଚଳନ ତାଙ୍କ ମନକୁ ପାଏ, ଜାତି ଗୋତ୍ର କି ବୟସ କଥା ନ ବୁଝି ସେଇ ଝିଅଟିକୁ ବୋହୂ କରିବାକୁ ସେ ହୁଅନ୍ତି ଉଚ୍ଛନ୍ନ ।

ଆହୁତ ତାଙ୍କ ମନକୁ ପାଇଛି । ବିରକ୍ତ ଲାଗେ । କିଛି କହି ହୁଏ ନାହିଁ । ଅତି ଉଦାର ତାଙ୍କର ମନଟି ।

ଲାବଣ୍ୟକୁ ରଣସିଂହଙ୍କ ଘରକୁ ବୋହୂ କରି ପଠାଇବେ ବୋଲି ସହସ୍ର ଲୋକଙ୍କ ଆଗରେ ସେ କହି ସାରିଲେଣି । ସୁବ୍ରତକୁ ସେ ଜୋଇଁ କରିବେ । ଝିଅ ତାଙ୍କର ରଣଗଡ଼ର ବଡ଼ବୋହୂ ହେବ । ଏଇ ଆଶାରେ ତାଙ୍କର ଗୋଡ଼ ତଳେ ପଡ଼େ ନାହିଁ ।

ଲାବଣ୍ୟ ଆହୁତ ପାଖରେ ବସି ଏଣ୍ଡୁତେଣ୍ଡୁ କେତେ କଥା ପଚାରୁଥିଲା । ଗୋଟିଏ ପ୍ରଶ୍ନ ବାରମ୍ବାର ପଚାରି ବ୍ୟସ୍ତ କରୁଥିଲା, ମୋ' ରାଣ, ସତ କହ, କେବେ ତମେ ଫେରିବ ଟୁମା ଅପା ?

କେମିତି ଆଗରୁଁ କହିବ ?

କହିଲେ କ'ଣ ଦୋଷ ହେବ କି ?

କେବେ ଫେରିବ କଟକ ଗଲେ ଲେଖିବ ।

ସେମାନେ ସବୁ କହୁଛନ୍ତି, ତମେ କୁଆଡ଼େ ଚାକିରି ଛାଡ଼ି ଦେଉଛ, ଆଉ ଫେରିବ ନାହିଁ । ସତ କହ ।

Digitized by PPRACHIN, SOA

ଲାବଣ୍ୟର ଆଖିରେ ଲୁହ ଛଳ ଛଳ ।

କିଏ କହିଲା ?

ଜାଉ ।

ଫେରିବ କି ନାହିଁ ଜାଉଙ୍କୁ ପଚାରିଲେ ତ କହିବ ।

ଚଉକିରୁ ଉଠି ଲାବଣ୍ୟ ଆହୁତର ପିଠିକୁ ଆଉଜି କେଶ ଟାଣି ଟାଣି କହିଲା, ତମେ କହୁନ । ଏତେ ସ୍ନେହ କରୁଥିଲ, ପର କରି ଚାଲିଯିବ ?

ହାତ ବୁଲାଇ ଲାବଣ୍ୟକୁ ଧରି ଆହୁତ ଆଗକୁ ଆଣିଲା । ତା ଆଖିରୁ କେବେ କେବେ ଲୁହ ଝରିପଡ଼ୁଛି । କୋଳକୁ ଆଉଜାଇ ସଜଫୁଟା ଶିଶିରଲଗା କଇଁଫୁଲ ପରି ସୁନ୍ଦର ମୁହଁଟିକୁ ଚାହିଁ ରହିଲା । ଏଇ ସରଳ, ସୁନ୍ଦର, ନିଷ୍ପାପ, ନିଷ୍କପଟ ପିଲାଟିକୁ ମନର କଥା ସେ ଲୁଚାଇ ରଖିଛି । ଲୁଚାଇ ରଖିବ ଆଜୀବନ । ଏଇ ହେବ ତା'ର ସୁବ୍ରତର ଗୃହିଣୀ ! ଗୃହର ସ୍ପନ୍ଦନ ତାକୁ ଶୁଭୁଛି ଥରି ଥରି, ଜପ କରୁଛି ସତେ କି— ସୁବ୍ରତ ବଜ୍ରବାହୁ । ଶେଷ ସମାଧାନ କରି ସେ ଚାଲିଯାଇଛନ୍ତି । ବାହାରର ସମ୍ବନ୍ଧ ଛିନ୍ନ ହୋଇଛି । ମାଟିର ଦେହ ଦୁଇଟା ଚନ୍ଦନ ପାଇଁ ଜୁରେଇ ଯାଉଛି । ମନ-ଗହନରେ ଦମୟନ୍ତୀର ବାହୁନା ଉଠୁଛି । ସୁବ୍ରତ-ନଳରାଜାର ଚରଣ ତଳେ ଅର୍ପଣ କରୁଛି ଅଶ୍ରୁଜଳ । ସେଇଟି ସଜାଗ । ଚନ୍ଦନ ସେ ସଜାଗ ରହିବେ । ସେଇଠ ମିଳନ—ଚିରନ୍ତନ । ଲାବଣ୍ୟକୁ ସେ ପର କରି ପାରିବ ନାହିଁ ।

ଡକହସିଲା ମୁହଁରେ ଲାବଣ୍ୟର ଆଖିର ଲୁହ ପଣତରେ ପୋଛି ବ୍ୟଥାତୁର କଣ୍ଠରେ ଆହୁତ କହିଲା ତୁ ମୋ'ର ଟିକି ଭଉଣୀଟି, ତତେ ମୁଁ ପର କରିପାରିବି ନାହିଁ ତ ! ଦେଖିବୁ ବହୁ ।

ଫେରି ଆସିବ ତେବେ ?

ଲାବଣ୍ୟର ଆଖିକୁ ଚାହିଁ ଆହୁତ ମୁଣ୍ଡ ଟୁଙ୍ଗାରିଲା ।

ହସିଦେଇ ବିଜୁଳି ବେଗରେ ଲାବଣ୍ୟ ଉଠି ଚାଲିଗଲା । ଏତେ ବଡ଼ ଖବରଟା ଆଗ ସେ ରୋହିଣୀ ଦେବୀଙ୍କୁ ଜଣାଇଦେବ । ସେଇଠୁ ପ୍ରଚାର କରିବ ସଙ୍ଗିନୀମାନଙ୍କ ପାଖରେ—ତମେ ସବୁ ମିଛ କହୁଥିଲ, ଟୁନାଅପା ଛୁଟି ଶେଷ ହେଲେ ଫେରି ଆସିବେ ।

ଲାବଣ୍ୟର ପାଟି ଶୁଭୁଛି ସେପାଖ ଘରୁ । ରୋହିଣୀ ଦେବୀଙ୍କୁ ସେ କ'ଣ କହୁଛି ।

ବର୍ଷ ଆସିବା ବେଳ ଗଡ଼ିଗଲାଣି । ଆସି ନାହିଁ । ଛୁଇ ଲେଉଟିଲେ ଚାରିଟା ଅଧେରେ ବର୍ଷ ବାହୁଡ଼ିବ କଟକ । ସବୁ କାମ ସରିଛି । ସପ୍ତଟିଏ ବି ଆଉ ସୋମଗଡ଼ର କଟାଇ-

Digitized by PPRACHIN, SOA

ବାକୁ ମନ ଡାକୁ ନାହିଁ । ଆଜ ବି ସେମାନେ କଟକ ଗ୍ଭଲିଯିବେ । କୋହ୍ନୁ ଘରେ ମଙ୍ଗଳ ଘଡ ବୁଧ ପାହ୍ୱାନ୍ତ । ମଙ୍ଗଳ ତ । ଝୁନା ଆସୁ କ ନ ଆସୁ, ଏତେ ଚନ୍ତା କାହିଁକ ?

ଆହୁତ ଚଦ୍ଦର ଘୁଞ୍ଚାଇ ଉଠିଲ । ଆଜ କାହିଁକ ପୁଣି ମୁଣ୍ଡ ବୁଲଉଛୁ । ଦୁର୍ବଳ ଲଗୁଛୁ । ଗ୍ରଢ ଭତରେ ବେଳେ ବେଳେ ଅଣଉଠୁଛୁ । ସକାଳୁ ସେ ଔଷଧ ଖାଇବାକୁ ଭୁଲଯାଇଛୁ । ଜାଣିଲେ ମା ବରକ୍ତ ହେବେ । ଟେବୁଲ ଉପରୁ ଔଷଧ ବୋତଲ ନେଇ ମେଜରଂ ଗ୍ଲାସରେ ଢାଳି ଖାଇଲ । ପଲଙ୍କ ଉପରେ ଆଡ଼େଇ ଶୋଇଲ ।

ମଟିଘର ବାଟେ ମୁଣ୍ଡ ହଲଇ ହଲଇ ନାଚଲ ଭଙ୍ଗୀରେ ଧାଇଁ ଆସୁଛୁ ଲବଣୀ । ଦେହରୁ ବସନ ଖସିପଡ଼ି ଭୂମିରେ ଲୋଟୁଛୁ । ଏ ଘରେ ପାଦ ନ ପକାଉଣୁ କହୁ-ପକାଉଛୁ ସେମାନଙ୍କୁ ଜଣେଇଁ ଦେଲ । ପାଖରେ ଟିକେ ବସେଇ ଦେଉ ନାହାନ୍ତ ମା, ଖାଲ ତଡ଼ ପକାଉଛନ୍ତ—ତୁ ଯାଉନୁ, ଯାଉନୁ— ।

ଲବଣୀ ଆସି ପାଖରେ ବସିଲ । ଗ୍ଭରୁଗ୍ଭଟା, ପୁଣି କହଲ, ଝୁନ ଅପା ମ, ଏ ମା'ମାନେ ଯେଉଁଠି ବସନ୍ତ, ଖାଲ ତାଙ୍କର ସବୁବେଳେ ବାହାଘର ଗପ । ସଂସାରରେ ଯେମିତ ଆଉ କଛୁ ନାହିଁ ।

ଆହୁତ ହସିଲ । କହଲ, ସେଇଥିପାଇଁ ତମକୁ ମୁଁ ମନାକରୁଛ ସେମାନେ ଗପିଲାବେଳେ ତାଙ୍କ ପାଖକୁ ଯିବ ନାହିଁ ।

ଲବଣୀ ମନମାର ଉଠିଆସିଲ ଝରକା ପାଖକୁ । ବାହାରକୁ ଗ୍ଭହିଁଲ । କଟକ ବସ୍ ଅସି ପହଞ୍ଚଲଣି । ଷ୍ଟାଣ୍ଡ ପାଖରେ ଗହଳ ଚହଳ ହେଲଣି । ରାସ୍ତା ଉପରେ ଲୋକେ ଯା ଆସ କଲେଣି । ଛକ ପାରହୋଇ ଆହୁତର ବସାଘର ଅଡ଼କୁ ଆସୁଛନ୍ତ ତନ ଜଣ—ଆଗରେ ଝିଅଟିଏ । ପାଖେ ପାଖେ ଗ୍ଭଲଛନ୍ତ ଜଣେ ପ୍ରୌଢ଼ା । ସେମାନଙ୍କ ପଛରେ ଜଣେ ପୁରୁଷ । ଲବଣୀ ଗ୍ଭହିଁ ରହଲ ।

ସତେ ତ, ସେମାନେ ଏଇ ଘରକୁ ଲକ୍ଷ୍ୟ କର ଆସୁଛନ୍ତ । ପ୍ରୌଢ଼ାଟି ମୁହଁ ବୁଲାଇ କ'ଣ ପଗ୍ଭରଲାରୁ ଭଦ୍ରଲୋକଟି ହାତ ଦେଖାଇ ଏଇ ଘରକୁ ଦେଖାଇଦେଲେ । ପାଖେଇ ଆସିଲେଣି । ଲବଣୀର ଅପରଚତ ସେମାନେ ।

କହଲ, ବସ୍‌ରୁ ଓହ୍ଲାଇ କଏ ସବୁ ଆସୁଛନ୍ତ ଝୁନାଅପା, ଏଇ ଘର ଆଡ଼େ ମୋଡ଼ୁଛନ୍ତ ।

ଅହୁତ ଉଠି ବସିଲ । ପଗ୍ଭରଲ, କଏ ସେମାନେ ?

ଲବଣୀ କହଲ, ମୁଁ କେମିତ ଜାଣିବ ? ଆସୁନୁ ଦେଖିବୁ ।

ଆହୁତ ଝରକା ପାଖକୁ ଅସିଲ । ନଜର ଆଖିକୁ ବଶ୍ୱାସ କର ପାରୁ ନାହିଁ । ରକ୍ତମାଟିର ଜେମା, ଭଣଗଡ଼ର ରାଜଲକ୍ଷ୍ମୀ ମମତାଦେବୀ ! ସଙ୍ଗରେ ଅଲଅଲୀ କନ୍ୟା ସୁସନ୍ଧ୍ୟା । ପଛରେ ଧର୍ମାନନ୍ଦ । ବସ୍ମୟରେ ସେ ଅଭଭୂତ ହେଲ । ନର୍ବାକ୍ ନସ୍ପନ୍ଦ

Digitized by PPRACHIN, SOA

ପଥର ମୂର୍ତ୍ତିଟି ପରି ସେ କେବଳ ଜକଜକ କରି ଚାହିଁରହିଲା । ଗୁରୁ ଭିତରୁ ଉଠିଲା ଅଦମ୍ୟ କୋହ । ଘନ ଘନ ନିଃଶ୍ୱାସ ବହିଲା । ମୁଣ୍ଡ ଭ୍ରମିବାକୁ ଲାଗିଲା । ଲାବଣ୍ୟର ଦେହରେ ଭର ଦେଇ ସଳଖ ହୋଇ ଠିଆ ହେଲା । ଗୁହାରି ଗୁହାରି ପ୍ରଶ୍ନଟିଏ ଛଟପଟ ହେଲା ମନ ଭିତରେ, କାହିଁକି ସେମାନେ ଆସିଛନ୍ତି, କାହିଁକି ?

ଦୁଇ ଆଖିରୁ ରୁଦ୍ଧ ଅଭିମାନର ସ୍ରୋତ ଛୁଟିଲା । ସ୍ୱର ଅଟକାଇ କହିଲା, ଲାବଣ୍ୟ ସେମାନଙ୍କୁ କବାଟ ଖୋଲି ଦେ ।

ଏମିତି ଥରୁଛୁ କାହିଁକି ଟୁନି ଅପା ?

ମୁଣ୍ଡ ବୁଲାଉଛି ।

ଲାବଣ୍ୟର ହାତ ଧରି ଖଟ ଉପରକୁ ଆସିଲା ।

କାନ୍ଦୁଛୁ କାହିଁକି ?

ଲୁହ ପୋଛି ଆହ୍ଲାଦ କହିଲା, ମିଛେଇଟା, ମୁଁ କବାଟ ବନ୍ଦ କରିଦେଲି ।

ଲାବଣ୍ୟ କଥା ମାନିଲା ।

ଦାଣ୍ଡ କବାଟ କିଏ ଖଡ଼ଖଡ଼ କଲାଣି ।

ଖୋଲି ଦେ ଲାବଣ୍ୟ । ମା'ଙ୍କୁ କହି ଦେ ରଣଗଡ଼ରୁ ମମତାଦେବୀ ଆସିଛନ୍ତି ।

ସେ କିଏ ଟୁନିଅପା ?

ଡେରି କର ନା । ରଣଗଡ଼ର ରଣସିଂହଙ୍କର ସ୍ତ୍ରୀ । ସେ ଥିଲେ ରଣଗଡ଼ର ରାଣୀ ।

ଛୁଟି ଯାଉଁ ଯାଉଁ ଲାବଣ୍ୟ ଅଟକି ଠିଆହେଲା । ମୁହଁ ଟେକି ଚାହିଁଲା । ଲାଜରେ ମୁହଁ ହେଲା ରଙ୍ଗ । ଫେରିଆସିଲା ଆହ୍ଲାଦ ପାଖକୁ । ଖଟ ଉପରେ ତା' ପାଖରେ ବସି ସେ କହିଲା, ସତେ, ଖରି ସିଆଣୀ ଏକା ତୁ । ମୁଁ ଯିବ ନାହିଁ ଯା !

କର୍କଶ କଣ୍ଠରେ ବାହାରୁ ଡାକୁଛି ସନ୍ଧ୍ୟା; କବାଟ ଖୋଲ ଟୁନିଅପା, କବାଟ ଖୋଲ— ।

ଆରେ, ସେ ଅପେକ୍ଷା କରି ବସିଛି । ଆଉ କ'ଣ ଦୁର୍ବଳତାର ସ୍ଥାନ ଅଛି ? ରଣସିଂହ ବଂଶର ସେ ହେବ ବଡ଼ବୋହୂ, ସେ ମୁହଁରେ ହାତ ଘୋଡ଼ାଇ ବସିଲାଣି । ସମସ୍ତଙ୍କର ସେ ଟୁନା, ଟୁନି, ଟୁନିନାନି, ଟୁନିଅପା ସେ କାହିଁକି ବୃଥାଟାରେ ସଙ୍କୁଚିତ ହୋଇ ବସିବ ? ଶେଷଦେଖାକୁ ସେ ହସଖୁସିରେ ଅବଶ୍ୟ ସ୍ୱାଗତ କରିବ, ସହଜ ଓ ସୁନ୍ଦର କରିବ ।

ମନରେ ଦୃଢ଼ତା ଆଣି ଆହ୍ଲାଦ ଉଠିଲା । ହସହସ ହୋଇ କହିଲା, ସତେ ଲୋ ଲାବଣ୍ୟ, କେଡ଼େ ବଡ଼ କଥାଟାଏ ମୁଁ ଭୁଲିଯାଇଥିଲି ତ ! ସେଇ ଗୁଦରଟା ଘୋଡ଼ିହୋଇ ଶୋଇ ପଡ଼ିଥା । ନୋହିଲେ ମଶାରିଟା ପକେଇ ଦେ । ଆଗରୁ ଖବର ପାଇଥିଲେ ତୋ ମୁଣ୍ଡଟି ବାନ୍ଧି ଦେଇଥାନ୍ତି, ଆଖିରେ ନାଇ ଦେଇଥାନ୍ତି ସରୁ କଜ୍ଜଳ ।

Digitized by PPRACHIN, SOA

ଲବଣ୍ୟର ନାକ ଶପି ଆହୁତ ଉଠି ଆସିଲା । ମଝି କବାଟ ଖୋଲି ମଝିଘରକୁ ଗଲା । କାହାର ଡାକ ଶୁଣି ସତ୍ୟବତୀ ଓ ସ୍ୱେହଶୀ ସେପାଖ ଘରୁ ଆସିଲେଣି । ଦାଣ୍ଡକବାଟ ଖୋଲୁ ଖୋଲୁ ସହଜ କଣ୍ଠରେ ଆହୁତ କହିଲା, ରଣଗଡ଼ରୁ ମମତାଦେବୀ ଆସିଛନ୍ତି । ଲାଜରେ ଲବଣ୍ୟ ସେ ଘରେ ମୁହଁ ଘୋଡ଼ାଇ ବସିଲାଣି ।

ଦାଣ୍ଡ ବାରଣ୍ଡାରେ ଠିଆ ହୋଇଛନ୍ତି ମମତା । ପାଖରେ ସନ୍ଧ୍ୟା । ଧର୍ମାନନ୍ଦ ଫେରି ଯାଉଛନ୍ତି ।

ଆହୁତ ମୁଣ୍ଡ ନୁଆଁଇ ପ୍ରଣାମ କଲା ।

ଦୁଇ ହାତରେ ତୋଳି ଧରି ଛଳଛଳ ଆଖିରେ ମୁହୂର୍ତ୍ତେ ମମତା ତାଙ୍କର ସପନ-ପ୍ରତିମାକୁ ଚାହିଁ ରହିଲେ । ବାକ୍ୟ ସ୍ଫୁରୁ ନାହିଁ ।

ଲାଜର ରକ୍ତିମା ଉକୁଟି ଉଠିଲା ଆହୁତର ଆନନ୍ଦରେ । ମନର ପ୍ରଶ୍ନର ଉତ୍ତର ମମତା ପାଇଲେ । ଅଳପ ହସି କହିଲେ, ତୋ ବୋଉକୁ ମୋତେ ଚହ୍ନାଇ ଦେଲୁ ନାହିଁ ତ ମା ?

ସତ୍ୟବତୀ ନମସ୍କାର ଜଣାଇଁ କହିଲେ, ଇଏ ହେଉଛନ୍ତି ସ୍ୱେହଶୀ ଦେବୀ, ସୋମଗଡ଼ ମାନସିଂହଙ୍କର ସ୍ତ୍ରୀ । କେଡ଼େ ଭାଗ୍ୟ ଆଜ ମୋ'ର ।

ସନ୍ଧ୍ୟା ପ୍ରଣାମ କଲା ।

ସତ୍ୟବତୀ ମମତାଙ୍କର ହାତ ଧରି ଘର ଭିତରକୁ ନେଲେ । ସ୍ୱେହଶୀ ଦେବୀ ତାଙ୍କ ସଙ୍ଗରେ ଗଲେ ।

ଆହୁତ ସନ୍ଧ୍ୟାର ହାତ ଧରି ଟାଣିଲା । ମଝିଘରକୁ ଆସି ସନ୍ଧ୍ୟା କହିଲା, ଛାଡ଼ ଦେ ମୋ ହାତ କ୍ଷମାଥପା, ମୁଁ କ'ଣ ତୋ ପାଖକୁ ଆସିଛି କି ?

ଆହୁତ କହିଲା, ସେ କଥା ମୁଁ ଜାଣେ ଯେ । ତମେ ଯାହା ପାଖକୁ ଆସିଛ, ହେଇଟି ଦେଖ, ସେ କପରି ଚାଦର ଘୋଡ଼ି ହୋଇ, ମଶାରି ପକେଇ ଦିନ ଦ୍ୱି'ପହରେ ଶୋଇଛି ।

କିଏ ମ ?

ଗୁନ ଗୁନ ଆହୁତ କହିଲା କାନରେ, ଲବଣ୍ୟ ।

ଜର ହୋଇଛି କି ?

ଲାଜ ।

ସୁସନ୍ଧ୍ୟା ଟିକିଏ ଭାବିଲା । ଭ୍ରୂ କୁଞ୍ଚି ଆହୁତର ମୁହଁକୁ ଚାହିଁ କହିଲା, ଏତିକି ବାଦୋଇଟା ତୁ, ଏଡ଼ିକି ହୁଂସିଆ ? ଚଠି ଖଣ୍ଡେ ଲେଖିଥିଲି, ଉତ୍ତର ଦେଲୁ ନାହିଁ । କେତେ ଥର ଖବର ପଠାଇଲି, ଥରଟିଏ ବି ଗଲୁ ନାହିଁ । ନ ଗଲୁ କାହିଁକି କହିବୁ କି ?

କହ ।

ଲାଜ ।

Digitized by PPRACHIN, SOA

କାହାକୁ ବା ?

ଆଜି ସକାଳୁ ସେ ଗାଁ ଛାଡ଼ି ଚାଲିଗଲେଣି । କହିଯାଇଛନ୍ତି, ଦୁଇ ଦିନ ପରେ ଫେରିବେ । ଥରେ ତ ଗଲେ ଯେ ସାତ ବରଷ ବୁଲି ବୁଲି ଆସିଲେ । କିଏ କହିବ ପୁଣି କେବେ ସେ ଫେରିବେ ? ଖୁଡ଼ୀ କହିଲା, ତୁ ଯଦି ରଣଗଡ଼ ନ ଯାଉ, ଘର ଆଉ ଆସିବ ନାହିଁ । ତତେ ନେବାକୁ ମୁଁ ଆଇଚ । ତୋ' ପାଖକୁ ନୁହେଁ, ମୋ' ମାଉସୀ ପାଖକୁ । ତୁ ନ ଗଲେ ମୁଁ ବି ନ ଯାଏ । ଆଉ ତୁ ଠକିପାରିବୁ ନାହିଁ ଲୋ, ସିଦ୍ଧାଣି ନାନି !

ଦୁଇ ଆଖିରୁ ଗଳ ଗଳ ହୋଇ ଗଡ଼ିପଡ଼ୁଛି ଲୁହ । ଆହୁତକୁ କୁଣ୍ଢାଇ ଧରିଲା ସନ୍ଧ୍ୟା । ଲୁହର ବାଦଲ ଭିତରେ ଦୁହେଁ ଚାହିଁଲେ,—ଧୀରେ ଧୀରେ ମଶାଲର ଗୋଟିଏ ବଡ଼ ସାମାନ୍ୟ ଟେକି ମୁହଁ ଜଳାଇ ଚାହିଁ ରହିଛି ଲବଣ୍ୟ । ଆଖିରେ କୁତୁହଳ ।

ଲବଣ୍ୟ ଅଭିମାନ କରିଛି । ମୁହଁ ଲଦି ବସିଛି । ଟୁନାଅପାର ଢଙ୍ଗ ଆଜି ସେ ବୁଝିପାରୁ ନାହିଁ । କାହିଁକି ସେ କାନ୍ଦିଲା, ପୁଣି ତରତର ହୋଇ ଆଖିରୁ ଲୁହପୋଛି ହସିଲା । ମଶାଲ ଟେକିଲା । ଲବଣ୍ୟ ଧଡ଼ପଡ଼ ହୋଇ ଉଠି ବସିଲାରୁ ଖଟ ଉପର ବିଛଣାଗୁଡ଼ିକ ଗୁଡ଼ାଇ ଗୋଟିଏ କଡ଼କୁ ଠେଲିଦେଲା । ସନ୍ଧ୍ୟାର ହାତ ଧରି ବସାଇ କହିଲା, ଚହଲାଇ ଦିଏ ତମ ଦୁହିଁଙ୍କୁ ।

ଚହଲାଇ ଦେଲା ତ, ନିଜେ ବସିଲା ଗମ୍ଭୀର ହୋଇ । ଆଉ ସେ କଥା କହୁ ନାହିଁ । ଗପି ଚାଲିଛି ସନ୍ଧ୍ୟା । ଟୁନାଅପାକୁ ରଣଗଡ଼ରେ ସମସ୍ତେ ଝୁରୁଛନ୍ତି । ନାରୀ-କଲ୍ୟାଣ ମନ୍ଦିରରେ କ ଖ କାମ ହେଉଛି । ଜେମିଆଇ କପର ଭାଗବତ ବୋଲି ଶିଖିଲେଣି । ବୁଢ଼ା-ପୁରୋହିତେ ବାଉରି ଘର ବାହାଘରରେ ବସି ମନ୍ତ୍ର ପଢ଼ିଲେଣି ! ଆଗ ସାଉକାର ଟିକଟି ଅଟି ଚନା ଦଣ୍ଡୀର ପରି ହୋଇଛି । ବୁଢ଼ୀ ନୂଆମା ନୂଆ ଭୁଞ୍ଜୁଣି ଧରି ବସିଛନ୍ତି ।

କଅଣ ବୋଲି ଡାକିବ କହ ତ ଟୁନାଅପା ? ଲବଣ୍ୟ, କି ଲବଣ୍ୟ ଅପା, କି ବଉଳ, କି—

ଆହୁତ ମୁରୁକେଇ ହସି କହିଲା, ଯେଉଁ ପଦକ ତୁଣ୍ଡରେ ରହିଗଲା ସେଇଆ ଡାକୁ ନା ।

ଲବଣ୍ୟ ମୁହଁ ଫଣଫଣ କରି କହିଲା, ତମୁକୁ ସେଇଆ ସେ ଡାକୁ ନାହାନ୍ତି ? ମୁଁ କାହାର କିଛି ନୁହେ । କେତେବେଳ ହେଲାଣି ଲୋ ମା ! ବୋଉ ତ ଯେଉଁଠି ବସିବ, ଖାଲି ଗପ କରି ଘଣ୍ଟ କରିବ । ନ ଡାକିଲେ ସେ ନ ଉଠେ ।

Digitized by PPRACHIN, SOA

ଲାବଣ୍ୟ ଉଠି ଠିଆ ହେଲା ।

ସନ୍ଧ୍ୟା କହିଲା ବସୁନ ଆଉ ଟିକେ । ଏମିତ ଯାଉଛ କାହିଁକି ମ । ଝୁନ୍ନାଅପା ତ ଆମ ଘରକୁ ଗଲେ ସମସ୍ତଙ୍କ ତୁମର କଥା କହନ୍ତି । ଝୁନ୍ନାଅପାଙ୍କୁ ସଙ୍ଗରେ ନେଇ ଆମେ ତୁମର ଘରକୁ ଯାଇଥାନ୍ତୁ । ଏଇଠି ଦେଖା ହେବ ବୋଲି ଯୋଗ କରାଉଛୁ ।

ସନ୍ଧ୍ୟା ଲାବଣ୍ୟର ହାତ ଧରି ପାଖରେ ବସାଇଲା । କଟମଟ କରି ମୁହଁକୁ ଅନେଇ ହସିଦେଲା ।

ଲାବଣ୍ୟ ବି ହସିଲା । କହିଲା, ସତେ ଝୁନ୍ନାଅପା, ତମ କଥା ମୁଁ ଅଳପ ବିଶ୍ୱାସ କରୁଥିଲି । ଏବେ ଦେଖିଲି ସନ୍ଧ୍ୟା କେଡ଼େ ସୁନ୍ଦର । ତମକୁ ଅଶୋକା ବୋଲି ଡାକିବ ? ସନ୍ଧ୍ୟା କହିଲା, ନିଜ ମୁହଁ କେବେ ଦେଖି ନାହିଁ କି ଅଶୋକା ?

ଆଗେ ଦେଖୁଥିଲି ।

ଏବେ ?

ସତ କହିବ କି ଅଶୋକା ?

ତମର ଇଚ୍ଛା ।

ଝୁନ୍ନାଅପାଙ୍କୁ ଦେଖିଲି ଦିନୁଁ ଦର୍ପଣ ଧରିବାକୁ ଲାଜ ମାଡ଼େ । ଜାଣେ କି ମୋ ବଶି ଯାଇକି କଏ ବାହା ହେଉଛୁ ? ମାଉସୀଙ୍କ ଆଗରେ ସେଇ କଥା ବୋଉ କହୁଥିଲା ।

କଏ, କହ ଅଶୋକା ।

ଝୁନ୍ନାଅପା ।

ମୁହଁ ଉପରକୁ ବରକୁଉର ସ୍ୱର ଆଣି ଆସ୍ତେ କହିଲା, ଛି, ଏ କି କଥା ଶୁଣିକୁ ଆଣୁଛ ଲାବଣ୍ୟ । ବିଶ୍ୱନାଥ ମୋ ସାନଭାଇଠୁଁ ବି ସାନ । ମତେ ସେ ଝୁନ୍ନାଅପା ବୋଲି ଡାକେ । ସେ ମୋ'ର ଭାଇ । ମା'ମାନଙ୍କର ଆଉ କିଛି ଗପ ନ ଥାଏ, ଖାଲି ଏଇଆ । ତାଙ୍କ ଗପ ଶୁଣିବାକୁ କେବେ ପାଖକୁ ଯିବାକୁ ହେବ ନାହିଁ ବୋଲି ପଣ ମନା କରିଥିଲି ।

ସତ ଯେ, ନ ଗଲେ ଏ ଖୁସି ଖବର କେମିତି ମୁଁ ଆଗରୁ ଜାଣନ୍ତି ? ଏତେ ଲୁଚଉଛପା କାହିଁକି ? ତମେ ହେବ ମୋ'ର ଭାଉଜ । ମାଉସୀ ତ ମଙ୍ଗିଲେ ।

ଶଟ୍ଅପ୍— ! ସମସ୍ତେ ତ ଜାଣନ୍ତି ଲୋ ଲାବଣ୍ୟ, ମୁଁ କାହାକୁ ବାହା ହେବ ନାହିଁ । ପିଲଗୁଡ଼ା ତମେ, ବାହାନିମିତ୍ୟ କଥା ବଢ଼ଉଛ କାହିଁକି ? କେଣିକି ମନ କି କାନ ଦେବ ନାହିଁ । ବାପା-ମା'ଙ୍କର ଅଧିକାର ହେଇଛି । ଏକଥା ଏଇଠି ରହୁ । ଆଚ୍ଛା କହ ତ ସନ୍ଧ୍ୟା, ଆଉ କି କି ନୂଆ କାମ ତମେ ଶିଖିଲଣି ? ଲାବଣ୍ୟ ଖାଲି ସବୁକାମ ଶିଖିବାକୁ ହମହମ, ସବୁ କାମ ଅଧା କରି ରଖିଛନ୍ତି । କହ ଲାବଣ୍ୟ, ହଲ୍‌ରେ ଯେଉଁ ସ୍ୱେଟରଟି ଅଧା ବୁଣିଥିଲ ସେଇଟି ଶେଷ ହେଲା ?

ଟିକିଏ ବାକି ଅଛି ।

Digitized by PPRACHIN, SOA

କାଇଁଶର ଫୁଲ-ଘୁଙ୍ଗୁଡ଼ି ?

ଦିନେ ଦୁଇ ଦିନ ଭିତରେ ସରିବ । ସେ ସବୁ କଥା କାହିଁକି ପଚାରୁଛ ? ପଚାରୁନ—ଜାଉଜାଉକା ବଡ଼ି, ପାମ୍ପଡ଼, ସିମେଇଁ, ଆଚାର, ଜେଲି— । ନିଜକୁ ତ ଆସେ ନାହିଁ । ସେ ଦିନ ପରା ବୋଉକୁ କହୁଥିଲ, କେମିତି ଆରିଷାପିଠା ହୁଏ, ଜାଉଜାଉକା ପୋଡ଼ପିଠା, କାକରା,—

ସନ୍ଧ୍ୟା ହସିଲା । ପଚାରିଲା, ତମେ ସବୁ ଶିଖିଲ କି ଅଶୋକା ? ଅଚ୍ଛା କହ ତ ତମୁକୁ କଅଁଳ କୋଶଲା ଶାଗ ଝରଡ଼ାରେ ଲୁଣ ପକେଇ ଆସିବ ?

ଲାବଣ୍ୟ କହିଲା, ବୋଉ ମତେ ସବୁ ଶିଖେଇ ଦେଇଛି ।

ଲାବଣ୍ୟର ହାତ ଧରି ସନ୍ଧ୍ୟା କହିଲା, ଶିଖିଛ ଭଲ କରିଛ । ମୋ' ବାପା ପୋଡ଼ପିଠା ଖାଇବାକୁ ଭଲପାଅନ୍ତି । ବୋଉକୁ ଭଲ ଲାଗେ ଆରିଷା, ଖୁଡ଼ୀଙ୍କର ସରୁଚକୁଳିରେ ଶରଧା । ବଡ଼ଭାଇଙ୍କୁ ସବୁ ଭଲଲାଗେ, ସିଝା ଅସିଝା ଲୁଣିଆ ଅଲୁଣା, କିନ୍ତୁ ସାନ ଭାଇଙ୍କର ସ୍ନେହ ଶାଗ ଖରଡ଼ାରେ । ପାଞ୍ଚ ଠା କରି ଥୁଅ ପଛେ ଶାଗ ନ ଥିଲେ ସେ ଅଶାନ୍ତ ହୁଅନ୍ତି । ହେଲେ, କାହାକୁ ତ କିଛି କହନ୍ତି ନାହିଁ ।

ଲାବଣ୍ୟ କହିଲା, ମୋ ଭାଇଟାର କାହିଁରେ ଶରଧା କେହି କହି ପାରିବେ ନାହିଁ । ଅମୃତ ଆଣି ପାଖରେ ରଖିଲେ ସେ ନାକ ଟେକିବ ।

ଆହୁତ ହସି ଉଠିଲା । କହିଲା, ମୋ' ଭାଇ କଥା ବାକି ରହିବ କାହିଁକି ? କହିବ କି ?

ଲାବଣ୍ୟ ଓ ସନ୍ଧ୍ୟା ତା'ର ମୁହଁକୁ ଚାହିଁଲେ । କହ ବୋଲି କେହି କହିଲେ ନାହିଁ । କୃତ୍ରିମ ଅଭିମାନ କରି ଆହୁତ କହିଲା, ଶୁଣିବାକୁ ତମର ଆଗ୍ରହ ନାହିଁ । ମୁଁ ବି କହିବାକୁ ଚାହେଁ ନାହିଁ ।

ଦୁହେଁ ଏକ ସଙ୍ଗେ କହିଲେ, କହୁନ— ।

ଆହୁତ କହିବାକୁ ବେଳ ପାଇଲା ନାହିଁ । ସତ୍ୟବତୀ, ମମତା ଓ ରୋହିଣୀ ଆଉ ଘର ଭିତରକୁ ଆସିଲେଣି । ଏ ଘର ଆଡ଼କୁ ମୋହିଁଛନ୍ତି । ସେ ଉଠି ଠିଆ-ହେଲା । ଲାବଣ୍ୟ ଓ ସନ୍ଧ୍ୟା ମଧ୍ୟ ଉଠିଲେ । ମମତା ପାଖକୁ ଆସିଲେ । ଆହୁତକୁ ଚାହିଁ କହିଲେ, ମା' ମୋ'ର ଶୁଖିଲା ଦିଶୁଛୁ ।

ଆଖି ଛଳଛଳ ହେଲା । ଆହୁତର ମୁହଁରେ ହାତ ବୁଲାଇ କହିଲେ ଗଦ୍‌ଗଦ କଣ୍ଠରେ, ପୁଅଙ୍କ ଅଙ୍କ ଉପରେ ଅଭିମାନ କଲୁ କି ? ତୋ' ବୋଉ ପାଖରେ ମୁଁ ମୋ' ଦୋଷ କ୍ଷମା ମାଗିନେଇଛି । ହାତ ପାଦ ତଳେ ବି ମାଟିନେଇଛି ଲୋ ଝିଅ ।

ଲାଜରେ ରଙ୍ଗ ଉକୁଟିଲା ଆହୁତ ଆନନରେ । ଛୁଟ ତନ୍ତୁ ଅଦମ୍ୟ କୋହ ଉଠିଲା । ଦେହ ହେଲା ରୋମାଞ୍ଚିତ । ପୁଲକରେ ଥରଉଠିଲା, ଅନୁଭବ କଲା, ସେ ଗୋଟିଏ ଝିଅ ମାତ୍ର । ଝିଅପଣିଆଁ ଭିତରେ କାହିଁ କେଉଁ ଅତଳ ଗହ୍ୱରରେ ଲୁଚି-ଯାଇଛି ତା'ର ବିଦ୍ୟାବୁଦ୍ଧି, ଦକ୍ଷତା, ଅଭିଜ୍ଞତା ସବୁ । ଆଗରେ ଉଭା ଜନନୀ—

Digitized by PPRACHIN, SOA

ଆନନ୍ଦରେ ଝଲ୍‌ମଲ ଦିଶୁଛି ମୁହଁଟି, ଆଖି କୋଣରେ ଝୁଲିପି ଉଠିଛି ମୁକ୍ତାବିନ୍ଦୁ । ଓଠ ଦୁ'ଫାଳ ଥର ଉଠୁଛି । ତୁଣ୍ଡରୁ ବଚନ ବାହାରୁ ନାହିଁ ।

ମୁଣ୍ଡ ବଙ୍କାଇ ଦୃଷ୍ଟି ନୋଇଁଲା । ମନ ହେଉଛି ଧାଇଁ ଯାଇ କୁଣ୍ଢାଇ ଧରିବ ଜନନୀଙ୍କୁ । ପଚାରିବ, ଶେଷକୁ ଏଇଆ କଲୁ କି ବୋଉ! ଏତେ ସ୍ନେହରେ ବଢ଼ାଇ-ଥିଲୁ କାହିଁକି ? ଜନମ ବେଳେ ତଣ୍ଟି ଚିପି ଦେଲୁ ନାହିଁ, ପାଖରୁ ଅନ୍ତର କରିବାକୁ ମନ କଲୁ ?

ମମତା ବେକରୁ କାଢ଼ି ହାତରେ ଧରିଛନ୍ତି ରତ୍ନଖଚିଆ ସୁନାର ଆମ୍ବକଷି ମାଳ । ଆହ୍ଲାଦର ବେକରେ ପିନ୍ଧାଇ ଦେଇ ମମତା କହିଲେ, ମୋ' ମାଆର ବେକରେ ତ ସମସ୍ତେ ଆମେ ବନ୍ଧା ହେବୁ ଲୋ ଭଉଣୀ, ଏଇ ହାରଟି ଆମ ସମସ୍ତଙ୍କଠୁଁ ବି ବଡ଼ । କେତେ ପୁରୁଷର ସେ କଥା କେହି କହିପାରିବେ ନାହିଁ । ଶାଶୁମାନେ ବୋହୂମାନଙ୍କୁ ଦେଖିଲାବେଳେ ପିନ୍ଧାଇ ଦିଅନ୍ତି ।

ଆହ୍ଲାଦର ମୁହଁଟିକୁ ଟେକି ଧରିଲେ । ଲୋତକରେ ତା'ର ଗଣ୍ଡ ପ୍ଲାବିତ ହେଲାଣି । ବାଷ୍ପରୁଦ୍ଧ କଣ୍ଠରେ ପୁଣି କହିଲେ, ଦିନେ ପୁଣି ତୋ'ର ବୋହୂ ହୋଇ ଫେରିଆସିବ ଯେ ହେଇଦିନ ମୋ' ହାରଟି ମତେ ଫେରାଇ ଦେବୁ ।

ପ୍ରଣାମ କର ଲୋ ଝୁନ୍ନା ।

ମୁଣ୍ଡ ନୁଆଁଇଦେଇ ଆହ୍ଲାଦକୁ କୋଳ କରି ମମତା କହିଲେ, ନାଇଁ ଭଉଣୀ, ସେତିକର ପ୍ରଥମ ଅଧିକାରୀ ରଣଗଡ଼ର କୁଳଦେବତା ଲକ୍ଷ୍ମୀନୃସିଂହ ।

ଚାହିଁଲେ ଲାବଣ୍ୟକୁ । ସେ ରୋହିଣୀଙ୍କର ପଛରେ ଠିଆ ହେଲାଣି । ମନରେ ଦୁଃଖ— ଝୁନାନାନୀଟା ବଡ଼ ଅବିଶ୍ୱାସୀ । ମିଛଟାରେ କହେ, ବଗିଷାଇକୁ ଭଲପାଏ ବୋଲି । ରୋହିଣୀଙ୍କ କାନ ପାଖରେ କହୁଛି, ଉଚ୍ଛୁର ହେଲାଣି ଯିବା ନାହିଁ କି ବୋଉ ?

ମମତା ଲାବଣ୍ୟର ହାତ ଧରି ପାଖକୁ ଆଣିଲେ । କହିଲେ; ଝୁନ୍ନା ମୋ'ର ଲାବଣ୍ୟ କଥା କେତେ କହେ । ଖୁବ୍ ଭଲପାଏ ତା'କୁ । ଦେଖି ନ ଥିଲି ତ କେବେ, ଆଜି ଦେଖୁଛି,— ଝୁନ୍ନା ଓ ଲାବଣ୍ୟ ଦିଶୁଛନ୍ତି ଦୁଇ ଭଉଣୀ ପରି । ତା'କୁ ବି ମୁଁ ମାଗିନେବି ।

ଲାବଣ୍ୟ ହାତ ଖସାଇ ସତ୍ୟବତୀଙ୍କ କଡ଼କୁ ଚାଲିଗଲାଣି । ସତ୍ୟବତୀ କହିଲେ, ସତେ, ଭଉଣୀ । ମୋ ଆଖିର ପିତୁଳା ମୋ ଝୁନ୍ନା, ତାକୁ ତ ନେଲ, କେମିତି ମୁଁ ଝୁଲକା ହୋଇ ଚଳିବି ? ଲାବଣ୍ୟ ଏକା ମୋ' ଆଖିର ଜ୍ୟୋତି ଫେରାଇ ଆଣିବ । ଅତି ଦରିଦ୍ର, ଅବହେଳିତ ଜୀବନଟା ମୋ'ର, ଏଇଆକୁ ପ୍ରୀତରେ ଧରିଲେ—

ହୃତ୍‌କଣ୍ଠିତ ପ୍ରାଣର ଭାଷା ଅଟକିଗଲା ମୁହଁରେ । ରୋହିଣୀ କହିଲେ, ହେଲା ଯେ, ମୋ' ଅଖି ଦିଅଟି ତ ଫୁଟିଯିବ । ମାନସିଂହ ତ ପାଣି ଛୁଇଁବେ ନାହିଁ ।

Digitized by PPRACHIN, SOA

ହୃଷିକମୁହୂର୍ତ୍ତରେ ଗୋବ୍ରର୍ଦ୍ଧନୀ ସନ୍ଧ୍ୟାର ହାତ ଧରିଲେ । କହିଲେ, ସେ ଘରୁ ଆସି ଏ ଘରେ ରହିବ । ତା' ନାମଟି ଏଥର ବଦଳାଇ ଦେବ, ଡାକିବ ଉମା ।

ସନ୍ଧ୍ୟା ନିଃସନ୍ଦେହସ୍ନ ଲୋଚନରେ ଚାହିଁଲା ତା'ର ମା'ଙ୍କୁ । ମମତା ଢାଳୁଛନ୍ତି । କହିଲେ, ଏତେ ଭାଗ୍ୟ ମୋ'ର ହେବ ସତେ ? କେଉଁ ସୁଯୋଗରେ ଆଜ ମୋ'ର ଗୃହ ପାଇଥିଲା ।

ସନ୍ଧ୍ୟା ଦେଖିଲା, ଲବଣ୍ୟ ଧୀରେ ଧୀରେ ଖସି ଆସି ମଟିଘରକୁ ଚାଲିଯାଉଛି । କ୍ଲାନ୍ତପ୍ରାୟ କୁଆଡ଼େ ପଳାଇବାକୁ ବାଟ ନ ପାଇ ଟେବୁଲ୍ କଡ଼କୁ ଘୁଞ୍ଚିଗଲାଣି । ମଝି ଅଗଣିରେ ଟେବୁଲ୍ ଉପରେ ତଳ ଅଙ୍କଲ ପତ୍ର ଗାର ଝାଣ୍ଡୁଛି । ମଝି ଘରର ବାହାର ପାଖ କବାଟ ଖୋଲାଥିଲା । ପରଦା ଟେ ପାଖରୁ ଧର୍ମ ଗ୍ରଇର ଗାଟି ଶୁଭୁଛି । ମାନସିଂହଙ୍କ ଘରକୁ ସେ ଖବର ଦେବାକୁ ଯାଇଥିଲେ । ଫେରି ଆସିଲେଣି ।

ଡାକୁଛନ୍ତି, ସନ୍ଧ୍ୟା—

ସନ୍ଧ୍ୟା ଗୋବର୍ଦ୍ଧନୀଙ୍କର ହାତରୁ ନିଜ ହାତଟି ଖସାଇ ମଟିଘରକୁ ଗଲା । ଜବାବ ଦେଲା, ଯାଉଛି – ।

ମା' ଘନହୋଇ ତା' ପଛେ ପଛେ ଗଲେ ।

ତ' ପହର । ଗ୍ରେଟ ଫ୍ୟାକ୍ଟରିର ସବୁ କାମ ଶେଷ କରି ଧନଞ୍ଜୟର ବସାଘରର ଗୋଟିଏ କୋଠରୀରେ ତକ୍ତପୋଷ ଉପରେ ବସିଛି ସୁଲଦାମି । ପାଖରେ ବସିଛନ୍ତି ତା'ର ଜନନୀ । ମଝି ଘରେ ଅର୍ଜୁନ ମହାରଥ । ବଡ଼ ପାଟି କରି ପୁରାଣ ବୋଲୁଛନ୍ତି । କେବଳ ସ୍ୱର ହିଁ ଶୁଭୁଛି । ବିଷୟ ଜାଣି ହେଉ ନାହିଁ ।

ମିଆଦ୍ ନ ପୂରୁଣୁ ଜେଲ୍‌ରୁ ଖଲାସ କରିଦେବାକୁ ଆଦେଶ ଆସିଲା । ରାଜ୍ୟପାଳଙ୍କର ଜେଲ୍ ପରିଦର୍ଶନର ଫଳ ବୋଲି ଜେଲର ଜଣାଇଦେଲେ । ଫେରିଆସିଲା ସେ ଚନ୍ଦ୍ରପୁରକୁ । ବର୍ଷ ଗୋଟିକରେ ଚନ୍ଦ୍ରପୁର ବଦଳି ଯାଇଛି ।

ଭାଇ, ଭାଉଜ ଓ ମା' ତା'କୁ ଆଦର କରି ଘରେ ସ୍ଥାନ ଦେଇଛନ୍ତି । ଚନ୍ଦ୍ରପୁର ବଡ଼ ଗାଁ ହୋଇଛି । ସବୁ ବିଷୟରେ ଉନ୍ନତ ହୋଇଛି । ଏବେ ବି ଗଠନମୂଳକ କାମ ଆଗେଇ ଚାଲିଛି । ସବୁ କରୁଛନ୍ତି ଗ୍ରାମର ଲୋକେ । ଦୂର ଦେଶରୁ ଆସିଥିଲେ ଯେଉଁ ମୂଲିଆ ଦଳ, ଲୁହ ଲହୁ ଦେଇ ଚନ୍ଦ୍ରପୁରକୁ ଗଢ଼ିବାକୁ ପଣ କରିଥିଲେ, ସେମାନେ କାହିଁ କୁଆଡ଼େ ଚାଲିଗଲେଣି । ସନ୍ଧ୍ୟାପାଳ ସିଂହଙ୍କର ବି ଦେଖା ନାହିଁ ।

ଯେଉଁ ଅନୁଷ୍ଠାନଗୁଡ଼ିକ ଗଢ଼ା ହୋଇଥିଲା, ସେସବୁ ଭଲରେ ଚାଲିଛି । କେହି କାହାକୁ ଅନାଇଁ ବସି ନାହିଁ । ଜେଲ୍‌ଫେରନ୍ତା ଦାଗୀ ସୁଲଦାମର ଆଦର ସେଠି

Digitized by PPRACHIN, SOA

ନାହିଁ । ଜେଲ୍ ଗଲା ପୂର୍ବରୁ ଯେଉଁମାନଙ୍କର ଆଖିରେ ସେ ଲୁହ ଦେଖିଥିଲା, ସେମାନଙ୍କ ଆଖିରେ ସେ ଦେଖିଛି ବଜ୍ରପରି ଧୃଣ, ଆତଙ୍କଭରା ଘୃଣା ନର୍ଦ୍ଦେଶ । ଯେଉଁମାନଙ୍କ ଭୁଣ୍ଡରେ ଥିଲା ଆଦ୍ୟା ପଡ, ସେମାନେ ପଶୁରୁବନ୍ତି, ସେ ଗଲା ପୁଣି କୁଆଡ଼େ ?

କିଏ ବା ?

ନାମ ତ ମନେପଡ଼ୁ ନାହିଁ । ସେଇ ଯେଉଁ ମଦନ-ମୁହାଁ, କଲେଜ-ବୈଷ୍ଣବ ଟୋକା, ଯାହା ପାଇଁ ନାଲୁଗିକିରୁ ଛୁରି ମାରି ଜେଲ୍ ଗଲ — ।

ଆବା କାବା ହୋଇ ଗୁହିଁ ରହେ ଫୁଲଦାମା ! ସବୁ ନନ୍ଦା, କୁତ୍ସା ଓ ଅପମାନକୁ ହସିହସିକା ସେ ନାଟର ନାଶଥିଲେ ପୋଷିଏ ଅବହେଳିତା, ଅନାଥିନୀ, ଲଞ୍ଛିତା ତରୁଣୀକୁ ଅନ୍ଧାରରୁ ଆଣି ବାଟରେ ଗ୍ଲାଲିବାର ସୁଯୋଗ ଦେବାକୁ, କାହାନ୍ତି ଆଜି ସେ ? କେବଳ ଗୋଟାଏ ଅଭିମାନରେ ତା'ଙ୍କୁ ସେ ଦୁରେଇ ଦେଇଛି । ଦୁରେଇ ରହିଲୁ ସେ, ସୁଖରେ ରହନ୍ତୁ ।

ଭୁଜ ରହିଲା ସେ ଫୁଲ୍ଦାମା, ସେ' ବ ତମୁକୁ ଦଗା ଦେଲ ? କହ ମାର, ଖବର ପଠାଇଲେ ବ ସେ ଆଉ ଏଠିକି ନ ଆସେ ଲୋ ବାଇଆଣୀ, ପୁରୁଷ ଜାତଟା ସେମିତିକା ! ମାଇପି ଜାତ ଯେ ମଦଘଡ଼ା ।

ଆଖିରୁ କେସ୍ କେସ୍ ଲୁହ ଝରିପଡ଼େ । ହାତ ଯୋଡ଼ି କହେ ଫୁଲଦାମା, ଯାହା ମନ ତାହା ମନେ କର ଲୋ ଭଉଣୀମାନେ । ନର୍ଦ୍ଦୋଷ ଧର୍ମିଷ୍ଠା ପୁରୁଷ ସେ ବନ୍ଧୁବାନ୍ଧୁ । ଏକା ଜାଣିଛି ନୁହେଁ, ହାକିମ ହୁକୁମାଙ୍କଠୁଁ ଆରମ୍ଭ କରି ଡମର ବାପ, ଖାନ୍, ଗେରେଣ୍ଟଙ୍କ ବାଙ୍କୁଲା କୁହାଣୀର ଦାଉରୁ ମୋତେ ସେ ବଞ୍ଚାଇ ରଖିଲେ । ହସି ହସି, ନିର୍ବିକାର ହୋଇ ନନ୍ଦା-ଅପମାନର ପସରା ମୁଣ୍ଡରେ ବୋହି ସେ ଗ୍ଲାଲଥିଲେ । ସେଇ ପସରାକୁ ପୁଣି ମୁଁ ମୋ ମୁଣ୍ଡ ଉପରକୁ ଉଠାଇ ନେଇଛି । ଆସିବାକୁ ତା'ଙ୍କୁ ମୁଁ ଖବର ପଠାଇବି ନାହିଁ । ଖବର ପଠାଇଲେ ବ ସେ ଆସିବେ ନାହିଁ ।

କାହିଁକି ?

ସମସ୍ତଙ୍କୁ ସେ ଭଲ ପାଆନ୍ତି । ନଜେ ଦୁଃଖ ସହି ଅନ୍ୟମାନଙ୍କର ଉପକାର କରିବାକୁ ପ୍ରାଣପଣ ଚେଷ୍ଟା କରନ୍ତି । ସମସ୍ତେ ତାଙ୍କର । ସମସ୍ତଙ୍କ ପାଇଁ ତାଙ୍କ ମନ କାନ୍ଦେ । ଜଣକ ପାଇଁ ସେ ତାଙ୍କର କର୍ମଭୂମି ଗ୍ଲାଡ଼ି ଆତୁର ହୋଇ ଧାଇଁ ଆସିବେ ନାହିଁ ।

ସେମାନେ ହସିଥିଲେ । ସେମାନଙ୍କର ମନ କୌଣସି କୈଫିୟତ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ମୁହଁରେ ସହାନୁଭୂତିସୂଚକ ପଦେ କଥା ବ କହିବାକୁ କେହି ମନକରନ୍ତି ନାହିଁ । ସେମାନଙ୍କର ଧାରଣା — ଫୁଲ୍ଦାମା ପାପ, ଫୁଲ୍ଦାମା ଯେ ପିକଦାମା, ଅପବିତ୍ର ଅଳିଆଗଦା । ସେ ଗୋଟାଏ ବିଷଧର, ଖୋଲ ପେଡ଼ି ଭିତରେ ଶୋଇଥିବା ଫୋଟିଥିଆ ନାଗସାପ । ଦୂରରେ ଥାଇ ଦେଖିବାକୁ ଖୁସି ଲାଗେ । ପାଖକୁ ଯିବାକୁ ଡର । ଦୁରେଇ ରହ ।

Digitized by PPRACHIN, SOA

ଦୂରେଇ ରହନ୍ତି । ବଳେ ବଳେ ପାଖକୁ ଗଲେ ଆଡ଼େଇ ଯାଆନ୍ତି । ଜାମର ଆସ୍ ଦେଖାନ୍ତି । ପଛରେ ଭୁଟ୍‌ଭାଟ୍ ହୁଅନ୍ତି—ଛି, ଖୁଣୀଟା ଦାଗୀଟା, ଚେହେରା ଅଛି, ଯୌବନ ତେଜ ଖେଳୁଛି ଦେହରେ । ଝିଅଟିକ ଅଛି ଛଅଟିଜାତ । ଗୁହିଁ ଜାଣେ ଭ୍ରୁଲତା ଟେକ, ମୁହଁ ବଙ୍କେଇ ହସିପାରେ । ବାଟେଇ ନେଇ ବଡ଼ ବଡ଼ କଥା କହେ । ପୁରୁଷ ପିଲା ଅଟଳ ଠିଆ ହୁଏ । ଫେରି ଫେରି ପଛକୁ ଚାହେଁ ।

ଭାଉଜ ଆସିଛି ଘରକୁ । ବହୃପୁରର ଝିଅ ସେ । ଅଳପ ବୟସ । ବୁଢ଼ୀ ମା'ର ଡରରେ ମୁହଁ ଖୋଲି ପଦେ ପରିହାସ କରି କହେ ନାହିଁ । ସ୍ୱାମୀ ନାଁ ତା'ର । ଧରି କେତେ ବଡ଼ ବଡ଼ କଥା କହେ । ସବୁ ନିଜର ବିକୃତ ଧାରଣାର ପ୍ରକାଶ । ଭାଇ ତା'ର ସବୁବେଳେ କାର୍ଯ୍ୟବ୍ୟସ୍ତ । ବୁଢ଼ୀ ମା' ଗୁନ ଗୁନ କାନ୍ଦେ ।

ହାତ ଗୋଡ଼ର ଶକ୍ତି କାମରେ ଲାଗିବ ନାହିଁ । ବହୃପୁର ତାକୁ ଚାହେଁ ନାହିଁ । ସମସ୍ତେ ଯେପରି ସମସ୍ୱରରେ କହି ଉଠୁଛନ୍ତି—ଦୂରେଇ ଯା । ଯାହାଙ୍କର ସେ ହାତ ଧରିଥିଲା, ସେ ତ ତା'କୁ କେବେଠୁଁ ଗୁଡ଼ପଦ ଦେଇ ସାରିଛନ୍ତି । ନୂଆ ସଂସାର କଲେଣି । କଏ ଅଛି ତା'ର ସାହା ଭରସା ?

ଦାଗୀ-ଧନଞ୍ଜୟ ଦାସ !

ଯେଉଁ ଅନୁଷ୍ଠାନରେ ଜେଲବାହୁଡ଼ା ଦାଗୀଦଳର ସମାବେଶ, ସେଇ ତା'ର ପୁଣ୍ୟକ୍ଷେତ୍ର । ଯିଏ ଯେଉଁ କାରଣରୁ ଜେଲଦଣ୍ଡ ଭୋଗି ପଦାକୁ ଆସିଥାଉ, ଦୁନିଆଁ ଚକ୍ଷୁରେ ସେ ଦୋଷୀ, ସେ ଦାଗୀ-ସମାଜର ଜଣେ । କହୁଥିଲେ ବନ୍ଦୀବାନ୍ଧୁ, ତାଙ୍କର ବନ୍ଧୁ ଧନଞ୍ଜୟ ସେମାନଙ୍କର ହଜିଲା ଆତ୍ମସମ୍ମାନ ଫେରାଇ ଆଣିବାକୁ ଦୃଢ଼ପରିକର । ସେ ଦୁନିଆ ଲୋକଙ୍କୁ ଦେଖାଇ ଦେବାକୁ ଚାହାନ୍ତି ଯେ ବାରମ୍ବାର ଝୁଣ୍ଟି ତଳେ ପଡ଼ିବା ଲୋକର ହାତ ଧରି ଉଠାଇ, ଭଲ ବାଟରେ ଚାଲିବାକୁ ଶିଖାଇଲେ, ସେ ନିଷ୍କଳଙ୍କ, ନିଷ୍ପାପ ହୋଇ ଚାଲିବ । ମୁଖାପିନ୍ଧା ସାଧୁପୁରୁଷମାନଙ୍କର ସ୍ୱରୂପର ଜାବ ହେବ ।

ମନରେ ସାହସ ଓ ଆଶା ଦେଇ ଫୁଲ୍‌ଡାଳି ପତ୍ର ଲେଖିଥିଲା, ବନ୍ଧୁ ଧନଞ୍ଜୟ ବାବୁ,—

—ଲେଖି ଜାଣେ ନାହିଁ । ମନର କଥା ଭାଷାରେ ପ୍ରକାଶ କରିବାର ଶକ୍ତି ମୋ'ର ନାହିଁ । ମୋ ଜୀବନର ଯେଉଁ ଇତିହାସ ଲେଖିଲି, ଶପଥ କରି କହୁଛି, ସେଥିରେ ମିଥ୍ୟା କି ପ୍ରତାରଣା ନାହିଁ । ଦିନ ଦିନକର ଘଟଣା ଯାହା ମୁଁ ଅଙ୍ଗେ ଲିଭାଇଛି, କିପରି ସେ ସବୁ ପଦ ଗଣ୍ଡିକରେ ପ୍ରକାଶ କରିବ ? ଶେଷରେ ଏତିକି କହୁଛି, ନୀତି ଓ ଅନୀତି, ପାପ ଓ ପୁଣ୍ୟର ଧାରଣା ମୋ' ମନରେ ଜନ୍ମିଲା ଦିନରୁ ମୁଁ ସଂସାର ବିରୁଦ୍ଧରେ, ପୁଣି ମୋ'ର ନିଜର ଉତ୍ତେଜନା ବିରୁଦ୍ଧରେ ଯୁଦ୍ଧ କରି ଆସିଛି । ଦୁର୍ବଳ ମୁହୂର୍ତ୍ତରେ କେତେଥର ହାରି ତଳେ ପଡ଼ିଛି । ପୁଣି, ଉଠିଛି ।

Digitized by PPRACHIN, SOA

ଆପଣଙ୍କର ବନ୍ଧୁ ବଜ୍ରବାହୁଙ୍କର ସମ୍ପର୍କରେ ଆସିଲା ଦିନରୁ ଦୁନିଆର ସ୍ରୋତ ଉପରେ ମୁଣ୍ଡ ଟେକି ସଳଖ ହୋଇ ଚାଲିଥିଲି । ପୁଣି ଗୋଟିଏ ନୂତନ ମୂର୍ତ୍ତି ! ଅନୁତପ୍ତ ହେଲି । ସତ୍ୟପ୍ରାଣର ରକ୍ତ ମୁଣ୍ଡରେ ଚୋଳିଲି । ବାହାରୁ ଆସିଛି ମୁଁ ଦାଗୀ ହୋଇ । ଏ ଦୁନିଆ ମତେ ଗ୍ରହଣ କରି ପାରୁ ନା । କୁଆଡ଼େ ପୁଣି ଯିବି ? ଡେଇଁପଡ଼ିବି ପଙ୍କ ଭିତରକୁ ? ଡାକୁଛନ୍ତି ତ ସେମାନେ । ମନ ମୋ'ର ଝଗଡ଼ି ଉଠୁଛି । ସ୍ଥାନ ଦେବେ କି ଆପଣଙ୍କର ଅନୁଷ୍ଠାନରେ ? ମୋର ଦାଗୀ ବାପ, ଦାଦା ଓ ଭାଇମାନଙ୍କର ସେବା କରି ଜୀବନଟି କଟାଇ ଦେବାର ସୁଯୋଗ ଓ ସୁବିଧା ଦେଇ ପାରିବେ ? —

ପତ୍ରର ଉତ୍ତର ହୋଇ ଉପସ୍ଥିତ ହେଲେ ନିଜେ ଧନଞ୍ଜୟ ଦାସ । ସଙ୍ଗରେ ଅର୍ଜ୍ଜୁନ ମହାରଥୀ । ଦୁହେଁ ଅପରିଚିତ । ଆମ୍ଭେ ହିଁ ଚିହ୍ନାଇ ଦେଉଛୁ – ଏଇ ସେ ଧନଞ୍ଜୟ ଦାସ ଯାହାଙ୍କର ଜେଲ୍-ଜୀବନର ଛବି "ଦାଗୀ" ପତ୍ରିକା ଉପରେ ଛପା ହୋଇଥିଲା ।

ମୋ'ର ଗୋଟିଏ ଅନୁରୋଧ ଅଛି, ଫୁଲ୍‌ଦାନୀ ଦେବୀ, ସଂସାରରେ ମୁଁ ବି ଏକୁଟିଆ । ଉତ୍ତେଜନାକୁ ମନ ଭିତରେ ବନ୍ଦୀ କରି ରକ୍ଷି କର୍ମକ୍ଷେତ୍ରରେ ଆଗେଇଲା ବେଳେ ମନର ଦୃଢ଼ତା ଦୋହଲି ଉଠେ । । ଦୁନିଆର ଲୋଭିଲା ଆଖିଗୁଡ଼ାକୁ ଶାସନ କରି ନୂଆଁଇ ଦେବାକୁ ଗୋଟିଏ ପ୍ରସ୍ତାବ ମୁଁ ଆପଣ ଓ ଆପଣଙ୍କର ମା'ଙ୍କ ଆଗରେ ବାଢ଼ିବାକୁ ଚାହେଁ ।

ସେହି ପ୍ରସ୍ତାବଟି ତା'କୁ ଓ ତାର ଜନନୀଙ୍କୁ ସୁଦୁର ଜନ୍ମପୁରରୁ ଟାଣିଆଣିଛି କଟକ ସହରକୁ, ଅପରିଚିତ ବନ୍ଧୁ ଧନଞ୍ଜୟ ଦାସଙ୍କ ବସାଘରକୁ । ଦିନକ ପରେ ସେହି ଅପରିଚିତ ବନ୍ଧୁଙ୍କର ଜୀବନ ସଙ୍ଗେ ନିଜର ଜୀବନଟିକୁ ସେ ଛନ୍ଦି ଦେବ । କେଡ଼େ ଉଦାର ସେ ! ଅତୀତରେ ଯାହା ଯେତେ ଘଟିଯାଇଛି, ସବୁ ଶୁଣି ମଧ୍ୟ ମନରେ ଘୃଣାଭାବ ଆଣି ନାହାନ୍ତି ।

ପଦଟିଏ ନିଜେ ପଚାରି ନାହାନ୍ତି । ହସି ହସି ବାରଣ କରି କହୁଛନ୍ତି, ଅତୀତ ଅତୀତରେ ଲୁଚିଯାଇଛି । ଅତୀତ ଉପରେ ମୋ'ର ଆସ୍ଥା ନାହିଁ କି ରାଗରୋଷ ଅଭିମାନ ନାହିଁ । ବର୍ତ୍ତମାନଟି ବଡ଼ କଥା । ତା'ରି ଉପରେ ମୋ'ର ପୂର୍ଣ୍ଣ ବିଶ୍ୱାସ । ସେତିକି ବି ଅତୀତ ହେଲେ ମୋ'ର ଦୃଷ୍ଟି ଆଗରୁ ଚାଲିଯାଏ । ବର୍ତ୍ତମାନ ଉପରେ ଯେତିକି ପ୍ରଭାବ ସେ ପକାଏ, ସେତିକି ହିଁ ତାର ଦାମ୍ ।

କ'ଣ ଏତେ ଭାବୁଛୁ ଫୁଲ୍‌ଦାନୀ ?

କିଛି ଭାବିବ ନାହିଁ ବୋଲି ଯେତେ ଚେଷ୍ଟା କଲେ ବି ଗୁପ୍ତ କଥା ସବୁ ଭାବ ହୋଇ ଯାଉଛି । ମନ ହେଉଛି, କେମିତି ମୁଁ ଅତୀତକୁ ଫେରିଯାଇ ପାରନ୍ତି କି ନୂଆ କରି ଜୀବନକୁ ଆଉ ଥରେ ଗଢ଼ିବାକୁ ଚେଷ୍ଟା କରନ୍ତି ।

Digitized by PPRACHIN, SOA

ଫୁଲଦାମୀର ମୁହଁରେ ହାତ ବୁଲାଇ ତା'ର ଜନନୀ ହସିଲା ମୁହଁରେ କହିଲେ, ଆଲୋ ବାଇଆଣୀ, ହଜିଲା ଦରବ ମିଳିପାରେ, ବନ୍ଧ ପକାଇଲେ ବହିଗଲା ପାଣି ହୁଜାଣି ମିନା ଘଟିବ, କେଜାଣି କେଉଁ ମୁନିଋଷୀ ମହାତ୍ମାମାନେ ମନ୍ତ୍ର ଯନ୍ତ୍ର କରି ମରିଗଲା ମଣିଷର ଜୀବନକୁ ଫେରାଇ ଆଣି ପାରୁଥିବେ ସିନା, ବୃଦ୍ଧ-ଗଲା-ବେଳକୁ ଫେରାଇ ଆଣିବାକୁ କାହାର ସାଧ ନାହିଁ । ପଛକୁ ଫେରିବା ଅସମ୍ଭବ । ଆଗକୁ ଯିବାକୁ ପଡ଼ିବ । ନୂଆକରି ନିଜ ଜୀବନକୁ ଗଢ଼ିବା ନିଜ ହାତର କଥା । ଯେତେବେଳେ ମନ ଦୃଢ଼ କରିବ ସେତିକି ହେବ ।

ଫୁଲଦାମୀ କହିଲା, ଏଇ କଥା ବଜ୍ରବାନ୍ଧୁ ସମସ୍ତଙ୍କୁ କେତେ ଥର ବୁଝେଇ କହୁଛନ୍ତି । ମୁଁ ବି ତାଙ୍କୁ କେତେଥର ଗୋଟିଏ ପ୍ରଶ୍ନ ପଚାରିଛି, ନିଜ ହାତର କଥା ତ ସମସ୍ତେ ନିଜ ନିଜର ମନମାଫିକ ଜୀବନ ଗଢ଼ୁନାହାନ୍ତି କାହିଁକି ? ସେ ସ୍ୱୀକାର କରିଛନ୍ତି, —ଜଣକର ଜୀବନ କାମ ଓ ଚେଷ୍ଟା ଉପରେ ଅନ୍ୟମାନଙ୍କର ପ୍ରଭାବ ପଡ଼େ । ମଣିଷ ଯେତେ ମନ ଦୃଢ଼ କଲେ ବି, କେଜାଣି କିପରି ଅଜଣା ବାଟକୁ ଠେଲି ହୋଇଯାଏ ।

ଭାଗ୍ୟ ।

ହୋଇଥିବ ଭାଗ୍ୟ । ନୋହିଲେ କାହିଁକି ସତ୍ୟପାଳଙ୍କୁ ଫୁଣ୍ଡ୍ କହି ଜେଲ୍ ଗଲେ ? ମୁଁ ତ ଏହା ବୁଝି ନ ଥିଲି । କାହିଁକି ଆଜ ମୁଁ କଷ୍ଟକରେ ? କାଲି ଗୁଡ଼ ପହର ଦିନ କ'ଣ ହେବ ବୋଲି ଧନଞ୍ଜୟବାବୁ ସ୍ଥିର କରିଛନ୍ତି । ନୂଆ କଥା । ନିମନ୍ତ୍ରଣ ପତ୍ରଗୁଡ଼ାକରେ ମୁଁ ମୋ ନାମ ଲେଖିଦେଇଛି ।

ବୁଢ଼ୀଙ୍କର ଆଖିରେ ଲୁହ ।

ଫୁଲଦାମୀ କହିଲା ପର ଦିନ, ଦୂରରେ ଅଛି । ଏ ଭିତରେ କ'ଣ ହେବ କେହି କହିପାରିବେ ନାହିଁ । ସଂସାର ଭିତରେ ଘାଣ୍ଟିଚକଟି ହୋଇ ଗୋଟିଏ କଥା ଶିଖିଛି ବୋଉ, ଯାହା ହେବାର ତ ହୋଇ ଯାଇଛି । ସେଥିକି ଅନୁତାପ କାହିଁକି, କାନ୍ଦ ବା କାହିଁକି ? ଜନ୍ମସ୍ଥାନ ଛାଡ଼ି ରାଜନଦର ଗୁଡ଼ ଯେତେବେଳେ ଆମର ରାଜା ଚାଲିଗଲେ, ରାଜା ଲୋକେ ତାଙ୍କର ପଛେ ପଛେ ଗୋଡ଼ାଇ ଗଲେ ନାହିଁ । ରାଜ-ଜେମା ଫୁଲଦାମୀର ଛେଳେ ବି କେହି ମାଟି ଛାଡ଼ିବାକୁ ରତ୍ନପୁରକୁ ଧାଇଁ ଆସିଲେ ନାହିଁ । ରତ୍ନପୁର ଗାଁ ଦାଣ୍ଡ ସବୁଲା ଯାଏ ମା' ପେଟର ସାନ ଭାଇଟା,—ଯାହାର ପିଲବେଳର କାମୁଡ଼ା ଦାଗ, ଅଞ୍ଚୁଡ଼ା ଦାଗ ଏବଯାଏ ମୋ ଦେହରୁ ଲିଭି ନାହିଁ—ଗୋଡ଼ାଇ ଆସିଥିଲା । ବସ୍‌ରେ ବସି କନ୍ଦେଇ ଗୁହିଁଲି । ଦୁଇ ଧାର ଲୁହ ଗଡ଼ି ଆସୁଥିଲା ତା'ର ଆଖିରୁ । ସେ ବି ତା'ର ସଂସାର ଦେଇ ରହିଲା ।

ଅଉ କହନା ଫୁଲ— ।

ବୁଢ଼ୀ ଆଖି ପୋଛିଲେ ।

ଫୁଲଦାମୀ ରୁନ୍ଧ ହେଲା ଅବାଧ ଲୁହ ସବୁ ଟାଣପଣ ଭାଙ୍ଗି ଆଖି କୋଣରୁ ନିଗିଡ଼ି ଆସିଲା ।

Digitized by PPRACHIN, SOA

ନୀରବତାର ରାଜତ୍ୱ । ଅର୍ଜୁନ ମହାରଥୀ ମଝି ଘରେ ଥାଇ ପୂରାଣ ବୋଲୁ ନାହିଁ । ଘର ଛାଡ଼ି ଗଲା କି ପଦାକୁ ? ମୁହୂର୍ତ୍ତିକର ନୀରବତା ସହି ହେଲା ନାହିଁ । ଫୁଲଦାନୀ ଉଠିଆସି ମଝି କବାଟର କଳଣୀରେ ହାତ ଦେଲା ।

ନୀରବତା ଭାଙ୍ଗିଲା ।

ମହାରଥୀ କହୁଛି, ସେ ପ୍ରେସ୍‌ରେ ରହୁଛନ୍ତି । ଆପଣ ବି ସେଇଠି ରହିବେ । ଖାଇବା ବେଳ ହେଲେ ଆସି ବାହାରେ ଠିଆ ହୋଇ ଡାକ ଶୁଣିବେ । ହଦ୍ଦରେ ଡାକିଲେ ଭଲ—ମହାରଥୀ ହେ, ମହାରଥୀ ହେ— । ଜି ହଜୁର— । କବାଟ ଖୋଲା ହେବ । କହିବେ, ଖାନା ଲାଓ ।—ଲାଓ ହୁଁ— । ଖାଇ, ପିଇ, ସିଗାରେଟ୍, ବିଡ଼ି, କି ପିକା ଖଣ୍ଡେ ମୁହଁରେ ଧରେଇ ଦେବେ ପୁଣି ଚାଲିଯିବେ ପ୍ରେସ୍‌କୁ । ଅଭି, ଏ ଘରର ମାଲିକ୍ ହେ ମହାତ୍ମା ଶ୍ରୀ ଅର୍ଜୁନ ମହା'ରଥୀ ଏଣ୍ଡ କୋ ୱନ୍ ନମ୍ବର ଦାଗୀ— ।

ସତେ ?

ହିସାବ କରନ୍ତୁ, ଏକ୍, ମେ ଖୋଦ୍ । ଦୁଇ, ଦାସ-ଧନଞ୍ଜୟ । ତିନ୍, ଦେବୀ ଫୁଲଦାନୀ ।

ହଦ୍ଦରେ କାହିଁକି କାରବାର ?

ଅଜ୍ଞା, ଜେଲ୍‌ଖାନା ଆଉ ଦଉଲତ୍‌ଖାନା ଭିତରେ ହଦ୍ଦର କାରବାରଟା ବେଶି । ଯେଉଁଠି ଦାଗୀ ରହନ୍ତି, ସେଇଟା ଜେଲ୍‌ଖାନା ଆଉ, ଯେଉଁଠି ଶେଠ୍ ରହନ୍ତି ସେଇଟା ଦୌଲତ୍‌ଖାନା । ଅରେ ଆରେ ଆପଣ ଠିଆହେଲେ ଯେ ! ତଶରିଫ୍ ରଖିଏ ଏଇ ମଶିଣା ଉପରେ । କ'ଣ ନେବା କହିଲେ,—ଟି, କଫି, ସର୍‌ବତ୍ — ।

କିଛି ନାହିଁ ।

ପଖାଳ—ଗରମାଗରମ୍ ?

ମନଟା ଖୁବ୍ ଖୁସିଅଛି ଡମର ମହାରଥୀ ।

ଆଜ୍ଞା ହଁ । ଚୁଲି ଫୁଙ୍କିବାକୁ ପଡ଼ୁନାହିଁ । ଫୁଲଦାନୀ ଦେବୀ ସେବକ କରୁଛନ୍ତି ।

ଡାକଦେବ କି ଫୁଲଦାନୀ ଦେବୀଙ୍କୁ ?

ସେ ଜନାନା ଆଜ୍ଞା ।

Digitized by PPRACHIN, SOA

ମଝି କବାଟ ଅଳପ ଖୋଲିଛି । ଲୁହଝରା ଦିଓଟି ଆଖି ଅନେଇଁ ରହିଛି । ବଜ୍ରବାହୁର ଦୃଷ୍ଟି ପଡ଼ିଲା । କେଉଁ ଅଜଣା କମ୍ପନ ଖେଳିଗଲା ଦେହରେ । ଥରିଲା ସ୍ୱର କହି ଉଠିଲା,—ଫୁଲଦାମି !

କବାଟ ଖୋଲିଲା । ଛୁଟି ଆସିଲା ଫୁଲଦାମି । ଆଗରେ ସୁବ୍ରତ ବଜ୍ରବାହୁ । ତୁଳର କଥା କାନରେ ବାଜୁଛି,—ମତେ ଭାଇ ବୋଲି ଡାକିପାରିବୁ ? ବଜ୍ରବାହୁର ମୁହଁରେ ହସ । ସେ ହସ ଆଦେଶ ଦେଉଛି, ମତେ ଭାଇ ବୋଲି ଡାକ ଫୁଲଦାମି, ଡାକ, ଡାକ— ।

ଫୁଲଦାମୀର ଅନ୍ତରାତ୍ମା ଉଲସି ଉଠିଲା । ଅଧୀର ବ୍ୟାକୁଳ ମନ ଓଠ ଥରାଇଲା । ବଜ୍ରବାହୁର ନିର୍ମଳ, ଉଜ୍ଜ୍ୱଳ ତେଜଆଳ ଆଖି ଦିଓଟିକୁ ଚାହିଁ, ଶାଗୁଦରୁ ପୁଥାଣି ହୋଇ ଫେରି ଆସିଥିବା ମାନ ଭଉଣୀଟିର ସବୁ ସ୍ନେହ—ମମତା, ଉଦ୍‌ବେଗତା, ବ୍ୟାକୁଳତା ଅଭିମାନଭରା, ମନଦ୍ୱଜା, ପ୍ରାଣଥରା ସ୍ୱରରେ ଫୁଲଦାମି ଡାକ ଛାଡ଼ିଲା, ଭାଇ ଭାଇ— ! ଥରି ଥରି ଲଡ଼ିଆଟି ପରି ସେ ଓହ୍ଲାଇ ପଡ଼ିଲା । ଦୁଇ ହାତରେ ବଜ୍ରବାହୁର ପାଦ ଧରି ମୁଣ୍ଡ ଲଗାଇଲା ।

ମହାନ୍ତିଆ ନିଜର କାନ ଦିଓଟି ଧରି ଜିଭ କାମୁଡ଼ିଲା । ପଛେଇ ଯାଇ କହିଲା, ଜନାନା ମେ ହୁଁ ।

ସୁବ୍ରତ ଫୁଲଦାମୀର ହାତ ଧରି ଟେକି ଉଠାଇଲା ।

ବୁଢ଼ୀ ମଝିଘରକୁ ଆସିଲେଣି । ସୁବ୍ରତ ହାତ ଯୋଡ଼ି ନମସ୍କାର କଲା । ଗଦ୍‌ଗଦ୍ କଣ୍ଠରେ ବୁଢ଼ୀ କହିଲେ, ଦୀର୍ଘାୟୁ ହୁଅ ବାପ, କି ଯୋଗରେ ଆଜି ମୋ'ର ଘର ପାହିଥିଲା ରେ !

ମହାରଥୀ ଚଉକି ଆଣି ସୁବ୍ରତର ପଛରେ ରଖି କହିଲା, ବସନ୍ତୁ, ଅଜ୍ଞା ।

ସୁବ୍ରତ ମୁହଁ ବୁଲାଇ ହସ ହସ ହୋଇ ପଚାରିଲା, ମାଲିକ୍ କୌନ୍ ହେ ?

ହାତଯୋଡ଼ି ମହାରଥୀ କହିଲା, ଆପ୍ ହେଁ, ଆପ୍ । କ୍ୟା ଲାଉଁ,—ଚା, କଫି ସର୍‌ବତ୍— ?

କିଛି ନାହିଁ ।

ପାନ୍, ବିଡ଼ି, ସିଗାରେଟ୍, ପିକା, ହୁକା ?

ନାହିଁ ମହାରଥୀ ।

ଗୁଣ୍ଡି, ଖୈନି, ଜରଦା, ଦୋକ୍ତା, ନାସ— ?

ନାହିଁ ହେ ।

ତେବେ ଯାଉ, ଧନଞ୍ଜୟବାବୁଙ୍କୁ ଖବର ଦିଏଁ । କାଲି ଗୁଡ଼ି ପଥରଦାନ ବାହାଘର । ଆପଣଙ୍କ ପରି କେତେ ବନ୍ଧୁ ଆସିବେ । ଚର୍ଚ୍ଚା କରିବାକୁ ଏ ସବୁ ଜିନିଷ ମୁଁ କିଣିଣି ରଖିଛି । କେହି ଯଦି କିଛି ନ ଖାଆନ୍ତି ଆଜ୍ଞା, ମୋ ପଇସାତକ ପାଣିରେ

Digitized by PPRACHIN, SOA

ପଣ୍ଡିତ । ପରଶୁରାମ ତ ପଣ୍ଡା ହେବାର କଥା ହେଲା । ଆଚ୍ଛା, ଆଉ ସବୁ ବନ୍ଧୁଙ୍କ କଥା ଅଲଗା, ଆପଣଙ୍କ ପରି ଅସଲ ବନ୍ଧୁଙ୍କ କଥା ଅଲଗା । ଯାଉଛୁ ।

ଧନଞ୍ଜୟ ଆସୁଛୁ ।

କେବଳ ଧନଞ୍ଜୟ ନୁହେଁ, ତା ସଙ୍ଗରେ ଅନାହୂତ ମଧ୍ୟ ଆସିଛୁ । ପଛେ ପଛେ ଶକ୍‌ଟାଟିଏ । କେତେ କ'ଣ ପଦାର୍ଥ ସେଥିରେ ଲଦା ହୋଇଛି ।

ମହାରଥୀ ମନ ମାରି ପଦାକୁ ଗଲା ।

କର୍ମମୟ ଜୀବନରେ ଯେଉଁ ଦୁଇଟି ବ୍ୟକ୍ତି କେବେ କେମିତି ତା'ର ଚନ୍ଦ୍ରାରେ ଆଲୋଡ଼ନ ଆଣିଥିଲେ, ଅଜ୍ଞାତସାରେ ପଦର ଗତି ମନ୍ଥର କରିଥିଲେ, ବାହୁରେ ଆଣିଥିଲେ ଶିଥିଳତା, ସେ ଦୁହେଁ ଦୂରେଇ ଯାଇଛନ୍ତି । ସୁବ୍ରତ ଆଜି ନିଶ୍ଚିନ୍ତ । ଆହୁତ ତା'ର ବନ୍ଧୁ, ଫୁଲଦାମୀ ତା'ର ଭଉଣୀ । ରତ୍ନାକର, ଅରବିନ୍ଦ, ଚନ୍ଦ୍ରଧର ଓ ଧନଞ୍ଜୟ ଏମାନେ ମଧ୍ୟ ବନ୍ଧୁ । ସନ୍ଧ୍ୟା, ରମା, ଉମା, ପାର୍ବତୀ ଏମାନେ ତା'ର ଭଉଣୀ । ଏତିକି ଯଥେଷ୍ଟ ।

କଟକ ସହରର କାମ ଶେଷ ହୋଇଛି । ରାତି ପାହିଲେ କର୍ମକ୍ଷେତ୍ର ରଣଗଡ଼କୁ ଫେରିଯିବ । ପୁଣି କର୍ମଯଜ୍ଞରେ ନିଜକୁ ସେ ଆହୁତି ଦେବ । ସେତିକି ତା'ର ଜୀବନର ପଣ, ଜୀବନର ଆନନ୍ଦ ।

ଧନଞ୍ଜୟର ବାହାଘର— ଫୁଲଦାମୀ ହେବ ତା'ର ପତ୍ନୀ । ଉଭୟେ ଦୁହିଁଙ୍କୁ ଗ୍ରହଣ କରିଛନ୍ତି । ତଥାପି, ସେତିକି ଯଥେଷ୍ଟ ନୁହେଁ । ଏ ବିବାହରେ ବ୍ରାହ୍ମଣ ମନ୍ତ୍ରପାଠ ନ କରନ୍ତୁ କି କାଜି କୋରାନ୍ ପାଠ ବା ଖ୍ରିଷ୍ଟ ବାଇବେଲ୍ ପାଠ ନ କରନ୍ତୁ ପଛେ, ଦୁନିଆ ଲୋକଙ୍କୁ ଜଣାଇ ଦେବାକୁ ଦେବୀଙ୍କ ମନ୍ଦିରରେ ପୁଷ୍ପହାରର ଆଦାନପ୍ରଦାନ ହେବ । ଦୁଇଟି ମନ ଦୁଇଟି ଆତ୍ମାର ମିଳନ ଦୁନିଆ ଆଖିରେ ଯଥେଷ୍ଟ ନୁହେଁ । ସେଥିପାଇଁ ଅନ୍ୟମାନଙ୍କୁ ସାକ୍ଷୀ ରଖିବାକୁ ହେବ । ଯେଉଁ ଦୁଇଟି ପ୍ରାଣୀ ପରସ୍ପରକୁ ଭଲ ପାଇଲେ ଗୋଟିଏ ସଂସାର କରିବାକୁ ମନ କଲେ, କାହିଁକି ସେମାନେ ନିଜ ବନ୍ଧନର ପ୍ରମାଣ ରଖିବାକୁ ଲୌକିକତାର ଆଶ୍ରୟ ନିଅନ୍ତୁ ? ନିଜର ଦୃଢ଼ତା ଉପରେ କ'ଣ ସେମାନଙ୍କର ଆସ୍ଥା ନ ଥାଏ ? ନିଜକୁ କ'ଣ ସେମାନେ ବିଶ୍ୱାସ କରିପାରନ୍ତି ନାହିଁ ?

ଧନଞ୍ଜୟ ଫୁଲଦାମୀକୁ ପତ୍ନୀ କରିବ ବୋଲି ପଣ କରିଛି । ଫୁଲଦାମୀ ତା'ର କୃପତ୍ନୀ ହେବାକୁ ସ୍ୱୀକୃତି ଦେଇଛି । ଏତିକି କ'ଣ ଯଥେଷ୍ଟ ନୁହେଁ ?

Digitized by PPRACHIN, SOA

ନୁହେଁ — । ତୁମକୁ କହୁ ଉଠନ୍ତି ସତ୍ୟପାଳ ସିଂହ, ତା' ହୋଇଥିଲେ କାହିଁକି ଫୁଲଦାନୀ ତା'ଙ୍କୁ ଖୁନ୍ କରି ଜେଲ୍ ଯାଇଥାନ୍ତା ? ଦୁଇଟା ମନ, ଦୁଇଟା ଦେହ ତ ଏକ ହୋଇଥିଲା !

ସୁବ୍ରତ ମନକୁ ଶାସନ କଲା । ଏ ବିଷୟ ସେ ଚିନ୍ତା କରୁଛି କେଉଁ ଅଧିକାରରେ ? ଜମିଦାରର ଉଆସରେ ସେ ବଡ଼ ହୋଇଛି, କାହାରି ଆଲିଙ୍ଗନ-ପାଶରେ ନିଜକୁ ତ ସେ ବାନ୍ଧି ରଖି ନାହିଁ । ଧନଞ୍ଜୟ ଓ ଫୁଲଦାନୀ ନିଜ ନିଜର ଅଭିଜ୍ଞତାରୁ ଶିଖିଛନ୍ତି ଏଇ କଠୋର ସତକଥା— ବିବାହ ବିନା ପ୍ରେମର ସ୍ଥାୟିତ୍ୱ ଉପରେ ବିଶ୍ୱାସ ରଖି ହେବ ନାହିଁ । ସେଇଥିପାଇଁ ସେମାନେ ବିବାହ କରିବେ ।

ସୁଖରେ ରହନ୍ତୁ ସେମାନେ । ବିବାହରେ ଯୋଗଦେବାକୁ ସେ ରହିପାରିବ ନାହିଁ । କର୍ତ୍ତବ୍ୟ ତାକୁ ଗୁଡ଼ିଛି ଚଉଗଡ଼ରେ । କାଲି ସକାଳୁ ସେ ଫେରିଯିବ । ଧନଞ୍ଜୟ ଓ ଫୁଲଦାନୀଙ୍କୁ ସେ କହିଆସିଛି । ଅନାହୂତକୁ ମନର କଥା ଜଣାଇଦେବ । ବୟସରେ ସାନ ହେଲେ ବି ସେ ତ ଜଣେ ବନ୍ଧୁ ।

ହୋଟେଲ୍‌ରୁ ବାହାରି ଚାଲି ଚାଲି ସେ ଅନାହୂତର ଘରକୁ ଚାଲିଛି । ରାତି ହେବ ଆଠଟା । ଏଇ ଗଳିରେ ତା'ର ଘର । ଆଜି ଆଉ ଯୋଡ଼ ଅଟକ ରହୁନାହିଁ । ଛନ୍ଦବାନ୍ଧ ହେଉ ନାହିଁ । ଆହୁତ ସଙ୍ଗରେ କଣ୍ଟି ହୋଇ ଯାଇଛି । ନଳ-ଦମୟନ୍ତୀ ଖେଳର ସ୍ମୃତି ବର୍ଷେ ମନରୁ ଚିରଦିନ ପାଇଁ ପୋଛି ଦେଇଛନ୍ତି । ମାଆଙ୍କର ଅବୁଝା ମନ । ସେ ବି ଫେରି ଆସିଥିବେ । ମନଦୁଃଖ କରିଥିବେ । ଚଉଗଡ଼ ଫେରି ସୁବ୍ରତ ତା'ଙ୍କୁ ବୁଝାଇ କହିବ, ଜଣକୁ ପ୍ରତ୍ୟାଖ୍ୟାନ କଲେ ବି ଅନ୍ୟ ଜଣକର କୌଣସି କ୍ଷତି ହେବ ନାହିଁ । ଦୁହିଁଙ୍କର ସଂସାରର ଚକ ନିଜର ରାସ୍ତା ଧରି ଗଡ଼ି ଚାଲିଥିବ ।

ମତେ ସେ ଅପମାନ ଦେଲା ରେ ସୁବ୍ରତ !

ସୁବ୍ରତ ମନ-ମହଲର କେଉଁ କନ୍ଦରେ ମା ମୁହଁ ଶୁଖାଇ କହୁଛନ୍ତି ରୁନ୍ଧ ରୁନ; ଆଖିରେ ତାଙ୍କର ଲୁହ ଛଳଛଳ । ଆହୁତ କହୁଥିଲା,—

କ'ଣ କହୁଥିବ ଅହୁତ, ସୁବ୍ରତ ଚିନ୍ତା କରି ପାରୁନାହିଁ । ଏଇ ତ, ଆଗରେ ଅନାହୂତର ଘର । ବାରଣ୍ଡାରେ ଆଲୁଅ ଜଳୁଛି । କଡ଼ରେ ରଖା ହୋଇଥିବା ଗୋଲାପଗଛର ଟବ୍‌ଗୁଡ଼ିକ ସୁନ୍ଦର ଦିଶୁଛି । ଜାଠି-ଜାଠିକା ଫୁଲ, ସୁନ୍ଦର । ଭୁଟି ଆସୁଛି ମହକ ।

ସୁବ୍ରତ ଫାଟକ ଖୋଲି ହତା ଭିତରେ ପଶିଲା ।

ସୁବ୍ରତ ବାରଣ୍ଡା ଉପରକୁ ଉଠିଲା । ଦାଣ୍ଡଘରର କବାଟ ବନ୍ଦ ଅଛି । ବାହାର ପାଖର ଝରକା ଖୋଲା । ପାତଳ ନୀଳ ପରଦା ଧୀର ପବନରେ ଥରୁଛି । ଘର

Digitized by PPRACHIN, SOA

ଭିତରେ କେଳାଥା ଆଲୁଅ । ଅତି ଧୀରେ ଧୀରେ ଭସି ଆସୁଚ୍ଛି ରେଡ଼ିଓ-ସଙ୍ଗୀତ । ସୁଜନ ଜେଠାରେ ଦେଖା ନାହିଁ । ସେ ଘର ଭିତରେ ଥିବ । ପରଦା ଫାଙ୍କରେ ଦଶୁଚ୍ଛି, ମଝିଘରେ କେହି ନାହିଁ । ହୁଏତ, ଅନାହୂତ ତାଙ୍କୁ ଅପେକ୍ଷା କରି ରହୁଥିଲ, ଭିତରକୁ ଯାଇଛ ।

ସୁବ୍ରତ ଝରକା ପାଖରୁ ବାରଣ୍ଡା ମଝିକୁ ଘୁଞ୍ଚି ଆସିଲ । ସୁଜନ ଜେଠାର ଗ୍ରେଟ ବେଞ୍ଚଖଣ୍ଡି କାନ୍ଥକୁ ଲଗି ପଡ଼ିଚ୍ଛି । ଟିକଏ ଅପେକ୍ଷା କରିବାକୁ ଆଗ୍ରହ ହେଲ । ବାରଣ୍ଡା କଡ଼ କୋଟେନ୍ ଗଛ ଉହାଡ଼ରୁ ଆସୁଚ୍ଛି ପିଲଟିଏ । ସେ ବାରଣ୍ଡା ଉପରକୁ ଉଠି ନମସ୍କାର କଲ । ପଚାରିଲ, କାହାକୁ ଖୋଜୁଛନ୍ତି ?

ଅନାହୂତ ବାବୁ ଅଛନ୍ତି ?

ତାଙ୍କ ଘର ଏ ନୁହେଁ । ଆଗରେ ଯାଇ ବୁଝନ୍ତୁ ।

ପିଲଟି କବାଟରେ ହାତମାରି ଡାକିଲ, ଖୁଡ଼ୀ— ।

ତମ ନାମ କ'ଣ ?

ମୋ ନା ସୋମନାଥ ।

ସୁଜନ ଜେଠା କାହାନ୍ତି ?

ସୁବ୍ରତର ମୁହଁକୁ ଚାହିଁଲ ସୋମନାଥ । କେବେ ଦେଖିଲ ପରି ମନେ ହେଉନାହିଁ । ଜେଠାର ଚହ୍ଣାଜଣା କେହି ହୋଇଥିବେ । କେଜାଣିବା ମକଦ୍ଦମା କଥା ବୁଝିବାକୁ କେଉଁ ବାବୁ ଆସିଥିବେ ।

ଜେଠା ନାହାନ୍ତି, ସୋମନାଥ କହିଲ । କବାଟରେ ହାତମାରି ପୁଣି ଡାକିଲ, ଖୁଡ଼ୀ, ଖୁଡ଼ୀ, — । ସୁବ୍ରତକୁ ଚାହିଁ କହିଲ, ଆପଣ ଯାଉନ୍ତୁ, କାଲି ସକାଳେ ଆସିବେ । ସୁଜନ ଜେଠା ମା'ଙ୍କ ସଙ୍ଗେ ଯାଇଛନ୍ତି । ଫେରୁ ଫେରୁ କେତେ ରାତି ହେବ କିଏ ଜାଣେ ? ଲୋକେ କେତେ ବେଗି ଖବର ପାଆନ୍ତି ଆଜ୍ଞା ! ସଞ୍ଜ ବୁଡ଼ି ନ ଥିଲ ତ, ଆମେ ସବୁ ସୋମଗଡ଼ରୁ ଆଇଲୁ । କାହା ଘରେ କିଏ ବେମାର ପଡ଼ିଚ୍ଛି ବୋଲି ଏବେ ତ ଘଣ୍ଟାଏ ହେବ ନାହିଁ, ସେ ଆସି ମାଙ୍କୁ ଡାକିନେଇ ଗଲେ ।

ସୋମଗଡ଼ରୁ ଫେରିଲ ?

ଆଜ୍ଞା ହଁ । ରାସ୍ତାଟା ଏତେ ଖରାପ ଯେ ବସ୍‌ଟି ଖାଲି ପଡ଼ି ଉଠି ଆସିଲ । ଦେହ ହାତ ଛେଚକୁଟି ହେଉଛି ।

ଓକିଲବାବୁ ?

ଗଲେ ତ ସାଇକେଲ ଧରି । କେତେବେଳେ ଫେରିବେ କେଉଁ ଠିକଣା ? ଆପଣ ଯାଆନ୍ତୁ, କାଲି ସକାଳେ ଆସିବେ । କବାଟ ଖୋଲି ଦିଲେ ପଦାକୁ ଆସିଲି ଯେ, ଦେଖନ୍ତୁ ସାଙ୍ଗେ ସାଙ୍ଗେ ଖୁଡ଼ୀ କବାଟ ବନ୍ଦ କଲେ । ବାଉ ଲୋକ ଆସୁଛନ୍ତି ଯାଉଛନ୍ତି । କବାଟ ଖୋଲା ହେଲେ କିଏ କ'ଣ ଚୋରି କରି ନେଇଯିବ ବୋଲି ତା'ଙ୍କର ଡର । ଖୁଡ଼ୀଙ୍କର ଧୋବ ଫର ଫର ସୁନ୍ଦର ବଲେଇଛୁଆକୁ କିଏ ଚୋରି କରି ନେଇଛି ।

Digitized by PPRACHIN, SOA

କିଏ କି ସୋମନାଥ ?

ମନ୍ଦିରରୁ କଅଁଳେଇ ପଚାରିଲେ କିଏ ! ଅତି ପରିଚିତ ସ୍ୱର । ସୁବ୍ରତର ଗ୍ରୀବା ତଳେ ଅଜଣା କୋହ । ଆହ୍ଲାଦ ମଧ୍ୟ ସୋମଗଡ଼ରୁ ଚାଲିଆସିଛି । କେଡ଼େ ଦୁର୍ଯୋଗ । ସେମାନେ ଆସିଛନ୍ତି ଏକଥା ଯଦି ସେ ଆଗରୁ ଜାଣି ପାରିଥାନ୍ତା, ଅନାହୂତର ଘରକୁ କେବେ ଆସି ନ ଥାନ୍ତା । ସେ ଆସିଛି ଏକଥା ଜାଣିଲେ ଆହ୍ଲାଦ ଖୁସୀ ହେବ ନାହିଁ । ହୁଏତ ସେ ଭାବିବ, ପୁଣି ତାକୁ ବିରକ୍ତ କରିବାକୁ ସୁବ୍ରତ ଧାଇଁ ଆସିଛି ।

ଅନୁତପ୍ତ ସୁବ୍ରତ କାଳବିଳମ୍ବ ନ କରି ଫେରିଯିବାକୁ ମନକଲା । କାନରେ ବାଜିଯାଉଛି ମାଆଙ୍କର ଅଭିମାନଥିଁ ଡାକ, ଏ କ'ଣ କଲୁ ରେ ସୁବ୍ରତ, କାହିଁକି ପୁଣି ଗଲୁ ସେଠିକି ? ମୋର ଦଗ୍ଧ ସ୍ନେହ, ଆଦର ଅନୁରୋଧ ଆହ୍ଲାଦ ଆଡ଼େଇ ଦେଇଛି । ମୁଣ୍ଡ ନୁଆଁଇ ମୁଁ ଫେରିଆସିଛି ବିବେଗଡ଼ ।

ସୋମନାଥ ପଚାରିଲା, ଆପଣଙ୍କ ନାମ କ'ଣ ଆଜ୍ଞା ?

ସୁବ୍ରତ ମୁହଁ ବୁଲାଇ କହିଲା, ଓକିଲବାବୁ ଆସିଲେ ଖାଲି କହିଦେବ, କିଏ ଜଣେ ଆସିଥିଲେ ଚାଲିଗଲେ । କା'ଲି ସକାଳେ ଦେଖା ପାଇଲେ ପୁଣି ଆସିବେ ।

ଦାଣ୍ଡ କବାଟ ଖୋଲିଲା । ଠିଆ ମେଲା ହେଲା । ପରଦା ସେପାଖେ ଠିଆ ହୋଇ ଆହ୍ଲାଦ ରହିଲା, କିଏ ଆସିଛନ୍ତି ପଚାରୁନୁ ସୋମନାଥ ।

କହନ୍ତୁ ଆଜ୍ଞା ।

ମୋ' ନା' ସୁବ୍ରତ ବଜ୍ରବାହୁ ।

ଆହ୍ଲାଦ କହିଲା, ତା'ଙ୍କୁ କହ ରେ ସୋମନାଥ, ଏ ଘରକୁ ଯିଏ ଆସେ ସେ ଏମିତି ଠିଆଠିଆ ଚାଲିଯାଏ ନାହିଁ । ଘର ଭିତରକୁ ଆସିବାକୁ କହ । ବସିବେ । ଚା' କି ସରବତ ଖାଇବେ ନୋଇଲେ ଟେବୁଲ୍ ଉପରେ କାଗଜ ପେନ୍‌ସିଲ ରଖା-ହୋଇଛି, ଚଠି ଖଣ୍ଡେ ଲେଖି ରଖି ଦେଇଯିବେ ।

ଆହ୍ଲାଦ ପରଦା ଟାଣିଲା ।

ସନ୍ଧ୍ୟା ଝଙ୍କା ଭିତରୁ ଦାଣ୍ଡ ଘରକୁ ଆସିଲାଣି । ଆହ୍ଲାଦ ପାଖକୁ ଆସି କହିଲା, କଥା ଶୁଣୁ ଶୁଣୁ ଘୁମେଇଁ ପଡ଼ିଲି ଟୁନାଅପା, ତମେ ମତେ ଉଠେଇ ଦେଲ ନାହିଁ । କହୁଥିଲ ପରା ମାଉସୀ ଫେରିଲେ ଆମେସବୁ କେଉଁଠିକି ଯିବା ବୋଲି !

ଆହ୍ଲାଦ କହିଲା, ବୋଉ ଫେରୁ ଫେରୁ ଡେରି ହେବ । ଝୁନାକୁ ଗାଡ଼ି ଆଣିବାକୁ ପଠେଇଛି । ସେ ଆସିଲେ ଆମେ ଧନଞ୍ଜୟବାବୁଙ୍କ ଘରକୁ ଯିବା । ସେଇଠି ଫୁଲଦାନୀ ଦେଖା ରହିଛନ୍ତି । ଦେଖି ଆସିବା । ତମେ ଏଠୁ ଯାଅ ତ ସନ୍ଧ୍ୟା । ବାହାରେ ଜଣେ ଭଦ୍ରଲୋକ ଠିଆ ହୋଇଛନ୍ତି । ଏତେ ଡକିଲା ସେ ଡାକିଲେ ଭିତରକୁ ଆସୁନାହାନ୍ତି ।

କିଏ ମ ସେ ?

Digitized by PPRACHIN, SOA

ଅବାକ୍ ହୋଇ ସୁବ୍ରତ ବାରଣ୍ଡାରେ ଠିଆ ହୋଇ ରହିଲା । ଆହୁତଙ୍କ ସଙ୍ଗରେ ସୁସନ୍ଧ୍ୟା ଆସିଛି । ମା' କେବେ ଆସି ଆଗରୁ ତାଙ୍କୁ ଅନ୍ତର କରନ୍ତି ନାହିଁ । କପର ସେ ଆସିଲା, କାହିଁକି ଆସିଲା ?

ସୁବ୍ରତର ଦୋହଲା ମନ ତାର ଉତ୍ତର ଦେଇ ସାରିଛି । ତା'ର ଆତ୍ମା କହୁଛି,— ଆହୁତ ଚିରଦିନ ପାଇଁ ହୋଇ ଯାଇଛି ରଣଗଡ଼ର । ସେଇଠୁ ପରାସ୍ତ ହୋଇ ଫେରିଆସିଥିଲା ବଜ୍ରବାହୁ, ସେଇଠି ବିଜୟକେତନ ଉଡ଼ାଇ ଆସିଛନ୍ତି ତା'ର ଜନନୀ !

ଯନ୍ତ୍ରଚାଳିତ ପରି ସେ ଘର ଭିତରକୁ ପଶିଲା । ସନ୍ଧ୍ୟା ଚିତ୍କାର କରି ଉଠିଲା, ଭାଇ — ! ଆନନ୍ଦରେ ଅଧୀର ହୋଇ ଆହୁତର ହାତ ଧରି ସେ ହଲାଇ ଦେଲା ।

ବହିଁ ରହିଛି ସୁବ୍ରତ ଆହୁତର ଆଖି ଦୁଇଟିକୁ । ଅପଲକ ନୟନରେ ସେ ବ ଅନାଇ ରହିଛି ।

ଆହୁତର ଆନନ୍ଦରେ ରଙ୍ଗ ଉକୁଟିଲା । ସେ ଦୃଷ୍ଟି ନୋଇଁଲା । ସୁବ୍ରତର ଦୃଷ୍ଟି ଫେରାଇ ଆସିଲା ତଳକୁ—ଆହୁତର ଗ୍ରୀବା ଉପରେ ଝଟକି ଉଠୁଛି ରଣଗଡ଼ ରଣସିଂହ ବଂଶର ରାଜାଭିଷେକ ଦାଗଟି—ଯାହାର ତଳରେ ଶହ ଶହ ବର୍ଷର ଇତିହାସ ଲୁଚିରହିଛି, ଯାହାର ଆଗରେ ପୂର୍ଣ୍ଣ ଶହ ଶହ ବର୍ଷ ଇତିହାସ ଲମ୍ବିଯାଇଛି— ।

ବାରଣ୍ଡା ଉପରକୁ ସତ୍ୟବତୀ ଉଠି ଆସିଲେଣି । ଖୁସି ହୋଇ ବାହାରୁ କହୁ କହୁ ଆସୁଛନ୍ତି, କି ସୁନ୍ଦର କଇଁଫୁଲ ପରି ଧୋବ ଫରଫର ପୁଅଟିଏ ହୋଇଛି ମତୋ ସାଙ୍ଗ ସୁହାସିନୀର— ।

ଉତ୍ତର ନ ଦେଇ ଆହୁତ ଧୀରେ ଧୀରେ ଖଞ୍ଜା ଭିତରକୁ ଚାଲିଗଲା । ସତ୍ୟବତୀ ଘର ଭିତରକୁ ପଶିଗଲେ । ସୁବ୍ରତକୁ ଦେଖି ଅବାକ୍ ହୋଇ ରହିଲେ । ଦୁଇ ଆଖିରେ ଛଳ ଛଳ ହେଲା ଆନନ୍ଦାଶ୍ରୁ । ଗଦ୍‌ଗଦ୍ କଣ୍ଠରେ କହିଲେ, ବାପ — !

ସୁବ୍ରତ ହାତଯୋଡ଼ି ନମସ୍କାର କଲା ।

ପାଖକୁ ଆସି ସନ୍ଧ୍ୟା ପଚାରିଲା, କାହାର ପୁଅ ହୋଇଛି ମାଉସୀ— ?

ଚିବୁକରେ ହାତ ଦେଇ ସତ୍ୟବତୀ କହିଲେ, ସୁହାସିନୀର । ସେ ତୁମର ସାଙ୍ଗ, କାଲି ସକାଳେ ମୋ' ସଙ୍ଗେ ତୁମେ ଥରେ ଯିବ ସେ ଦେଖି ଆସିବ ।

ସୁବ୍ରତର ହାତ ଧରି କହିଲେ, ଆସ ବାପ ଭିତରକୁ ।

ସୁବ୍ରତ କଥା ମାନିଲା ।

ଜୟପୁର

ତା ୧୫ । ୪ । ୧୯୫୮



ମଙ୍ଗଳବାର

Digitized by PPRACHIN, SOA

# ଔପନ୍ୟାସିକ
## କାହ୍ନୁଚରଣଙ୍କ ପୁସ୍ତକାବଳୀ

| ପୁସ୍ତକର ନାମ | ରଚନା କାଳ | ପ୍ରଥମ ପ୍ରକାଶ |
|---|---|---|
| ଉତ୍ସବ ବ୍ୟସନ | ୧୯୨୩-୨୪ | ପାଣ୍ଡୁଲିପି ହଜିଲା |
| ତଥାସ୍ତୁ | ୧୯୨୪-୨୭ | ୧୯୬୩ |
| ବାଲିରାଜା | ୧୯୨୬-୨୮ | ୧୯୩୧-୩୨ |
| ଅରୁଣା | ୧୯୨୮-୨୯ | ପାଣ୍ଡୁଲିପି ହଜିଲା |
| ପଲାତକ | ୧୯୨୯-୩୦ | ୧୯୩୦ |
| ଝଞ୍ଜି | ୧୯୩୦-୩୧ | ୧୯୩୨ |
| ମାନସୀ (କାବ୍ୟ) | ୧୯୩୧ | ୧୯୩୨ |
| ସ୍ୱପ୍ନ ନା ସତ୍ୟ | ୧୯୩୨ | ୧୯୩୩ |
| ଦୁନିଆର ଦାଉ | ୧୯୩୨-୩୩ | ୧୯୩୪ |
| ହା-ଅନ୍ନ | ୧୯୩୩-୩୪ | ୧୯୩୫ |
| ଉଲଟ ପାଲଟ | ୧୯୩୪ | ୧୯୩୭ |
| ପରୀକ୍ଷା | ୧୯୩୫ | ୧୯୩୮ |
| ଶରଚସ୍ତ | ୧୯୩୬ | ପାଣ୍ଡୁଲିପି ହଜିଲା |
| ହଡ଼ଣ୍ଡୀ | ୧୯୩୮ | ୧୯୩୯ |
| ଅଦେଖା ହାତ | ୧୯୩୯-୪୦ | ୧୯୪୦ |
| ପ୍ରତୀକ୍ଷା | ୧୯୪୧ | ୧୯୪୩ |
| ଭଲ ପାଇବାର ଶେଷ କଥା | ୧୯୪୨ | ୧୯୬୪ |
| ତୁଣ୍ଡବାଇଦ | ୧୯୪୨-୪୩ | ୧୯୪୪ |
| ଏପାରି ସେପାରି | ୧୯୪୪ | ୧୯୪୭ |
| ଶାସ୍ତି | ୧୯୪୫ | ୧୯୪୬ |
| ବନ ଗହନର ତଳେ | ୧୯୪୫ | ୧୯୪୭ |
| ଅଭ୍ରବସ୍ତ | ୧୯୪୬ | ୧୯୪୮ |
| ସ୍ନେହ ସ୍ପୃହାଣି | ୧୯୪୭ | ୧୯୪୭ |
| ଅଭିନେତ୍ରୀ | ୧୯୪୬ | ୧୯୪୭ |
| ଭୁଲ ହୁଏନା | ୧୯୪୭ | ୧୯୪୮ |

Digitized by PPRACHIN, SOA

| ପୁସ୍ତକର ନାମ | ରଚନା କାଳ | ପ୍ରଥମ ପ୍ରକାଶ |
|---|---|---|
| ଝଞ୍ଜା | ୧୯୪୮-୪୯ | ୧୯୫୦ |
| ମିଳନର ଲଗ୍ନ | ୧୯୪୯ | ୧୯୫୧ |
| ଶଙ୍ଖସ୍ୱ | ୧୯୫୦-୫୧ | ୧୯୫୨ |
| ଦସ୍ୱ | ୧୯୫୨-୫୩ | ୧୯୫୪ |
| କା (୧୯୫୯ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ) | ୧୯୫୩-୫୪ | ୧୯୫୬ |
| ବଜ୍ରବାହୁ | ୧୯୫୫-୫୬ | ୧୯୫୯ |
| ଠେଲ୍ ଠେଲିକା | ୧୯୬୦-୬୧ | ୧୯୬୨ |
| ବଗ ବଗୁଲି | ୧୯୬୨-୬୩ | ୧୯୬୪ |
| ଇତିହ୍ନ | ୧୯୬୩-୬୪ | ୧୯୬୬ |
| ଛମସା ଗାଟେ | ୧୯୬୪-୬୬ | ୧୯୬୬ |
| ମୁଁ ମନ୍ତ୍ର ଜାଣେ | ୧୯୬୬ | ୧୯୬୮ |
| ଲୁଟିଲେ ଘଣ୍ଟ | ୧୯୬୬ ୬୮ | ୧୯୬୮ |
| ଯୁଗ୍ମା | ୧୯୬୭-୬୮ | ୧୯୬୮ |
| ଡଙ୍ଗର ଡକେ | ୧୯୬୮ | ୧୯୬୯ |
| ମନଜାଣେ ପାପ | ୧୯୬୮-୬୯ | ୧୯୬୯ |
| ମନ ମନ୍ଥନ | ୧୯୬୯ | ୧୯୭୦ |
| ଅତି ଗୋପନୀୟ | ୧୯୬୯-୭୦ | ୧୯୭୦ |
| ଅଙ୍ଗନା | ୧୯୭୦ | ୧୯୭୧ |
| ମମତାର ମାୟା | ୧୯୬୧ | ୧୯୭୨ |
| ଭଲ୍ଲୁବାକୁ ଲାଜ | ୧୯୭୦-୭୧ | ୧୯୭୩ |
| ନିର୍ବିଶଙ୍କ | ୧୯୭୧-୭୨ | ୧୯୭୩ |
| ଆଜ ନୁହେଁ ଆଉ ଦିନେ | ୧୯୭୨-୭୩ | ୧୯୭୩ |
| କ୍ଷଣ କ୍ଷଣକେ ଆନ | ୧୯୭୪-୭୫ | ୧୯୭୫ |
| ମାୟାବନ୍ତୀ | ୧୯୭୫-୭୬ | ୧୯୭୬ |



Digitized by PPRACHIN, SOA